# ଆତ୍ମଚରିତ



**ନାରାୟଣ ମହାପାତ୍ର**

ଗ୍ରାମ- ବୀରନରସିଂହପୁର, ପୁରୀ

ଜନ୍ମ-୧୯୦୬ ମସିହା

୧୩୧୩ ସାଲ ମେଷ ୧୩ ଦିନ ୧୯୦୬ ବୈଶାଖ ଶୁକ୍ଳ ସପ୍ତମୀ

# ଆତ୍ମଚରିତ

## ନାରାୟଣ ମହାପାତ୍ର

ସଂପାଦକ
**ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର**
ଏନ୍‌-୩/୩୧୦, ଆଇ.ଆର୍‌.ସି. ଭିଲେଜ
ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୫
ଫୋନ୍‌ : ୯୪୩୭୦୩୨୦୦୨

ସଂସ୍କରଣ
ସେପ୍ଟେମ୍ବର, ୨୦୨୧

ଅଳଙ୍କରଣ
ପ୍ରଶାନ୍ତ କୁମାର ସେନାପତି
ଫୋନ୍‌ : ୮୭୬୩୨୧୬୬୪୯

ପ୍ରକାଶକ
ଆମରି ସତ୍ୟ
ଖୋର୍ଦ୍ଧା

ISBN : 978-9385900-52-5

ମୂଲ୍ୟ : ୩୦୦/- ଟଙ୍କା

# ATMACHARITA
## (Autobiography)

## Narayan Mohapatra

Editor
**Shri Krishna Chandra Mohapatra**
N-3/310, IRC Village
Nayapalli, Bhubaneswar - 751015
Phone : 9437032002

Edition
September, 2021

Layout Design
**Prasanta Kumar Senapati**
**Ph. : 8763216649**

Publisher
**Amari Satya**
Khordha

ISBN : 978-9385900-52-5

Price : Rs. 300/-



ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳକମଳେ ରତ୍ନସିଂହାସନସ୍ଥଂ
ସର୍ବାଳଙ୍କାରଯୁକ୍ତଂ ନବଘନରୁଚିରଂ ସଂଯୁତଂ ଚାଗ୍ରଯେନ
ଭଦ୍ରାୟା ବାମଭାଗେ ରଥଚରଣଯୁତଂ ବ୍ରହ୍ମାରୁଦ୍ରେନ୍ଦ୍ରବନ୍ଦ୍ୟଂ
ବେଦାନାଂ ସାରମୀଶଂ ସ୍ୱଜନପରିବୃତଂ ବ୍ରହ୍ମଦାରୁଂ ସ୍ମରାମି ।



| ପିତାମାତାଙ୍କ ପଦାରବିନ୍ଦରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି | |
|---|---|
| ପିତା- ସ୍ୱର୍ଗତ ନାରାୟଣ ମହାପାତ୍ର<br>ଆବିର୍ଭାବ: ୧୩୧୩ ସାଲ ମେଷ ୧୩ ଦିନ,<br>୧୯୦୬ ବୈଶାଖ ଶୁକ୍ଳ ସପ୍ତମୀ<br>ତିରୋଧାନ: ୧୯୮୫ ମସିହା ରାକ୍ଷୀ ପୂର୍ଣ୍ଣମୀ | ମାତା- ସ୍ୱର୍ଗତ ରାଧାମଣି ଦେବୀ<br>ଆବିର୍ଭାବ: ୧୯୧୧<br>ତିରୋଧାନ: ୧୯୯୧ |
| ଆତ୍ମଚରିତ ରଚିତ (ଆରମ୍ଭ) ୧୯୭୯, ଅକ୍ଟୋବର ପହିଲା । | |

# ଉତ୍ସର୍ଗ

ଆତ୍ମଚରିତଟି ଯଦିଓ ମୋ ପୂଜ୍ୟ ପିତାଙ୍କର ପୁତ୍ର (ମୋ) ନିକଟକୁ ଗୋଟିଏ ଚିଠିରେ ଆରମ୍ଭ ହୋଇ ଶେଷ ହୋଇଥିଲା, ଏହା ଉଦ୍ଦିଷ୍ଟ ଥିଲା ତାଙ୍କର ଶହ ଶହ ଛାତ୍ରଛାତ୍ରୀ, ତଥା ପରିବାରର ଉତ୍ତର ପଢ଼ିଙ୍କର ପଥ ପ୍ରଦର୍ଶନ ପାଇଁ । ପାଣ୍ଡୁଲିପି ଲେଖା ହେବା ସମୟରେ ପରିବାରର ଉତ୍ତର ପିଢ଼ି ତାଙ୍କର ନାତି ରିକୁନ୍, ଜୁବୁଲି ଓ ନାତୁଣୀ ମାମାଲି ଓ ମୋର ନାତୁଣୀ ଶିବାନୀ, ଯେଉଁମାନେ କି ଆଜି ତାଙ୍କର ଆଶୀର୍ବାଦରେ ପ୍ରତିଷ୍ଠିତ୍ ହୋଇ କର୍ମମୟ ଜୀବନ ସଂଗ୍ରାମରେ ଅନୁଧାବିତ ହେବାକୁ ଯାଉଛନ୍ତି, ସେମାନଙ୍କର ଭବିଷ୍ୟତ ଗଠନରେ ଦିଗ୍‌ଦର୍ଶନ ଦେବା ପାଇଁ ତାଙ୍କରି ହସ୍ତରେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପାଦପଦ୍ମରେ ସମର୍ପଣ ପୂର୍ବକ ଏହି ସାରସ୍ୱତ ରତ୍ନଟିକୁ ଅର୍ପଣ କରୁଛି । ଉତ୍ସର୍ଗ କରୁଛି ତାଙ୍କର ଶହ ଶହ ଛାତ୍ରଛାତ୍ରୀ ମାନଙ୍କୁ ଓ ମୋର ପରିବାରର ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନମାନଙ୍କୁ ଯେଉଁମାନେ ସଂସାରର ଗହନ ଜଞ୍ଜାଳ ଭିତରେ ବାଟବଣା ହୋଇ ପଥଭ୍ରଷ୍ଟ ହେବା ବେଳେ, ଏହି ଦିଗ୍‌ଦର୍ଶୀ କୃତିର ସନ୍ଦେଶ ସେମାନଙ୍କର ଚଲାପଥକୁ ଆଲୋକିତ କରିବାର ଆଶା ରଖି । ଆଶା ମୋର ପୁତ୍ର ରିକୁନ୍ ଓ ଜୁବୁଲି ଓ କନ୍ୟା ମାମାଲି ଏବଂ ପୁତ୍ରବଧୂ ବାଗ୍ମୀ ଓ ସରିତ୍ରୀ ଓ ଜାମାତା ସିଦ୍ଧାର୍ଥ ଓ ନାତୁଣୀ ଶିବାନୀ ଏହାର ସଦୁପଯୋଗ କରିବେ ।

**- କୃଷ୍ଣଚନ୍ଦ୍ର ମହାପାତ୍ର**

# ସୂଚୀପତ୍ର

# କୃତଜ୍ଞତା

ଯେଉଁ କେତେକଜଣଙ୍କର ସାହାଯ୍ୟ ଓ ସହଯୋଗ ଲାଭ କରି ମୋର ପରମ ପୂଜ୍ୟ ପିତୃଦେବଙ୍କର "ଆତ୍ମଚରିତ"ର ପାଣ୍ଡୁଲିପିଟି ଆଜି ପ୍ରକାଶିତ ହେବାକୁ ଯାଉଛି, ସେମାନଙ୍କୁ ହୃଦୟର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜଣାଇବାକୁ ମୋର ଭାଷା ନାହିଁ । ଆଗ୍ରହ, ଉଦ୍ଦୀପନା ଓ ଉତ୍ସାହ ସହ ସେମାନେ ଚିରନମସ୍ୟ ମୋର ପିତୃଦେବଙ୍କର ଏହି କାର୍ଯ୍ୟକୁ ନିଜର ପବିତ୍ର କର୍ତ୍ତବ୍ୟ ଭାବି ନେଇ ଯଥା ସମୟରେ ଅରୁଣିମା ସୂର୍ଯ୍ୟୋଦୟ ପ୍ରଦର୍ଶିତ କରି ପାରିଥିବାରୁ ସେମାନଙ୍କ ନିକଟରେ ମୁଁ ଓ ମୋର ପରିବାର ଅତି ବିନମ୍ର ଭାବରେ କୃତଜ୍ଞ ।

ମୁଁ ପ୍ରଥମେ କୃତଜ୍ଞତା ଜ୍ଞାପନ କରିବି ମୋର ଧର୍ମପତ୍ନୀ ନୀହାର ପ୍ରଭାଙ୍କୁ ଯେକି ସର୍ବପ୍ରଥମେ ଆଲମିରାର ବହିଗଦା ଭିତରୁ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ବିସ୍ମୃତ ହୋଇଯାଇଥିବା ପାଣ୍ଡୁଲିପିକୁ ଉଦ୍ଧାର କରି ଲକର ଭିତରେ ରଖି ଦେଇଥିଲେ, ସତେ ଯେପରି ଘରର ଏହା ସବୁଠାରୁ ମୂଲ୍ୟବାନ । ୧୯୭୯ ମସିହାରେ କାଳି କଲମରେ ଲିଖିତ ପାଣ୍ଡୁଲିପିଟିର କାଗଜ ଛିନ୍ନ ପ୍ରାୟ, ଅକ୍ଷର ଲିଭି ଆସୁଥିବା ଅବସ୍ଥାରେ ତାକୁ ସଯତ୍ନରେ ଲକର ଭିତରେ ଖାଲି ରଖି ଦେଇଥିଲେ ନୁହେଁ, ସେହି ଦିନଠାରୁ ତାର ପ୍ରକାଶନ ପାଇଁ ମୋତେ ବାରମ୍ବାର ବାଧ୍ୟ କରୁଥିଲେ । ନହେଲେ ନନାଙ୍କର ସ୍ୱହସ୍ତ ଲିଖିତ ଏହି ଅମୂଲ୍ୟ ପାଣ୍ଡୁଲିପିଟି ନଷ୍ଟ ହୋଇଯିବା କିଛି ଅସମ୍ଭବ ନଥିଲା । ତେବେ ଘରର ମୂଲ୍ୟବାନ ଜିନିଷ ଠାରୁ ଏହା ଯେ ଅଧିକ ମୂଲ୍ୟବାନ ଓ ଲକରରେ ରହିବା ଯୋଗ୍ୟ ଭାବି ତାକୁ ଆଜି ଯାଏ ସାଇତି ରଖିବାରୁ ସେ ଆଜି ଆମ୍ଭ ସମସ୍ତଙ୍କର କୃତଜ୍ଞତାର ପାତ୍ରୀ ।

ପରବର୍ତ୍ତୀ କୃତଜ୍ଞତା ମୁଁ ପ୍ରକାଶ କରିବି ମୋର ସାନ ଭଣଜା ମୋର ମାତୃପ୍ରତିମ ବଡ଼ ନାନୀର ସାନପୁଅ ଝୁଲୁକୁ ଯେ କି ଅଜାଙ୍କ ସ୍ୱହସ୍ତ ଲିଖିତ ପାଣ୍ଡୁଲିପି କଥା ଶୁଣି ସାଙ୍ଗେ ସାଙ୍ଗେ ମୋ ଘରକୁ ଆସି ତାର ଜେରକ୍ସ ଓ ଡି.ଟି.ପି ଦାୟିତ୍ୱ ନେଇ ପାଣ୍ଡୁଲିପିଟିକୁ ନେଇ ଯାଇଥିଲା । ମୁଁ ଅଶେଷ ଆନନ୍ଦିତ ଯେ ସେ ତାକୁ ଠିକ୍ ସମୟରେ ଅତି ସୁନ୍ଦର ଭାବରେ ଜେରକ୍ସ କରି ସ୍ୱହସ୍ତ ଲିଖିତ ପାଣ୍ଡୁଲିପିଟିକୁ ଆଣି ପୁଣି ଯଥା ସ୍ଥାନରେ ରଖିଦେଇ ତାର ଜେରକ୍ସ ମୋତେ ଦେଇ ଯାଇଥିଲା ଓ ସି.ଆର.ପି.ର ପ୍ରିୟଦର୍ଶିନୀ ମାର୍କେଟର ଆରତୀ ପ୍ରେସ୍‌ରେ ଡି.ଟି.ପି ପାଇଁ ଦେଇଯାଇଥିଲା । ଏହା ତା'ର କର୍ତ୍ତବ୍ୟ ଥିଲେ ମଧ୍ୟ ଏଥିପାଇଁ ମୁଁ ଓ ମୋର ପରିବାର ତା ଉପରେ ଯଥେଷ୍ଟ କୃତଜ୍ଞ ।

ଡି.ଟି.ପି. ପରେ ପରେ ତାର ସଂଶୋଧନ ଓ ପୁନଃ ଡି.ଟି.ପି କରଣ ଥିଲା ଏକ ଅତୀବ କଷ୍ଟସାଧ୍ୟ ବ୍ୟାପାର । ଏଥିରେ ଆଗଭର ଥିଲେ ମୋର ବଡ଼ଶାଳୀ ବସନ୍ତ ପ୍ରଭା ଓ ତାର ତଳ ଭଉଣୀ ପୁଣ୍ୟପ୍ରଭା । ତନ୍ନ ତନ୍ନ କରି ଅଧ୍ୟୟନ କରି ଉଭଙ୍କର ଅକ୍ଲାନ୍ତ ପରିଶ୍ରମ, ବୁଦ୍ଧିମତା ଓ ଜ୍ଞାନର ସଦୁପଯୋଗ କରି ମୋର ସଢୁ ମାନସଙ୍କ ସାହାଯ୍ୟ ଓ

ସହଯୋଗରେ ସେମାନେ ତାହାକୁ ବାସ୍ତବ ରୂପରେଖ ଦେଇଥିଲେ । ସେମାନଙ୍କର କଠିନ ପରିଶ୍ରମ ଓ ଅବଦାନରେ ଆଜି ଏହି ପାଣ୍ଡୁଲିପିଟି ଏକ ପୁସ୍ତକରେ ରୂପାନ୍ତରିତ ହୋଇଥିବାରୁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

ତାପରେ ମୁଁ ଧନ୍ୟବାଦ ଜଣାଉଛି ମୋର କନିଷ୍ଠ ଭାତୃପ୍ରତିମ ସତ୍ତୁ ମାନସକୁ ଯାହାଙ୍କର ଆଗ୍ରହ, ସକାରାତ୍ମକ ଚିନ୍ତାଧାରା, ଅକ୍ଳାନ୍ତ ପରିଶ୍ରମ ଓ ସାରସ୍ୱତ ଅଭିଜ୍ଞତା ଦ୍ୱାରା ଏହି ମହତ୍ କାର୍ଯ୍ୟଟି ସଫଳ ହୋଇପାରିଛି । ସ୍ୱତଃ ଆଗ୍ରହାନ୍ୱିତ, ପାଣ୍ଡୁଲିପିଟିର ଉପାଦେୟତା ଓ ଶିକ୍ଷଣୀୟ ମୂଲ୍ୟବୋଧ ପ୍ରତି ଆକୃଷ୍ଟ ହୋଇ ସେ ଏହାର ସଂପାଦନ, ସଂକଳନ, ପ୍ରଚ୍ଛଦପଟ ଓ ପରିକଳ୍ପିତ ରୂପ ଗଠନର ନୈପୁଣ୍ୟ ଠାରୁ ଆରମ୍ଭ କରି ଏକ ପୁସ୍ତକରେ ରୂପାନ୍ତରିତ କରିଅଛନ୍ତି । ସ୍ୱକୀୟ ଚିନ୍ତାଧାରା ଓ ପରିକଳ୍ପନାରେ ପରିପୁଷ୍ଟ ଓ ପାଣ୍ଡୁଲିପିଟିର ସଂକଳନ ଦିଗରେ ତାଙ୍କର ଥିବା ପୂର୍ବ ଅଭିଜ୍ଞତାର ପରିପକ୍ୱତାକୁ ସଂପୂର୍ଣ୍ଣ ବିନିଯୋଗ କରି ସେ ପାଣ୍ଡୁଲିପିଟିକୁ ପୁସ୍ତକରେ ରୂପ ଦେଇଛନ୍ତି । ଏକାଧିକ ବାର ଅଧ୍ୟୟନ କରି ନିଜର ମତାମତ ସହ ଏ ପୁସ୍ତକଟିର ପ୍ରଜ୍ଞାଦୀପ୍ତ ଅନୁଶୀଳନ କରିପାରିଛନ୍ତି ।

ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ମୋର ପୂଜ୍ୟ ପିତୃଦେବଙ୍କର ପ୍ରିୟ ଛାତ୍ରଛାତ୍ରୀମାନଙ୍କୁ ଯେଉଁମାନେ ସେମାନଙ୍କର ବହୁ ମୂଲ୍ୟ ସମୟ ନଷ୍ଟ କରି ସେମାନଙ୍କର ବିଜ୍ଞ ଅଭିମତ ପ୍ରଦାନ କରି ବହିଟିକୁ ଋଦ୍ଧିମନ୍ତ ତଥା ତାର ଶୋଭା ବର୍ଦ୍ଧନ କରିଛନ୍ତି । ମୋର ଭଉଣୀ, ଭଣଜା, ଭାଣେଜୀ ଓ ପରିବାର ସ୍ୱଜନ ମାନଙ୍କର ଅଭିମତ ମଧ୍ୟ ପ୍ରଶଂସନୀୟ । ମୋର ସମସ୍ତ ଶାଳକ ଜଗ, ବାବୁନି, ଶଳାଭାଉଜ ସରଳା, ରାନୁ, ସାନ ସତ୍ତୁ ସୁନୁ, ଶାଳୀ ରୁନୁର ଅକୁଣ୍ଠ ସହଯୋଗ ଯୋଗୁଁ ମୁଁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

ପରିଶେଷରେ ପ୍ରିଣ୍ଟର, ଡିଟିପି କରିଥିବା ମୋହନ ଓ ତାଙ୍କର ସହକର୍ମୀମାନେ, ଆରତୀ ପ୍ରେସ୍‌ର ମାଲିକ, ଅଳଙ୍କରଣ କରିଥିବା ପ୍ରଶାନ୍ତ କୁମାର ସେନାପତି, ଜ୍ୟୋତି ରଞ୍ଜନ ଓଝା, ଭାସ୍କର ରେଡ୍ଡୀ ଏ ଦିଗରେ ସାହାଯ୍ୟ କରିଥିବା ବ୍ୟକ୍ତିବିଶେଷମାନଙ୍କୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି । ମୋର ଝିଅ ମାମାଲି, ପୁତ୍ର ସତ୍ୟ ଓ ସୁଧିରଙ୍କ ପ୍ରେରଣା ଓ ଉତ୍ସାହ ବହିଟିର ରୂପକଳ୍ପରେ ମତାମତ ପାଇଁ ସେମାନେ ଧନ୍ୟବାଦାର୍ହ । ଶେଷରେ ମୋର ବିଶ୍ୱସ୍ତ ଲିଟୁ, ଶରତ, ଅକ୍ଷି ଓ ପପାଙ୍କୁ ମଧ୍ୟ ତାଙ୍କର ସହଯୋଗ ପାଇଁ ଧନ୍ୟବାଦ ।

ସର୍ବଶେଷରେ ଆମ ଘର ଇଷ୍ଟଦେବତା ପ୍ରଭୁ ମାଧବ ଓ ମାଆ ଅନ୍ନପୂର୍ଣ୍ଣାଙ୍କ ସହିତ ବ୍ରହ୍ମାଣ୍ଡ ଠାକୁର ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପଦାରବିନ୍ଦରେ ମୋର ଏ ଭକ୍ତି ଅର୍ଘ୍ୟ ଅର୍ପଣ କରୁଛି ଯାହାଙ୍କର ଆଶିଷରେ ଦୀର୍ଘ ପାଖାପାଖି ୫୦ ବର୍ଷ ପରେ ଏହା ଆତ୍ମ ପ୍ରକାଶ କରିବାରେ ସେ ପଥ ପ୍ରଦର୍ଶକ ହୋଇଛନ୍ତି ।

(କୃଷ୍ଣଚନ୍ଦ୍ର ମହାପାତ୍ର)

●●●

# ପ୍ରତିଦିନଂ ପ୍ରାତଃ ସ୍ମରେତ୍

**ନମୋ ବ୍ରହ୍ମଣ୍ୟଦେବାୟ ଗୋ ବ୍ରାହ୍ମଣହିତାୟ ଚ ।**
**ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋ ନମଃ ॥**

ଗୋ ବ୍ରାହ୍ମଣ ଓ ଜଗତର ହିତସାଧନକାରୀ ଦେବତା ଶ୍ରୀକୃଷ୍ଣ ତଥା ଗୋବିନ୍ଦଙ୍କୁ ମୋର ନମସ୍କାର ।

**ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ ।**
**ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥**

ଯେଉଁ ପରମାନନ୍ଦ ମାଧବଙ୍କ କୃପାବଳରେ ମୂକ ବାଚାଳ ହୋଇଥାଏ, ପଙ୍ଗୁ ବି ଗିରି ଲଂଘନ କରେ ତାଙ୍କୁ ମୁଁ ବନ୍ଦନା କରୁଛି ।

**ଶିବ ଶଙ୍କର ରୁଦ୍ରେଶ ନୀଳକଣ୍ଠ ତ୍ରିଲୋଚନଂ ।**
**ଭବଶର୍ବ ଭବାନୀଶ ମୃତ୍ୟୁଞ୍ଜୟ ନମୋଽସ୍ତୁତେ ॥**

ହେ ମଙ୍ଗଳମୟ କଲ୍ୟାଣକାରୀ, ଜ୍ଞାନଦାତା, ଦୁଃଖହାରି ପାର୍ବତୀପତି, ତ୍ରିଲୋଚନ, ନୀଳକଣ୍ଠ, ମୃତ୍ୟୁଞ୍ଜୟ ପରମେଶ୍ୱର ତୁମକୁ ମୋର ପ୍ରଣାମ ।

**ନମୋ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୋ ।**
**ମମ ବିଘ୍ନବିନାଶାୟ ଗଣାଧିପତୟେ ନମଃ ॥**

ହେ ବିଘ୍ନବିନାଶକାରୀ ଗିରିଜାନନ୍ଦନ ଗଣାଧିପତି ମୋର ସମସ୍ତ ବିଘ୍ନ ବିନାଶ ନିମିତ୍ତ ମୁଁ ଆପଣଙ୍କୁ ପ୍ରଣିପାତ କରୁଛି ।

**ଅର୍କୌଘାଭଂ କିରୀଟାନ୍ୱିତମକରଲସତ୍**
**କୁଣ୍ଡଳଂ ଦୀପ୍ତିରାଜଂ ।**
**କେୟୂରଂ କୌସ୍ତୁଭାଢ୍ୟଂ ସକଳ ରୁଚିର**
**ହାରଂ ସ ପିତାମ୍ବର ଚ ॥**

**ନାନା ରତ୍ନାଂଶୁଭିନ୍ନା ଭରଣଶତଯୁତଂ**
**ଶ୍ରୀଧରାଶ୍ଳିଷ୍ଟପାର୍ଶ୍ୱଂ ।**
**ବନ୍ଦେ ଦୋଃସକ୍ତ ଚକ୍ରାମ୍ବୁରୁହଦରଗଦଂ**
**ବିଶ୍ୱବନ୍ଦ୍ୟଂ ମୁକୁନ୍ଦଂ ॥**

ଅଗଣିତ ସୂର୍ଯ୍ୟଙ୍କର ସମବେତ ତେଜ ପୁଞ୍ଜତୁଲ୍ୟ ଦୀପ୍ତିମନ୍ତ କିରୀଟି ଶୋଭିତ, ମକରକୁଣ୍ଡଳଧାରୀ କେୟୂର କୌସ୍ତୁଭ ମଣି ରୁଚିରହାର - ପିତାମ୍ବରରେ ଶୋଭମାନ, ନାନା ରତ୍ନକିରଣରେ ଯାହାଙ୍କର ଶରୀରସ୍ଥ ଆଭରଣ ଅତି ଉଜ୍ଜ୍ୱଳ, ଜଗଜ୍ଜନନୀ ଲକ୍ଷ୍ମୀ, ଯାହାଙ୍କର ବାମପାର୍ଶ୍ୱରେ ବିରାଜମାନ, ଶଙ୍ଖଚକ୍ର ଗଦାଧାରୀ ସେହି ବିଶ୍ୱବନ୍ଦ୍ୟ ମୁକୁନ୍ଦଙ୍କୁ ବନ୍ଦନା କରୁଅଛି ।

**ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା ।**
**ଚକ୍ଷୁରୁନ୍ମୀଳିତଂ ୟେନ ତସ୍ମୈ ଶ୍ରୀଗୁରବେ ନମଃ ॥**

ଅଜ୍ଞାନରୂପକ ଅନ୍ଧକାରରେ ଜ୍ଞାନରୂପକ ଅଞ୍ଜନ ପ୍ରଲେପକାରୀ ତଥା ଦିବ୍ୟଦୃଷ୍ଟିଦାତା ସେହି ଶ୍ରୀଗୁରୁଙ୍କୁ ମୋର ପ୍ରଣିପାତ ।

●●●



# ସଂପାଦକୀୟ...

ମୋର ପୂଜ୍ୟ ପିତୃଦେବ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ଏହି ବହୁ ପ୍ରତୀକ୍ଷିତ ଆତ୍ମଚରିତର ପ୍ରକାଶନ କରିବାର ସୁଯୋଗ ପାଇ ଆମେ ଯେଉଁ ତୃପ୍ତିଲାଭ କରୁଛୁ ତାହାର ଯଥାର୍ଥତା ବିମୁଗ୍ଧ ପାଠକମାନେ ଅନୁଭବ କରିବେ, ସେ ସଂପର୍କରେ ବିଶେଷ କହିବା ନିଷ୍ପ୍ରୟୋଜନ ।

ଗୌରବର କଥା ଯେ ଜଣେ ଆଦର୍ଶ ଶିକ୍ଷକ ଭାବେ ମୋର ଚିରନମସ୍ୟ ପିତା ସୁପ୍ରତିଷ୍ଠିତ ସେଥିରେ ସନ୍ଦେହର ଅବକାଶ ନାହିଁ । ତାଙ୍କର ଆତ୍ମଚରିତ ଓ ନୀତି ବାଣୀ ଶକ୍ତିଶାଳୀ ଲେଖନୀ ପ୍ରସୂତ ଓ ପାଠକମାନଙ୍କୁ ଚମତ୍କୃତ କରିବ ବୋଲି ଆମେ ନିଃସନ୍ଦେହ । ତାଙ୍କ ଆତ୍ମ ଚରିତ ଭିତରେ ଥରେ ପ୍ରବେଶ କଲେ ପାଠକ ଫେରିବାର ବାଟ ଭୁଲିଯିବ । ପଢ଼ା ଆରମ୍ଭ କଲାପରେ ସେ ଏଥିରୁ ନିବୃତ୍ତ ହୋଇପାରିବନି ଏହା ନିଶ୍ଚିତ । ଉତ୍କଣ୍ଠାର ପ୍ରବାହରେ ପାଠକମାନଙ୍କର ମନ ମଞ୍ଜୁଷାକୁ ଏହା ନିଶ୍ଚିତ ଆନ୍ଦୋଳିତ କରିବ । ସାହିତ୍ୟର ସେ ଥିଲେ ଜଣେ ସିଦ୍ଧସାଧକ, ପ୍ରଥିତଯଶା ସ୍ରଷ୍ଟା । ତାଙ୍କ ଦ୍ୱାରା ରଚିତ ଭଜନାମୃତ ପାଠ କଲେ, ଆଧ୍ୟାତ୍ମିକ ଅନ୍ୱେଷା ଉଦ୍‌ଭାସିତ ହୁଏ । 'ଗୀତି ରାମାୟଣ' ହେଉଛି ତାଙ୍କ କବିତା ରଚନାର ଦୀପ୍ୟମାନ ଦିଗନ୍ତ । ବିଭିନ୍ନ ରାଗ ଓ ଛନ୍ଦ ବିନ୍ୟାସରେ ପରିସ୍ଫୁଟ ତାଙ୍କ ଭଜନ ରଚନାର ସେଥିଲେ ଅଦ୍ୱିତୀୟ ବିନ୍ଧାଣୀ ।

ସଂପାଦକ ଭାବରେ ମୋର ଏତିକି କହିବାର କଥା ଯେ ମୋର ପିତାଙ୍କର ଆତ୍ମଚରିତକୁ ଖାଲି ଆତ୍ମଚରିତ ବୋଲି କହିବା ବୋଧହୁଏ ଏହାର ବିସ୍ତାରିତ ଭାବଧାରାକୁ ନ୍ୟୂନ କରିଦେବ । ଏକାଧାରରେ ଏହା ହେଉଛି ଆଦର୍ଶ ଓ ଉପଦେଶ ସମ୍ୱଳିତ ବିଭିନ୍ନ ଆଲେଖ୍ୟର ସମାହାର, ମାନବିକତାର ମୂଲ୍ୟବୋଧରେ ପରିପୁଷ୍ଟ, ନିଜର ଉତ୍ତରପିଢ଼ି ତଥା ଅଗଣିତ ଛାତ୍ରଛାତ୍ରୀଙ୍କ ଭବିଷ୍ୟତ ଗଠନ ପାଇଁ ଏହା ଏକ ଅମୂଲ୍ୟ ସାରସ୍ୱତ ରତ୍ନ । ନିଜର ପୁତ୍ର କନ୍ୟା ଓ ଆତ୍ମୀୟ ସ୍ୱଜନଙ୍କ ପାଇଁ ଏହା ଏକ ଦୁଃଖ କଷ୍ଟ ଭରା ବେଦନାସିକ୍ତ ଆତ୍ମଲିପି ।

ସ୍ୱର୍ଗତ ମହାପାତ୍ର ନିଜର ପରିଣତ ବୟସରେ ୧୯୭୯ ମସିହାରେ ଏହାର ରଚନା କରିଥିଲେ ଓ ୧୯୮୫ ମସିହାରେ ତାଙ୍କର ଦେହାନ୍ତ ହୋଇଥିଲା । ପୁତ୍ର କନ୍ୟା ଓ ଛାତ୍ରଛାତ୍ରୀଙ୍କ ପାଇଁ ଲେଖିଯାଇଥିବା ହିତୋପଦେଶ ଓ ପିତୃଉପଦେଶ ସହ ତତ୍‌କାଳୀନ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥାର ପ୍ରଜ୍ଞାଦୀପ୍ତ ମୂଲ୍ୟାୟନ, ଶିକ୍ଷା, ସ୍ତ୍ରୀ ଶିକ୍ଷା, ଡାକ୍ତରୀଶିକ୍ଷା, ଶିକ୍ଷା ଓ ଶିକ୍ଷକ, ସର୍ବୋପରି ସେ କାହିଁକି ଶିକ୍ଷକ ହେଲେ ଏହାର ସ୍ୱାକ୍ଷର ବହନ କରୁଛି ଏ ଆତ୍ମଲିପି । ଏହା ବ୍ୟତୀତ ନିଜଗ୍ରାମର ଇତିବୃତ୍ତ ଓ ଜନ୍ମଭୂମିର ମାହାତ୍ମ୍ୟ ବର୍ଣ୍ଣନା କରି ଆଧୁନିକ ଯୁବପିଢ଼ିଙ୍କୁ ନିଜର ଗୌରବାବହ ସଂସ୍କୃତିକୁ ଭୁଲି ପାଶ୍ଚାତ୍ୟ ଶିକ୍ଷା ଓ ପାଶ୍ଚାତ୍ୟ ସଂସ୍କୃତିର କ୍ଷଣିକ ଚାକଚକ୍ୟରେ ଆକୃଷ୍ଟ ହୋଇ ତାର ପଛରେ ଧାବମାନ ହେବାର ପରିଣତି ଯେ କିପରି ନିକଟ ଭବିଷ୍ୟତରେ ଭୟାନକ ହେବାର ସମ୍ଭାବନାକୁ ଏଡାଇ ଦିଆଯାଇନପାରେ ତାର ଏକ ସୁନ୍ଦର ଅବତାରଣା ଆତ୍ମଲିପିରେ ସନ୍ନିବେଶିତ । ଶିକ୍ଷା ଓ ଶିକ୍ଷାଳୟ ଗୁଡିକ ଆଜି ଯେ ପାଶ୍ଚାତ୍ୟ ଶିକ୍ଷାର ପରିଧି ମଧ୍ୟରେ ପିଂଜରାବଦ୍ଧ ତା ସ୍ୱର୍ଗତ ମହାପାତ୍ରଙ୍କ ଶିକ୍ଷକ ସ୍ୱାଭିମାନ ଉପରେ କୁଠାରାଘାତ କରିଥିଲା । ସତ୍ୟବାଦୀ ଉଚ୍ଚବିଦ୍ୟାଳୟରେ ଦୀର୍ଘଦିନର ଶିକ୍ଷକତା ଯୋଗୁ ପଞ୍ଚସଖା ସଂସ୍କୃତିର ଆଦର୍ଶମୟ ପ୍ରଭାବ ତାଙ୍କ ଚରିତ୍ର ଓ ବ୍ୟକ୍ତିତ୍ୱକୁ ପ୍ରଭୂତ ଭାବେ ପ୍ରଭାବିତ କରିପାରିଥିଲା ।

'ପିତାଙ୍କ ଆତ୍ମଚରିତ'ରେ ଲିଖିତ ନିଜର ଜୀବନ ଇତିହାସ ପାଠକଲେ ଯେକୌଣସି ପାଠକର ଚକ୍ଷୁ ଲୋତକାପ୍ଲୁତ ହୋଇଉଠିବ ଏହା ନିଃସନ୍ଦେହ । ଏହି ଆତ୍ମଜୀବନୀର ଇତିହାସ ହେଉଛି ସ୍ୱର୍ଗତ ମହାପାତ୍ରଙ୍କର ବାଲ୍ୟଜୀବନରୁ ଆରମ୍ଭକରି ଜୀବନର ସାୟାହ୍ନ ପର୍ଯ୍ୟନ୍ତ ଦୁଃଖ କଷ୍ଟ ଭରା ଏକ ସଂଘର୍ଷର କାହାଣୀ । ଜୀବନର ରଣାଙ୍ଗନରେ ଦାରିଦ୍ର୍ୟ ଓ ଦୁଃଖର ସଂଘାତ ମଧ୍ୟରେ ନିଜ ଲକ୍ଷ୍ୟ ଅନ୍ୱେଷଣରେ ଅଗ୍ରସର ହୋଇ, ଜୀବନର କାଳବୈଶାଖୀରେ କ୍ଷତ ବିକ୍ଷତ ହୋଇ ମଧ୍ୟ ଭାଙ୍ଗି ନ ପଡ଼ି ପରିଶେଷରେ ସାଫଲ୍ୟ ମଣ୍ଡିତ ହେବାର ବିଷାଦ ଭରା ଅସରା କାହାଣୀର ଏକ କରୁଣ ଆତ୍ମଲିପି । ଜୀବନ ସଂଗ୍ରାମରେ ସ୍ୱର୍ଗତ ମହାପାତ୍ର ଥିଲେ ଜଣେ ସଫଳ ସେନାପତି ।

ଯେଉଁ ସମୟରେ ବାତ୍ସଲ୍ୟର ପ୍ରାଚୁର୍ଯ୍ୟ ଭିତରେ ହଜିଯିବାର ସମୟ ସେ ସମୟରେ ମାତୃଅଙ୍କହରା ହୋଇ ନିଆଁହୁଳାଧରି ଗ୍ରାମ ଶ୍ମଶାନକୁ ଯିବାର ମର୍ମସ୍ପର୍ଶୀ ବର୍ଣ୍ଣନା ଯେ କୌଣସି କଠିନ ହୃଦୟକୁ ତରଳାଇ ଦେବ ଏଥିରେ ଦ୍ୱିମତ ନାହିଁ । ହସି ଖେଳି ସମୟ କଟାଇବା ପରିବର୍ତ୍ତେ ପ୍ରତିକୂଳ ପରିସ୍ଥିତି ବିରୁଦ୍ଧରେ "ଯୁଦ୍ଧଂଦେହି"ର ଡାକରାଦେଇ ତାର ସମ୍ମୁଖୀନ ହୋଇ ନିଜର ଜୀବନକୁ ନିଜେ ଗଢ଼ିବାର ଅବିରତ ସଂଗ୍ରାମରୁ ସେ କେବେ ବିରତ ହୋଇନଥିବା ଆଜିକାଲିର ଯୁବ, ଛାତ୍ର ସମାଜକୁ ଉଦ୍‌ବୁଦ୍ଧ କରିବା ସଂଗେ ସଂଗେ ତାଙ୍କ ଚରିତ୍ରକୁ ଐଶ୍ୱର୍ଯ୍ୟଶାଳୀ କରିଛି ଏହା ଯେ କୌଣସି ପାଠକ ସ୍ୱୀକାର କରିବେ । ଛାତ୍ରଛାତ୍ରୀମାନଙ୍କର ଜିଜ୍ଞାସାର ତୃଷ୍ଣା ସୃଷ୍ଟି କରିବା ହେଉଛି ଶିକ୍ଷକର ଧର୍ମ ଓ କର୍ମ । ଏକ ଗ୍ରାମୀଣ ଉଚ୍ଚବିଦ୍ୟାଳୟର ସୀମିତ ଶିକ୍ଷା ପରିବେଶ ଭିତରେ କୃତି ଛାତ୍ର ସୃଷ୍ଟିକରି, ସେମାନେ ସମାଜର ଉଚ୍ଚତମ ପଦବୀରେ ପ୍ରତିଷ୍ଠିତ ହେବା ଶିକ୍ଷକ ମାନଙ୍କ ପକ୍ଷରେ କମ୍ ଗୌରବାବହ ନୁହେଁ । ସେହି ବିଦ୍ୟାଳୟରେ ଅଧ୍ୟୟନରତ କୃତି ଛାତ୍ରମାନେ ହାଇକୋର୍ଟରେ ମାନ୍ୟବର ବିଚାରପତିଙ୍କ ଠାରୁ ଆରମ୍ଭକରି I.A.S, I.P.S ସ୍ୱନାମଧନ୍ୟ ଡ଼ାକ୍ତର,

ଇଂଜିନିୟର, ବ୍ୟାଙ୍କ ଲୋକପାଳ, ଅଧ୍ୟାପକ, ଶିକ୍ଷକ, କବି, ଲେଖକ ଓ ବିଶ୍ୱବିଦ୍ୟାଳୟର କୁଳପତି ଆଦି ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିବା ଶିକ୍ଷକ ମାନଙ୍କର ମୂଳଭିତ୍ତି ସ୍ଥାପନର ପରିଣାମମାତ୍ର । ସର୍ବୋପରି ସମସ୍ତ ଛାତ୍ରଙ୍କୁ ମଣିଷ କରି ଗଢ଼ିବାରେ ତତ୍କାଳୀନ ଶିକ୍ଷକ ମାନଙ୍କର ଅବଦାନ ଆତ୍ମଲିପିଟିକୁ ଅଧ୍ୟୟନ କଲେ ତାର ସ୍ପଷ୍ଟ ପ୍ରତିଛବି ପ୍ରାଞ୍ଜଳ ଭାବରେ ଦୃଶ୍ୟମାନ ହୁଏ । ଲେଖକଙ୍କର ବକ୍ତବ୍ୟ ଯଦି ପାଠକ ବନ୍ଧୁମାନଙ୍କୁ ପ୍ରକୃତ ଦିଗ୍‌ଦର୍ଶନ ସନ୍ଧାନରେ ଟିକିଏ ଅଗ୍ରସର କରାଇ ନେବ ତାହାହିଁ ହେବ ତାଙ୍କ ପାଇଁ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଏକ ନିଷ୍କାମ କର୍ମ ହିଁ ପ୍ରକୃତ ଈଶ୍ୱର ପ୍ରାପ୍ତିର ମାର୍ଗ ଓ ପ୍ରକୃତ ତପସ୍ୟା ତଥା ପରିସ୍ଥିତିକୁ ସାହସିକତାର ସହ ସମ୍ମୁଖୀନ ହୋଇ ନିଜର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନରେ ବ୍ରତୀ ହେବା ଯେ ସାଫଲ୍ୟର ସୋପାନ, ଏହି ଶିକ୍ଷା ମହାଶୟ ଦେଇଯାଇଛନ୍ତି ତାଙ୍କର ଆତ୍ମ ଲିପିରେ ।

ପାଠକ ବନ୍ଧୁ ମାନଙ୍କୁ ମୋର ବିନମ୍ର ଅନୁରୋଧ, ସେମାନେ ତାଙ୍କର କିଛି ମୂଲ୍ୟବାନ ସମୟ ବ୍ୟୟ କରି ନିଜର ଗୁରୁଙ୍କର ଏହି ଆତ୍ମଚରିତଟିକୁ ପାଠକରି ଏହାର ମୂଲ୍ୟାୟନ କଲେ ସ୍ୱର୍ଗତ ମହାପାତ୍ରଙ୍କର ଅମର ଆତ୍ମା ଶାନ୍ତିପାଇବ ।

**- ସଂପାଦକ**

●●●



ସ୍ମୃତି ତର୍ପଣ

# ମନେ ପଡ଼ନ୍ତି ମୋ ନନା

## ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର (କାହ୍ନୁ)



"ଭାଇନା, ଆପଣ ମଉସାଙ୍କ ଆତ୍ମଚରିତର ପ୍ରକାଶନ ଅବସରରେ ମଉସା ଓ ମାଉସୀଙ୍କ ବିଷୟରେ ଆପଣଙ୍କର ଉପଲବ୍ଧ କିଛି ଅଭିମତ ଲେଖନ୍ତୁ । ଏହା ସେ ପୁସ୍ତକରେ ପ୍ରକାଶ ପାଇବ"। ଏପରି ଅନୁରୋଧ ଆସିଥିଲା ସର୍ବପ୍ରଥମେ ମୋର ଭ୍ରାତୃପ୍ରତିମ ପ୍ରିୟ ସଢୁ 'ମାନସ' ଙ୍କ ଠାରୁ, ଯାହାଙ୍କର ଯାଦୁକରୀ ସ୍ପର୍ଶ ଓ ଅକ୍ଳାନ୍ତ ପରିଶ୍ରମ ବିନା, ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଆଲମାରୀ ବହିଗଦାର ଅଂଧାର ଭିତରେ ବିସ୍ମୃତ ପାଣ୍ଡୁଲିପିଟି ଆତ୍ମପ୍ରକାଶ କରିପାରି ଥାଆନ୍ତା କି ନାହିଁ ସେ ବିଷୟରେ ମୁଁ ସନ୍ଦିହାନ । ମାନସଥିଲେ ପ୍ରକୃତରେ ସେ ଅନୁଢ଼ା ଓ ବିସ୍ମୃତ ପାଣ୍ଡୁଲିପିର ପ୍ରଥମ ବିମୁଗ୍ଧ ପାଠକ । ତେଣୁ ମାନସଙ୍କର ଅନୁରୋଧକୁ ଉପେକ୍ଷା ନକରି, ଅନ୍ତତଃ ମୋର ଆତ୍ମସନ୍ତୋଷ କୁ ଚରିତାର୍ଥ କରିବାପାଇଁ, "ଚେଷ୍ଟା କରିବି" ବୋଲି ଛୋଟ ଉତ୍ତରଟିଏ ଦେଇଥିଲି । କିନ୍ତୁ, ନଦୀ ପହଁରା ନଜାଣି ଗଭୀର ସମୁଦ୍ରର ଅତଳ ଗର୍ଭରୁ ମୁକ୍ତା ସଂଗ୍ରହ ପରି ମୋତେ ଏହା ମୋର ଧୈର୍ଯ୍ୟ ଓ ଚେଷ୍ଟାର ପରିସର ବାହାରେ ବୋଲି ପ୍ରତୀୟମାନ ହେଲା; ଏଇଥିପାଇଁ ଯେ ଯେଉଁ ଦୁଇ ଜଣଙ୍କର ଦୁର୍ଲଭ ସାନ୍ନିଧ୍ୟ ଲାଭକରି, ସେମାନଙ୍କର ଅଭୟ ବାହୁଛାୟା ତଳେ ରହି, ମୋର ଜନ୍ମଠାରୁ ସେମାନଙ୍କର ସ୍ୱର୍ଗାବାସ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ଥିଲା ମୋ ପାଇଁ ଘଟଣା ବହୁଳ ଓ ନୂତନ ଅନୁଭବର ଦିନ । କୁହାଯାଇଛି ବାସ୍ତବରେ ବିବେକ ହେଉଛି ଶ୍ରେଷ୍ଠ ଧର୍ମୋପଦେଷ୍ଟା, ସମୟ ଶ୍ରେଷ୍ଠ ଶିକ୍ଷକ, ପୃଥିବୀ ଶ୍ରେଷ୍ଠ ପୁସ୍ତକ (ଜ୍ଞାନ ଆହୋରଣ କ୍ଷେତ୍ର),

ଈଶ୍ୱର ଶ୍ରେଷ୍ଠ ବନ୍ଧୁ କିନ୍ତୁ ନଶ୍ୱର ସଂସାରରେ ଶ୍ରେଷ୍ଠ ସମ୍ବଳ ହେଉଛି ପିତାମାତାଙ୍କ ସେବା ଯାହାର ତୁଳନା ନାହିଁ । ଏହି ପୃଷ୍ଠ ଭୂମିରେ କେତେଖଣ୍ଡ କାଗଜର ସୀମିତ ବଳୟ ଭିତରେ, କେତେ ଶହ ଶବ୍ଦର ପରିଧି ମଧ୍ୟରେ ଭାବାବେଗ ପରିପୂର୍ଣ୍ଣ ଅନୁଭୂତିକୁ ଆବଦ୍ଧ ରଖିବାର ଅପଚେଷ୍ଟା ମୋର ଧୃଷ୍ଟତା ହେବନିତ ? ହଜିଲା ଦିନର ଅଭୁଲା ସ୍ମୃତିକୁ ସାଉଁଟି ବାର ଏହା ଏକ ବ୍ୟର୍ଥ ପ୍ରୟାସ ହେବନିତ ? ଅନୁଭବ, ଅନୁଭୂତି ଏବଂ ଆନ୍ତରିକତାର କଥାକୁ ସେମାନଙ୍କର ଜୀବନ ବ୍ୟାପୀ ଶିକ୍ଷା, ଆଦର୍ଶ, ଅନୁଶାସନ, ସ୍ନେହ ଓ ମମତାକୁ କାଳି କଲମରେ ପରିସ୍ଫୁଟ କରି ପାରିବିତ ? ଏହି ହଁ ନାହିଁର ଆବର୍ତ୍ତ ଭିତରେ ଘୂରି ଘୂରି ଶେଷରେ କିଛି ଲେଖି ସନ୍ତାପିତ ମନକୁ ବୁଝାଇବା ସହିତ ଏହାକୁ ନିଜର ପରମ ପୂଜନୀୟ, ଚିରବନ୍ଦ୍ୟ ପିତା ମାତାଙ୍କର କିଛିଟା ଗୁଣବନ୍ଦନା କରିବାର ଏକ ଅପୂର୍ବ ସୁଯୋଗ ଓ ସୌଭାଗ୍ୟ ଭାବି କିଛିଟା ଲେଖିବାର ସିଦ୍ଧାନ୍ତ ନେଲି । ପ୍ରଥମେ ମୋର ପୂଜ୍ୟ ପିତୃଦେବଙ୍କ ବିଷୟରେ କିଛି ଲେଖି ପରବର୍ତ୍ତୀ ପର୍ଯ୍ୟାୟରେ ମୋର ଜନ୍ମଦାତ୍ରୀ ମାଆ (ବୋଉ)ଙ୍କ ବିଷୟରେ କିଛି ଅବତାରଣା କରି ଆତ୍ମ ସନ୍ତୋଷ ଲାଭ କରିବାର ଅଲଂଘ୍ୟ ଦୁଃସାହସ କରୁଛି । ପିତାମାତାଙ୍କର ସ୍ମୃତିଚାରଣ ପୃଷ୍ଠଭୂମିରେ ଅଶ୍ରୁପ୍ଲାବିତ ନୟନରେ ଯାହାବା ଲେଖୁଛି ତାହା ମୋର ସ୍ୱତଃ ସ୍ଫୁର୍ତ୍ତ ଅନ୍ତର୍ବେଦନାର ସ୍ଫୁରଣ କହିଲେ ଅତି ରଂଜିତ ହେବନାହିଁ ।

ପୁରୀଜିଲ୍ଲାର ପ୍ରସିଦ୍ଧ ବ୍ରାହ୍ମଣ ଶାସନ ବୀରନରସିଂହପୁର ଗ୍ରାମର ଏକ ସଂଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଧର୍ମ ପ୍ରାଣ ଗଣେଶ୍ୱର ମହାପାତ୍ର ଓ ମାତା ଚମ୍ପା ଦେବୀଙ୍କ କୋଳ ମଣ୍ଡନକରି ମୋର ପିତା ଜନ୍ମନେଇଥିଲେ ତାଙ୍କର ଅନ୍ତୁଡିଶାଳରେ, ୧୯୦୬ ମସିହା ଅକ୍ଟୋବର ମାସରେ । ଚନ୍ଦ୍ରକଳାର ହ୍ରାସ ବୃଦ୍ଧି ପରି ସେ ବଢ଼ିଚାଲିଥିଲେ ସମୟର ସ୍ରୋତରେ ।

କିନ୍ତୁ ମାତ୍ର ୧୩ବର୍ଷ ବୟସରେ ମୋର ପିତା ହୋଇଥିଲେ ମାତୃହରା । ମାତୃତ୍ୱର ମମତା ଓ ବାତ୍ସଲ୍ୟର ଐଶ୍ୱର୍ଯ୍ୟରୁ ଈଶ୍ୱର ତାଙ୍କୁ ବଂଚିତ କରିଥିଲେ ଚିରଦିନ ପାଇଁ । ଆଉ ମାତାଙ୍କ ଜୀବନର ସୂର୍ଯ୍ୟାସ୍ତ ଥିଲା ତାଙ୍କ ଜୀବନରେ ଦୁଃଖ, ଯନ୍ତ୍ରଣା ଓ ସଂଘର୍ଷର ଅରୁଣୋଦୟ, ବଂଚିବାର ଓ ବଂଚାଇବାର ପାଇଁ । ମାତୃବିଚ୍ଛେଦରେ ବ୍ୟଥିତ କୈଶୋର ତାଙ୍କୁ ସଂକଳ୍ପ ଓ ସାଧନାର ମାର୍ଗରେ ଅଗ୍ରସର ହେବାକୁ ପ୍ରେରଣା ଓ ଦିଗ୍‌ଦର୍ଶନ ଦେଇଥିଲା । ଆତ୍ମଚରିତଟି ଯେଉଁ ପାଠକ ମାନେ ଥରେ ପାଠକରିବା ଆରମ୍ଭ କରିବେ, ନିଃସନ୍ଦେହରେ ଏହା ଶେଷନକରି ରହି ପାରିବେନି । ଏହାକୁ କେବଳ ଆତ୍ମଚରିତ କହିଲେ ଏହାର ବିସ୍ତାରିତ ମହନୀୟତାକୁ ନ୍ୟୁନ କରିଦେବା ଭଳି ହେବ । ଛାତ୍ର ସମାଜ ପାଇଁ ଏହା ଏକ ମୂଲ୍ୟ ବୋଧ ଓ ନୀତି ଶିକ୍ଷାରେ ପରିପୂର୍ଣ୍ଣ ଅମୂଲ୍ୟ ପ୍ରଜ୍ଞାପୀୟୂଷ; ଆପଣଙ୍କର ଆଦର୍ଶ ଜୀବନର ସ୍ୱର ଓ ସ୍ୱାକ୍ଷର । ବ୍ୟକ୍ତି ଜୀବନରେ ସମୟର ଶେଷସ୍ପର୍ଶ ଦୃଶ୍ୟମାନ ଜଗତରୁ ଆପଣଙ୍କର ବ୍ୟକ୍ତି ସ୍ୱରୂପ ହଜାଇ ଦେଇଛି ସତ କିନ୍ତୁ ଆପଣଙ୍କର କୃତି ହିଁ ଆପଣଙ୍କର ସ୍ମୃତି । ମୃତ୍ୟୁର ପରଦା ଆଢୁଆଳରୁ ସେ ସ୍ମୃତି ସର୍ବଦା ଚିର ଜାଜ୍ୱଲ୍ୟମାନ ହୋଇ ଦୃଶ୍ୟମାନ । ଆପଣ ଥିଲେ ଆପଣଙ୍କ କୃତିରେ କୀର୍ତ୍ତିମାନ, ସ୍ମୃତିରେ ଆୟୁଷ୍ମାନ ଓ ମାନବିକତା ଓ ଶିକ୍ଷକତାର ଆଦର୍ଶରେ ଗରୀୟାନ । ସମାଜ ପାଇଁ ଏହା ହେଉଛି ଆମ ସୁବର୍ଣ୍ଣ ଅତୀତର ବର୍ତ୍ତମାନ, ତତ୍‌କାଳୀନ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଜୀବନର ଏକ ସୂଚୀପତ୍ର, ଜନ

ସମୁଦାୟର ପରିଚୟ ଏବଂ ତାହାର ମାନସିକ ଚିତ୍ର । ତାହା ଅର୍ଦ୍ଧ ଶତାବ୍ଦୀର ଇତିହାସର କଥା କୁହେ ଓ ଛାତ୍ର ସମାଜର ଭବିଷ୍ୟତ ଗଢ଼ିବାର ଉତ୍‌ପ୍ରେରକ ହୋଇ ରହିଥିବ । ଅତୀତ ହିଁ ଭବିଷ୍ୟତର ଜନନୀ । ଏହା ଭବିଷ୍ୟତକୁ ରାସ୍ତା ଦେଖାଏ । ଅତୀତର ଅପାସୋରା ସ୍ମୃତି ଓ ଅନୁଭୂତି ଏ କାଳର ପିଢ଼ି ପାଇଁ, ସମାଜ ପାଇଁ ଅତ୍ୟନ୍ତ ଉପାଦେୟ ଓ ପଥ ପ୍ରଦର୍ଶକ ହୋଇଥାଏ । ଆଉ ଆମ ପାଇଁ ଓ ଆମର ଆତ୍ମୀୟ ପରିଜନଙ୍କ ପାଇଁ ଏହା ହେଉଛି ମାତୃଅଙ୍କ ହରା ଏକ ଅଧମସନ୍ତାନର ଜୀବନ ଇତିହାସର କରୁଣ ଆତ୍ମଲିପି; ଆବାଲ୍ୟ ସଂଚିତ ବେଦନାର ଦୁଃଖ, କଷ୍ଟ ଓ ଦାରିଦ୍ର୍ୟର ସଂଘାତ ମଧ୍ୟରେ ନିଜ ଲକ୍ଷ୍ୟ ସାଧନର ଅଦମନୀୟ ଅଭିଳାଷକୁ ଚରିତାର୍ଥ କରିବାର ଏକନିଷ୍ଠ ଅଭିଯାନରେ କିପରି ସାହସିକତାର ସହ ଜୀବନର ଝଡ ଝଞ୍ଜା, କାଳ ବୈଶାଖୀର ମୁକାବିଲା କରିବାକୁ ହୁଏ ତାର ଏକ ମର୍ମସ୍ପର୍ଶୀ ଓ ସୀମାହୀନ କରୁଣତାର ଅପାସୋରା କାହାଣୀ ତଥା ବହୁ ସ୍ୱପ୍ନ ଉଦ୍‌ବେଳିତ ବିଦଗ୍ଧ ବେଦନାର ଅବ୍ୟକ୍ତ ଉଦ୍‌ଗିରଣ । ସମୟର ମହାପ୍ରବାହରେ ଜୀବନ ତାଙ୍କର ଥିଲା ବେଦନାରେ ଦଗ୍ଧ କିନ୍ତୁ ସ୍ମୃତିରେ ଉଜ୍ଜ୍ୱଳ, ଦେହରେ ଅନେକ ଝଡର କ୍ଷତଚିହ୍ନ କିନ୍ତୁ ଅମଳିନ, ଅକ୍ଷତ ଅବିଚଳିତ ତାଙ୍କ ଆଦର୍ଶ ଓ ଅସ୍ମିତା । ଜୀବନର ଅରୁଣ ଲଗ୍ନଠାରୁ ଆରମ୍ଭ କରି ଛାତ୍ରଜୀବନ ଓ ଅର୍ଦ୍ଧାଧିକ କର୍ମମୟ ଜୀବନ ଯେ ତାଙ୍କର ସଂଘର୍ଷମୟ ଥିଲା ତା ସେ ଆମ ଆଗରେ ପ୍ରକାଶ କରିନଥିଲେ ତାଙ୍କର ଆତ୍ମଚରିତ ପଢ଼ି ଜାଣିବା ପର୍ଯ୍ୟନ୍ତ ।

## ପରମ ପୂଜନୀୟ ନନା,

ଆଜିର ଏହି ପୁଣ୍ୟ ତିଥିରେ ଆପଣଙ୍କ ସ୍ମୃତି ମନ୍ଥନର ଉଦ୍‌ବେଳନ ସମୟରେ ମୋର ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇଉଠେ ଆପଣଙ୍କ ଅଚ୍ୟୁତବ୍ୟକ୍ତିତ୍ୱର ଧୂମ୍ରାଭ ପ୍ରତିଛବି ଅତି ସ୍ୱଷ୍ଟ ଓ ପ୍ରାଞ୍ଜଳଭାବରେ । ଦୃଶ୍ୟମାନ ହୋଇ ଉଠେ ଆପଣଙ୍କର ସରଳ, ନିଷ୍କପଟ, ମହନୀୟ ମାନବବାଦୀ ଚିନ୍ତାଧାରା । ସ୍ମୃତିର ଆଇନାରେ ବାରମ୍ବାର ଦୃଶ୍ୟମାନ ହେଉଛି ଆପଣଙ୍କର ସତ୍ୟସିଦ୍ଧ ଜୀବନ ଶୈଳୀ, କ୍ଷୀଣକାୟ ଶରୀର, ଚିରାଚରିତ ଧୋବ ଫରଫର ଧୋତି ସହିତ ହୁଗୁଳା ହୋଇ ପଡ଼ିଥିବା କଟନ୍ ଫୁଲ ସାର୍ଟ ଓ ଚଟିହୀନ ପାଦ । ବୟସର ସାୟାହ୍ନରେ ଅବସନ୍ନ ଓ କ୍ଳାନ୍ତ ମୁହଁରୁ ଅପସରି ଯାଇଥିଲା କୈଶୋରର ଗାମ୍ଭୀର୍ଯ୍ୟ । ନିଷ୍ପ୍ରଭ ଓ ମଳିନ ଥିଲା ମୁଖ ମଣ୍ଡଳ । କିନ୍ତୁ ରୁଗ୍ଣ ଶରୀର କେତେବେଳେ ବି ଆପଣଙ୍କ କର୍ମମୟ ଜୀବନରେ ଅନ୍ତରାୟ ହୋଇପାରିନି । କର୍ତ୍ତବ୍ୟର ଜୟ ଯାତ୍ରାରେ ବାଧା ଉପୁଜାଇ ପାରିନି । ଆପଣଙ୍କର ପୁତ୍ର ହିସାବରେ ମୋର ଜୀବନ ଗଠନର ଦାୟିତ୍ୱ ନିର୍ବାହରେ ଆପଣଙ୍କ ଆଦର୍ଶମୟ ଅବଦାନ ଚିର ଅମର । ନିଜର ପୁତ୍ର ଓ ଛାତ୍ର ମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ମୁଁ ଆପଣଙ୍କ ବିଚାରରେ ଦେଖିନି । ସବୁ ଛାତ୍ର ହିଁ ଥିଲେ ଆପଣଙ୍କ ପୁତ୍ର ସଦୃଶ । ଧନ୍ୟ ଆପଣଙ୍କର ଛାତ୍ର ବତ୍ସଳତା । ଅସ୍ୱଚ୍ଛଳ ଗରିବ ଛାତ୍ର ମାନଙ୍କୁ ଘରେ ରଖି, ପାଠ ପଢ଼ାଇ ମଣିଷ କରି ଗଢ଼ିବାର ଗୁରୁ ଦାୟିତ୍ୱ ବହନ କରି ଆପଣ ଅବଲୁପ୍ତ ଗୁରୁ କୁଳ ଆଶ୍ରମର ପରମ୍ପରାକୁ ଉଜ୍ଜୀବିତ କରିଥିଲେ ।

ଦେଖିପାରୁଛି ଜଣେ ବ୍ୟକ୍ତିତ୍ୱ ଯେ କି ଜଣେ ସାଧାରଣ ବ୍ୟକ୍ତି ନଥିଲେ । ସେ ଥିଲେ ଏକ ବିଚାରର ପ୍ରତୀକ । ସ୍ମରଣକରୁଛି ଏପରି ଜଣେ ପିତା ଓ ଶିକ୍ଷକଙ୍କୁ ଯେକି କେବଳ ମୋର ପିତା କି ଶିକ୍ଷାଗୁରୁ ନଥିଲେ, ଆମର ଅବକ୍ଷୟ ମୁଖୀ ଶିକ୍ଷା ସଂସ୍କୃତି ଓ

ସମାଜ ନୀତି ଉଚିତ୍ ମାର୍ଗରେ ପରିବର୍ତ୍ତିତ, ପ୍ରଶିକ୍ଷିତ କରିବାର ସାମର୍ଥ୍ୟ ରଖିଥିଲେ । ସେ ସାମର୍ଥ୍ୟର ପରିଚୟ ଆମେ ପାଇଥିଲୁ ଆପଣଙ୍କର କାର୍ଯ୍ୟପ୍ରଣାଳୀ, ବିଚାରର ବାସ୍ତବ ପ୍ରୟୋଗ ଏବଂ ଅଭିଜ୍ଞତା ଆଧାରିତ ଅଭିବ୍ୟକ୍ତି ମାଧ୍ୟମରେ । ଆପଣଥିଲେ ଜଣେ ସ୍ମୃତି ସୁରଭିତ ଅନୁଷ୍ଠାନ । ଆପଣଙ୍କ ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ ଥିଲା ଶିକ୍ଷା, ଶିକ୍ଷକତା, ଅସମ୍ଭବକୁ ସମ୍ଭବ କରିବାର କାର୍ଯ୍ୟକୁଶଳତା, ସମାଜ ସହିତ ସଂସ୍କୃତିର ଆନ୍ତରିକତା । ଆପଣଥିଲେ ଜଣେ ସରଳ, ଆଦର୍ଶ ଜୀବନଧାରାର ମୋହନ ମନ୍ତ୍ର ।

## ହେ ଛାତ୍ରବତ୍ସଳ,

ଆପଣଥିଲେ ଛାତ୍ରପ୍ରାଣ । ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଆପଣଙ୍କ ଦୀର୍ଘଦିନର ଶିକ୍ଷକତା ଦୃଷ୍ଟିରୁ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଓ ଆପଣଙ୍କ ନିଜ ଭାଷାରେ "ଉତ୍କଳ ମେଘାସନ" ବାଣୀପୁତ୍ର, ଛାତ୍ର ବତ୍ସଳ ବାଗ୍ମୀ ନୀଳକଣ୍ଠ ଓ ସେବା ଓ ଆଦର୍ଶର ମୂର୍ତ୍ତିମନ୍ତ ପ୍ରତୀକ ଆଚାର୍ଯ୍ୟ ହରିହରଙ୍କ ଆଦର୍ଶମୟ ଭାବଧାରାର ଆପଣଥିଲେ ଜଣେ ସୁଯୋଗ୍ୟ ତଥା ଅଗ୍ରଗଣ୍ୟ ବାର୍ତ୍ତାବହ ଓ ସାର୍ଥକ ଦାୟାଦ । ପଂଚସଖା ସଂସ୍କୃତିର ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜ ପରିବାର ତଥା ଛାତ୍ର ମାନଙ୍କୁ ମଣିଷକରି ଗଢ଼ିବାର ପରିକଳ୍ପନା ଆପଣଙ୍କ ଶିକ୍ଷକ ଜୀବନକୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ, ମାନବିକ ମୂଲ୍ୟବୋଧକୁ ସୌନ୍ଦର୍ଯ୍ୟମୟ ତଥା, ସୁରଭିତ କରି ପାରିଥିଲା । ପିଲାଦିନରୁ ଏ ପ୍ରଭାବ ମୋତେ ପ୍ରଭୁତ ଭାବେ ପ୍ରଭାବିତ କରିଥିଲା । ଆପଣ ଥିଲେ ମଣିଷ ଗଢ଼ିବାର ଜଣେ ସୁଦକ୍ଷ ବିନ୍ଧାଣି, ଚ଼ରିତ୍ର ଗଠନର ଜଣେ ଅନନ୍ୟ ତଥା ବିଚ଼କ୍ଷଣ ମୂର୍ତ୍ତିକାର ଯାହାକି ଆପଣଙ୍କର ପାରିବାରିକ ତଥା କର୍ମମୟ ଶିକ୍ଷକ ଜୀବନକୁ ତେଜୋଦୀପ୍ତ କରିଥିଲା । ପାଠପଢି ଚାକିରି କରିବା ଶିକ୍ଷାର ଉଦ୍ଦେଶ୍ୟ ନୁହେଁ, ମଣିଷ ଗଢ଼ିବା ହେଉଛି ଶିକ୍ଷା ଓ ଶିକ୍ଷକର ପ୍ରଧାନ ଲକ୍ଷ୍ୟ । ମଣିଷ ଗଢ଼ିବା ହେଉଛି ଏକ ନିରନ୍ତର ପ୍ରୟାସର ସଫଳ ସୃଷ୍ଟି, ଧୈର୍ଯ୍ୟ, ପ୍ରତ୍ୟୟ, ଓ ପ୍ରତିବଦ୍ଧତାର ନିଦର୍ଶନ । ଆପଣଥିଲେ ଜଣେ ସଂପୂର୍ଣ୍ଣ ନିରଭିମାନ, ଅହଂକାର ଶୂନ୍ୟ ବିନମ୍ର ମଣିଷ । ଆନ୍ତରିକତାରେ ପରିପୂର୍ଣ୍ଣ ହୃଦୟରେ ଅହଂକାର ବା ଆସିବ କିପରି ? ଛାତ୍ରକୁ ମଣିଷ କରି ଗଢ଼ିବା ପାଇଁ ଜଣେ ଶିକ୍ଷକର ଜୀବନ ସଂକଳ୍ପମୟ, ସାଧନାମୟ ହେବା ବାଂଛନୀୟ । ଏହାଥିଲା ଆପଣଙ୍କର ଶିକ୍ଷକ ସମାଜାକୁ ବାର୍ତ୍ତା । ଏହା ଥିଲା ଆପଣଙ୍କର ଜୀବନର ଏକ ଦର୍ଶନ ।

ଦୁର୍ବଳ ଛାତ୍ରମାନଙ୍କୁ ମାଗଣାରେ ଶିକ୍ଷାଦାନ କରିବା, ଯେଉଁ ଛାତ୍ରର ବହି ବା ଅନ୍ୟାନ୍ୟ ପାଠ୍ୟୋପକରଣ ନାହିଁ ନିଜେ ପଇସା ଖର୍ଚ୍ଚ କରି ସେ ସବୁ ଯୋଗାଇଦେବା ଓ ଅଭୁକ୍ତ ଛାତ୍ରକୁ ଖାଇବାକୁ ସାହାଯ୍ୟ ଦେବା, ପରୀକ୍ଷା ଫିସ୍ ଓ ଦରମା ନଦେଇ ପାରୁଥିବା ଛାତ୍ରଛାତ୍ରୀଙ୍କୁ ଅକୁଣ୍ଠିତ ଚିତ୍ତରେ ଅର୍ଥଦାନ କରିବାର ମହାପୁଣ୍ୟ ଅର୍ଜନ କରିଥିବା ଏକ ପୁଣ୍ୟାତ୍ମା ହେଉଛନ୍ତି ଆପଣ । ଆପଣଙ୍କ ମାନବିକତାର ଏ ହେଉଛି ଅନ୍ୟତମ ସ୍ୱର୍ଣ୍ଣିମ ଦିଗ । ଆପଣଙ୍କର ନୈତିକ ଓ ମାନବିକ ମୂଲ୍ୟବୋଧକୁ କୋଟି କୋଟି ପ୍ରଣାମ । ମନେ ପଡୁଥିଲା ଆପଣ କହିଥିବା ଓ ପରେ ପଢ଼ିଥିବା ବାଗ୍ମୀ ନୀଳକଣ୍ଠଙ୍କ 'ରାମଚଣ୍ଡୀରେ ସଂଧ୍ୟା' କବିତାର କେତୋଟି ପଦ; ପଣ୍ଡିତ ମହାଶୟଙ୍କର ଛାତ୍ର ବତ୍ସଳତା ଓ ବାତ୍ସଲ୍ୟ ମମତା, ଛାତ୍ର ଛାତ୍ରୀ ମାନଙ୍କୁ ପିକ୍‌ନିକରେ ନେଇ ପ୍ରବଳ ବର୍ଷାଯୋଗୁଁ ଘରକୁ ଫେରାଇ ନଆଣି ପାରିବାର ମାର୍ମିକ ଓ କାବ୍ୟିକ ଅଭିବ୍ୟକ୍ତି । ମୋର ମନେଅଛି ଏହି କବିତାଟି ମୋତେ ବୁଝାଇବା ବେଳେ

ମୁଁ କାନ୍ଦି ପକାଇ ଥିଲି । ଛାତ୍ର ବତ୍ସଳତାର ସ୍ମାରକୀ ସେହି କବିତାର କେତୋଟି ପଦ ଏଠାରେ ଉଦ୍ଧୃତ କରୁଛି ।

## ରାମଚଣ୍ଡୀରେ ସଂଧ୍ୟା

"କି କରାଳ ଆଜି ରଜନୀ !
ବହେ ଝଂଜା ପବନ
ତରା ନ ଦିଶଇ ଗଗନେ
ଶୁଭେ ଘନ ଗର୍ଜନ ।
ମୁଷଳ ଧାରାରେ ଝଟିକା
ଦିଏ କଚାଡି କେବେ
ଶୋଇ ପଡିଛକି ବାପା ହେ
ଜାଣୁ ନଥିବ ଲବେ ।
ଆଜି ଯେ କୁଆଁର ପୁନିଅଁ
କେଡେ ସୁଖ ଶରଧା
ମାଆ ଭଉଣୀଙ୍କ ଆଦର
ନବ ବସନ ପିନ୍ଧା
ମନେ ପଡୁ ନାହିଁ ବାବୁହେ
ଲାଗି ଯାଇଛି ନିଦ
ମାଆ ଭଉଣୀ ଏ ଭବନେ
ଭଜି ଥିବେ ବିଷାଦ
ଲୁଗାରେ ହଳଦୀ ଲଗାଇ
ଚାହିଁଥିବେ ଜନନୀ
ପିଠା ପଣା ଖାଇ ନଥିବ
ସୁଖେ ଆଜି ଭଗିନୀ ।
ଜନନୀର ଗୁରୁବେଦନା
ଭଗିନୀର ବିଷାଦ
ସୁମରି ସପନେ ଚମକି
ଭାଙ୍ଗିଯିବଟି ନିଦ ।
ଶୁଅ ଶୁଅ ଧନ ଆରାମେ
ଶୋଇ ଥାଅରେ ଶିଶୁ
ପଥ ଶ୍ରମକରି ଆସିଛ
ଶ୍ରମେ ବିରାମ ମିଶୁ ।
ରହ ରହ ବାଆବତାସି
ରହ ବରଷାଧାରା ।
କୁଆଁର ପୁନିଅଁ ହେଉରେ
ଆଜି ରଜନୀସାରା ।"

"ମୁହିଁ ଦିନେ ଶିଶୁ ଥିଲି ଇଁ
ମନେ ପଡୁଛି ମୋର
ବସି ଶିଶୁ ମେଳେ ଦେଖନ୍ତି
ଏ ବିଭବ ରୁଚି ର ।"

× × × ×

ଚାନ୍ଦିନି ଧବଳ ବିପିନେ
ସିକତିଳ ପ୍ରାନ୍ତରେ
ଶିଶୁ ସଙ୍ଗେ ବସିପୁହାନ୍ତି
ରାତି ମୁଁ ଉଜାଗରେ ।

× × × ×

ଖେଳନ୍ତୁ ବାଳକେ ପ୍ରାନ୍ତରେ
ଲୋଳ କୁରଙ୍ଗପରି
କ୍ଷଣେ ପୁଣି ଦେଖି ଆସନ୍ତୁ
ଭଗ୍ନକୋଣାର୍କ ଶିରୀ

ଏହିଥିଲା ସତ୍ୟବାଦୀ ବନବିଦ୍ୟାଳୟ ଛାତ୍ର ଶିକ୍ଷକର ଆତ୍ମିକ ସଂପର୍କ । ମେଘ ମେଦୁର ଆକାଶରେ ଉଦଣ୍ଡପବନ ସହିତ ବର୍ଷଣ ମୁଖର ମେଘମାଳାର ଘନ ଘନ ଗର୍ଜନ, ମୁଷଳ ଧାରାରେ ବର୍ଷାଯୋଗୁ ପିଲାମାନଙ୍କୁ ଘରକୁ ଫେରାଇ ନଆଣି ପାରିବାର ମର୍ମସ୍ପର୍ଶୀ ବେଦନା ଜୀବନ୍ତ ରୂପ ପାଇଛି ପଣ୍ଡିତ ମହାଶୟଙ୍କ ପିତୃସ୍ନେହ, ଛାତ୍ର ପ୍ରାଣ କୋମଳ

ହୃଦୟରେ । ଏହି ସୁଧାମୟ ଅମୂଲ୍ୟ ଭାବଧାରାରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ଥିଲା ଆପଣଙ୍କର ଶିକ୍ଷକ ଜୀବନ। ଆପଣ ଥିଲେ ଛାତ୍ର ବତ୍ସଳ ଓ ପିତୃତୁଲ୍ୟ ।

ମନେ ପଡ଼ିଯାଉଛି ପିଲାଦିନର କଥା । ଆଗରୁ କହିଛି ଯେ ପିତା ଓ ଶିକ୍ଷକ ହିସାବରେ ଆପଣଙ୍କର ମୋ ଚରିତ୍ର ଗଠନ ଓ କର୍ତ୍ତବ୍ୟ ସମ୍ପାଦନ ଉପରେ ପଡ଼ିଥିବା ଆଦର୍ଶର ଅବର୍ଣ୍ଣନୀୟ ପ୍ରଭାବକୁ କେତେଖଣ୍ଡ କାଗଜର ସୀମିତ ପରିସୀମା ଭିତରେ ଆବଦ୍ଧ ରଖିବାର ପ୍ରଚେଷ୍ଟା ମୋର ଧୃଷ୍ଟତା ହେବ । ତଥାପି ଅବୁଝା ମନକୁ ବୁଝାଇବାକୁ ହେବ ।

ମୋର ଜନ୍ମ ମହାମାନବ ଜାତିର ଜନକ ମହାତ୍ମା ଗାନ୍ଧିଙ୍କର ମହାପ୍ରୟାଣ ଦିବସରେ ୧୯୪୮ ମସିହା ଜାନୁୟାରୀ ମାସ ୩୦ ତାରିଖରେ, ପୁଣି ପୁଣ୍ୟଭୂମି ସତ୍ୟବାଦୀରେ । ଏହି ପରିପ୍ରେକ୍ଷୀରେ ମୋତେ ସଦାବେଳେ ଗାନ୍ଧିଜୀ, ଗୋପବନ୍ଧୁଙ୍କର ଦେଶ ମାତୃକାର ସେବା ପାଇଁ ଉତ୍ସର୍ଗୀକୃତ ଜୀବନ, ୰ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହରଙ୍କର ଛାତ୍ର ବତ୍ସଳତା ସାଙ୍ଗକୁ ବୁଦ୍ଧଦେବ, ରାମକୃଷ୍ଣ, ବିବେକାନନ୍ଦଙ୍କ ବିଷୟରେ ବିଭିନ୍ନ ଗପ କହି ମୋର ମାନସିକତାକୁ ପିଲାଦିନୁ ସେହିଦିଗରେ ଆକୃଷ୍ଟ କରିବାକୁ ଆପଣଙ୍କର ଅଦୃଷ୍ଟ ପ୍ରୟାସ ମୁଁ ସମୟ କ୍ରମେ ବୁଝି ପାରିଥିଲି । ରାମାୟଣ, ମହାଭାରତର ଗପ ଶୁଣାଇବା ଠାରୁ ଆରମ୍ଭ କରି, 'କର୍ମ ହିଁ ପ୍ରକୃତ ଉପାସନା'ର ସାର ମର୍ମ ବୁଝାଇ ପାଠପଢ଼ାରେ ମନୋନିବେଶ, ଗୁରୁଜନଙ୍କୁ ଭକ୍ତି ଓ ବାପା ମାଆ ଈଶ୍ୱରଙ୍କର ସାକ୍ଷାତ୍ ଅବତାର, ଏହି ଅନ୍ତଃ ସୌନ୍ଦର୍ଯ୍ୟ ଭରା ସ୍ୱର୍ଗୀୟ ଭାବନା ସୃଷ୍ଟି କରିବା ପାଇଁ ଆପଣଙ୍କର ନିରନ୍ତର ଚେଷ୍ଟା ମୋର ସ୍ମୃତି ପଟଳରେ ଏବେ ବି ଚିର ଶ୍ୟାମଳ ହୋଇ ବିରାଜମାନ ।

ପିଲାଦିନେ ଆପଣଙ୍କଠାରୁ ଶୁଣିଥିବା, ଦେଶ ପ୍ରାଣ ଉତ୍କଳମଣି ଗୋପବଂଧୁଙ୍କର ରୋଗଶଯ୍ୟାରେ ପ୍ରିୟ ପୁତ୍ରକୁ ଛାଡ଼ି ବନ୍ୟାକ୍ଲିଷ୍ଟ ଜନତାର ସେବା ପାଇଁ ଚାଲି ଯାଇଥିବା ଗଳ୍ପର ଅବତାରଣା ମୁଁ କରୁଥିଲି, ନୟାଗଡ଼ ଜିଲ୍ଲାର ଭାପୁର, ଗଣିଆ ବ୍ଲକରେ, ଖଣ୍ଡପଡ଼ା କଣ୍ଟିଲୋରେ, ଖୋର୍ଦ୍ଧା ଜିଲ୍ଲାର ବାଲିପାଟଣା, ବାଲିଅନ୍ତା ବ୍ଲକରେ ବନ୍ୟାକ୍ଲିଷ୍ଟ ଜନତାଙ୍କୁ ରିଲିଫ" ବଣ୍ଟନ ଓ ଜଗତସିଂପୁର ଜିଲ୍ଲାର ମହାବାତ୍ୟା ପରବର୍ତ୍ତୀ ପୁନର୍ଗଠନ କାର୍ଯ୍ୟ ତଦାରଖ ସମୟରେ । ଘରେ ବଡ଼ ଭାଇ ଓ ଆପଣଙ୍କର ମାନସିକ ଅବସ୍ଥା ଠିକ୍ ନଥିଲା । ଘରୁ ବୋଉର ଘନଘନ ଖବର ଗାଁକୁ ଯିବାପାଇଁ, କିନ୍ତୁ ମୁଁ ଯାଇ ନପାରି ଅଫିସରୁ ମୋର କର୍ମଚାରୀ ଧନୀକୁ ପଠାଇ ଦେଇଥିଲି । ଏହି ତ ଥିଲା ଆପଣଙ୍କ ଶିକ୍ଷା । ସେହିପରି ଶ୍ରବଣ କୁମାରର ପିତୃ, ମାତୃଭକ୍ତି ର ଉଦାହରଣ ମୋ ମନରେ ବାପାମାଆଙ୍କ ପ୍ରତି ଅମୃତମୟ ପ୍ରେମ ଓ ଭକ୍ତି ସୁଧାରସ ସୃଷ୍ଟିକରିବାର ଥିଲା ଆଦ୍ୟ ଝଙ୍କାର ।

କିନ୍ତୁ ଗୋଟିଏ କଥା ଅବୁଝା ହୋଇ ରହିଯାଇଛି । ଆପଣଙ୍କ ବାଲ୍ୟ ଜୀବନ, ଶୀକ୍ଷା ଓ କର୍ମମୟ ଜୀବନର କରୁଣ କାହାଣୀ କେବେ ଶୁଣାଇନଥିଲେ ଆପଣ । କେତେବେଳେ ହେଲେ ଖୋଲି ନଥିବା ଜୀବନ ପୁସ୍ତିକାର ଅଜଣା, ଅଖୋଲା ପୃଷ୍ଠା ଗୁଡ଼ିକ ଯେମିତି ଖୋଲି ଦେଇଥିଲା ଆପଣଙ୍କ ଆତ୍ମଚରିତ, ଆପଣଙ୍କ ଜୀବନ ଇତିହାସର ଖୋଲା ବହି ।

**ହେ ମହାନ୍,**

ଆପଣଥିଲେ ଜଣେ ଚିନ୍ତାଶୀଳ ଦୂରଦୃଷ୍ଟି ସମ୍ପନ୍ନ ପିତା । ନିଜର ଉତ୍ତରାଧିକାରୀ ଭାବେ ପିଲାଦିନୁ ମୋତେ ସାଙ୍ଗରେ ନେଇ ନଡ଼ିଆ ତୋଳା, ଆମ୍ବତୋଳା, ଧାନ ଅମଳ ଓ ଏପରିକି ଘରର ବିଭିନ୍ନ

ପୂଜାପଦ୍ଧତି ଓ ପରମ୍ପରାଗତ ବ୍ୟବସ୍ଥା ସହିତ ସଂଶ୍ଳିଷ୍ଟ କରିବାର ତାତ୍ପର୍ଯ୍ୟ ମୁଁ ଆପଣଙ୍କର ଅବର୍ତ୍ତମାନରେ ଅନୁଭବ କରୁଛି । ରାତି ଘ ୪.୩୦ ମିନିଟ୍‌ରୁ ନିଦରୁ ଉଠାଇ ମୋତେ ନିଜେ ପଢ଼ାଇବା ଠାରୁ ଆରମ୍ଭ କରି ମୋର ସ୍ୱାସ୍ଥ୍ୟର ଯତ୍ନ ନେବା, ସାମାନ୍ୟ ଅସୁସ୍ଥତାରେ ପୁରୀ ନେଇ ଡ଼ାକ୍ତର ଦେଖାଇ ଚିକିତ୍ସା କରିବା ଆଜି ମୋ ପିଲାଙ୍କ ଅସୁସ୍ଥତା ବେଳେ ମୋର ମନେ ପଡୁଛି । ଜନ୍ମ ଦାତା ହିସାବରେ ଆପଣଙ୍କର ଆମପ୍ରତି କୌଣସି ଅବହେଳା ମୋର ଦୃଷ୍ଟି ଗୋଚର ହୋଇ ନାହିଁ । ଆର୍ଥିକ ଅନାଟନ, ମାନସିକ ଅନଗ୍ରସର ବଡ଼ ପୁଅର ଦୁଃଖ ଓ ପରିବାର ଚଳାଇବାର ଚିନ୍ତା ଓ ଅସୁସ୍ଥତାରେ ଜର୍ଜରିତ ହୋଇ ମଧ୍ୟ ପିତା ହିସାବରେ ଆପଣ ସମସ୍ତଙ୍କ ପ୍ରତି କର୍ତ୍ତବ୍ୟ ପାଳନରେ, କର୍ମ ମୟ ଜୀବନରେ ଭାଙ୍ଗି ପଡ଼ି ନାହାନ୍ତି ଯାହାକି ଆମର ପଥ ପ୍ରଦର୍ଶକ ହୋଇ ଆଜି ପର୍ଯ୍ୟନ୍ତ ରହି ଆସିଛି । ସର୍ବୋପରି ମହାମନୀଷୀ ମାନଙ୍କର ଆଦର୍ଶ ସଦାସର୍ବଦା ଉପସ୍ଥାପିତ କରି ଜୀବନରେ ବଡ଼ ହେବାକୁ ହେଲେ ସେହି ମାନଙ୍କର ପଦାଙ୍କ ଅନୁସରଣ କରିବାକୁ ଆପଣଙ୍କର ଉପଦେଶ ମୋତେ ଯଥେଷ୍ଟ ଉଦ୍‌ବୁଦ୍ଧ ଓ ଅନୁ ପ୍ରେରିତ କରିଥିଲା । ଏହାହିଁ ହେଉଛି ମୋର ଓ ଆମ ପରିବାରର ସଂସ୍କାର, ଆମ ପରିବାରର ଅସ୍ମିତା । ଏକ ଉନ୍ନତ ମାନବୀୟ ଚରିତ୍ରର ଉତ୍‌ଥାନ ପାଇଁ ଅଟଳ ସଂକଳ୍ପ, ସମର୍ପଣ ଓ ପ୍ରୟାସର ଆବଶ୍ୟକତାକୁ ଗୌଣ କରିହେବ ନାହିଁ । ଏହାହିଁ ଥିଲା ଆପଣଙ୍କର ଆମ୍ଭମାନଙ୍କୁ ଶିକ୍ଷା ।

## ହେ ବରେଣ୍ୟ,

ଶିକ୍ଷକ ଜୀବନରେ ଆପଣ ଥିଲେ ଗୁରୁ ଗୌରବର ଅଧିକାରୀ । ଉତ୍କଳ ମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଓ ଆଚାର୍ଯ୍ୟ ହରିହର, ଗୋଦାବରୀଶ ଓ କୃପାସିନ୍ଧୁ-ପଞ୍ଚସଖାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଆପଣ ଶିକ୍ଷକତାକୁ ନିଜର ବୃତ୍ତି ହିସାବରେ ଆଦରି ନେଇଥିଲେ । ଆପଣଙ୍କର ଲବ୍ଧ ଜ୍ଞାନକୁ ଆପଣ ବାଣ୍ଟି ଚାଲିଥିଲେ ଆପଣଙ୍କର ସହସ୍ରାଧିକ ଛାତ୍ର ଛାତ୍ରୀଙ୍କୁ, ଯେଉଁମାନଙ୍କ ମଧ୍ୟରୁ ଆଜି ବହୁ ଛାତ୍ର, ହାଇକୋର୍ଟର ମାନ୍ୟବର ବିଚାର ପତି, I.A.S., I.P.S, ସ୍ୱନାମଧନ୍ୟ ଡ଼ାକ୍ତର, ଇଞ୍ଜିନିୟର, ଅଧ୍ୟାପକ, କବି ଓ ଲେଖକ, ପ୍ରଶାସକ, ବ୍ୟାଙ୍କ ଅଫିସର, ବ୍ୟାଙ୍କ ଲୋକପାଳ, ଶିକ୍ଷକ, ଓକିଲ ଏପରିକି ଦୁଇଟି ବିଶ୍ୱ ବିଦ୍ୟାଳୟର କୁଳପତି ଭାବେ ଉଚ୍ଚପଦପଦବୀରେ ସୁପ୍ରତିଷ୍ଠିତ । ଛାତ୍ରର ପ୍ରତିଷ୍ଠା ଶିକ୍ଷକର ଗୌରବ ଓ ଗରିମା । ଏହି ଶିକ୍ଷା ଆପଣ ବାଣ୍ଟି ଚାଲିଥିଲେ ଆପଣଙ୍କର ଶହ ଶହ ଛାତ୍ର ସମାଜ ଆଗରେ । ସେହି ଯୋଗୁ ବୋଧେ ଆପଣଙ୍କର ଶହ ଶହ ଛାତ୍ର ଉନ୍ମୁଖ ହୋଇ ଉଠିଥିଲେ ଆପଣଙ୍କ ତିରୋଧାନରେ, ଆପଣଙ୍କ ଶବାଧାର ନିକଟରେ । ଜଣେ ପ୍ରଜ୍ଞାପୁରୁଷ ଭାବେ ଆପଣ ଥିଲେ ଛାତ୍ର ସମାଜର ବନ୍ଧୁ, ଦାର୍ଶନିକ ଓ ଦିଗ୍‌ଦର୍ଶକ ।

## ହେ ପରମ ମାନନୀୟ, ହେ ଗୁରୁ ଶ୍ରେଷ୍ଠ ।

ଆପଣ ଥିଲେ ଜଣେ ବହୁମୁଖୀ ଅନୁଷ୍ଠାନ ଓ ଅସାଧାରଣ ପ୍ରତିଭା ସମ୍ପନ୍ନ ବ୍ୟକ୍ତିତ୍ୱ । ଇଂରାଜୀ, ସାହିତ୍ୟ, ସାମାଜିକ ବିଜ୍ଞାନ ଓ ଭୂଗୋଳ ଶାସ୍ତ୍ରର ଆପଣ ଥିଲେ ଜଣେ ଧୁରୀଣ ଶିକ୍ଷକ, ଚଳମାନ ପ୍ରତିଭା । ସାହିତ୍ୟ ସାଧନାରେ ଆପଣଙ୍କ କୀର୍ତ୍ତି ଶାଶ୍ୱତ । ଏପରିକି ଉତ୍ତର ଜୀବନରେ ଶାରୀରିକ ଅକ୍ଷମତା ଆପଣଙ୍କର ଜିଜୀବିଷାର ଉଲ୍ଲାସକୁ ବ୍ୟାହତ କରି ପାରିନଥିଲା । ବୟସ ଆପଣଙ୍କର ପ୍ରାଣ ସ୍ଫୁର୍ତ୍ତିକୁ ସାମାନ୍ୟ ବି ନିସ୍ତବ୍ଧ କରିନଥିଲା । ଅବସର ପରେ ଆପଣ ନିଜର ସୀମିତ ପୃଥିବୀ ଭିତରେ ନିରବରେ

ରହିଯାଇନଥିଲେ । ସାହିତ୍ୟ ସର୍ଜନାରେ ନିଜକୁ ଉତ୍ସର୍ଗ କରିଥିଲେ । ଆପଣଙ୍କର ଅନବଦ୍ୟ ସୃଷ୍ଟି "ଗୀତି ରାମାୟଣ', ଶ୍ରୀ ଜଗନ୍ନାଥଙ୍କ ଉପରେ ଲିଖିତ ମର୍ମସ୍ପର୍ଶୀ "ଭଜନ ସଂକଳନ" ଓ କାଳଜୟୀ କବିତା 'ଜନ୍ମ ଭୂମି' ତଥା ଅନ୍ୟାନ୍ୟ କବିତାର ଅନନ୍ୟ ଛନ୍ଦଶୈଳୀ ଓ ରୂପକଳ୍ପ ଆପଣ ଆପଣଙ୍କର ଉତ୍ତର ଜୀବନରେ ହିଁ ରଚନା କରିଥିଲେ ଯାହା ପିଲାମାନଙ୍କର ସାଂସ୍କୃତିକ ଚେତନାର ଅଭ୍ୟୁଦୟ ସହିତ ଘରେ ଘରେ ପଠିତ ଓ ଆଦୃତ । "କାବ୍ୟିକ ଚମତ୍କାରିତାରେ ପରିପୂର୍ଣ୍ଣ, ମଂଜୁଳଛନ୍ଦ ବିନ୍ୟାସରେ ପରିସ୍ଫୁଟ ଗୀତି ରାମାୟଣ", "ଉତ୍କଳ ଭାରତୀଙ୍କର ଭଣ୍ଡାରରେ ଅନ୍ୟତମ ଗ୍ରନ୍ଥ ରତ୍ନ ରୂପେ ବିରାଜିତ ହେବାରେ ଆଦୌ ଅତିରଂଜନ ନାହିଁ" ବୋଲି ବହୁ ପ୍ରବୀଣ ସାହିତ୍ୟ ବିଶାରଦ ତାଂକର ବହୁମୂଲ୍ୟ ଅଭିମତ ପ୍ରକାଶ କରିଛନ୍ତି । ସାହିତ୍ୟ ସାଧନାରେ ସାହିତ୍ୟ ଆମକୁ ସୃଜନଶୀଳତା ଓ ସମାଜର ଦର୍ପଣ ଭାବରେ ପ୍ରତିବିମ୍ବିତ ହୋଇ ଅଧିକ ଋଦ୍ଧିମନ୍ତ କରୁ ଓ ଅଧିକ ଅନ୍ତରଙ୍ଗ ହେଉ ଏହାହିଁ ଥିଲା ଆପଣଙ୍କ ସାହିତ୍ୟ ସୃଷ୍ଟିର ଅଦୃଷ୍ଟ ଉଦ୍ଦେଶ୍ୟ । ଶିକ୍ଷା ସଂସ୍କୃତିର ମୁକୁଟ ଓ ସାହିତ୍ୟର ଆତ୍ମା, ଚେତନା ଓ ଅନୁଭବର ଦିବ୍ୟପରିପ୍ରକାଶ । ଏହା ସାମାଜିକ ଚିତ୍ରର ଏକ ଦର୍ପଣ, ଅଙ୍କନ ଓ ପ୍ରତିଫଳନ । ଆପଣଙ୍କର କାବ୍ୟିକ ଚମତ୍କାରୀତା ଅଧିକ ମୁକୁଳିତ ହୋଇଥିଲା ଆପଣଙ୍କ ଗୀତିରାମାୟଣରେ ଓ ଶ୍ରୀ ଜଗନ୍ନାଥଙ୍କ ଭଜନ ରଚନାରେ । ସେଠିଥିଲା ପ୍ରଭୁ ରାମଚନ୍ଦ୍ରଙ୍କ ପୁରୁଷୋତ୍ତମ ମର୍ମର ସଂଧାନ ଠାରୁ ଆରମ୍ଭ କରି କିଛି ଦିବ୍ୟ ଅନୁଭବର ପରିପ୍ରକାଶ । ଶିକ୍ଷାଦାନ ସହିତ ସାହିତ୍ୟର ମିଶ୍ରରାଗ ସୃଷ୍ଟିକରିଚନ୍ତି ଆପଣ ଯାହାକି ଆପଣଙ୍କୁ ଶିକ୍ଷକ ହିସାବରେ ଅଗ୍ରଗଣ୍ୟ କରି ରଖିବ । ଆପଣ ଥିଲେ ସାହିତ୍ୟ ଓ ସଂସ୍କୃତିର ଜଣେ ପ୍ରଥିତ ଯଶା, ତଥା ଛାତ୍ରମାନଙ୍କ ଉଦ୍‌ଗାମୀଷାର ଉଜ୍ଜ୍ୱଳ ଉଦ୍‌ଗାତା । ଆତ୍ମ ପ୍ରକାଶ କରିବାକୁ ଯାଉଥିବା, ଆପଣଙ୍କର 'ଆତ୍ମ ଚରିତ' ଛାତ୍ର ସମାଜ ପାଇଁ ଏକ ସାରସ୍ୱତ ରତ୍ନ; ଜ୍ଞାନତୃଷ୍ଣାର ଉଜ୍ଜ୍ୱଳ ଉତ୍ପ୍ରେରକ । ଆପଣଙ୍କର ହିତୋପଦେଶ, ମୂଲ୍ୟବୋଧ ଭିତ୍ତିକ ନୀତିଶିକ୍ଷା ଓ ଆଦର୍ଶରେ ପରିପ୍ଲୁତ, ତତ୍‌କାଳୀନ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅବସ୍ଥାର ପ୍ରତିଛବି, ପ୍ରତ୍ୟେକ ଛାତ୍ର ପାଖରେ ପରିବର୍ତ୍ତନ ଶୀଳ ସମୟ ନିର୍ବିଶେଷରେ ଏକ ତଥ୍ୟ ଉତ୍ସ । ଏହି ଅନବଦ୍ୟ ସାହିତ୍ୟ ସର୍ଜନା ଆପଣଙ୍କ ଲେଖକୀୟ ଅସ୍ମିତାକୁ ପ୍ରମାଣିତ କରିଛି । ଆପଣଥିଲେ ଜଣେ ଚେତନାର ଚିତ୍ରକର । ଆପଣଙ୍କ ଲେଖନୀ ମୂନର ଅଦ୍‌ଭୁତ ସମ୍ମୋହନ ଶକ୍ତି ବୟସ ନିର୍ବିଶେଷରେ ଉତ୍‌କୀର୍ଣ୍ଣ ହୋଇ ସମସ୍ତଙ୍କୁ ଶୁଣିବାକୁ ଉତ୍ସାହିତ କରୁଥିବ । ଆପଣଙ୍କ ସାହିତ୍ୟ ସର୍ଜନାର ଅନୁଶୀଳନ ପାଇଁ ମୋର ଜ୍ଞାନର ଅଭାବ । ଭାଷା ଅସଂପୂର୍ଣ୍ଣ ରହିଗଲା ଆପଣଙ୍କର ଗୀତି ମହାଭାରତ ଲେଖିବା ର ଇଚ୍ଛା ବୟସର ଅନ୍ତିମ ପ୍ରହରରେ ।

**ହେ ମହାଭାଗ,**

ଆସନ୍ନ ସଂଧ୍ୟାର ଅସ୍ତରାଗ ସହ ସମସ୍ତଙ୍କ ସମ୍ମୁଖରେ ବ୍ରହ୍ମପୁରର ମୋର ସରକାରୀ ବାସଭବନରେ ୧୯୮୫ ମସିହା ଅଗଷ୍ଟ ତା ୨୯ ରିଖରେ ପବିତ୍ର ଗହ୍ମା ପୂର୍ଣ୍ଣିମା ତିଥିରେ ଆପଣଙ୍କର ଜୀବନ ରବି ସବୁ ଦିନ ପାଇଁ ଅସ୍ତମିତ ହୋଇଗଲା । ସକଳ ସାଂସାରିକ ବନ୍ଧନକୁ ଛିନ୍ନ କରି, ପ୍ରିୟ ଛାତ୍ର ଛାତ୍ରୀ ମାନଙ୍କୁ ଛାଡ଼ି ଅମୃତର ଆହ୍ୱାନରେ, ଅମୃତର ସନ୍ତାନ ଚାଲିଗଲ ଚିର ଶାଶ୍ୱତ ଶାନ୍ତିର ନିଳୟ ଅମରାବତୀକୁ । ଏ ସତ୍ୟ କିନ୍ତୁ ମୋ ପ୍ରତି ବଡ଼ ଅସହ୍ୟ ତଥା ନିଷ୍ଠୁର ଓ ଅବିଶ୍ୱସନୀୟ ଥିଲା ।

ଆପଣଙ୍କ ମୃତ୍ୟୁର ଏହି ଚିରନ୍ତନ ସତ୍ୟ ମୋ ଜୀବନରେ ଥିଲା ପ୍ରଥମ ଧକ୍କା, ଯାହା ଶିକ୍ଷା ଦେଇଥିଲା ସାଂସାରିକ ମାୟାର ସ୍ୱର୍ଣ୍ଣମୃଗ ପଛରେ ନ ଧାଇଁ ଜୀବନର ସ୍ୱଳ୍ପ ସମୟ ଭିତରେ ସମାଜ ପ୍ରତି ନିଷ୍ଠାପର ଭାବେ କର୍ମ କରିଯିବା ହେଉଛି ମଣିଷର କର୍ତ୍ତବ୍ୟ । ପ୍ରମାଣିତ କରି ଦେଇଗଲେ work is worship, ଯାହା ଥିଲା ଆପଣଙ୍କର ଜୀବନର ଦର୍ଶନ । ଏହା ମଧ୍ୟ ପ୍ରମାଣିତ କରିଦେଇଗଲେ ଯେ ଲକ୍ଷ୍ୟ ହାସଲ ପାଇଁ ନିରନ୍ତର ଚେଷ୍ଟା ଯେ ଦିନେ ସଫଳତାର ସିଡ଼ି ଚଢ଼ିବାରେ ସହାୟକ ହେବ ଓ ସାଫଲ୍ୟ ମଣ୍ଡିତ କରିବ ଏହା ନିଃସନ୍ଦେହ । ଦୁଃଖ ଓ ଯନ୍ତ୍ରଣାର ସଂଘର୍ଷମୟ ଜୀବନ ପ୍ରବାହରେ ନିଜର ଲକ୍ଷ୍ୟକୁ ବାସ୍ତବତାର ରୂପ ଦେବାପାଇଁ ସୀମାହୀନ ଧୈର୍ଯ୍ୟ, ପ୍ରତ୍ୟୟ ସହିତ ଦୃଢ଼ ସଂକଳ୍ପ ଓ ସାଧନାର ଆପଣଥିଲେ ଜଣେ ଦୁର୍ଜୟ ସ୍ୱରୂପ ।

ପ୍ରତିଦିନ ରାତିପାହେ । ସକାଳହୁଏ । ପ୍ରଥମେ ମୁଁ ଯାଏ ଆପଣଙ୍କ ଆଶୀର୍ବାଦ ପାଇଁ । ଚରଣ ସ୍ପର୍ଶପରେ ମୋର କର୍ମମୟ ଜୀବନ ଆରମ୍ଭହୁଏ । ଏବେ କିନ୍ତୁ ମୋ ଜୀବନରେ ଆଉ ସେ ସକାଳ ଆସିବନି । ସକାଳେ ମିଳିତ ହେବାର ସ୍ୱପ୍ନ କିମ୍ବା ସମ୍ଭାବନାର ସ୍ୱର୍ଗୀୟ ଗୌରବ ଆଉ କିଛି ନଥିବ ।

**ହେ ପ୍ରାତଃ ସ୍ମରଣୀୟେଷୁ,**

ଆପଣଙ୍କ ଛାତ୍ରମାନଙ୍କ ମତରେ ଆପଣ ଥିଲେ ଜଣେ କର୍ମ ଯୋଗୀ । ଗୀତାର ମହାମନ୍ତ୍ର ଅନୁସାରେ ମନୁଷ୍ୟକୁ କର୍ମାଭିମୁଖୀ, କର୍ମଯୋଗୀ, କର୍ତ୍ତବ୍ୟ ଅନୁରାଗୀ ହେବାପାଇଁ ଆମ୍ଭମାନଙ୍କୁ ତଥା ଛାତ୍ରଛାତ୍ରୀ ମାନଙ୍କୁ ଆପଣଙ୍କର ଏହି ମୂଲ୍ୟବୋଧ ଭିତ୍ତିକ ଉପଦେଶ ଏକ ଅମୂଲ୍ୟ ଉପହାର । କର୍ମହିଁ ଜୀବନ, ନୀତି ଓ ଆଦର୍ଶ ସମ୍ବଳିତ ନିଷ୍କାମ କର୍ମ ସଂପାଦନହିଁ ପ୍ରକୃତ ଉପାସନା, ପ୍ରକୃତ ତପସ୍ୟା । ତେଣୁ କର୍ମପ୍ରତି ପରାଙ୍‌ମୁଖ ଭାବର ସାମାନ୍ୟ ସୂଚନା ମନୁଷ୍ୟ ଚରିତ୍ରରେ ଚନ୍ଦ୍ରମାରେ କଳଙ୍କ ସଦୃଶ ଅଟେ ।

ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି

"ସ୍ୱେ ସ୍ୱେ କର୍ମଣ୍ୟ ଭିରତଃ
ସଂସିଦ୍ଧିଂ ଲଭତେ ନରଃ ।"

ଅର୍ଥାତ ନିଜ ନିଜର ସ୍ୱାଭାବିକ କର୍ମରେ ତତ୍‌ପରତାର ସହଲାଗି ରହିଥିବା ମନୁଷ୍ୟ ଭଗବତ ପ୍ରାପ୍ତି ରୂପକ ପରମସିଦ୍ଧି ପାଇଥାଏ ।

ଇତିହାସ ଓ ଐତିହ୍ୟ କୁ ନଚାହିଁ ଆମେ କେବଳ ଭବିଷ୍ୟତର ସ୍ୱପ୍ନଦେଖୁଛି । ମନୁଷ୍ୟ ଯେତିକି ଶିକ୍ଷିତ ହେଉଛି, ବିଶ୍ୱକୁ ଦେଖୁଛି ତା ଭିତରେ ମଣିଷ ପଣିଆ ସେତିକ ମରିଗଲା ପରି ଲାଗୁଛି । ମାନବିକତା ପରିବର୍ତ୍ତେ ତାର ଅଲକ୍ଷ୍ୟରେ ହେଉ ତା ଭିତରେ ପଶୁତ୍ୱ ବସା ବାଂଧି ଚାଲିଛି । ଅନ୍ତରର ସ୍ୱଚ୍ଛତା ବଢ଼ାଇବା ପରିବର୍ତ୍ତେ ଆମେ ଆବିଳତା ବଢ଼ାଉଛୁ । ବିବେକହୀନବିଳାସ, ନୀତିବିହୀନ ରାଜନୀତି, ଶ୍ରମ ବିହୀନ ସଂପତ୍ତି ତ୍ୟାଗ ବିହୀନ ଉପାସନା ସତେଯେମିତି ଆମ ସମାଜରେ ପାପର ଚାପ ବଢ଼ାଇ ଦେଇଛି ।

ସେଇଥିପାଇଁ ଆମର ଶାସ୍ତ୍ରବାଣୀ, କର୍ମ ହିଁ ମୋକ୍ଷ ଓ ମୁକ୍ତିର ମାର୍ଗ ।

"ମାନବ ଜୀବନ ନୁହଇ କେବଳ
ବର୍ଷମାସ ଦିନଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ" ।

ଏହିଭଳି ବହୁ ନୀତିଶିକ୍ଷା, ଆପଣଙ୍କର ପାଠ ପଢାଇବା ଶୈଳୀର ଏକ ଅବିଚ୍ଛେଦ୍ୟ ଅଂଗଥିଲା ।

ଶିକ୍ଷକ ସମାଜରେ ଆପଣଥିଲେ ଜଣେ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ, ଛାତ୍ର ହୃଦୟର ପ୍ରିୟ କଥାକାର, ନିଷ୍ଠା ଓ ମୂଲ୍ୟ ବୋଧର ଜଣେ ଅବିକଳ୍ପ କର୍ଣ୍ଣଧାର ।

## ହେ ଶିକ୍ଷକରତ୍ନ,

କଲେଜରେ ଅଧ୍ୟୟନ କଲାବେଳେ ମୋତେ ଦେଇଥିବା ଉପଦେଶ ଯେ 'ଶିକ୍ଷାର ଅନ୍ତନାହିଁ ।' "ଶିକ୍ଷା ଏକ ଜୀବନ ବ୍ୟାପୀ ପ୍ରକ୍ରିୟା । ଅଭିଜ୍ଞତା ହେଉଛି ଶିକ୍ଷାର ପ୍ରାଣକେନ୍ଦ୍ର । Experience is the best of school masters, ଶିକ୍ଷା ହେଉଛି ଏକ ମାର୍ଜନ ପ୍ରକ୍ରିୟା । ଶିକ୍ଷା ଅଧ୍ୟୟନକୁ ମାର୍ଜିତ ଓ ସଂସ୍କୃତି ସଂପନ୍ନ କରେ, ମାନବିକ ମୂଲ୍ୟବୋଧର ବିକାଶ କରେ । ତେଣୁ ପାଶ୍ଚାତ୍ୟ ଶିକ୍ଷାର ତୁଂଗ ଆସ୍ଫାଳନକୁ ପରିତ୍ୟାଗ କରି ବିବେକାନନ୍ଦ, ରାମକୃଷ୍ଣ, ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଙ୍କ ପରି ମହାଜ୍ଞାନୀ ମାନଙ୍କର ଉପଦେଶ ଅନୁସରଣ କରିବା ଉଚିତ୍ । ନିଜ ଜନ୍ମ ଭୂମିର ନିଷ୍ଠାପର ସେବା ସମସ୍ତଙ୍କର ଧର୍ମହେବା ବିଧେୟ । ନୈତିକତା ଓ ମାନସିକ ମୂଲ୍ୟବୋଧର ଯେଉଁ ଅବକ୍ଷୟ ଘଟୁଛି ତାହା ଚିନ୍ତାଜନକ । ପାଶ୍ଚାତ୍ୟ ସଂସ୍କୃତିର ଆକ୍ରମଣରେ ଆମ ସଂସ୍କୃତିର ବିଲୟ ଘଟି ଚାଲିଥିବାବେଳେ ଆପଣଙ୍କ ଆତ୍ମଚରିତ ହେଉଛି ସେ ସମୟର ଜ୍ଞାନ ବିଜ୍ଞାନ ଓ ସାହିତ୍ୟର ଏକ ଚଳନ୍ତି ସଂସ୍କରଣ । ଆଜିର ଯୁବପିଢ଼ି ପାଖରେ ଧର୍ମ ଏକ ପୁରୁଣା କାଳିଆ ଜୀର୍ଣ୍ଣ ଅଭ୍ୟାସ । ତେଣୁ ପରିହାର୍ଯ୍ୟ । ନୀତି, ନୈତିକତା ସବୁ ଆପେକ୍ଷିକ । ତେଣୁ ସ୍ଥିତି, ବା ସମୟ ଅନୁସାରେ ପରିବର୍ତ୍ତନୀୟ । ମାନବିକ ମୂଲ୍ୟବୋଧ ଏକ ସଂପୂର୍ଣ୍ଣ ମୂଲ୍ୟହୀନ ଶବ୍ଦ । ଦୟା,କ୍ଷମା ଇତ୍ୟାଦି ମାନସିକ ଦୁର୍ବଳତାର ପରିପ୍ରକାଶ ମାତ୍ର । ଚମତ୍କାରିତା ସଂଧାନରେ ବାହାରିଥିବା ଆଜିର ଯୁବପିଢ଼ି କେବଳ ମୃଗତୃଷ୍ଣା ପଛରେ ଅନୁଧାବିତ । ଆପଣଙ୍କ ଭାଷାରେ

"ମନ୍ତ୍ରର ସାଧନ, ଶରୀର ପାତନ,
ଆଚରିବୁ କର୍ମେ ଏ ଋଷି ବଚନ
ନଶ୍ୱର ଜୀବନ କୀର୍ତ୍ତି ଅନଶ୍ୱର
ରଖିବାକୁ ସଦା ହୋଇବୁ ତତ୍ପର"
ପାଶ୍ଚାତ୍ୟ ଶିକ୍ଷାର ତୁଙ୍ଗ ଅଭିମାନ
ଶୃଙ୍ଗେ ଚଢି କିଂପା କର ଆସ୍ଫାଳନ ?

X X X X

ସଂସାର ଜଞ୍ଜାଳ ଗହନ କାନନେ
ଯେବେ ପଥଭ୍ରଷ୍ଟ ହୋଇବୁ ଜୀବନେ
ତୋର ଜନ୍ମଭୂମି ଉଜ୍ଜ୍ୱଳ ଆଲୋକ
ଗତିପଥେ ହେବ ପଥ ପ୍ରଦର୍ଶକ

-ଜନ୍ମଭୂମି

ଆଧୁନିକ ସଭ୍ୟତା ମନୁଷ୍ୟମାନଙ୍କ ଦ୍ୱାରା ପ୍ରସାରିତ ଓ କବଳିତ । ଆମର ସାଂସ୍କୃତିକ ପୁଞ୍ଜି ଓ ସାମାଜିକ ମୂଲ୍ୟବୋଧ ଆଜି ସଂପୂର୍ଣ୍ଣ ଆକ୍ରାନ୍ତ । ମୂଲ୍ୟବୋଧ ବିନା ସଂସ୍କୃତି ବନ୍ଧ୍ୟା । ତେଣୁ ମୂଲ୍ୟବୋଧ ଓ ସଂସ୍କୃତିର ଅନ୍ତରଙ୍ଗତା ଆମ ସଭ୍ୟତାର ମାପଦଣ୍ଡ ହେବା ବିଧେୟ । ଏହା ହିଁ ଥିଲା ଆପଣଙ୍କର ବାର୍ତ୍ତା ।

ଜନ୍ମଭୂମି ପ୍ରତି ପ୍ରଗାଢ଼ ଆବେଗ ଓ ଗ୍ରାମୀଣ ପରିବେଶ ଆପଣଙ୍କୁ ପ୍ରକୃତି ସହିତ ଆତ୍ମୀୟତା ସୃଷ୍ଟି କରିବାରେ ବହୁ ଭାବରେ ସହାୟକ ହୋଇଥିଲା ।

## ହେ ନମସ୍ୟ,

ଆପଣଥିଲେ ଶିକ୍ଷକ ସ୍ୱାଭିମାନର ଚଳମାନ ପ୍ରତୀକ, ଏକ ସଫଳ ଅନୁକରଣୀୟ ବ୍ୟକ୍ତିତ୍ୱର

ଅଧିକାରୀ । ଆମ ସ୍ୱର୍ଣିମ ସଂସ୍କୃତିର ଅସ୍ତିତ୍ୱ ଯେ କେତେ ପ୍ରାଚୀନ, ବିପୁଳ ମୌଳିକତାରେ ସମୃଦ୍ଧ ତାର ଅସ୍ମିତା, ଆଜିର ଯୁବପିଢ଼ି ତା ଜାଣିବା ଉଚିତ୍ । ସଂସ୍କୃତିରେ ଅଛି ଆମ ଅତୀତର ଅତୀତ । ଅଜସ୍ର ଅନୁଭବ ଓ ଅନୁଭୂତିର କଳ୍ପଚିତ୍ର । ଏହାକୁ ବାଦ୍ ଦେଇ ସମାଜର ପ୍ରଗତିର ଗତି ଅସମ୍ଭବ । ଏହା ଥିଲା ଆଜିର ଯୁବପିଢ଼ିଙ୍କୁ ଆପଣଙ୍କର ଆହ୍ୱାନ । କିନ୍ତୁ ଏ ଜାତିର ଅସାମାନ୍ୟ ମହାଗାଥାକୁ ଭୁଲି ଇଂରାଜୀ ପ୍ରଧାନ ପାଶ୍ଚାତ୍ୟ ଶିକ୍ଷାର ମୌଳିକତା ଭିତରେ ଆମ୍ଭର ଶିକ୍ଷା ଓ ଶିକ୍ଷାଳୟ ଗୁଡିକ ଆଜି ପିଞ୍ଜରାବଦ୍ଧ । ଶିକ୍ଷାଳୟ ଗୁଡିକହେଉଛି ଜ୍ଞାନ ଅନ୍ୱେଷଣର ଏକ ପ୍ରୟୋଗ ଶାଳା । ଶିକ୍ଷା କୌଣସି ଶାସନ ଶିକୁଳିରେ ଆବଦ୍ଧ ହେବା ଉଚିତ ନୁହେଁ । ଅପସଂସ୍କୃତିର ଦାବାନଳରୁ ମୁକ୍ତି ପାଇବା ପାଇଁ ସତ୍ୟ, ତ୍ୟାଗ, ନିଷ୍ଠା ଓ ସାଧନାର ମଳୟ ପବନ ବୁହାଇ ଚରିତ୍ର ଗଠନ ଓ ସମୃଦ୍ଧିର ତୁଙ୍ଗ ଶିଖରୀକୁ ଯିବାପାଇଁ ଦୃଢ଼ ସଂକଳ୍ପ ନେବାର ପ୍ରାଣକେନ୍ଦ୍ର ହେଉଛି ଆମର ଶିକ୍ଷାଳୟ । "ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହ"। ଆମକୁ ପରତିଅଣ ଭଲଲାଗେ, ଘର ତିଅଣ ରୁଚେନି । ଏହି ନ୍ୟାୟରେ ଆମେମାନେ ଆଜି ପରିଚାଳିତ । ସମାଜକୁ ଅଧିକମୁକ୍ତ ଓ ଉନ୍ମୁକ୍ତ କରିବା ଅର୍ଥନୁହେଁ ଆମର ଅତୀତର ସ୍ୱାଭିମାନ ଓ ସଂସ୍କୃତିକୁ ସଂପୂର୍ଣ୍ଣ ଭୁଲିଯିବା । ସ୍ୱଧର୍ମର ନିଷ୍ଠାପର ଅଭ୍ୟାସ ଏକ ନିରବଚ୍ଛିନ୍ନ ନିରନ୍ତର ପ୍ରକ୍ରିୟା । ସ୍ୱଧର୍ମରୁ ଆମେ କେତେ ଅତଳକୁ ଖସି ଆସିଛୁ ବୋଲି ଆମର ଏ ହାସ୍ୟାସ୍ପଦ ଦୂରବସ୍ଥା । ଆପଣଥିଲେ ଜଣେ ଶିକ୍ଷା ଓ ସଂସ୍କୃତି ଅନୁରାଗୀ ଚରିତ୍ର । ଏହହିଁ ଥିଲା ଆପଣଙ୍କର ଆଧୁନିକ ଶିକ୍ଷାକୁ ନେଇ ସ୍ୱକୀୟ ଚିନ୍ତାଧାରା ଓ ତଜ୍ଜନିତ ଦୁଖ । ଆପଣଙ୍କ ଶିକ୍ଷକ ସ୍ୱାଭିମାନ ଉପରେ ଏହାଥିଲା କୁଠାର ଘାତ । କ୍ଷଣିକ ଚାକଚକ୍ୟରେ ବିଭ୍ରାନ୍ତକାରୀ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ମରିଚିକା ପଛରେ ଧାବମାନ ହେବାର ପରିଣତି ଯେ ଦିନେ ଭୟଙ୍କର ହେବ, ଏକଥା ଆଜିର ଯୁବପିଢ଼ିଙ୍କୁ ଦୃଶ୍ୟମାନ ନହେଲେ ମଧ, ଆପଣଙ୍କର ଅଭିଜ୍ଞତା ଓ ଅନ୍ତଃଦୃଷ୍ଟି ବଳରେ ଆପଣ ଦେଖିପାରୁଥିଲେ, ଏବଂ ସେହିଯୋଗୁ କରାଳ ଗ୍ରାସୀ ପାଶ୍ଚାତ୍ୟାଭିମୁଖୀ ଶିକ୍ଷା ଓ ମାନସିକତାର ବିଲୋପ ସାଧନ ହିଁ ଆଜିର ଆହ୍ୱାନ ହେବା ଉଚିତ । ଚିନ୍ତାଶୀଳ ବ୍ୟକ୍ତି, ତଥା ରାଷ୍ଟ୍ରନାୟକ ଓ ସମାଜ ସଂସ୍କାରକ ମାନଙ୍କର ଗୁରୁଦାୟିତ୍ୱ ହେଲା ଆମ ସଂସ୍କୃତିର ସୌନ୍ଦର୍ଯ୍ୟ, ଐତିହ୍ୟ ଓ ସନାତନ ପରଫଂରାକୁ ପ୍ରତିକିତ କରି ଆଜିର ଯୁବପିଢ଼ି ଆଗରେ ଏକ ସକାରାତ୍ମକ ପ୍ରେରଣା ଓ ଆତ୍ମ ବିଶ୍ୱାସ ପ୍ରତିଷ୍ଠା କରି ଓଡ଼ଶାର ଜନଜୀବନକୁ ପ୍ରଭାବିତ କରିବା ।

ଆପଣଙ୍କର ଶିକ୍ଷା ଯେତିକି, ପ୍ରେରଣାଦାୟୀ ଥିଲା, ସେତିକି ସଚେତନତା ଉଦ୍ରେକକାରୀ ଥିଲା । ଜଣେ ନିଷ୍ଠାପର ଶିକ୍ଷକ ଭାବରେ ଆପଣଙ୍କର ଚରିତ୍ରର, ଆଦର୍ଶ, ମୂଲ୍ୟବୋଧ, ଅନନ୍ୟ ବର୍ଣ୍ଣ ବିଭବରେ ବିମଣ୍ଡିତ ଥିଲା ।

ଗ୍ରାମର ଯୁବକ ମାନଙ୍କ ପାଇଁ ଆପଣଙ୍କର ଆଭିମୁଖ୍ୟ ଆପଣଙ୍କ 'ଜନ୍ମଭୂମି' କବିତାରେ ପରିସ୍ଫୁଟ ।

"ଜନମଭୂମିର ପୂର୍ବସ୍ମୃତି ଭାଳି,<br>
ଚିନ୍ତାନଳେ ଆହା ହୃଦ ଯାଏ ଜଳି ।<br>
କବିକଥା ମନେହୁଅଇ ଉଦିତ,<br>
ଗଲାଣିତ ଗଲା କଥାରେ ସଂଗାତ ।<br>
ଯାଇଛି କର୍ପୂର ରହିଅଛି କନା,<br>
ବାୟକ ଗଲାଣି ପଡିଅଛି ବୀଣା ।<br>
ଯେ ଗ୍ରାମ କେଦାର ଚିର ସୁ ଶ୍ୟାମଳ,<br>
ଉପବନେ ଶୋଭେ ରମ୍ଭା ନାରିକେଳ ।

ତାର ସୁତେ କିଂପା କଟାନ୍ତି ଜୀବନ,
ମରୁଦେଶ ବାସୀ ଯାଯାବର ସମ ।"

- ଜନ୍ମଭୂମି

ଅର୍ଦ୍ଧଶତାବ୍ଦୀ ତଳର ମୋଗାଁ ଯେତିକି ସୁନ୍ଦର ଓ ସମୃଦ୍ଧ ଥିଲା ଆଜିତାହା ସ୍ମୃତି ହୋଇ ରହିଯାଇଛି । ଏହି ଭୂଖଣ୍ଡରେ ଦିନେ ପରମଜ୍ଞାନର ଅରୁଣୋଦୟ ଘଟିଥିଲା । ସତ୍ୟର ସଂଧାନ ବିନା ସୁଖର ସଂଧାନ ଏକ ଦିବାସ୍ୱପ୍ନ, ଏକ ବ୍ୟର୍ଥପ୍ରୟାସ । ଏହିଜ୍ଞାନ ଆମ ଚେତନାର ବ୍ୟବହାରିକ ସ୍ତରରେ ଉଦ୍‌ଭାସିତ ହେବା ଉଚିତ । ଏହା ହିଁ ଥିଲା ଆପଣଙ୍କର ଆମକୁ ଉପଦେଶ ।

ଦିନେ ଗାଁକୁ ଆସିଥିବା ସମୟରେ ଆପଣଙ୍କୁ ପଚାରି ଦେଇଥିଲି ଯେ ଚାକିରି ଜୀବନରେ ମୁଁ ଦେଖୁଛି ଦୁର୍ନୀତି କାୟା ବିସ୍ତାର କରି ରହିଛି । ମୁଁ ଦୁର୍ନୀତି ଠାରୁ ବହୁଦୂରରେ ଥିଲେ ମଧ୍ୟ ଏହାର ନିରାକରଣ ହେବ କିଭଳି ? ଦୁର୍ନୀତି ଉପରେ ଆପଣଙ୍କର ଆଭିମୁଖ୍ୟ ଥିଲା ଅତିସ୍ୱଷ୍ଟ ଓ ନିର୍ଭୀକ । କେବଳ ନିୟମ ସଶକ୍ତ ହେଲେ ଯେ ଦୁର୍ନୀତିର ବିଲୋପ ଘଟିବ ଏକଥା ଭ୍ରମାତ୍ମକ । ଆଇନ କୌଣସି ଯାଦୁର କାଉଁରି କାଠି ନୁହେଁ ଯେ ଏହା ଦୁର୍ନୀତିର ବିଷଚକ୍ରକୁ ଧ୍ୱଂସ କରି ଦେବ । ଦୁର୍ନୀତି ଏକ ସମାଜ ବିଜ୍ଞାନ ଓ ମନୋବିଜ୍ଞାନର ଶୈକ୍ଷିକ ପ୍ରକ୍ରିୟା । ଏହା ପ୍ରତିଷେଧକକୁ ଗୁରୁତ୍ୱ ନଦେଇ ଚିକିତ୍ସା ଭଳି ହେବ ସିନା ! ସମାଜରେ ନୈତିକତା, ମୁଲ୍ୟବୋଧ ଭିତ୍ତିକ ଶିକ୍ଷା ପ୍ରାରମ୍ଭିକ ସ୍ତରରୁ ଦିଆଯାଇ ଯୁବକମାନଙ୍କର ମାନସିକତାକୁ ସେହି ଦିଗ ମୁଖୀ କରି ପାରିଲେ ଦୁର୍ନୀତି ରାକ୍ଷସର ସଂହାର କରାଯାଇ ପାରେ । ମାଟିହାଣ୍ଡି ଗଢ଼ିବା ପରି ପିଲାମାନଙ୍କର ମାନସିକତାକୁ ପ୍ରାଥମିକ ସ୍ତରରୁ ସେହିଭଳି ଦୁର୍ନୀତି ବିରୋଧୀ ରୂପରେଖ ଦେବାକୁ ହେବ । ଆପଣ ଥିଲେ ଛାତ୍ରମାନଙ୍କର ମାନସିକତାକୁ ଦୁର୍ନୀତି ବିରୋଧି ଛାଞ୍ଚରେ ଗଢ଼ିବାର ଜଣେ ବିଚକ୍ଷଣ କୁମ୍ଭକାର । ଅବକ୍ଷୟ ହୋଇ ଆସୁଥିବା ଆମର ଦୁର୍ନୀତିମୁକ୍ତ ସମୃଦ୍ଧ ସଂସ୍କୃତିର ପୁନଃ ଅଭ୍ୟୁଦୟ ନହେଲେ ଏହାର ପରିଣତି ଦିନେ ଯେ ଭୟାବହ ହେବ ଏଥିରେ ସନ୍ଦେହ ନାହିଁ । ଆପଣ ଥିଲେ ଜଣେ ଦୁର୍ନୀତି ମୁକ୍ତ ଦୁର୍ଲ୍ଲଭ ବ୍ୟକ୍ତିତ୍ୱର ଅନନ୍ୟ ଉଦାହରଣ । ଅନୈତିକ ଉପାୟରେ ଧନ ଉପାର୍ଜନ କରିବା ଏକ "ଅନିୟନ୍ତ୍ରିତ ଲାଳସା" । ଆସକ୍ତି ଓ ଲୋଭର ଦୁର୍ନିର୍ବାର ସ୍ରୋତ ଭିତରେ ଓ ସମୟର ଘୂର୍ଣି ମଧ୍ୟରେ ଆଜି ବଦଳି ଯାଇଛି ସାଧୁତାର ରୂପ ଓ ପରିଭାଷା ।

ଅର୍ଥକରୀ ଚାକିରିର ଯାଦୁକରୀ ମୋହରେ ବିବେକ ଓ ବିଚାରର ମହକ ଆଜି ମଉଳି ଯାଇଛି । ତେଣୁ ମଣିଷର ଯାନ୍ତ୍ରିକ ଜୀବନ ଭିତରେ ବିବେକ ଓ ବିଚାରର ପୁନଃ ଅଭ୍ୟୁତ୍‌ଥାନ ପାଇଁ ଆମେ ଚେଷ୍ଟିତ ନହେଲେ ଏହାର ସୁଦୂର ପ୍ରସାରୀ କୁ ପ୍ରଭାବର ଦିନେ ନା ଦିନେ ଶିକାର ହେବା ଏଥିଲା ଆଜିର ଯୁବସମାଜକୁ ଆପଣଙ୍କର ସାଙ୍କେତିକ ଚେତାବନୀ । ତେଣୁ ସମୟ ଥାଉ ଥାଉ ନୀତି, ଆଦର୍ଶ ଓ ବିବେକର ବଂଧନରେ ନିଜକୁ ବାଂଧିରଖି ନିଜର ଅତୀତ ଗୌରବକୁ ପ୍ରକ୍ଷାଳନ କରି କ୍ଷଣଭଂଗୁର ପାଶ୍ଚାତ୍ୟ ସଂସ୍କୃତିର ଘାତଚନ୍ଦ୍ର ଦ୍ୱାରା ସର୍ବହରା ନହେବା ପାଇଁ ଯୁବପଢ଼ିକୁ ଏଥିଲା ଆପଣଙ୍କର ଅମୂଲ୍ୟ ସନ୍ଦେଶ । ଦୁର୍ନୀତିର ଶିକୁଳିକୁ ଛିଡାଇବା ପାଇଁ ଓ ହଜାର ହଜାର ବର୍ଷର ଏକ ପ୍ରାଣବନ୍ତ ସଂସ୍କୃତି ସଂପନ୍ନ ଜାତିକୁ ଦୁର୍ନୀତିର ବିଷାକ୍ତ ଲହରୀର ଆଘାତ ରେ ପକ୍ଷାଘାତ ରୋଗରୁ ରକ୍ଷା କରିବା ପାଇଁ ନୈତିକ ଓ ମୂଲ୍ୟ ବୋଧ ଭିତ୍ତିକ ଶିକ୍ଷା ହିଁ ଏକମାତ୍ର ଶାଣିତ ଅସ୍ତ୍ର । ଏହାଥିଲା ଆପଣଙ୍କ ପ୍ରିୟ ଛାତ୍ର ମାନଙ୍କୁ ନୀତିଶିକ୍ଷା । କର୍ମଫଳ

ଅନିର୍ବାର୍ଯ୍ୟ ଜାଣିସୁଦ୍ଧା କେଉଁ ଅପଶକ୍ତି ପ୍ରଭାବରେ ଆମେ ସେ ସତ୍ୟ ଉପେକ୍ଷା କରି ନିତ୍ୟ ନୂତନ ଦୁର୍ନୀତିରେ ବ୍ୟାପୃତ ରହୁଛି, ଆମ ଆଗରେ ଏକ ପରେ ଏକ ଦୁର୍ନୀତି, ମହାକାଳର ତର୍ଜନୀ ଚାଳନାରେ ଭୁଶୁଡି ପଡୁଥିବା ସତ୍ତ୍ୱେ । ଲାଭ ଓ ଲୋଭର ତତଲା କଡେଇରେ ଭାଜି ନହୋଇ ସତ୍ୟର ସଂଧାନ କରିବା ଜରୁରୀ । ଆଜିକାଲି ଦୁର୍ନୀତି ଆମର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଯାଇଛି । କେବଳ ରାଜନୈତିକ ଓ ସରକାରୀ କର୍ମଚାରୀ ଦୁର୍ନୀତିକୁ ଆମେ ଦୁର୍ନୀତି ବୋଲି ଭାବୁଛେ କିନ୍ତୁ ଦୁର୍ନୀତି ଆମ ଭିତରେ ଓ ସବୁ ସ୍ତରରେ ବିଦ୍ୟମାନ ଅଛି । ଅସାଧୁତା, ଟଙ୍କା ହେରଫେର କେବଳ ଦୁର୍ନୀତି ନୁହେଁ । କାମରେ ଠକାମୀ ଠାରୁ ଆରମ୍ଭ କରି କଥା ନରଖିବା, ମିଛ କହିବା, ସମୟାନୁବର୍ତ୍ତୀ ନହେବା, ଇତ୍ୟାଦି ସବୁକିଛି ଦୁର୍ନୀତି ଭିତରେ ଅନ୍ତର୍ଭୁକ୍ତ ।

**ହେ ମହାତ୍ମନ,**

ଆପଣ ଏକାଧାରରେ ଥିଲେ ଜଣେ ଉଚ୍ଚକୋଟିର ଶିକ୍ଷାବିତ, ଏକ ଅଜାତଶତ୍ରୁ ମଣିଷ । ଆପଣଥିଲେ ଗୁରୁବର୍ଗର ଭୀଷ୍ମ ପିତାମହ । ଆପଣ ଥିଲେ ଏକରେ ଅନେକ ଓ ଅନେକରେ ଏକ, ସଂକୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ, ବଡ ପ୍ରଶସ୍ତମାନ ଥିଲା ଆପଣଙ୍କ ହୃଦୟ । ଆପଣଙ୍କର ଶିକ୍ଷକ ସୁଲଭ ସ୍ୱାଭିମାନ, ସୁଚରିତ୍ର ତଥା ଗରିମା ସର୍ବଦା ଗୁରୁଗୌରବର ପ୍ରତିବିମ୍ୱ ସାଜି ଛାତ୍ର ସମାଜକୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରୁଥିବ । ଆପଣଙ୍କର ସରଳ, ନିରାଡମ୍ବର ଓ କର୍ତ୍ତବ୍ୟରେ ନିଷ୍ଠା ଓ ଦିଗଦର୍ଶୀ ମାନବିକ ଚିନ୍ତା ଧାରା ଯୋଗୁ ଆପଣ ଥିଲେ ଯଥାର୍ଥରେ ଜଣେ ସଫଳ ଆଚାର୍ଯ୍ୟ ଯାହାକି ଆପଣଙ୍କର ବୌଦ୍ଧିକ ଉତ୍କର୍ଷକୁ ମହିମାମଣ୍ଡିତ କରୁଥିଲା ଓ ଛାତ୍ର ମାନଙ୍କ ମାନସରେ ଦେବତୁଲ୍ୟ ଆସନ ଦେଇଥିଲା । ଆପଣଥିଲେ ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ, ଛାତ୍ର ଓ ଶିକ୍ଷକ ସମାଜରେ ଏକ ସମ୍ମାନାସ୍ପଦ ନାମ, ଏକ ଦୀପ୍ତିମନ୍ତ ନକ୍ଷତ୍ର । ସମସ୍ତଙ୍କ ସହ ବ୍ୟକ୍ତିଗତ ନିବିଡ ସଂପର୍କଯୋଗୁଁ ଆପଣ ସେମାନଙ୍କ ହୃଦୟ ସିଂହାସନରେ ଅଧିଷ୍ଠିତ ଥିଲେ । ଆପଣ କେବଳ ୪୫ ମିନିଟର ଶ୍ରେଣୀ ଶିକ୍ଷକ ନଥିଲେ ବରଂ ଜୀବନର ବିସ୍ତୃତ ପ୍ରାଙ୍ଗଣରେ ଏକ ଯଥାର୍ଥ ଶିକ୍ଷକ ଦାୟିତ୍ୱ ନିଭାଉ ଥିଲେ । ଆପଣ ଥିଲେ ଶିକ୍ଷାଦାନ ଓ ଚରିତ୍ର ଗଠନର ଏକ ଅନୁପମ ରତ୍ନ, ଆଧ୍ୟାତ୍ମିକତାରେ ଅଦ୍ୱିତୀୟ ଆର୍ଷପ୍ରାଣ, ବକ୍ତୃତାରେ ଅନୁକରଣୀୟ; ଏକ ଶାନ୍ତ, ମଧୁର, ଚିତ୍ତ ଆଲୋଡନକାରୀ ଦିଗଦ୍ରଷ୍ଟା । ଆପଣଥିଲେ ତତ୍‌କାଳୀନ ଶିକ୍ଷକ ସମାଜ ପାଇଁ ଏକ ଦର୍ପଣ ଓ ଚମତ୍କାର ପରିମାପକ । ଲେଖିବାରେ, ପଢ଼ାଇବାରେ ବିଷୟ ବିଶ୍ଳେଷଣରେ ବଂଧୁ ପଣରେ ଓ ଛାତ୍ର ବତ୍ସଳତାରେ ଆପଣ ଥିଲେ ଅଦ୍ୱିତୀୟ ମଣିଷ ଏହା ଯେ କେହି ସ୍ୱୀକାର କରିବେ । ଶିକ୍ଷା, ସଂସ୍କୃତି, ସଭ୍ୟତା, ସାହିତ୍ୟର ଅକଳନ ବିଭବ ବିଚିତ୍ରା, ଅଜ୍ଞାତକୁ ଜାଣିବା ଦିଗରେ ମନୁଷ୍ୟର ଦୁଃସାହସିକ ଅଭିଯାତ୍ରାର ପରିଣତି ଦିନେ ସମାଜପ୍ରତି ଆଗାମୀ ଦିନରେ ଶୁଭଙ୍କର ହେବ ନିଶ୍ଚୟ, ଏହା ଥିଲା ଆପଣଙ୍କର ନିର୍ଯ୍ୟାସ ।

**ହେ ସନ୍ତାନ ବତ୍ସଳ,**

ଆପଣଙ୍କର ମୃତ୍ୟୁ ମୋ ପାଇଁ ଏକ ଅଲୌକିକ ଘଟଣା ଥିଲା । ସେଦିନ ପବିତ୍ର ଗହ୍ମାପୂର୍ଣ୍ଣିମା । ଘରେ ପର୍ବ, କିନ୍ତୁ ଜିଲ୍ଲାପାଳଙ୍କର ନିର୍ଦ୍ଦେଶରେ ମୋତେ ଏକ ସୁଦୂର ସ୍ଥାନକୁ ଗୋଟିଏ ଜରୁରୀ କାର୍ଯ୍ୟରେ ଯିବାର ଥିଲା । ସ୍ଥାନଟି ଘରଠାରୁ ୭୦ କି.ମି ବାଟ ଏକ ଆଦିବାସୀ ବହୁଳ ଗାଁ । ସକାଳ ୭ଟାରୁ ମୁଁ ପ୍ରସ୍ତୁତ ହୋଇ ଗାଡ଼ିରେ ବସି ସାରିଥିଲି । ଡ୍ରାଇଭର ଗାଡ଼ି

ଷ୍ଟାର୍ଟ କରି ଦେଇଥିଲା । ହଠାତ୍ ମୋତେ ଭୟଙ୍କର ଶୀତ ଓ କମ୍ପ ଆସି ୧୦୩° ଜ୍ୱରରେ ମୁଁ ଆକ୍ରାନ୍ତ ହୋଇ ପଡ଼ିଲି । ଡ୍ରାଇଭର ମୋତେ ଆଣି ଘରେ ଶୁଆଇ ଦେଇ ଡ଼ାକ୍ତର ଡ଼ାକିବାକୁ ଗଲା । ତେଣେ ଉପବାଚସ୍ପତି ମହୋଦୟ ତାଙ୍କ ଘରେ ମୋତେ ଖାଇବାକୁ ନିମନ୍ତ୍ରଣ କରିଥିଲେ । ସାଙ୍ଗ ହୋଇ ଆମର ସେ ଗାଁକୁ ଯିବାର ଥିଲା । ଦୁଃଖର ସହ ମୁଁ ଯାଇପାରୁ ନାହିଁ ବୋଲି ଜଣାଇ ଦେଇ ଶ୍ରୀ ଜଗନ୍ନାଥଙ୍କର ଜଣାଣ ଶୁଣି ଶୁଣି ଚୈତ୍ର ମାସରେ ରେଜେଇ ଘୋଡ଼ି ହୋଇ ସେହି ପ୍ୟାଣ୍ଟ ସାର୍ଟ ପିନ୍ଧି ଶୋଇଗଲି । ଶ୍ରୀ ଜଗନ୍ନାଥଙ୍କ ଜଣାଣ ସକାଳୁ ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଆପଣଙ୍କ କର୍ଣ୍ଣ କୁହରକୁ ପବିତ୍ର କରିଥିବ । ଆପଣ ଶୋଇଥିଲେ ମୋର ପାଖ ରୁମ୍‌ରେ । ଯଦି ମୁଁ ଯାଇଥାଆନ୍ତି ତେବେ ଆପଣଙ୍କ ଶେଷ ନିଶ୍ୱାସତ୍ୟାଗ ବେଳେ ଉପସ୍ଥିତ ରହି ପାରିନଥାନ୍ତି ।

ମୁଁ ଜାଣିପାରିନଥିଲି ଯେ ସେଦିନ ଆପଣଙ୍କର ଆମ ସହ ଶେଷ ଦିନ ବୋଲି । ଘରେ ମୋର ଉପସ୍ଥିତି ଯେ ବିଧି ନିର୍ଦ୍ଦେଶିତ, ଈଶ୍ୱରଙ୍କର ଇଚ୍ଛା, ଏହା ମୁଁ ବା ଜାଣିବି କିପରି ? ସେଦିନ ଆପଣଙ୍କର ବାରମ୍ବାର ମୋର ଛୋଟ ଛୋଟ ପିଲାଙ୍କ ସହ ମିଶିବା ଏକ ଅପ୍ରତ୍ୟାଶିତ ଘଟଣା ଥିଲା । ଚାଲିଯିବାକୁ ସବୁ ପ୍ରସ୍ତୁତି ବୋଧହୁଏ କରି ଚାଲିଥିଲେ ସମସ୍ତଙ୍କ ଅଜାଣତରେ । ମାସକ ପୂର୍ବରୁ ଜନ୍ମିତ ଝିଅ ବିଷୟରେ ଯେତେବେଳେ ଆପଣଙ୍କୁ ଅବଗତ କଲି ସ୍ମିତ ହାସ୍ୟର ସହ କହିଥିଲେ ତା ନାମ ଦେବୁ 'ମନୋରମା' । ପୁରୀର ମନୋରମା ନାନୀଙ୍କ ପ୍ରତି ଥିବା ଅନାବିଳ କନ୍ୟାସୁଲଭ ସ୍ନେହ ବୋଧହୁଏ ଥିଲା ଏହାର କାରଣ । ଝିଅର ଆଗମନକୁ ବୋଧହୁଏ ଆପଣ ଅପେକ୍ଷା କରିଥିଲେ ।

ସଂଧ୍ୟା ୪ଟା ବେଳକୁ ବୋହୂ ଠାରୁ ଖବର ପାଇ ସେହି ରୁଗ୍ଣ ଶରୀରରେ ମୁଁ ଦଉଡ଼ି ଯାଇଥିଲି ଆପଣଙ୍କ ଶେଯ ପାଖକୁ, ମୋତେ ଚାହିଁଦେଇ ବ୍ରେନ୍‌ଷ୍ଟ୍ରୋକ୍ ଯୋଗୁଁ କଥା କହି ପାରିନଥିଲେ । କହିଥିଲେ ବୋଧ ହୁଏ କହିଥାଆନ୍ତେ "ଆଜି ଗାଁକୁ ନେଇଚାଲ" । ଗଙ୍ଗାଜଳ ଟିକିଏ ଢ଼ୋକିବାର ପରକ୍ଷଣରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଆଖିପିଛୁଳାକେ ପଞ୍ଚଭୂତରେ ବିଲୀନ ହୋଇଗଲା ଆପଣଙ୍କର ପାର୍ଥୀବ ଶରୀର । ସାଗରର ସଂଗମ ଲାଭକରିବା ପାଇଁ କୂଳ ଲଂଘି ଧାଇଁ ଚାଲିଥିବା ସ୍ରୋତସ୍ୱିନୀପରି ଆପଣଙ୍କର ଅବିନାଶୀ ପବିତ୍ର ଆତ୍ମାଧାବମାନ ହେଲା ପରମାତ୍ମା ସହିତ ଲୀନ ହୋଇ ନିଜର ଧର୍ମ ରକ୍ଷା ପାଇଁ । ଆପଣ ଚାଲିଗଲେ ସତ, କିନ୍ତୁ ସୃଷ୍ଟି କରି ଦେଇଗଲେ ଆମ୍ଭମାନଙ୍କ ଜୀବନରେ ଏକ ଅପୂରଣୀୟ ଶୂନ୍ୟସ୍ଥାନ । ଶୂନ୍ୟସ୍ଥାନ ସ୍ନେହ, ମମତା ଓ ନିଃସର୍ତ୍ତ ଭଲ ପାଇବାର । ପିତୃ ବିଚ୍ଛେଦ ଜନିତ ଏହି ଶୂନ୍ୟସ୍ଥାନ କୌଣସି ପଦ ପଦବୀ, ବିପୁଳ ଐଶ୍ୱର୍ଯ୍ୟ ବା ପ୍ରତିପତ୍ତି ଦ୍ୱାରା ପରିପୂରିତ ହୋଇପାରେ ନାହିଁ । ଏହା ସର୍ବଦା ଅପୂରଣୀୟ । ଏହା ହିଁ ବାସ୍ତବତା । ଏ ଦୁଃଖ ଓ ସ୍ୱାମୀ ବିଚ୍ଛେଦର ଧକ୍କାକୁ ଗାଁରେ ଆପଣଙ୍କ ବାଟକୁ ଚାତକ ପରି ଚାହିଁ ରହିଥିବା ମୋର ପତିବ୍ରତା ବୋଉ ଯେ କିପରି ସହ୍ୟ କରିବ ମୁଁ ସନ୍ଦିହାନ ଥିଲି । ଗାଁକୁ ନନେଇ ପାରିବାର ଅବଶୋଷ ଓ ଅନୁତାପର ବହ୍ନିରେ ମୁଁ ଦଗ୍ଧୀଭୂତ ହୋଇଚାଲିଛି ଆଜୀବନ । ଭୁବନେଶ୍ୱରରୁ ବ୍ରହ୍ମପୁର ଆଣିବା ସମୟରେ ମୁଁ ଆପଣଙ୍କୁ ମିଛ କହିଥିଲି । ଆପଣଙ୍କର ଅନୁଶାସନ ଓ ଉପଦେଶ ଅନିଚ୍ଛାକୃତ ଭାବେ ଉଲଂଘନ କରିଥିଲି । 'ଆମେ ଗାଁକୁ ଯାଉଛେ' ବୋଲି କହି ନେଇ ଆସିଥିଲି ମୋର କର୍ମସ୍ଥଳୀକୁ, ଆପଣଙ୍କର ଗାଁକୁ ଯିବାର ପ୍ରବଳ ଆସକ୍ତି

ଓ ଆବେଗର ସୁଯୋଗ ନେଇ । ସେଠାରେ ପହଁଞ୍ଚି, ଘରଦେଖି "ଏଇଟା ତ ଆମ ଗାଁ ନୁହେଁ କି ଆମ ଘର ନୁହେଁ ବୋଲି କହି ମୋତେ କାଲି ଗାଁ ରେ ଛାଡ଼ି ଦେବୁ ବୋଲି କହିଥିଲେ । ସେହିଦିନଠାରୁ "ମୁଁ କାଲି ଗାଁରେ ଛାଡ଼ିଦେବି" ବୋଲି ଆପଣଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ମିଛ ସାନ୍ତ୍ୱନା ଦେଇ ଆସୁଥିଲି । "ଜୀବନରେ ମିଛ କହିବୁନି, ମିଛ କହିବା ମହାପାପ"ର ଉପଦେଶ ଓ ଅଲଂଘନୀୟ ଅନୁଶାସନକୁ ରକ୍ଷା କରିନପାରି ଶେଷରେ ଆପଣଙ୍କ ଆଗରେ ମିଛ କହିବାକୁ ପରିସ୍ଥିତି ମୋତେ ବାଧ କରିଥିଲା । ମନେପଡୁଥିଲା ଆପଣ ମୋତେ ପିଲାଦିନେ ପଢ଼ାଇଥିବା "ସତ କହିବାକୁ କିଆଁ ଡରିବି... ?" ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ" । କିନ୍ତୁ ମୁଁ ଆଜି କଲି କ'ଣ ? ଏହାର ନଗ୍ନ ଉଲଂଘନ । ଅନନ୍ୟୋପାୟ ହୋଇ ନିଃସହାୟ ଭାବେ ଆପଣ ଗାଁ କୁ ନଯାଇ ପାରିବାର ମାନସିକ ଯନ୍ତ୍ରଣା ପ୍ରତି ମୁହୂର୍ତ୍ତରେ ଭୋଗ କରୁଛନ୍ତି ବୋଲି ମୋତେ ଅନୁଭବ ହେଉଥିଲା । କିନ୍ତୁ ମୁଁ ଥିଲି ଉପାୟହୀନ । ଗାଁରେ ବୋଉର ଶାରୀରିକ ଅସୁସ୍ଥତା ସାଙ୍ଗକୁ ଭାଇନାଙ୍କର ପାଗଳାମି ନିୟନ୍ତ୍ରଣ ବାହାରେ ଥିଲା । ଏ ପରିସ୍ଥିତିରେ ଆପଣଙ୍କର ଅସ୍ଥିର ମାନସିକ ଅବସ୍ଥା ଓ ଶାରୀରିକ ଅସୁସ୍ଥତା ଆପଣଙ୍କୁ ଗାଁରେ ଛାଡ଼ିଦେବା ପାଇଁ ମୋର ପଥରୋଧ କରିଥିଲା । ଏଥିପାଇଁ ବିବେକର ଶତ ବୃଶ୍ଚିକ ଦଂଶନରେ ମୁଁ ଆଜି ବି ଦଂଶିତ । ଗାଁକୁ ଯିବାର ଅଦମନୀୟ ଇଚ୍ଛାକୁ ପୂରଣ କରିବା ପାଇଁ ଆପଣଙ୍କ କହିବାରେ ନଥିଲା ସେ ଶାଣିତ ନିର୍ଦ୍ଦେଶ, ବରଂ ଏକ ନିରୁପାୟ ଅସହାୟ ବାପାର ପୁତ୍ର ପାଖରେ ବିକଳ ନିବେଦନ । କିନ୍ତୁ ପରିସ୍ଥିତି ମୋତେ କଠୋର କରିଥିଲା ଯାହାକି ଏକ ପୁତ୍ର ହିସାବରେ ମୋର କର୍ତ୍ତବ୍ୟ ବିରୋଧୀ ଥିଲା । ଏହା ଥିଲା ମୋର ଅକ୍ଷମଣୀୟ ଅପରାଧ ନିଶ୍ଚୟ ।

ମୃତ୍ୟୁର ପୂର୍ବଦିନ ରାତିରେ ମନକୁ ମନ କହି ହେଉଥିବା 'କାଲି ମୁଁ ଗାଁ କୁ ନିଶ୍ଚିତ ଯିବି, ମୋତେ କେହି ରଖିପାରିବେନି", ମୁଁ ଶୁଣିଛି । ମୋର ଉପସ୍ଥିତିରେ ହଠାତ୍ ସଚେତନ ହୋଇପଡ଼ିଥିଲେ ଓ "ମୋତେ କାଲି ନିଶ୍ଚିତ ତୁ ଗାଁକୁ ନେଇଯିବୁ, ଆଉ ରଖି ପାରିବୁନି" ବୋଲି ନିର୍ଦ୍ଦେଶଦେବା ଶେଷରେ ଏହି ନିଷ୍ଠୁର ସତ୍ୟରେ ପରିଣତ ହେଲା । ଗାଁକୁ ନେଲି ସତ, ଆଉ ରଖିପାରିଲିନି, କିନ୍ତୁ ମୋର ମିଛ ପ୍ରତିଶ୍ରୁତି ଯୋଗୁଁ ନୁହେଁ, ଏହା ଥିଲା ବିଧି ନିର୍ଦ୍ଧାରିତ । ଏହାହିଁ ମୋର ଅବଶୋଷ । ମିଛ କହିବାର ମହାପାପ ଯୋଗୁଁ ପୁତ୍ରର ଶେଷ କର୍ତ୍ତବ୍ୟ ଆପଣଙ୍କ ତୁଣ୍ଡରେ ଶେଷ ଢ଼ୋକ ପାଣି ଦେବାରୁ ଈଶ୍ୱର ମୋତେ ବଂଚିତ କଲେ । ଆପଣଙ୍କ ବୋହୂ ଆପଣଙ୍କ ତୁଣ୍ଡରେ ଶେଷ ପାଣି ଦେଇଥିଲେ ଯଦିଓ ମୁଁ ସେଠାରେ ଉପସ୍ଥିତ ଥିଲି । ଏହାହିଁ ଥିଲା ବୋଧହୁଏ ମୋର ମହାପାପର ପ୍ରାୟଶ୍ଚିତ୍ତ । ପିତା ହିସାବରେ ଆପଣଙ୍କର ଏ ଅଧମ ନିରୁପାୟ ଅକ୍ଷମଣୀୟ ଅପରାଧୀ ପୁତ୍ରକୁ କ୍ଷମା କରିବେ ।

ଆପଣଥିଲେ ଜଣେ ନିଃସ୍ୱାର୍ଥପର ସମାଜସେବୀ । ଆପଣଥିଲେ ଗ୍ରାମ ସମବାୟ ସମିତିର ଜନ୍ମଦାତା, ପ୍ରତାପରାମଚନ୍ଦ୍ରପୁର ହାଇସ୍କୁଲ୍‌ର ପ୍ରାଣ ପ୍ରତିଷ୍ଠାତା ! ଏକ ଏମ.ଇ ସ୍କୁଲ୍‌ର ମହାବୀଜ ବପନ କରି ଶୁଭାରମ୍ଭ କରିଥିବା ଶିଶୁ ଅନୁଷ୍ଠାନଟି ଆଜି ଏକ ମହାଦ୍ରୁମରେ ପରିଣତ ହୋଇ ତାର ଶାଖା ପ୍ରଶାଖା, ସେ ଅଞ୍ଚଳର ଶହ ଶହ ଛାତ୍ର ଛାତ୍ରୀଙ୍କର ଉଜ୍ଜ୍ୱଳମୟ ଭବିଷ୍ୟତ ଗଠନ କରୁଛି । ଅସହାୟ ବ୍ୟାଧିଗ୍ରସ୍ତ ଲୋକ ମାନଙ୍କୁ ମାଗଣାରେ ହୋମିଓପାଥିକ୍ ଔଷଧ ବିତରଣ କରି ନିଜ ମହନୀୟତାର ପରିଚୟ ଦେଉଥିଲେ । ଆପଣଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର

ଅବତାରଣା ମୋର ଭାଷା ଓ ଧୈର୍ଯ୍ୟର ପରିସର ବାହାରେ । ଆପଣ ଥିଲେ ଜଣେ ଦରଦୀ ମଣିଷ । ନିଷ୍ଠାପର ସମାଜସେବୀ । ଦରିଦ୍ର ଛାତ୍ର ଛାତ୍ରୀମାନଙ୍କ ପାଇଁ ଆପଣଙ୍କ ଦରଦୀ ହୃଦୟ ଯେ କିପରି ଉନ୍ମୁକ୍ତ ଥିଲା ତା ମୁଁ ଆଗରୁ ଲେଖିଛି । ଆପଣଙ୍କର ଜୀବନଥିଲା ଆଦର୍ଶମୟ । ଏକ ସୁସ୍ଥ, ସରସ ସୁନ୍ଦର, ଭିତ୍ତିପ୍ରଦ ଶିକ୍ଷା ଓ ଆଦର୍ଶ ସମାଜ ଗଠନ କରିବା ଥିଲା ଆପଣଙ୍କ ଆଦର୍ଶ ।

## ହେ ମହାଗୁରୁ,

ଆପଣ ଥିଲେ ଜଣେ ଆଦର୍ଶ ଶିକ୍ଷକ, ବିଭିନ୍ନ ଦେବଦୁର୍ଲଭ ଗୁଣ ସମ୍ଭାରରେ ବିମଣ୍ଡିତ । ଛାତ୍ର ଛାତ୍ରୀ ମାନେ କିପରି ଆତ୍ମବିଶ୍ୱାସର ସହ ପରୀକ୍ଷା ହଲ୍‌କୁ ପ୍ରବେଶ କରିବେ ଏହାଥିଲା ଆପଣଙ୍କର ଲକ୍ଷ୍ୟ ଓ ପାଠ ପଢ଼ାଇବାର ସ୍ୱତନ୍ତତା । ଆପଣଙ୍କ ଚେତନାରେ ଏକ ଆଦର୍ଶ ଶିକ୍ଷକର ଦୃଷ୍ଟିଭଙ୍ଗୀ ଥିବାବେଳେ ହୃଦୟରେ ଥିଲା ଅତୁଳନୀୟ ମାନବିକ ସମ୍ବେଦନ । ସ୍କୁଲର ପ୍ରଧାନ ଶିକ୍ଷକଙ୍କଠାରୁ ଆରମ୍ଭକରି ପ୍ରାୟ ୯୦/୯୫ ଭାଗ ଶିକ୍ଷକ ଥିଲେ ଆପଣଙ୍କର ଛାତ୍ର ଓ ପରବର୍ତ୍ତୀ ଅବସ୍ଥାରେ ସହକର୍ମୀ । ମନେ ପଡେ ଗୋଟିଏ ଦିନର ଘଟଣା । ପ୍ରଧାନ ଶିକ୍ଷକ ଭାବେ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ପୃଷ୍ଟି ଯେଉଁଦିନ ବିଦ୍ୟାଳୟରେ ଯୋଗଦାନ କରିବା ପାଇଁ ଆସିଥିଲେ ସେଦିନ ସବୁଶିକ୍ଷକ ଓ ଛାତ୍ରଙ୍କ ଗହଣରେ ଆପଣଙ୍କୁ ଦେଖି ଯେପରି ସମ୍ମାନିତ କରିଥିଲେ, ତାହା ଅତୁଳନୀୟ । ସେଥିଲେ ଆପଣଙ୍କର ଛାତ୍ର । ଆପଣଙ୍କ ଉପରେ ଦୃଷ୍ଟି ପଡିବା କ୍ଷଣି ସେ ସିଧା ଆସିଥିଲେ ଆପଣଙ୍କ ନିକଟକୁ । ନିଜକୁ ଆପଣଙ୍କର ଜନୈକ ଛାତ୍ର ବୋଲି ପରିଚୟ ଦେଇ ସସମ୍ମାନେ ପ୍ରଣିପାତ କରି ଆପଣଙ୍କର ଆଶୀର୍ବାଦ ଭିକ୍ଷା କରିଥିଲେ ପ୍ରଧାନ ଶିକ୍ଷକଙ୍କ ଆସନରେ ଆସୀନ ହେବା ପୂର୍ବରୁ । ଛାତ୍ର ସବୁବେଳେ ଛାତ୍ର ଓ ଶିକ୍ଷକ ସବୁବେଳେ ଶିକ୍ଷକ । ଏହାହିଁ ଆମର ଗୌରବାବହ ସଂସ୍କୃତି । କୌଣସି ପଦପଦବୀ, ଧନୀ, ନିର୍ଦ୍ଧନର ବହୁ ଉର୍ଦ୍ଧ୍ୱରେ ଏ ସଂପର୍କର ପବିତ୍ରତା । ସେହିଦିନ ଉପସ୍ଥିତ ଶିକ୍ଷକ, ଛାତ୍ରଛାତ୍ରୀ ଦେଖିଥିଲେ ଗୁରୁ ଗୌରବର ସ୍ୱର୍ଣ୍ଣାଭ ପରମ୍ପରା, ଛାତ୍ର-ଶିକ୍ଷକଙ୍କର ଶାଶ୍ୱତ ସଂପର୍କ ଯାହାକୁ କୌଣସି ପରିମାପକରେ ତଉଲି ହୁଏ ନାହିଁ ।

## ହେ ପ୍ରଜ୍ଞାବାନ,

ଆପଣଥିଲେ ଜଣେ ଦୂରଦୃଷ୍ଟି ସଂପନ୍ନ, ବିଚାରବନ୍ତ, ସ୍ଥିତପ୍ରଜ୍ଞ, ତପସ୍ୱୀ ସଦୃଶ । ମୋର ବିବାହ ମଧ୍ୟ ଆପଣ ଅପ୍ରତ୍ୟାଶିତ ଭାବେ ନିର୍ଣ୍ଣୟ କରିଦେଇଥିଲେ । ବୋହୂଠିକ୍ କରିବାରେ ଆପଣ କାହାକୁ ସ୍ୱାଧୀନତା ଦେଇନଥିଲେ । ନା ମୋତେ, ନା ବୋଉକୁ, ନା ମୋର ପିତୃ ମାତୃ ପ୍ରତିମ ବଡ ଭିଣୋଇ କି ବଡନାନୀ ଓ ରମିନାନୀକୁ । ମୋର ଭାଣେଜୀନୀଲାର ଆପଣଙ୍କ ଭାବୀ ବଧୂର ଏକ ପ୍ରସ୍ତାବରେ ଆପଣ ଏକା ଏକା ଯାଇଥିଲେ ମୋର ଭାବୀ ଶ୍ୱଶୁରାଳୟକୁ କନ୍ୟା ଦେଖିବା ପାଇଁ । ସେଠାରେ ଜାଣିବାକୁ ପାଇଥିଲେ ଯେ ମୋ ଭାବୀଶ୍ୱଶୁର ଆପଣଙ୍କର ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଛାତ୍ର ଥିଲେ । ବାଲ୍ୟ ଜୀବନରୁ ପିତୃ ମାତୃହୀନ ହୋଇ, ଦାରିଦ୍ର୍ୟ ସହ ନିରନ୍ତର ସଂଗ୍ରାମ କରି ସେ ରେଭେନ୍ସା କଲେଜରୁ B.Sc. B.Ed ଉତ୍ତୀର୍ଣ୍ଣ ହୋଇ କ୍ୟାପିଟାଲ ଉଚ୍ଚବିଦ୍ୟାଳୟରେ ଜଣେ ଆଦର୍ଶଶିକ୍ଷକ ହିସାବରେ ସୁନାମ ଅର୍ଜନ କରିଥିଲେ । ଏପରି ଜଣେ ଆଦର୍ଶସ୍ଥାନୀୟ ବ୍ୟକ୍ତିର କନ୍ୟା ଯେ ଆପଣଙ୍କର ବୋହୂ ପାଇଁ ଉପଯୁକ୍ତ ପାତ୍ରୀ ଓ ଆପଣଙ୍କ ମାନସିକ ଅନଗ୍ରସର ବଡପୁଅର ଆଜୀବନ ଯତ୍ନନେଇ

ଆପଣଙ୍କର ଓ ବୋଉର ଦେହାବସନାପରେ ତାଙ୍କ ସେବାରେ ଅବହେଳା କରିବ ନାହିଁ, ଏଥିରେ ଆପଣ ଦୃଢ଼ ନିଶ୍ଚିତ ରହିଥିଲେ । ଏହାହିଁ ଥିଲା ଆପଣଙ୍କର ବୋହୂ ବାଛିବାର ମାନଦଣ୍ଡ । ସେହିଦିନ ସେହିଠାରେ ଆପଣ ନିଷ୍ପତ୍ତି ଶୁଣାଇ ଦେଇଥିଲେ । ଶେଷରେ ଆପଣଙ୍କର କୁଳବଧୂରୂପେ ଆପଣ ବାଛିନେଇ ଥିଲେ ଆପଣଙ୍କର ସେହି ଆଦର୍ଶ ଛାତ୍ରଙ୍କ କନ୍ୟାକୁ । ଆପଣଙ୍କର କୁଳବଧୁହିଁ ଆପଣଙ୍କ ତୁଣ୍ଡରେ ଶେଷଢୋକ ପାଣି ଦେବାର ସୌଭାଗ୍ୟ ଲାଭ କରିଥିଲେ । ମୁଁ ନୁହେଁ । ଆପଣ ନଥିଲେ ଜିଦଖୋର । ଆପଣ ଥିଲେ ଜଣେ ସ୍ଥିତ ପ୍ରଜ୍ଞ, ଦୂରଦୃଷ୍ଟି ସଂପନ୍ନ, ନୀତିନିଷ୍ଠ ନିରବ ସାଧକ ।

## ହେ ଚିରବନ୍ଦ୍ୟ,

ଆପଣଙ୍କର ବୈକୁଣ୍ଠବାସ ହେଉ ଏହା ହିଁ ପରମ କାରୁଣିକ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା । ଆପଣ ସଦା ସର୍ବଦା ଆମର ମସ୍ତକ ଉପରେ ଆଶୀର୍ବାଦର ହାତ ଟେକି ଥାଆନ୍ତୁ ସେହି ଅମରପୁରରୁ । ନିଜ ଅନାଥ ପୁତ୍ର କନ୍ୟାଙ୍କ ଉପରେ ଆପଣଙ୍କର ଦିବ୍ୟ ଦୃଷ୍ଟି ସଦା ସର୍ବଦା ରହିଥାଉ । ମୋତେ ଦିନେ ପଚାରି ଥିଲେ " ତୁ କେବେ ଜିଲ୍ଲା ମାଜିଷ୍ଟ୍ରେଟ ହେବୁ ? ମୁଁ "କିଛି ଠିକ୍ ନାହିଁ, ଆଉ କିଛିବର୍ଷ ଲାଗିବ" ବୋଲି କହିବାରୁ "ତୁ ଜିଲ୍ଲା ମାଜିଷ୍ଟ୍ରେଟ ହେବାଯାଏଁ ମୁ ଅପେକ୍ଷା କରିବି" ବୋଲି କହିଥିଲେ । ପରବର୍ତ୍ତୀ ଅବସ୍ଥାରେ ଆପଣଙ୍କ ଆର୍ଶୀବାଦରେ ମୁଁ ଖୋର୍ଦ୍ଧା ସମେତ ତିନୋଟି ଜିଲ୍ଲାର ଜିଲା ମାଜିଷ୍ଟ୍ରେଟ ହେଲି ସତ, କିନ୍ତୁ ଦେଖିବା ପାଇଁ ଆପଣ କି ବୋଉ ନଥିଲେ । ଏହା ହିଁ ଥିଲା ମୋର ଅବଶୋଷ । କିନ୍ତୁ ଜଗତ୍‌ସିଂପୁରର ଜିଲ୍ଲାପାଳ ଭାବେ କାର୍ଯ୍ୟଭାର ଗ୍ରହଣ କରିବାର ଠିକ୍ ପରଦିନ ମାଆ ଶାରଳାଙ୍କ ଦର୍ଶନ ସାରି ସିଧା ଯାଇଥିଲି ଲଥାଙ୍ଗ ଗ୍ରାମକୁ ମୋର ପରମପୂଜନୀୟ, ପିତୃତୁଲ୍ୟ ଶିକ୍ଷକ ତଥା ଆପଣଙ୍କର ଅତ୍ୟନ୍ତ ଅନ୍ତରଙ୍ଗ, ସାହିତ୍ୟ ସାଧକ, ଏକାଡେମୀ ପୁରସ୍କାର ଓ ସ୍ୱର୍ଣ୍ଣ ପଦକ ପ୍ରାପ୍ତ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟଙ୍କ ପାଖକୁ ଆଶୀର୍ବାଦ ଭିକ୍ଷାପାଇଁ । ସାର ମୋତେ ଦେଖି ବିଶ୍ୱାସ କରି ପାରିଲେନି । ଭାର୍ଗବୀ ବିଦ୍ୟାଳୟରେ ହାଫପ୍ୟାଣ୍ଟ ଓ ହାଫ୍ ସାର୍ଟ ପିନ୍ଧି କାନ୍ଧରେ ବହିବ୍ୟାଗ ପକାଇ ଶ୍ରେଣୀ ଗୃହରେ ମିତ୍ରଲାଭ ଓ ନୀତିଶ୍ଳୋକ ପଢିବା ଦିନଠାରୁ ଆଉ ସାରଙ୍କ ସହ ସାକ୍ଷାତ ହୋଇନି । କେବଳ ଆପଣ ଓ ବୋଉର ମୃତ୍ୟୁପରେ ଦୁଇଖଣ୍ଡି ଚିଠି ଆଜିପର୍ଯ୍ୟନ୍ତ ମୋ ପାଖରେ ସାଇତା ହୋଇ ରହିଛି । ଆପଣଙ୍କ ସହ ତଥା ଆମ ପରିବାର ସହ ତାଙ୍କର ନିବିଡ ଆତ୍ମିୟତା ର ସ୍ମୃତିରୋମନ୍ଥନ କରି, ମୁଁ ଯେ ଆଜି ତାଙ୍କ ଜିଲାର ଜିଲ୍ଲାପାଳ ଭାବେ ତାଙ୍କ ଦୁଆରେ ଠିଆହୋଇ ତାଙ୍କର ଆଶୀର୍ବାଦ ଭିକ୍ଷା କରୁଛି, ଏ କଥା ହଠାତ୍ ସେ ଭାବି ପାରିନଥିଲେ । କିନ୍ତୁ ଏହା ଯେ ସତ୍ୟ ଏହା ହୃଦୟଙ୍ଗମ କରି ଲୋତକପ୍ଲାବିତ ଚକ୍ଷୁରେ ଲୁହ ତାଙ୍କର ଅମାନିଆଁ ହୋଇ ଉଠିଥିଲା । ପଛଦିନର କଥା ମନେ ପଡି ଧାରାଶ୍ରାବଣ ପରି ଧାରଧାର ଲୁହ ତାଙ୍କ ଆଖିରୁ ବୋହି ଚାଲିଥିଲା । ଶେଷରେ ଅଶ୍ରୁ ସମ୍ବରଣ କରିନପାରି ସେ "କାହ୍ନୁ କିରେ" ବୋଲି କହି ମୋତେ କୁଣ୍ଢାଇ ପକାଇ ଭୋ ଭୋ କାନ୍ଦି ଉଠିଥିଲେ ଛୋଟ ପିଲାଟିପରି । ଭାବ ବିହ୍ୱଳତାରେ ପରିପୂର୍ଣ୍ଣ ପରିବେଶ ଶହଶହ ଲୋକଙ୍କ ଆଗରେ ଅତ୍ୟନ୍ତ ଗମ୍ଭୀର ହୋଇଉଠିଲା । ମୋ ଆଖିରେ ଲୁହଦେଖି, ତାହା ଦୀର୍ଘ ଦିନର ବ୍ୟବଧାନରେ ନିଜ ପ୍ରିୟ ଛାତ୍ରକୁ ନିଜ ଜିଲ୍ଲାର ଜିଲ୍ଲାପାଳ ଭାବେ ଦେଖି ଏହା ତାଙ୍କର ଆନନ୍ଦାଶ୍ରୁ ବୋଲି କହି ପରିସ୍ଥିତିକୁ ହାଲ୍‌କା କରି ଦେବାକୁ ଚେଷ୍ଟା କରିଥିଲେ । ଗୁରୁ ଓ ଗୁରପତ୍ନୀଙ୍କର

ଆଶୀର୍ବାଦ ନେଇ ସେଦିନ ଫେରି ଆସିଥିଲି କର୍ମକ୍ଷେତ୍ରକୁ ।

ତା ପରଦିନ । ସକାଳୁ ସାର ନିଜେ ଆସି ମୋ କାର୍ଯ୍ୟାଳୟର ବିଶ୍ରାମ କକ୍ଷରେ ମୋତେ ଦେଖିବା ପାଇଁ ଅପେକ୍ଷାରତ ଜାଣି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲି ସତ କିନ୍ତୁ ସାରଙ୍କୁ ସାଦରେ ମୋର ଅଫିସ ଚାମ୍ବରକୁ ପାଛୋଟି ଆଣିଥିଲି । ବସିବା ପାଇଁ ଅନୁରୋଧ କରିବା ସତ୍ତ୍ୱେ ସେ ନିଜେ ନବସି ମୋତେ ବସିବା ପାଇଁ ନିର୍ଦ୍ଦେଶ ଦେଲେ । ମୁଁ କିଛି ବୁଝିପାରିଲିନି । କିନ୍ତୁ ତାଙ୍କର ଆଦେଶକୁ ଅବଜ୍ଞା ନକରି ମୋର ଚଉକିରେ ବସିଲି । ଆଶୀର୍ବାଦର ମନ୍ତ୍ର ପାଠକରି କହିଲେ ମୋର କାମ ସରିଗଲା, ମୁଁ ଯାଉଛି । ମୋର ଓ ମୋ ଚାମ୍ବରରେ ଅପେକ୍ଷାରତ ବ୍ୟକ୍ତିମାନଙ୍କ ମନଭିତରେ ଜମାଟ ବାଂଧିଥିବା ସନ୍ଦେହକୁ ଦୂର କରିବା ପାଇଁ ମୋତେ କହିଥିଲେ, "କାଲି ତୁମେ ମୋର ଘରକୁ ଯାଇଥିଲ ତୁମର ଶିକ୍ଷକଙ୍କୁ ଦେଖିବା ପାଇଁ ମୋର ପ୍ରିୟଛାତ୍ର ହିସାବରେ । କିନ୍ତୁ ମୁଁ ଆଜି ଆସିଛି ମୋ ଜିଲ୍ଲାର ଜିଲ୍ଲା ପାଳଙ୍କୁ ଦେଖିବା ଉଦ୍ଦେଶ୍ୟରେ । ଜିଲ୍ଲାପାଳଙ୍କ ଚେୟାରରେ ତୁମେ ଆସୀନ ଥିବା ନଦେଖିବା ପର୍ଯ୍ୟନ୍ତ ମୋରମନ ପରିତୃପ୍ତ ହୋଇ ନଥାନ୍ତା । ମୋର ଛାତ୍ର ଯେ ଆଜି ମୋ ଜିଲ୍ଲାର ଜିଲ୍ଲାପାଳ, ମୋ ଜିଲ୍ଲାର ଶାସନ ଡୋରି ଆଜି ମୋ ଛାତ୍ର ହାତରେ, ଏଥିପାଇଁ ମୁଁ ଗୌରବାନ୍ୱିତ । ମୋର ଆଶୀର୍ବାଦ, ତୁମେ ସୁନାମ ଅର୍ଜନ କର । ନନା, ବୋଉ ଓ ଶିକ୍ଷକଙ୍କର ସମ୍ମାନରକ୍ଷା କର । ଏହା ହିଁ ହେଉ ତୁମର ଗୁରୁଦକ୍ଷିଣା" । ମନେ ପଡିଯାଉଥାଏ ଆପଣଙ୍କର କଥା "ତୁ ଜିଲ୍ଲା ମାଜିଷ୍ଟ୍ରେଟ ହେବା ଯାଏଁ ମୁଁ ଅପେକ୍ଷା କରିବି"। କିନ୍ତୁ ଆପଣଙ୍କର ଅବର୍ତ୍ତମାନରେ ପିତୃପ୍ରତିମ ସାର୍‌ଙ୍କର ପଦ ସ୍ପର୍ଶ କରିବାର ସୌଭାଗ୍ୟ ଅର୍ଜନ କରିପାରି ପିତୃ ବିଚ୍ଛେଦର ଅକୁହା ଯନ୍ତ୍ରଣାକୁ କିଛି ସମୟ ପାଇଁ ପାସୋରି ଦେଇଥିଲି । "ମୁଁ ତୁମର ନନା ବୋଉ ଆଜି ଯେଉଁ ଭଳି ଗୌରବ ଅନୁଭବ କରୁଥାନ୍ତେ ତା ଠାରୁ କିଛି କମ୍ ଆନନ୍ଦ ଓ ଆତ୍ମସନ୍ତୋଷ ଅନୁଭବ କରୁନାହିଁ" ବୋଲି ସାର ମୋତେ କହି ବିଦାୟ ନେଇଥିଲେ । ଧନ୍ୟ ସେ ଶିକ୍ଷକ, ଧନ୍ୟ ତାଙ୍କର ଛାତ୍ର ବତ୍ସଳତା । ଅନନ୍ୟ ତାଙ୍କର ଗୁରୁ ଗୌରବ । ଆପଣ ମାନଙ୍କ ପରି ବିଭିନ୍ନ ଉତ୍କର୍ଷରେ ଧନ୍ୟ ଶିକ୍ଷକ ମାନଙ୍କୁ ଧାରଣ କରି ଭାର୍ଗବୀ ବିଦ୍ୟା ନିକେତନ ପରିଣତ ହୋଇଯାଇଥିଲା ଭାର୍ଗବୀ ଶାନ୍ତିନିକେତନରେ । ଦାମିଆ କାଣ୍ଡି ବରଗଛ ଓ ପତିତପାବନୀ ଭାର୍ଗବୀ ନଦୀର କୁଳୁକୁଳୁ ନାଦ ଆଜିପର୍ଯ୍ୟନ୍ତ ଉଦ୍‌ଘୋଷଣ କରିଚାଲିଛି ମହିମାମଣ୍ଡିତ ସେହି ଗୁରୁ ଗୌରବର ଅସରା କାହାଣୀକୁ । ଆପଣମାନଙ୍କ ସମୟ ଭାର୍ଗବୀ ବିଦ୍ୟା ନିକେତନର ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ହୋଇ ରହିବ । ଏହି ଘଟଣାଟି ଉଲ୍ଲେଖ କରିନଥିଲେ ଆଜିର ସ୍ମୃତିତର୍ପଣ ଅସଂପୂର୍ଣ୍ଣ ରହିଯାଇଥାଆନ୍ତା । ଆଜି ମୁଁ ତାଙ୍କୁ ଆପଣଙ୍କ ଆତ୍ମ ଚରିତ ଉନ୍ମୋଚନ ଅବସରରେ ମୋର ସଭକ୍ତିକ କୁସୁମାଂଜଳୀ ଅର୍ପଣ କରି ନିଜକୁ ଧନ୍ୟ ମନେ କରୁଛି ।

ଯାଇଥିଲି ମୋର ପ୍ରାକ୍ତନ ପ୍ରଧାନଶିକ୍ଷକ ଓ ଆପଣଙ୍କୁ ସମ୍ମାନ ଓ ଭକ୍ତି ପ୍ରଦର୍ଶନ କରୁଥିବା ଶ୍ରୀଯୁକ୍ତ ବାଉରୀବଂଧୁ ପାଣିଗ୍ରାହୀଙ୍କର ବାଲିପାଟଣାନିକଟସ୍ଥ ବାସଭବନକୁ ଖୋର୍ଦ୍ଧାରେ ଜିଲ୍ଲାପାଳ ଦାୟିତ୍ୱ ଗ୍ରହଣ ପରେ ପରେ ତାଙ୍କର ଦର୍ଶନ ଓ ଆଶୀର୍ବାଦର ଅଭିଳାଷ ନେଇ । ତାଙ୍କ ପୁଅ ଦେବ ମୋର ବଂଧୁ । ଗାଁଟିଯାକର ଲୋକଙ୍କର ସମାଗମ ହେଲା । ସେମାନଙ୍କ ସମ୍ମୁଖରେ ମୁଁ ତାଙ୍କୁ ଦର୍ଶନକରି ତାଙ୍କର

ପଦସ୍ପର୍ଶ କରିବାର ସୌଭାଗ୍ୟ ଅର୍ଜନ କରିଥିଲି ସତ କିନ୍ତୁ ସେଥିଲେ ରୋଗାକ୍ରାନ୍ତ । କାହାକୁ ଚିହ୍ନିପାରୁ ନଥିଲେ । ଏପିରି କି ନିଜର ଭାଇ, ଆତ୍ମୀୟ ସ୍ୱଜନ ଓ ଦେବକୁ ମଧ୍ୟ । ଯେତେ ପରିଚୟ ଦେଲେ ବି ସେ ତାଙ୍କର ଦିବଂଗତ ପତ୍ନୀଙ୍କୁ ପ୍ରତିମୁହୂର୍ତ୍ତରେ ଖୋଜୁଥିଲେ । ମୋତେ ଦେଖି, ସେ ଆନନ୍ଦରେ ଆତ୍ମହରା ହୋଇ ଥାଆନ୍ତେ ଓ ଆପଣଙ୍କ କଥା ପଚାରି ମୃତ୍ୟୁର ଖବର ପାଇ ଅତ୍ୟନ୍ତ ଦୁଃଖିତ ହୋଇଥାଆନ୍ତେ ଏଥିରେ ମୁଁ ଦୃଢ଼ ନିଶ୍ଚିତ । ବିଫଳ ମନନେଇ ବହୁ ସୟମ ପରେ ଫେରିବାକୁ ବାଧହେଲି । ତାର ଅଳ୍ପ କିଛି ଦିନପରେ ତାଙ୍କର ଦେହାନ୍ତ ହୋଇଯାଇଥିବାର ଦୁଃସମ୍ବାଦ ପାଇଥିଲି ।

ପ୍ରଶାସନିକ ସେବାରେ ଯୋଗଦାନ ବେଳେ ମୁଁ ଯେତେବେଳେ ଆପଣଙ୍କର ଆର୍ଶୀବାଦ ପାଇଁ ଯାଇଥିଲି, ମୋତେ କହିଥିଲେ "ପିତା ତାହାର ସନ୍ତାନ ବର୍ଗଙ୍କୁ ଆର୍ଶୀବାଦ ଶୁଣାଏ ନାହିଁ । ପିତାଙ୍କର ହିତୋପଦେଶ ସନ୍ତାନ ମାନଙ୍କ ପାଇଁ ଅଲଂଘନୀୟ । ଏହାର ମୂଲ୍ୟ ପୃଥିବୀର ଯେ କୌଣସି ପଦାର୍ଥ ଠାରୁ ଅଧିକ ମୂଲ୍ୟ ବାନ । ପୁତ୍ର କନ୍ୟା ମାନଙ୍କର ପିତା ମାତା ପ୍ରତ୍ୟକ୍ଷ ଦେବତା" । ଆପଣଙ୍କର ଦେଇଥିବା ହିତୋପଦେଶ, "ଦୁର୍ନୀତି କରିବୁନି, ଦରିଦ୍ର ଲୋକଙ୍କୁ ଯଥା ସାଧ୍ୟ ସାହାଯ୍ୟ କରିବୁ, ନିଶାସକ୍ତ ହେବୁନାହିଁ ଓ ଶେଷ ପର୍ଯ୍ୟନ୍ତ ବଡ ଭାଇଙ୍କ ଯତ୍ନ ନେଉଥିବୁ" ଆଦି ଅନ୍ୟାନ୍ୟ ଆଦର୍ଶ ଗତ ଉପଦେଶ ଚାକିରି ଜୀବନରେ କାହିଁକି ଆଜି ପର୍ଯ୍ୟନ୍ତ ମୋର ପଥ ପ୍ରଦର୍ଶକ ହୋଇ ରହିଛି । ସେ ସବୁ ମୁଁ ମୋର ଶକ୍ତି ପର୍ଯ୍ୟନ୍ତ ପାଳନ କରିଛି ଓ କରୁଛି ମଧ୍ୟ । ଏହା ମଧ୍ୟ ମୋତେ ଉପଦେଶ ଦେଇଥିଲେ ଯେ ପ୍ରଶାସନିକ ସେବାରେ ତୋତେ ବିଭିନ୍ନ ଜଟିଳ ସମସ୍ୟାର ସମାଧାନ କରିବାକୁ ପଡିବ । ସମସ୍ୟାର ସମାଧାନ ସ୍ଥିର ଚିତ୍ତରେ ନକରି ଯଦି ବିଚଳିତ ମସ୍ତିଷ୍କରେ କରିବା ତେବେ ଏହା ଆଉ ଏକ ସମସ୍ୟାକୁ ଜନ୍ମ ଦେବ ନିଶ୍ଚୟ । ଏହି ସାଙ୍କେତିକ ଚେତାବନୀ ମତେ ଚାକିରିଜୀବନରେ ବହୁଜଟିଳ ସମସ୍ୟାର ସଫଳ ସମାଧାନରେ ସାହାଯ୍ୟ କରିଛି । ଆପଣଙ୍କ ଉପଦେଶର ମୁଁ ଅବତାରଣା କରୁଥିଲି, ବ୍ରହ୍ମପୁରରେ ଆସନ୍ନ ସାଂପ୍ରଦାୟିକ ବିଦ୍ୱେଷ ସମୟରେ, ଅନୁଗୋଳର ମଣ୍ଡଳ କମିସନ ରିପୋର୍ଟକୁ ବିରୋଧକରି ଭଂଗାରୁଜା, ପୋଡାଜଳା କରୁଥିବା ନିରସ୍ତ୍ର ଜନତା ଉପରକୁ ଗୁଳିଚାଳନା କରିବାର ପ୍ରବଳ ଚାପର ସମ୍ମୁଖୀନ ହେବା ସମୟରେ ଓ ବିଧାନସଭା ଅଧିବେଶନ ସମୟରେ Lower PMGରେ ସଂଗଠିତ ବହୁ ଧରଣର ବଡବଡ ଆନ୍ଦୋଳନ ଓ ବହୁ ଆଇନ ଶୃଙ୍ଖଳା ଓ ଅନ୍ୟାନ୍ୟ ବିବାଦ ସମାଧାନ ସମୟରେ ।

## ହେ ପରମ ପୂଜନୀୟ ପିତୃଦେବ,

ଆପଣଙ୍କର ଆତ୍ମଚରିତ ମୋ ନିକଟକୁ ଆବେଗଭରା ଚିଠି ଟିଏ ଥିଲେ ମଧ୍ୟ ଏହା କୌଣସି ଉତ୍ତର ଅଭିଳାଷୀ ନଥିଲା । ମୋ ପାଇଁ, ଉତ୍ତରାଧିକାରୀଙ୍କ ପାଇଁ ଓ ଆପଣଙ୍କର ଶହଶହ ପ୍ରିୟ ଛାତ୍ର ଛାତ୍ରୀଙ୍କ ପାଇଁ ଏହା ଏକ ମୂଲ୍ୟବୋଧ ପରିପୂର୍ଣ୍ଣ ଉପଦେଶ ସମ୍ବଳିତ ଅତ୍ୟନ୍ତ ପ୍ରେରଣା ପ୍ରଦ, ଜୀବନର ଦିଶା ନିର୍ଣ୍ଣୟକାରୀ ମୂଲ୍ୟବାନ ମାର୍ଗଦର୍ଶିକା/ଦସ୍ତାବିଜ, ଯାହାର ପରିପାଳନରେ ଚରିତ୍ର ଗଠନ ଥିଲା ଏକ ମାତ୍ର ଉଦ୍ଦେଶ୍ୟ । ତେବେ ଆପଣଙ୍କର ଆତ୍ମଜୀବନୀରେ ମୁଁ ଦେଖୁଥିଲି ନିର୍ଜନ ମରୁଭୂମିରେ ଏକ ଅମାବାସ୍ୟାର ବହଳ ଅଂଧାର ଆଚ୍ଛାଦିତ ରାତି, ପୂର୍ଣ୍ଣଚନ୍ଦ୍ର ଦେଖିବା ଆଗରୁ । ଦୁଃଖ, ଯନ୍ତ୍ରଣା ଓ ବିଷାଦ

ପୂର୍ଣ୍ଣ ପ୍ରତିକୂଳ ପରିସ୍ଥିତି ବିରୁଦ୍ଧରେ ଆପଣ 'ଯୁଦ୍ଧଂ ଦେହି' ଡାକରା ଦେଇ ସଂକଳ୍ପ, ସାଧନା, ଅପରିସୀମ ଧୈର୍ଯ୍ୟ ଓ ସୀମାହିନ ସହନଶୀଳତାର ଶାଣିତ ଅସ୍ତ୍ର ଉତ୍ତୋଳନ କରି ଅଗ୍ରସର ହୋଇଥିଲେ ନିଜଲକ୍ଷ୍ୟ ସାଧନରେ ।

ଆପଣଙ୍କ ପିତୃଉପଦେଶରେ ଆପଣ ମୋତେ ଉପଦେଶ ଦେଇଥିଲେ ନିଜ ଜନ୍ମଭୂମି, ତଥା ଗ୍ରାମର ଉପକାର କରିବା ପାଇଁ । ତାହାକୁ ରକ୍ଷାକରି, ଗ୍ରାମବାସୀଙ୍କ ସହଯୋଗରେ, ଉତ୍ସାହୀ ଯୁବପିଢିଙ୍କ ସକ୍ରିୟ ଅଂଶ ଗ୍ରହଣରେ ଗ୍ରାମରେ କିଛିଟା ଉନ୍ନତିମୂଳକ କାର୍ଯ୍ୟ ପାଇଁ ମୁଁ ଚାକିରି ଜୀବନରେ ବ୍ରତୀ ହୋଇଥିଲି । ପଞ୍ଚାୟତ ଗୃହର ପୁନର୍ଗଠନ (ଛାତଘର କରିବା) ତଥା ଦୁଇ ମହଲା ପାଇଁ ଅର୍ଥଯୋଗାଣ ଠାରୁ ଆରମ୍ଭକରି ପୁରୀ ନିରାକାର ପୁର ରାସ୍ତାର ଆମଗ୍ରାମ ପଛପଟେ ଉପରାସ୍ତା ନିର୍ମାଣ ପାଇଁ (ବାଇପାସ ରାସ୍ତା) ଯାହାକି ବର୍ତ୍ତମାନ ଜାତୀୟ ରାଜପଥର ମାନ୍ୟତା ପାଇବାପାଇଁ ଅପେକ୍ଷାରତ ଚେଷ୍ଟାକରି ସଫଳ ହୋଇଥିଲି । ତତ୍‌କାଳୀନ ବିଧାୟକ ସାଂସଦ ମାନଙ୍କ ସହଯୋଗରେ ଗୋଟିଏ କଲ୍ୟାଣ ମଣ୍ଡପର ସଂପୂର୍ଣ୍ଣୀକରଣ ସହ ଅନ୍ୟ କଲ୍ୟାଣ ମଣ୍ଡପ ପାଇଁ ଅର୍ଥଯୋଗାଣ, ଦଣ୍ଡା ମଣ୍ଡପର ସଂପ୍ରସାରଣ ଓ ଉପରେ ଛାତ ପକାଇବା, ତଥା ଗ୍ରାମ ପାଠାଗାର ଆର୍ଯ୍ୟନୀତି ପ୍ରଦୀପ ଗ୍ରନ୍ଥାଗାର, ଦୟାନିଧି ଯୁବକ ସଂଘର ଏବଂ ଉ:ପ୍ରା ସ୍କୁଲର ସଂପ୍ରସାରଣ ସହଦୁଇ ମହଲାବିଶିଷ୍ଟ କରିବା, ଗ୍ରାମର ଆରମ୍ଭ ଓ ଶେଷରେ ଥିବା ପ୍ରଭୁନୀଳକଣ୍ଠ ଓ ଗୋପୀନାଥ ଦେବଙ୍କ ମନ୍ଦିର ଭିତରେ ମାର୍ବଲ କରଣ ଓ ଲୋକନାଥଙ୍କ ମନ୍ଦିର ପ୍ରାଙ୍ଗଣରେ ପଥର ପକାଇବା ଆଦି କେତୋଟି ସମୂହସ୍ୱାର୍ଥ ସମ୍ବଳିତ କାମ କରିବାରେ ଯଥେଷ୍ଟ ସାହାଯ୍ୟ କରିଛି, ଗ୍ରାମବାସୀ ଓ ଯୁବପିଢ଼ିଙ୍କ ଆଗ୍ରହ ଓ ସକ୍ରିୟ ସହଯୋଗରେ ।

## ହେ ମହାତ୍ମନ,

ହେ ପୁଣ୍ୟତ୍ମା, ଆପଣଙ୍କ ପାଇଁ ଯେତେ ଗୁଣବାଚକ ବିଶେଷଣ ଦେଲେବି ତାହା ଆପଣଙ୍କର ନିରବଦ୍ୟ ଓ ଅମ୍ଳାନ ପ୍ରତିଭା ପାଖରେ ନ୍ୟୁନ ହେବ । ଆଜି କାଲିର ଶିକ୍ଷକ ସମାଜ ଆଗରେ ଆପଣଙ୍କର ବ୍ୟକ୍ତିତ୍ୱ ଭିନ୍ନ ଓ ସ୍ୱତନ୍ତ୍ର । ଆପଣଙ୍କର ତୁଳନା ଆପଣ ନିଜେ । ପିତା ହିସାବରେ ଆପଣଙ୍କର ହିତୋପଦେଶ ଆମ ମାନଙ୍କର ପଥ ପ୍ରଦର୍ଶକ ହୋଇ ରହିଛି ଓ ରହିଥିବ, ଏହାହିଁ ଆମର ଆତ୍ମ ସନ୍ତୋଷ । କବିଙ୍କ ଭାଷାରେ "ତାହାର ତୁଳନା ସେହି ଏକା ସିନା" ।

ଜୀବନର ରଣାଗଂନରେ ଯୁଝି ଯୁଝି ଆଜି ଆପଣ ଶୋଇଗଲେ ଚିର ନିଦ୍ରାରେ । ବିଜୟର ଜୟମାଲ୍ୟ ପିଂଧି ଚାଲିଗଲେ ଚିର ଶାନ୍ତିର ନିଳୟ ଅମର୍ତ୍ତ୍ୟ ପୁରକୁ । ଜୀବନ ସଂଗ୍ରାମରେ ଆପଣ ବହୁବାର କ୍ଷତବିକ୍ଷତ ହୋଇଛନ୍ତି ସତ କିନ୍ତୁ ହାରି ନାହାନ୍ତି । ନିଜର ଲକ୍ଷ୍ୟ ହାସଲ ଦିଗରେ ଆପଣ ଉତ୍ସର୍ଗୀକୃତ ଭାବେ ଅଗ୍ରସର ହୋଇଚାଲିଥିଲେ । ଜୀବନ ଯୁଦ୍ଧରେ ଆପଣ ଥିଲେ ଜଣେ ସାର୍ଥକ ସୈନିକ, ଜଣେ ସୁଦକ୍ଷ ଓ ସଫଳ ସେନାପତି । ସମୟର ଚଳମାନ କରାଳ ସ୍ରୋତରେ ଆପଣ କାଚଫ୍ରେମ ଭିତରେ ଛବିର ମଣିଷହୋଇ କାନ୍ଥରେ ଟଙ୍ଗା ହୋଇ ରହିଗଲେ ସତ, ହେଲେ ତାରି ଭିତରୁ ଆଜିଯାଏଁ ଆପଣଙ୍କର ସେହି ମର୍ମସ୍ପର୍ଶୀ ମହାସ୍ୱର ଆମର ପଥ ପ୍ରଦର୍ଶନ କରି ଚାଲିଛି । ଆପଣ ମରଣ ବିଜୟୀ, ଚିର ଜୀବନ୍ତ । ଓଡ଼ିଶାର ଶିକ୍ଷା ଓ ସାହିତ୍ୟର ନଭମଣ୍ଡଳରୁ ଏହି ଉଜ୍ଜ୍ୱଳତମ ଜ୍ୟୋତିଷ୍କଟି ଅନ୍ତର୍ହିତ ହୋଇଗଲା ସତ, କିନ୍ତୁ ଆପଣ ଚିରଂଜୀବୀ ହୋଇ

ରହିଗଲେ ଆପଣଙ୍କ ଛାତ୍ରମାନଙ୍କ ହୃଦୟ କନ୍ଦରରେ, ଆପଣଙ୍କ ସାହିତ୍ୟ ସର୍ଜନାର ଅମର ଅକ୍ଷର ଭିତରେ । ଆପଣ ଥିଲେ ମନୀଷା ଓ ମାନବିକତାର ଏକ ବିରଳ ସମନ୍ୱୟ ଯାହାକି ଆପଣଙ୍କୁ ଜନମାନସରେ ସବୁଦିନ ଜନପ୍ରିୟ କରି ବିରାଜମାନ କରୁଥିବ ।

ହେ ଚିର ବନ୍ଦନୀୟ, ଚିର ସମ୍ମାନନୀୟ, ପ୍ରାତଃସ୍ମରଣୀୟ ପିତୃଦେବ, ଯଦି ପୁନର୍ଜନ୍ମ ବୋଲି କିଛି ଥାଏ ମୁଁ ସଦାବେଳେ ଆପଣଙ୍କ ପରି ପିତା ଓ ମୋ ବୋଉ ପରି ମାଆଙ୍କ କୋଳରେ ଜନ୍ମଲାଭ କରେ ଏହାହିଁ ମୋର ଶେଷ ଇଚ୍ଛା । ଯେତେବାର ଜନ୍ମ ଲାଭ କଲେ ବି ମୋର ପିତୃ ମାତୃ ଋଣ ବଢ଼ି ବଢ଼ି ଚାଲିଥିବ ସିନା ତାର ପରିମାଣ ପରି ସଂଖ୍ୟାନର ବହୁ ଉର୍ଦ୍ଧ୍ୱରେ । ଏହା ଅମାପ । ଜନ୍ମ ଜନ୍ମାନ୍ତରରେ ମଧ ଏହାକୁ ଶୁଝି ହୁଏନି । ଆଉ ମୁଁ ତାକୁ ଶୁଝିବି ବା କିମିତି ?

ଆପଣଙ୍କର ଉପଦେଶ ଓ ବୋଉର ନିର୍ଦ୍ଦେଶ ଅନୁସାରେ ଗ୍ରାମ ଶ୍ମଶାନରେ ଆପଣଙ୍କର ଶବଦାହ କରିଥିଲି । ମୁଖାଗ୍ନି ଦେଇଥିଲି । "ମୋର ପିତୃ ପିତା ମହ ଯେଉଁଠାରେ ଦାହ ହୋଇଛନ୍ତି ମୋତେ ସେହିଠାରେ ଦାହକଲେ ମୁଁ ଶାନ୍ତି ପାଇବି ।" ଏହା ଆପଣ ନିଜହସ୍ତରେ ଆପଣଙ୍କ ଆତ୍ମଚରିତରେ ଲେଖିଦେଇ ଯାଇଛନ୍ତି । "ଗ୍ରାମ ଶ୍ମଶାନ ହେଉଛି ମୋ ପାଇଁ ସ୍ୱର୍ଗର ସୋପାନ ।" ଗ୍ରାମରେ ସମସ୍ତ କର୍ମ ଯଥାବିଧି ସମାପନ କରି ବୋଉର ଉପଦେଶ ମତେ ଆପଣଙ୍କର ଅସ୍ଥି ବିସର୍ଜନ ମୁଁ କରିଥିଲି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ତୀର୍ଥରାଜ ମହୋଦଧିରେ "ଯେଉଁଠାରେ ବିଲୀନ ହୋଇଛନ୍ତି, ଗଂଗା, ଗୋଦାବରୀ, କାବେରୀ ଆଦି ତ୍ରିବେଣୀ ସଂଗମ ସୃଷ୍ଟି କରୁଥିବା ପୁଣ୍ୟତୋୟା ତଟିନୀ ମାନେ । "ତେଣୁ ତ୍ରିବେଣୀରେ ନନାଙ୍କର ଅସ୍ଥି ବିସର୍ଜନର ଆବଶ୍ୟକତା ନାହିଁ" ବୋଲି ବୋଉ ମୋ ଆଗରେ ଅକାଟ୍ୟ ଯୁକ୍ତି ବାଢ଼ିଥିଲା । ସବୁ କାର୍ଯ୍ୟ ସମାପନ ପରେ ଫେରି ଆସିଥିଲି ନିଜର କର୍ମସ୍ଥଳୀକୁ ।

ଆପଣଙ୍କ ଅବର୍ତ୍ତମାନରେ ଦୀପ୍ତିମନ୍ତ ଆଭାମୟ ଶରୀରଟି ଦୀପ୍ତିହୀନ, ଅଭାବିଯୁକ୍ତ ହୋଇଗଲା । କିନ୍ତୁ ଭାର୍ଗବୀ ଶିକ୍ଷା ଆକାଶରେ ଆପଣ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାବେ ସଦାସର୍ବଦା ପ୍ରତିଭାତ ହୋଇ ରହିଥିବେ ଏହା ନିଃସନ୍ଦେହ । କବିଙ୍କ ଭାଷାରେ "ମରିନାହିଁ ସେତ ଚିର ଜୀବନ୍ତ"

ଆପଣଙ୍କର ଆତ୍ମା ପରମାତ୍ମାରେ ବିଲୀନ ହେଉ, ଏହାହିଁ ପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀନୀଳକଣ୍ଠଙ୍କ ନିକଟରେ ପ୍ରାର୍ଥନା ।

ସ୍ନେହାଧୀନ ପୁତ୍ର

**କାହ୍ନୁ**

●●●



ଅଶ୍ରୁ ତର୍ପଣ

# 'ମନେପଡ଼େ ମୋ ବୋଉ'

ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର (କାହ୍ନୁ)



ଆଜି ମୋର ପୂଜ୍ୟ ପିତୃଦେବଙ୍କ ଆତ୍ମଚରିତ ଉନ୍ମୋଚନ ଅବସରରେ ମନେପଡ଼େ ମୋର ବୋଉ ! ସ୍ମୃତିର ଦର୍ପଣରେ ତା'ର ସେହି ଅଭୁଲା ସ୍ନେହ, ଆଶୀର୍ବାଦ, ଆଲିଙ୍ଗନ, ଆଉ 'ବୋଉ' ଡ଼ାକରେ କୋଳେଇ ନେବାର ଅମୃତ ସ୍ପର୍ଶର ଧୂମାଭ ପ୍ରତିଛବି ଦୃଶ୍ୟମାନ ହୋଇଉଠେ ଅତି ଉଜ୍ଜ୍ୱଳ ଓ ସ୍ୱଷ୍ଟ ଭାବରେ । ସଦା ହସହସ ମୁହଁ ଓ ତାର ଉଜ୍ୱଳ ମୟ ବ୍ୟକ୍ତିତ୍ୱର ଚୁମ୍ବକୀୟ ଆକର୍ଷଣ, ଅସୀମ ଧୈର୍ଯ୍ୟ, ସହନଶୀଳତା, ଅନାବିଳ ସ୍ନେହ ଓ ସର୍ବୋପରି ପରିବାର ପ୍ରତି ଗୋଟିଏ ଗୃହିଣୀର ଅକଳନ୍ତି ତ୍ୟାଗ ଓ ପ୍ରତିବଦ୍ଧତାର ସେଥିଲା ଏକ ମଂଜୁଳ ସ୍ରୋତସ୍ୱିନୀ ଧାରା । ସେଥିଲା ଆମ ପରିବାରର ପ୍ରାଣକେନ୍ଦ୍ର, ଏକ ଅଦୃଶ୍ୟ ଶ୍ରମିକ । ସବୁବେଳେ କାମ । କାମରେ ତା'ର ଶାନ୍ତି, ମନର ସନ୍ତୋଷ । ତାରି ସେହି ବାତ୍ସଲ୍ୟ, ତ୍ୟାଗ, ସେବା, ମମତା ଓ ପବିତ୍ର ମାତୃତ୍ୱର ପାଟ ଡ଼ୋରିରେ ବଂଧା ହୋଇଥିଲା ଆମର ଛୋଟ ପରିବାର । ସଂସାର ଜଞ୍ଜାଳର ବହଳ ତିମିର ଭିତରେ ସେଥିଲା ଆମ ପରିବାରର ଧ୍ରୁବତାରା । ଅମାବାସ୍ୟାର ଚନ୍ଦ୍ର । ମହାବାତ୍ୟାରେ ସେ ଭାଙ୍ଗିପଡ଼ିନି, ଜୀବନର କାଳବୈଶାଖୀରେ ହାର ବି ମାନିନି । ଜୀବନର ଝଡଝଞ୍ଜାରେ ଦେହରେ ତାର କ୍ଷତ ବିକ୍ଷତର ଚିହ୍ନ କିନ୍ତୁ ସ୍ମୃତିରେ ସେ ଥିଲା ଉଜ୍ଜ୍ୱଳ, ଅକ୍ଷତ ଓ ଅମଳିନ । ପରିବାର ପାଇଁ ଅଗ୍ନିଶିଖା ଭଳି ଜଳିଛି କିନ୍ତୁ ଅନ୍ଧାର ଘରକୁ ଆଲୋକ ପ୍ରଦାନକରି ଆଲୋକିତ କରିଛି । ଜଂଜାଳର ବୋଝକୁ ହସିହସି ମୁଣ୍ଡାଇଛି । ପରିବାରକୁ ମାନବିକତାର ମୂଲ୍ୟବୋଧ ଉପରେ ଛିଡ଼ାକରି ସେ

ଆମର ଚ଼ରିତ୍ର ଗଠନ କରିବାର ସଂକଳ୍ପ ନେଇଥିଲା । ସେ ତାର ଆଧାତ୍ମିକ, ସାମାଜିକ, ପାରିବାରିକ ଆଚାର ବିଚାରକୁ ନିଷ୍ଠାପର ଭାବରେ ପାଳନ କରିଛି । ଦାରିଦ୍ର୍ୟ ଓ ଦୁଃଖ କଷ୍ଟର ସଂଘାତ ଭିତରେ ତାର ମାତୃତ୍ୱର ମହାନତା, ପ୍ରାଣର ଐଶ୍ୱର୍ଯ୍ୟ ମ୍ଳାନ ହୋଇ ପଡିନି । ଆଜି ଏହି ପୁଣ୍ୟ ତିଥିରେ ତାର ସ୍ମୃତିଚାରଣ କରି ମୁଁ ପ୍ରକାଶ କରୁଛି, କେତୋଟି ମାର୍ମିକ ଅନୁଭୂତିର କଥା । ଯଦିଓ ମୁଁ ଜାଣେ ଯେ ତା'ର ଉତ୍ତୁଙ୍ଗ ମାତୃତ୍ୱକୁ କେତେଫର୍ଦ୍ଦ କାଗଜର ବଳୟ ମଧ୍ୟରେ କେତେ ଶହ ଶବ୍ଦର ପରିଧି ଭିତରେ ସଜାଇ ରଖିବାର ଚେଷ୍ଟା ମୋର ଧୃଷ୍ଟତା ହେବ । ବୋଉ ବିଷୟରେ କିଛି ଲେଖିବା ମୋର ଭାଷାତୀତ । ତଥାପି ଯାହାବି ଲେଖିବାର ଦୁଃସାହସ କରୁଛି ତା ହେଉଛି ମୋର ସ୍ୱତଃସ୍ଫୁର୍ତ୍ତ ଅନ୍ତର୍ବେଦନାର ସ୍ଫୁରଣ, ଜୀବନର ସ୍ୱରଲିପି । ପିତୃ ମାତୃ ଭକ୍ତିର ଜୁଆରରେ ଗଢ଼ା ଏ ଆଲେଖିକା; ଅନାବିଳ ମାତୃତ୍ୱର ମହିମା ବନ୍ଦନା କରିବାର ଏକ ଆନ୍ତରିକ ଅଭୀପ୍ସା ।

ବୋଉର ସ୍ୱର୍ଗାବାସ ପରେ ପ୍ରଥମ ଶୀତଳ ଷଷ୍ଠୀର ପରଦିନର ଘଟଣା । ଶୀତଳ ଷଷ୍ଠୀ ଆମ ଗ୍ରାମର ଏକ ପ୍ରସିଦ୍ଧ ପର୍ବ । ନନାଙ୍କର ନିର୍ଦ୍ଦେଶ ଥିଲା ଚାକିରିରେ ଯେଉଁଠି ଥିଲେବି ଶୀତଳ ଷଷ୍ଠୀକୁ ଗାଁ କୁ ଆସିବାକୁ । ଘର ବାଡ଼ି ପଟୁ କାମସାରି ସକାଳୁ ସକାଳୁ ଘରକୁ ଫେରୁଥିଲି । ଶୀଘ୍ର କାମ ସାରିଲେ ବାହାରିବୁ ଭୁବନେଶ୍ୱର ଓ ତା'ପରେ ଅନୁଗୋଳ, ମୋର କର୍ମ କ୍ଷେତ୍ରକୁ । ଘର ପାଖରେ ପହଞ୍ଚି ଦେଖିଲି ଜଣେ ସ୍ତ୍ରୀ ଲୋକ ରାଗ ତମ୍ ତମ ହୋଇ ଦୁଆର ମୁହଁରୁ ଫେରି ଯାଉଛି । ଅନର୍ଗଳ କହି ଚାଲିଛି, "ଯିଏ ତ ଦବା ଲୋକ ଥିଲା, ସେ ତ ଚାଲିଗଲା । ଆମ ଦୁଃଖ ଆଉ ବୁଝିବ କିଏ ? କାହାକୁ ବା କହିବି, କିଏ ବା ଶୁଣିବାକୁ ଅଛି ? ଲକ୍ଷ୍ମୀ ସାଆନ୍ତାଣୀ ତ ଚାଲିଗଲେ ।" ପାଦ ମୋର ଅଟକିଗଲା । ସେ ସ୍ତ୍ରୀ ଲୋକଟିକୁ ଅପେକ୍ଷା କରିବାକୁ କହି ପଚାରିଲି । "କାହାକୁ ତୁମେ କଣ କହୁଛ, ଏତେ ରାଗ କାହିଁକି ? ଏଠି ତ ଲକ୍ଷ୍ମୀ ସାଆନ୍ତାଣୀ କେହି ନଥିଲେ, କି ନାହାନ୍ତି ! କ'ଣ ତୁମର ଅସୁବିଧା ହେଲା ?" ସ୍ତ୍ରୀ ଲୋକଟି ଠାରୁ ବୁଝିଲି ଯେ ପ୍ରତିବର୍ଷ ଶୀତଳ ଷଷ୍ଠୀ ଯାତ୍ରା ପରଦିନ ସେ ଆମ ଘରକୁ ଆସି ଶୀତଳ ଷଷ୍ଠୀରେ ଠାକୁରଙ୍କ ଭୋଗ ନିଏ । ବୋଉ ତାକୁ ଓ ତାପରି ବହୁଲୋକଙ୍କୁ ଭୋଗ ଦେବା ପାଇଁ ଅପେକ୍ଷା କରିଥାଏ । ତେଣୁ ତାର ରାଗ ମୋ ସ୍ତ୍ରୀ ଉପରେ ଓ ଘରର ଅନ୍ୟାନ୍ୟ ଲୋକଙ୍କ ଉପରେ । କହିଲା "ମାଆ ସାଆନ୍ତାଣୀ ଥିଲେ ସାକ୍ଷାତ୍ ଲକ୍ଷ୍ମୀ ଠାକୁରାଣୀ । ମୋ ଡ଼ାକ ଶୁଣିବା ମାତ୍ରେ ମୋତେ ଘର ଭିତରକୁ ଡ଼ାକି ନେଉଥିଲେ । ପେଟ ପୂରା ଖାଇବାକୁ ଦେଇ ଘରେ ମୋ ଗେରସ୍ତ ଓ ପିଲା ମାନଙ୍କ ପାଇଁ ମଧ୍ୟ ଯଥେଷ୍ଟ ଦେଉଥିଲେ । ସେମାନେ ଗାଁରେ ଭୋଗକୁ ଅପେକ୍ଷା କରି ବସିଥିବେ । ତାଙ୍କ ପାଟିରେ କଣ ଦେବି ବାବୁ ? ଏ ଘର ଲକ୍ଷ୍ମୀ ଛଡ଼ା ହୋଇଗଲା ବାବୁ । ସେ ତ ଏବେ ଆଉ ପୁରରେ । ତେଣୁ ମୋ ଡ଼ାକ ଶୁଣିବ ବା କିଏ" ? ତାକୁ ଆଉ ଅଧିକ କହିବାକୁ ନଦେଇ ଘର ଭିତରକୁ ଡ଼ାକିନେଲି । ପ୍ରକୃତିସ୍ଥ କଲି । କହିଲି, "ତୁମେ ପ୍ରତିବର୍ଷ ଏହି ଦିନରେ ସକାଳୁ ଆସି ଘରେ ଖାଇ, ପୂର୍ବ ପରି ପିଲାମାନଙ୍କ ପାଇଁ ନେଇକରି ଯିବ । ମାଆ ସାଆନ୍ତାଣୀ ଚାଲିଗଲା ପରେ "ବୋହୂ ସାଆନ୍ତାଣୀ ତୁମର ଆସିବା ବିଷୟରେ ଜାଣି ନାହାନ୍ତି । ଘର ଭିତରେ ଅନ୍ୟ କାମରେ ବ୍ୟସ୍ତ ରହିଯାଇଥିବେ । ଆମେ ଶୀଘ୍ର ଚାଲିଯିବୁ ତ, ସେଇଥିପାଇ" । ତାର ଦାୟିତ୍ୱ ମୋର ଧର୍ମପତ୍ନୀଙ୍କୁ

ଦେଇ ସବୁ କହିଲି ଏବଂ ପରାମର୍ଶ ଦେଇଥିଲି ଯେ "ଏ ଦୁଆରୁ କେବଳ ଶୀତଳ ଷଷ୍ଠୀ ପରଦିନ କାହିଁକି, କୌଣସି ଲୋକ କେଉଁ ଦିନ ବି ଭୋକିଲା ନଫେରେ । ଆମର ଅନୁପସ୍ଥିତିରେ ମଣ୍ଟୁ ଓ କମଳା ମାଉସୀଙ୍କୁ କହିଦିଅ । କମଳା ମାଉସୀ ତ ଏଠାରେ ସବୁଦିନ ଥିଲେ ଏବେ ବି ରହୁଛନ୍ତି । ସବୁ ବି ଜାଣିଛନ୍ତି ।" ସ୍ତ୍ରୀ ଲୋକଟି ଖାଇ ସାରି, ଭୋଗ ଧରି ଚାଲିଗଲା । ମୁଁ ଆଶ୍ୱସ୍ତ ହେଲି ଏବଂ ଆଜି ପର୍ଯ୍ୟନ୍ତ ସେ ପରମ୍ପରାକୁ ମଣ୍ଟୁ ବଜାୟ ରଖିଛି ବୋଉର ସ୍ମୃତିଚାରଣ ପାଇଁ ।

ସ୍ତ୍ରୀ ଲୋକଟି ଚାଲିଗଲା ସତ । ମନ ଭିତରେ କିନ୍ତୁ ଉଜ୍ଜୀବିତ କରି ଦେଇଗଲା ବୋଉର ସେଇ ଅଭୁଲା ସ୍ମୃତିକୁ । ଆଉ ବୋଉର ସେହି ସ୍ମୃତିକୁ ସ୍ମରଣ କରିବାପାଇଁ ଭାବାବେଗ ଭରା ଏ ଗୋଟିଏ ଛୋଟିଆ ପ୍ରୟାସ ମାତ୍ର ।

ଆଗରୁ ଲେଖିଛି ତାର ସେହି ଉତ୍ତୁଙ୍ଗ ମାତୃତ୍ୱକୁ ମାତ୍ର କେତେ ଶହ ଶବ୍ଦର ପରିଧି ଭିତରେ ବର୍ଣ୍ଣନା କରିବା ଧୃଷ୍ଟତା ହେବ । ଯେମିତିକି ନା ସମୁଦ୍ରକୁ, ନା ଆକାଶକୁ, କାହା ସହିତ ତୁଳନା କରାଯାଇ ପାରିବ ନାହିଁ, ସେହିପରି ମୋ ବୋଉକୁ ଏ ଆଲେଖ୍ୟର ମାତ୍ର କେତେ ପୃଷ୍ଠାର ପରିସୀମା ଭିତରେ ଆବଦ୍ଧ ରଖିବା ଅସମ୍ଭବ । ହଜିବା ଦିନର ସ୍ମୃତିକୁ ସାଉଁଟିବା ଏକ ବ୍ୟର୍ଥ ପ୍ରୟାସ ହେବ ସିନା । ସମସ୍ତଙ୍କ ଜୀବନରେ ମାତୃ ସ୍ନେହର ଶୂନ୍ୟସ୍ଥାନ ଅପୂରଣୀୟ । ଭାଷାର ପରିସୀମା ଭିତରେ ମାତୃତ୍ୱକୁ ବର୍ଣ୍ଣନା କରି ହୁଏନା । ଭାଷା ଏଠି ପରାଜିତ । ମାତୃତ୍ୱର ଅମାପ ସ୍ନେହକୁ ତଉଲିବାର କୌଣସି ପାର୍ଥିବ ମାନଦଣ୍ଡ ସୃଷ୍ଟି ହୋଇନାହିଁ, କି ପାରିବନି । ତଥାପି ମୋର ବୋଉ ସହିତ କେତେକ ଆତ୍ମିକ ଅନୁଭୂତିର ବର୍ଣ୍ଣନା କରିବାର ଦୁର୍ବାର ଇଚ୍ଛାକୁ ସମ୍ବରଣ କରିନପାରି ଏହି ଅନୁଭୂତିମୂଳକ ଲେଖାଟି ଲେଖୁଛି । ମୋର ପରଲୋକଗତ ବୋଉର କିଛିଟା ସ୍ମୃତିଚାରଣ କରି ତାର ବିଶେଷତ୍ୱକୁ ଉପସ୍ଥାପନା କରିବା ହଉଛି ଏ ଆଲେଖ୍ୟର ପ୍ରାଣବିନ୍ଦୁ । ମୋ ବୋଉଥିଲା, ଏକ ଆଦର୍ଶ ଗୃହିଣୀ, ସ୍ୱାମୀଙ୍କ ପ୍ରତି ପ୍ରଗାଢ଼ ଭକ୍ତି, ପିଲାମାନଙ୍କ ପ୍ରତି ମାଆର ଅନାବିଳ ବତ୍ସଲ୍ୟମମତା, ପରିବାର ପ୍ରତି ଅକଳନ୍ତି ତ୍ୟାଗ ଓ ଆବେଗିକ ଅଙ୍ଗୀକାର ବଦ୍ଧତା ପରି ଦେବ ଦୁର୍ଲ୍ଲଭ ଗୁଣ ଗୁଡିକର ମହିମାରେ ମହିମାନ୍ୱିତା । ପ୍ରଥମେ ଆରମ୍ଭ କରୁଛି ବୋଉର ବାତ୍ସଲ୍ୟମମତାର ଏକ ମର୍ମସ୍ପର୍ଶୀ କାହାଣୀରୁ ।

ମୋ ବୋଉଥିଲା ଆମପାଇଁ ପୀୟୁଷର ପ୍ଲାବନ, ବାତ୍ସଲ୍ୟର ଅବିଶ୍ରାନ୍ତ ବାରିଧାରା, ମମତାର ସ୍ୱଚ୍ଛ ନିର୍ଝରିଣୀ । ସେଥିଲା ମାତୃ ହୃଦୟର ପବିତ୍ର ମନ୍ଦାକିନୀ । ଆଧ୍ୟାତ୍ମିକତାର ଅକ୍ଷୟ ଭଣ୍ଡାର, ମାତୃପ୍ରେମର ଚିରନ୍ତନ ପ୍ରବାହ । ଏହାହିଁ ହେଉଛି ମୋ ବୋଉର ମମତା, ଆବେଗ ଓ ଆକୁଳତାର ଆସ୍ତରଣ, "ମାତୃତ୍ୱର ଅନିନ୍ଦ୍ୟ, ଅନନ୍ୟ ଅମୃତ ଉଜାଣି", ଆତ୍ମବିଶ୍ୱାସର ଆବେଦନ । ସହନଶୀଳତାର ସୀମାହୀନ ବାରିଧି ।

ମୋର ବୋଉ ନଥିଲା କେବଳ ମୋରି ଜନ୍ମ ଦାତ୍ରୀ ମାଆ, ସେ ଥିଲା ମୋର ପ୍ରଥମ ଅମୃତମୟୀ ଜୀବନ ଦାତ୍ରୀ, ପ୍ରଥମ ଚିକିତ୍ସିକା, ପ୍ରଥମ ସେବିକା, ପ୍ରଥମ ଅନ୍ନଦାତ୍ରୀ ଓ ସର୍ବୋପରି ପ୍ରଥମ ଶିକ୍ଷାଦାତ୍ରୀ । ସେ ମଧ୍ୟ ଥିଲା ମୋର ପ୍ରଥମ ଆଧ୍ୟାତ୍ମିକ ଗୁରୁ ଏଇଥିପାଇଁ ଯେ ଦିନଯାକର ଜଂଜାଳର ଶେଷରେ ସେ ମୁହୂର୍ତ୍ତ ମୁହୂର୍ତ୍ତ କଟାଇ ଦିଏ ଈଶ୍ୱରଙ୍କ ସହ ତାର ରାମାୟଣ ମହାଭାରତ, ଭାଗବତ, ଜଣାଣ ଓ ସ୍ତୋତ୍ର

ମାଧ୍ୟମରେ । ଆଧ୍ୟାତ୍ମିକତାର ବିନ୍ଦୁଟିଏ ଭିତରେ ଆବଦ୍ଧରହି ମହାସିନ୍ଧୁର ସାନ୍ନିଧ୍ୟ ପାଇଥିଲା ସେ । କ୍ଷୁଦ୍ରତା, ସଂକୀର୍ଣ୍ଣତା, ସ୍ୱାର୍ଥପରତା, ଓ ପରଶ୍ରୀକାତରତାର ପରିପନ୍ଥୀଥିଲା ତାର ହୃଦୟର ବିଶାଳତା । ବଡ ପ୍ରଶସ୍ତମନା ଓ ବିଚିତ୍ର ବର୍ଣ୍ଣା ଥିଲା ମୋ ବୋଉର ହୃଦୟ । ଆଧ୍ୟାତ୍ମିକତା ହିଁ ପ୍ରକୃତ ମାନବିକତା ବୋଲି ସେ ବିଶ୍ୱାସ କରି ଆମକୁ ଈଶ୍ୱର ଭକ୍ତି ଓ ଆଧ୍ୟାତ୍ମିକତାର ମାର୍ଗ ଦେଖାଇଥିଲା ସେ । ଆମ ଚେତନାର ଉତ୍ତରଣର ସେ ଥିଲା ପ୍ରଚଳକ ଶକ୍ତି, ଇନ୍ଧନ ସଦୃଶ ।

ନନାଙ୍କର ଦଶାହ ଦିନର କଥା । ଆଉ ଅଳ୍ପ ସମୟ ପରେ ବୋଉର ସୀମନ୍ତିନୀରୁ ସିନ୍ଦୂର ଲିଭିଯିବ । ମୋର ଆଗରେ ତାର ସଧବାତ୍ୱର ମହାର୍ଘ ସନ୍ତକ ମଥାର ସିନ୍ଦୂର, ହାତର ଚୁଡ଼ି, ପିନ୍ଧିଥିବା ଶାଢ଼ି ପୋଖରୀ କୂଳରେ ରାଧି ବାରିକାଣୀ କାଢ଼ି ନେଇଯିବ । ସେ ପିନ୍ଧିବ ଧଳା ଶାଢ଼ି । ବିବାହ, ବ୍ରତ ଆଦି ଶୁଭ କାର୍ଯ୍ୟରେ ପ୍ରଥମେ ଲୋଡ଼ା ହେଉଥିବା ମୋ ବୋଉର ସେଠାକୁ ହେବ ପ୍ରବେଶ ନିଷେଧ । ଆଉ ତାକୁ କେହି କହିବେନି ସୀମନ୍ତିନୀ । ଦୁନିଆ ଆଖିରେ ସେ ହେଇଯିବ ବିଧବା । ଶ୍ରୀହୀନା ହୋଇଯିବ ମୋ ବୋଉ । ଏହା ହିଁ ଭାବିଭାବି ପୂର୍ବଦିନର ରାତି ପାହିଗଲା । ପଢୁଥିଲି ନନାଙ୍କ ମୃତ୍ୟୁରେ ତା'ର ସ୍ୱରଚିତ କବିତା "ସ୍ମୃତିତର୍ପଣ", ତାର ଆତ୍ମବିଳାପ, ମର୍ମସ୍ପର୍ଶୀ ବେଦନାର ଏକ କରୁଣ ଅନୁଭବ । ଆଜି ସେ ବହିକୁ ସେ ବାଣ୍ଟିବ । ଅତ୍ୟନ୍ତ ଆବେଗଭରା ଭାଷାରେ ସେ ଲେଖିଥିବା ଗୋଟିଏ ପଦ:-

"ବରଷା ଦିନରେ ତୁମକୁ ଏକାକୀ
ଛାଡ଼ିବା ମନ ନହେଲା
ନାନା କଉଶଳେ ଭୁଲାଭୁଲି କରି
ଝୁଲୁ ଆସି ନେଇଗଲା ।
ଛାଡି ମାମୁଁ ପାଶେ ଦିଲ୍ଲୀ ଗଲା ଯେ ସେ
ଫେରିତ ଦେଖିଲା ନାହିଁ
ଅଳପ ବୟସେ ଏ ଘୋର ଯାତନା
ମନରୁ ଲିଭିବ ନାହିଁ । "

ଫେରିଲେ ନାତି ମାନଙ୍କର ବ୍ରତଘର କରିବା ଓ ତାକୁ କ'ଣ କହିବେ ବୋଲି ଦେଇଥିବା ପ୍ରତିଶ୍ରୁତି ଅପୂରଣୀୟ ହୋଇ ରହିଗଲା ସବୁଦନ ପାଇଁ । ସେ କଥା ବୋଉ "ସ୍ମୃତିତର୍ପଣ" ବହିରେ ଉଲ୍ଲେଖ କରି ତାହା ତାର ଦୁଃଖଦ ଜୀବନରେ ସବୁଠାରୁ ବଡ଼ ଅବଶୋଷ ବୋଲି ବର୍ଣ୍ଣନା କରିଛି । ସେହିଦିନଠାରୁ ନନାଙ୍କ ଆସିବା ବାଟକୁ ସେ ଚାତକ ମେଘକୁ ଚାହିଁ ରହିଥିଲା ଭଳି ଚାହିଁ ରହିଥିଲା । ବିଚାର ଶକ୍ତି ମୋର ପରାହତ ହେଲା । ଭାବବିହ୍ୱଳତାର କ୍ଷିପ୍ର ଜ୍ୱଳନ ଭିତରେ ଆଉ ସମ୍ଭାଳି ପାରିଲିନି । ଗଲି ବୋଉ ପାଖକୁ । ତାକୁ ଧରି ଭାବ ପ୍ରବଣତାର କୋହକୁ ସମ୍ବରଣ କରିନପାରି ଭୋ ଭୋ ହୋଇ କାନ୍ଦି ଉଠିଲି । ଏକ ଅକୁହା ଆବେଗର ଧାରା ଶ୍ରାବଣ ବୋହି ଚାଲିଥାଏ ବହୁ ଦିନର ସଂଚିତ ବେଦନାର ବିଳାପ ମଧ୍ୟରେ । ବୋଉ ଠିକ୍ ଜାଣି ପାରିଥିଲା, ମୋର ବିନିଦ୍ର ରଜନୀର କାରଣକୁ । କୋଳାଗ୍ରତକରି ମୁଣ୍ଡ ଆଉଁଷି ଦେଇ ତାର ପଣତ କାନିରେ ମୋର ଦୁଇ ଆଖିରୁ ବୋହି ଆସୁଥିବା ଅମାନିଆ ଅଜସ୍ର ଲୁହ ଧାର ପୋଛିଦେଇ ସେ କହିଲା "ସୃଷ୍ଟିର ନିଷ୍ଠୁର ସତ୍ୟକୁ ସ୍ୱୀକାର କରି ଶିଖ, ମୁଁ ଜାଣୁଛି ନନାଙ୍କର ମୃତ୍ୟୁ ତୋ ଜୀବନରେ ପ୍ରଥମ ବଡ଼ ଦୁର୍ଘଟଣା । କିନ୍ତୁ ନନାଙ୍କର ଅଭିନୟ ସରିଗଲା । ତାଙ୍କର ସ୍ୱର୍ଗାବାସ ହେଲା । ଆଜି ନନା ଥାଇ ଯଦି ମୁଁ ଚାଲି ଯାଇଥାନ୍ତି ତେବେ ତାଂକ କଥା ବୁଝିଥାଆନ୍ତା କିଏ ? ତାଙ୍କ ସହିତ ସମସ୍ତେ

ଅଧିକ କଷ୍ଟ ଭୋଗ କରୁଥାଆନ୍ତେ । ଭଗବାନ ଠିକ ସମୟରେ ତାଙ୍କୁ ନେଇ ଯାଇଛନ୍ତି । ତାଙ୍କର ଆତ୍ମା ସ୍ୱର୍ଗାବାସରେ ଶାନ୍ତିରେ ରହୁ । ଆଉ ମୋର ତ ତୁମେ ସବୁ ଅଛ । ତୁମେ ମାନେ ହେଉଛ ମୋ ପାଇଁ ତାଙ୍କର ଅମୂଲ୍ୟ ବରଦାନ, ମୋ ପାଇଁ ବ୍ୟସ୍ତ ହେବୁନି । ତୋତେ ମୋ ରାଣ" । ବୋଉ ଭାବିଥିଲା ନନାଙ୍କ ମହାପ୍ରୟାଣର ପରବର୍ତ୍ତୀ ଅବସ୍ଥା ଭାବି ମୋର ଚକ୍ଷୁ ଲୋତକାପ୍ଲୁତ । କିନ୍ତୁ ନନାଙ୍କର ମୃତ୍ୟୁକୁ ମୁଁ ଏହା ଭିତରେ ସ୍ୱୀକାର ଓ ସହ୍ୟ କରିସାରିଥିଲି । ବୋଉର ବୈଧବ୍ୟ ଜୀବନ ମୋର ଦୁର୍ବିସହ ହୋଇ ଉଠୁଥିଲା କାରଣ, ତାର ବାତ୍ସଲ୍ୟର ପ୍ରାଚୁର୍ଯ୍ୟ ଭିତରେ ମୁଁ ହଜିଯାଇଥିଲି ।

ବୋଉ ଜାଣିନଥିଲା । ତାକୁ ମୁଁ କହିନଥିଲି । ବ୍ରହ୍ମପୁରରେ ମୋ ପାଖରେ ଥିବାବେଳେ ନନାଙ୍କର ପ୍ରତିଟି ଦିନଥିଲା ପରଦିନ ଗାଁକୁ ଆସିବାର ପ୍ରାକ୍ ପ୍ରସ୍ତୁତିର ଦିନ । ମୋ ସ୍ତ୍ରୀର ଶାଢ଼ି, ଚୁଡ଼ି, ବ୍ଲାଉଜ୍, ସାୟା ଆଦି ଲୁଚାଇ ରଖୁଥିଲେ ତାଙ୍କ ବ୍ୟାଗ ଭିତରେ ଗାଁରେ ବୋଉକୁ ଦେବାପାଇଁ । ସ୍ତ୍ରୀ ପଚାରିଲେ କୁହନ୍ତି "ମୁଁ ତାକୁ ଶାଶୁ ପାଇଁ ରଖିଛି, କାଲି ଗାଁକୁ ଯିବି ତ । ଗଲେ ତାକୁ ଦେବି ପିନ୍ଧିବା ପାଇଁ । ଗାଁରେ ବୋଉ ସହିତ ଆଉ କିଛି ଦିନ କଟାଇବା ବୋଧହୁଏ ତାଙ୍କର ଥିଲା ଆନ୍ତରିକ ଇଚ୍ଛା । ଏତେଶୀଘ୍ର ସେ ଚାଲିଯିବାକୁ ଚାହୁଁନଥିଲେ ବୋଧେ । ପ୍ରକୃତିକୁ ଭଲପାଉଥିବା ପ୍ରକୃତିର ପୂଜାରୀ ସେ, ଇଚ୍ଛା କରୁଥିଲେ ଗାଁରେ ପ୍ରକୃତି କୋଳରେ, ମୁକ୍ତ ଆକାଶରେ ମୁକ୍ତ ବିହଙ୍ଗମ ପରି ଆଉ କିଛି ଦିନ ବୁଲିବା ପାଇଁ ଏ ବନ୍ଦୀ ଜୀବନରୁ ମୁକ୍ତିପାଇ । କିନ୍ତୁ ମୁଁ ଥିଲି ଏଥିରେ ବାଧକ । ସେ କିନ୍ତୁ ଜାଣିନଥିଲେ, ଆମେ ବି ଜାଣିନଥିଲୁ । ନିଃଶବ୍ଦର ସହ ତାଙ୍କ ଜୀବନ ସ୍ରୋତ ମୃତ୍ୟୁସିନ୍ଧୁର କରାଳ ଲହରୀକୁ ଭେଟିବାକୁ ତତ୍ପର ହୋଇ ଉଠିଥିଲା, ତାର ସମୀପବର୍ତ୍ତୀ ହୋଇସାରିଥିଲା । ପରିସ୍ଥିତି ଏପରି ହେଲା ଯେ ଈଶ୍ୱର ମୋତେ ସେଦିନ ଘରେ ରଖିଦେଲେ ସତ, କିନ୍ତୁ ତାଙ୍କର ଚିକିତ୍ସା ପାଇଁ ବି ସମୟ ଦେଲେନି । ମାତ୍ର ୫ ମିନିଟ ଭିତରେ ସବୁଶେଷ । ଭୋଗିନାହାନ୍ତି ସେ ମୃତ୍ୟୁ ଯନ୍ତ୍ରଣା କି ଭୋଗିବେନି ସେ ଯମଯନ୍ତ୍ରଣା । ରଖି ପାରିଲିନି ତାଙ୍କୁ ଆଉ କିଛି ଦିନ ତାଙ୍କ ଜୀବଦଶାରେ ବୋଉ ପାଖରେ ନେଇ ଗାଁରେ ଛାଡ଼ି ଦେବା ପାଇଁ । ଯଦି ଜାଣିଥାଆନ୍ତି ଯେ ମୃତ୍ୟୁ ତାଙ୍କର ଆସନ୍ନ, ତେବେ ଯାହା ହେଲେ ବି ତାଙ୍କୁ ଅନ୍ତତଃ ଗାଁରେ ନେଇ ଛାଡିଦେଇ ଆସିଥାନ୍ତି । ଅବଶୋଷ ରହିଗଲା ଆଜୀବନ । ଦୋଷୀ ହୋଇ ଅନୁତାପ କରୁଛି । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ହିଁ ବଳବାନ । ମୋର ଇଚ୍ଛା ଏକ ବ୍ୟର୍ଥ ପ୍ରୟାସ ଥିଲା । ଗୋଟିଏ ବୃନ୍ତରେ ଆଉ ଗୋଟିଏ କୁସୁମ ଫୁଟିଲାନି କି ତାର ଅମୀୟ ସୌରଭ ଆଉ ସେ ଗୃହକୁ ସୁରଭିତ କରିପାରିଲାନି । ସେ ଚାଲିଗଲେ ଅମରାବତୀକୁ । ସେ ଶାଢ଼ି ଓ ଚୁଡ଼ି ବୋଉ ପାଖକୁ ନେଇକରି ଦେଲି ସତ କିନ୍ତୁ କାହିଁକି ? ବୋଉ ତାକୁ ପିନ୍ଧିବନି । ମୁଁ ସେ ବିଷୟରେ ଆଉ ଅଧିକ ଜାଣିବାକୁ ଇଚ୍ଛା କରିନି । ଏ ଅବଶୋଷ ମୋର ମନେ ପଡିଲେ ଆଜି ବି ମୋ ଆଖିରେ ଲୁହ ଆସିଯାଉଛି ।

ମୋ ବୋଉ, ଥିଲା ଦୟାର ସୀମାହୀନ ସାଗର । ନିଜେ ଭୋକିଲା ରହି ଅନାହାରର ପେଟ ପୂରାଉଥିବା ଏକ ଆଦର୍ଶନୀୟା ମାଆ । ଭିକାରି ଠାରୁ ଆରମ୍ଭ କରି ଯେ ଆସିଲା, ତା ତୁଣ୍ଡରେ ଆହାର ଦେବା ଥିଲା ତାର ସର୍ବଶ୍ରେଷ୍ଠ ଧର୍ମ । ଘରକୁ ଆସିଲ ତ ଖାଇ କରିଯାଅ । ଯେତେ ମନା କଲେ ବି ଶୁଣେନି । ବାଧ କରି ଖୁଆଇ ଛାଡ଼େ ।

ଅଭୁକ୍ତ ଓ ଅନାହାର ଲୋକର ପେଟକୁ ଠିକ୍ ଚିହ୍ନିଥିଲା ସେ । ମୋର ବୋଉ ଥିଲା ନିଆରା ମଣିଷଟିଏ, ଏକ ସ୍ନେହଶୀଳା କୋମଳ ହୃଦୟର ନିଦର୍ଶନ । ଦିନେ ଖରାଦିନେ, ଦ୍ୱିପହର ସମୟରେ ଚନ୍ଦନପୁରରୁ ପିଲାମାନଙ୍କ ସହିତ ଆସି ରିକ୍ସାରେ ଗାଁ ରେ ପହଁଞ୍ଚିବା ପରେ ରିକ୍ସା ଚାଳକଟିକୁ ଖରାରେ ଆସିଥିବାରୁ ବାଧ କରି ଖାଇବାକୁ ଦେବାର ଘଟଣା ମୋର କାଲି ପରି ମନେ ପଡୁଛି । ସେ ଥିଲା ସମସ୍ତଙ୍କ ପାଇଁ ଅନ୍ନଦାତ୍ରୀ । ତା'ର ଯେତେକ ଶାଢ଼ି ରହିଥିଲା ସବୁଯାକ- ସେ ଗାଁର ଦରିଦ୍ର ମହିଳା ମାନଙ୍କୁ ବାଣ୍ଟି ଦେଉଥିଲା । କୌଣସି ଗରିବ ଲୋକ ଯଦି ଆସି ତାକୁ ଚାଉଳ, ଡ଼ାଲି ଆଦି ଯାହା ମାଗେ ତାକୁ ମଧ ମୁକ୍ତ ହସ୍ତ ଓ ଆନନ୍ଦ ମନରେ ଦେଇଥାଏ । ମତେ ସେ କହିଥାଏ, "ଅନ୍ନଦାନ ମହାପୁଣ୍ୟ" ଏହି ମୂଲ୍ୟବୋଧ ଯୋଗୁ ସେ ହୋଇ ପାରିଥିଲା ସାଧାରଣରୁ ଅସାଧାରଣ । ଜୀବନର ଅରୁଣ ଲଗ୍ନ ପରଠାରୁ, ଦୁଃଖ, କଷ୍ଟର ଦାବାନଳକୁ ଅଙ୍ଗୀକାର କରି ମଧ ଅନ୍ୟର ମୁହଁରେ ସାମାନ୍ୟତମ ଆନନ୍ଦର ସ୍ୱାକ୍ଷର ସୃଷ୍ଟି କରିବା ପାଇଁ ସତେ ଯେପରି ବିଧି ସୃଷ୍ଟ ଅନ୍ୟତମ ଦରଦୀ ପ୍ରାଣ ଥିଲା ମୋ ବୋଉ । ଗ୍ରାମର ଅସହାୟ, ଅଭାବୀ ଓ ଅଭୁକ୍ତଙ୍କ ପାଇଁ ଏକ ଅନିର୍ବାଣ ଆଲୋକ ବର୍ତ୍ତିକା ହୋଇ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇ ପାରିଥିଲା । ବୋଉ ବିଷୟରେ କହିଲେ ଅସରନ୍ତି ହେବ । ଗୋଟିଏ ସମ୍ପୂର୍ଣ୍ଣ ଓ ପ୍ରଜ୍ଞାଦୀପ୍ତ ପୁସ୍ତକ ହୋଇପାରିବ ତାର ଚରିତ୍ର ଚିତ୍ରଣ । ଅନେକ ଦିଗରୁ ସେଥିଲା ନାରୀ ସମାଜର ଦର୍ପଣ ସଦୃଶ; ଏକ ଚମତ୍କାର ପରିମାପକ । ତାକୁ ନିରେଖିଲେ ଜଣେ ନିଜକୁ ଖୋଜିପାଇବ ଓ ନିଜର ଆତ୍ମସମୀକ୍ଷା, ଆତ୍ମସ୍ୱାଭିମାନର ଆକଳନ କରିପାରିବ । ଦୁଃଖ, ଯନ୍ତ୍ରଣା, ପତି ଓ ପୁତ୍ର ଶୋକରେ ଜର୍ଜରିତ ତାର ଆହତ ମାତୃତ୍ୱ କିନ୍ତୁ ଭୁଲିଯାଇନଥିଲା ମାତୃ ହୃଦୟର ଉଦାର ଶିରୀ ।

ଯେତେ ଅଭାବୀ ହେଲେ ବି ତାର ହାତଧରି ତା ଅଭାବକୁ ଆପଣାଭାବରେ ଭସାଇଦେବା, ଏହି ଅଭ୍ରାନ୍ତ ଆଧ୍ୟାତ୍ମିକତାରେ ଅଭିନିବିଷ୍ଟ ହେବା ଥିଲା ତା ଚରିତ୍ର ଓ ସଂପର୍କର ସୀମାହୀନ ଶ୍ୟାମଳ ଶାଳୀନତା । ଏହା ହିଁ ଥିଲା ତା'ର ସାର୍ଥକ ସଂପତ୍ତି ଓ ସଂସ୍କାରୀ ଥିଲା ତାର ଅନ୍ତିମ ଶିକ୍ଷା, ବିଚାର ଓ ସଂସ୍କୃତି । ପୁରୀ ଜିଲ୍ଲାର ପ୍ରସିଦ୍ଧ ବ୍ରାହ୍ମଣ ଶାସନ ଶ୍ରୀରାମଚ଼ନ୍ଦ୍ରପୁର ଗ୍ରାମର ଏକ ନୈଷ୍ଠିକ ସଂଭ୍ରାନ୍ତ ବ୍ରାହ୍ମଣ ପରିବାରରେ ତାର ଜନ୍ମ । ସ୍ୱର୍ଗତ ରାମଚନ୍ଦ୍ର ତ୍ରିପାଠୀଙ୍କର ୪ ପୁଅରେ ମୋ ବୋଉ ଥିଲା ଏକ ମାତ୍ର ଅଲିଅଳି କନ୍ୟା ସନ୍ତାନ । ଶୁଣିଥିଲି ବୋଉ ମୋର ପିଲା ଦିନେ ବହୁତ ଗରିବ ଥିଲା । ଶୁଣିଛି ତାର ପିଲାବେଳର ସୁଖ, ଦୁଃଖ, ବ୍ୟଥା ଓ ବେଦନାସିକ୍ତ କାହାଣୀ । ଦାରିଦ୍ର୍ୟ ସହ ସଂଘର୍ଷ ଭିତରେ ବଢ଼ି ପରବର୍ତ୍ତୀ ଅବସ୍ଥାରେ ପାଳିତ କନ୍ୟା ଭାବେ ମାତ୍ର ୯ ବର୍ଷ ବୟସରେ ବାଲ୍ୟ ବିବାହ କରିଥିଲା ନନାଙ୍କୁ । ସେ ଜାଣିଛି ଭୋକର ଦାଉ, ଅଭୁକ୍ତ ପେଟର ଜ୍ୱାଳା, ତାର ବିସ୍ତାରିତ ମାତୃ ହୃଦୟରେ ଏହି ଭଳି ଲୋକଙ୍କ ପାଇଁ ସ୍ଥାନ ସଦାସର୍ବଦା ଉନ୍ମୁକ୍ତ ଥିଲା । ସେ ଥିଲା ଲୋକ ମୁଖରେ ପ୍ରକୃତ ଅନ୍ନପୂର୍ଣ୍ଣା । ପଙ୍କରୁ ପଙ୍କଜ ଭଳି ସେ ଥିଲା ସ୍ୱୟଂପ୍ରଭା, ବଦାନ୍ୟତାରେ ଅପରାଜିତା, ପ୍ରତୀକରେ ନୁହେଁ ପ୍ରକୃତରେ, ଆମକୁ ମଣିଷ କରି ଗଢ଼ିବାରେ ସ୍ୱୟଂସିଦ୍ଧା, ଏକ ବିଚ଼କ୍ଷଣ ମୂର୍ତ୍ତିକାର । ସେ ଥିଲା ସେବା, ପତିବ୍ରତା, ପରୋପକାର ପରି ଦେବଦୁର୍ଲଭ ଗୁଣରେ ବିଭୂଷିତା ଜଣେ ମହୀୟସୀ ମହିଳା, ଏକ ଆଦର୍ଶନାରୀ ହୃଦୟର ପ୍ରତିବିମ୍ବ ସାଜି ନାରୀ ସମାଜକୁ ଉଦ୍‌ବୁଦ୍ଧ କରୁଥିବା ଏକ ତପସ୍ୱିନୀ ସମ ନାରୀରତ୍ନ ।

ଚାକିରି କଲାପରେ ମଧ୍ୟ ସେ ମୋତେ କେବେ ପଇସା ମାଗିନି । ମୁଁ ଫେରିଗଲା ବେଳେ କିଛି ଟଙ୍କା ଦେଲେ ତାକୁ ଗ୍ରହଣ ନକରି କୁହେ "ବାବୁରେ ଦୂରରେ ଅଛୁ । ତୋତେ ତୋର ରୋଜଗାର ନିଅଣ୍ଟ ପଡୁଥିବ । ମୋ ଠାରୁ କିଛି ଟଙ୍କା ନେଇଯା । ତାର ସରଳ ମନରେ ବହଳ ଚିନ୍ତା । ପୁଅ ଦୂରରେ ଅଛି । ଅଭାବ ଅସୁବିଧାରେ ପଡି ସେ ହଇରାଣ ହେଉଥିବ । ଏ ହେଉଛି ତାର ମାତୃହୃଦୟର ଦ୍ରବୀଭୂତ ଦରଦୀ ପଣିଆ । ବାତ୍ସଲ୍ୟର ଆତୁରତା । ମୋ ହାତକୁ ବଢ଼ାଇଦିଏ ଟ୫୦୦ର ଦୁଇଟି ନୋଟ । ମନେରଖ ଘରୁ କାହାକୁ ଭୋକିଲା ଛାଡ଼ିବୁନି । ମୁଁ ବୋହୂକୁ ବି କହିଛି" । ସେହିଦିନ ଠାରୁ ଗାଁ ଘରୁ, ବା, ମୋ ଘରୁ କେବେ କେହି ନଖାଇ ଯାଇଥିବା ମୋ ନଜରକୁ ଆସି ନାହିଁ । ଆମର ଅନୁପସ୍ଥିତିରେ ଗାଁରେ ଆଜି ପର୍ଯ୍ୟନ୍ତ ମଣ୍ଟୁ, ଘରେ ସେ ପରମ୍ପରାକୁ ବଜାୟ ରଖିଛି । ସେଥିଲା ମାତୃତ୍ୱର ଏକ ଅମୃତ ଅନୁଭବ । ମୁଁ ବୋଉକୁ କହେ, ତୁ ବଞ୍ଚିଥିବା ଯାଏ ଆମେ ଭାଇଭଉଣୀ ଅଭାବୀ ହେଲେ ବି 'କୁବେର' । ଏ ମୋର ଭାଷାନୁହେଁ । ଏହା ଆମ ଶାସ୍ତ୍ରୀୟ ପରିଭାଷା । "ଯାହାର ମାଆ ଥାଏ, ସେ ଦରିଦ୍ର ହେଲେ ବି କୁବେର" ।

ଦିନେ ଥରେ ଗାଁକୁ ଯାଇଥିବା ସମୟରେ ମୋର ଜଣେ ବଂଧୁ ମୋତେ କହିଲେ "ତୁମ ଘରର ଅନ୍ୟ ନାମ ବର୍ତ୍ତମାନ ଗାଁରେ 'ମଠ', ଆଶ୍ରମ ପାଲଟି ଯାଇଛି । ଲୋକମାନେ ତୁମ ଘରକୁ 'ମଠ' ବା ଆଶ୍ରମ ବୋଲି ସମ୍ବୋଧନ କରିବା ଆରମ୍ଭ କଲେଣି । ମଠକୁ ବହୁଲୋକ ଯିବା ଆସିବା କଲାଭଳି, ତୁମ ଘର ସବୁବେଳେ ଗହଳି, ସମସ୍ତଙ୍କୁ ଦୁଆର ଖୋଲା । ଯିଏ ଆସିଲା ଏଠି ଖାଇକରି ଯାଏ । ତୁମେ ଏ ବ୍ୟବସ୍ଥା ବନ୍ଦ କର । ବୋଉ କାହା କଥା ଶୁଣୁନାହାନ୍ତି ।" କିନ୍ତୁ ମୁଁ ତା କରିନଥିଲି । ବୋଉର ଆତ୍ମସନ୍ତୋଷ ଓ ଆନନ୍ଦରେ ମୁଁ ବାଧକ ହେବାକୁ ବିବେକ ମୋତେ ବାରଣ କରିଥିଲା । ଅଭୁକ୍ତ ଓ ଅନାହାରଙ୍କ ତୁଣ୍ଡରେ ଆହାର ଦେଇ ମହାପୁଣ୍ୟ ଅର୍ଜନ କରିଥିବା ସେ ହେଉଛି ଏକ ପୁଣ୍ୟାତ୍ମା ।

ଗାଁ ସାରା ବ୍ୟାପି ଯାଇଥିଲା ବୋଉର ସେହି ମାନବିକ ମୂଲ୍ୟବୋଧ, ସମ୍ବେଦନଶୀଳତାର ପ୍ରଚାର । ତାର ବ୍ୟକ୍ତିତ୍ୱର ଆଦର୍ଶ ସମସ୍ତଙ୍କୁ ଆକର୍ଷିତ କରିପାରିଥିଲା । ତା ଚରିତ୍ର ସଂକୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ ଥିଲା । ସୁଦୀର୍ଘ ଓ ଗଭୀର ଥିଲା ତାର ହୃଦୟର ପ୍ରଶସ୍ତତା । ତା ଚେତନାରେ ଏକ ଉଜ୍ଜ୍ୱଳ ମାତୃତ୍ୱର ଦୃଷ୍ଟିଭଙ୍ଗୀ ଥିବାବେଳେ ତାର ହୃଦୟରେ ଜଣେ ଆଦର୍ଶ ନାରୀର ମାନବୀୟ ଉନ୍ମେଷ ସ୍ପଷ୍ଟ ପ୍ରତିଭାତ ହୋଇଉଠୁଥିଲା । ଏକ ଉନ୍ନତ ମାନବବାଦୀ ଭାବଧାରାର ସେଥିଲା ଏକ ଅନନ୍ୟ ବିସ୍ମୟ । କେବଳ ଅଭୁକ୍ତ ତୁଣ୍ଡରେ ଆହାର ଦେବା ସହିତ ସେ ଥିଲା ବହୁବିଧ ଚରିତ୍ରର ସମାହାର । ଗାଁର ଯେ କୌଣସି ବ୍ୟକ୍ତି ଆର୍ଥିକ ସହାୟତା ପାଇଁ ଆସିଲେ ତା ପାଖରୁ ରିକ୍ତ ହସ୍ତରେ ଫେରୁ ନଥିଲେ । ଋଣ ଆକାରରେ ଦେଲେ ମଧ୍ୟ ଶୁଝିବାକୁ କାହାକୁ ବାଧ୍ୟ କରେନି । ତାର ମୃତ୍ୟୁ ପରେ ଦିନେ ତା ବାକ୍ସ ଖୋଲୁ ଖୋଲୁ ଦେଖିଲି ଏପରି ଋଣ ନେଇ ଶୁଝି ନଥିବା ଲୋକଙ୍କର ଏକ ଲମ୍ବା ତାଲିକା । ପ୍ରାୟ ସମସ୍ତେ ଆମର ପଡ଼ୋଶୀ ଓ ନିକଟ ସଂପର୍କୀୟ ମଧ୍ୟ ।

ମୁଁ ବି ବୋଉର ଅବର୍ତ୍ତମାନରେ ସେମାନଙ୍କୁ ପଚାରିବାକୁ ଇଚ୍ଛା କରିନି କାରଣ ଦରିଦ୍ରଲୋକ ମାନଙ୍କ ପାଇଁ ତାର ଆବେଗ ଥିଲା ଖୁବ୍ ଦୀର୍ଘ ।

ମୋ ବୋଉ ଥିଲା ସମସ୍ତଙ୍କର ମାଆ । ଗାଁରେ ସମସ୍ତେ ତାକୁ ମାଆ ବୋଲି ବି ଡ଼ାକୁଥିଲେ । ଦୁଃଖ ହେଉ ବା ସୁଖ ହେଉ, ଭଲ ହେଉ ବା ମନ୍ଦ ହେଉ ସମସ୍ତଙ୍କୁ ସେ ନିଜ ପିଲା ଭଳି ଦେଖୁଥିଲା । ଦୁଷ୍ଟ ଚରିତ୍ରର ପିଲାଙ୍କୁ ପ୍ରଶ୍ରୟ ନ ଦେବାକୁ କହି ସେମାନଙ୍କୁ ଘରକୁ ପ୍ରବେଶ ନ କରିବାକୁ ତାକୁ କହିବାରୁ ସେ ସଂସ୍କୃତରେ ଦୁର୍ଗା ସ୍ତୋତ୍ରର ଶ୍ଳୋକଟିଏ "କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି" ଆବୃତ୍ତି କରି ମୋତେ ନିରବ କରି ଦେଇଥିଲା । ତାର ମାତୃ ସ୍ନେହରେ ନଥିଲା ମଳିନତା କି ଆବିଳତା । ତାର ସନ୍ତାନ ବତ୍ସଳତାର ପଟାନ୍ତର ନଥିଲା । ଏ ବିଷୟରେ କେବେ କିଛି କହିଲେ ସେ କହେ "ମାନବ ସେବା ହିଁ ମାଧବ ସେବା" । "ଅନ୍ନଦାନ ମହାପୁଣ୍ୟ" । "ପରୋପକାରୟ ପୁଣ୍ୟାୟ, ପାପାୟ ପରପୀଡନମ୍ ।"

ମୋ ବୋଉ ଥିଲା ଜଣେ ମହୀୟସୀ ମହିଳା । ନନାଙ୍କ ଦ୍ୱାରା ଲିଖିତ ଭିନ୍ନ ପରିପ୍ରେକ୍ଷୀରେ ହେଲେ ମଧ୍ୟ ଗୋଟିଏ କବିତାର କେତେକ ଉଦ୍ଧୃତାଂଶ ମୋ ବୋଉ ପ୍ରତି ଯଥାର୍ଥ ଭାବରେ ପ୍ରଯୁଜ୍ୟ । ନନାଙ୍କ ଜୀବିତାବସ୍ଥାରେ ଗୋଟିଏ ଗଛର ଗୋଟିଏ ବୃନ୍ତରେ ପ୍ରସ୍ଫୁଟିତ ଦୁଇଟି କୁସୁମ ଭଳି ଆମ ଘର ସେମାନଙ୍କ ଅମିୟ ସୌରଭରେ ସୁଗନ୍ଧିତ ହୋଇ ଉଠୁଥିଲା । କିନ୍ତୁ ନନାଙ୍କର ଅବର୍ତ୍ତମାନରେ ବୋଉ ବହୁ ସମୟରେ ବୋଲୁଥିବାର ମୁଁ ଶୁଣିଛି ।

ସ୍ୱର୍ଗୀୟ ଦାମ୍ପତ୍ୟ ପ୍ରେମ ସୁଧାରସ
ସିକ୍ତ କରିଥିଲା ହୃଦତାମରସ
ଏକପ୍ରାଣେ ଯେବେ ଲାଗଇ ଆଘାତ
ଅନ୍ୟପ୍ରାଣେ ଖେଳିଯାଏ ପ୍ରତିଘାତ ।

ଏ ମର ସଂସାରେ ସେହି ଏକ ଧନ୍ୟ
ଅନାବିଳ ଯାର ଦାମ୍ପତ୍ୟ ଜୀବନ
ଦାମ୍ପତ୍ୟ ପ୍ରଣୟ ମନ୍ଦାକିନୀ ସ୍ରୋତ
ପ୍ଳାବନ ପବିତ୍ର ହୃଦୟ ସରିତ ।

ଏକ ବୃନ୍ତେ ଥିଲା ଦୁଇଟି କୁସୁମ
ଫୁଟି ଦିଶୁଥିଲା ଅତି ମନୋରମ ।
ଅମୀୟ ସୌରଭ ରହିଥିଲା ପୂରି
ତୋଷୁଥିଲା ମୋଦେ ପରାଣ ସବୁରି ।

"କେଉଁ ମାଳାକାର ଦେବାର୍ଚ୍ଚନା ଲାଗି
ଚାହିଁ ରହିଥିଲା ଶୁଭବେଳା ଜଗି
ଅତର୍କିତେ ଆସି କରି ବୃନ୍ତଚ୍ୟୁତ
ଗୋଟିଏ କୁସୁମ ହରିଲା ଦୁର୍ବୃତ୍ତ"

ମୋ ବୋଉ ଥିଲା

"ମର୍ତ୍ତ୍ୟେ ସେ ମାନବୀ ଦେବୀ ସ୍ୱରୂପିଣୀ
ସାଧ୍ୱୀ ପତିବ୍ରତା ଆଦର୍ଶ ଗୃହିଣୀ,
ଦୟା, କ୍ଷମା, ଶାନ୍ତି, ସେବା ଅତୁଳନ
ହୋଇଥିଲା ଯା'ର ଶ୍ରୀ ଅଙ୍ଗ ଭୂଷଣ ।
ସନ୍ତାନ ବତ୍ସଳା, ସଦା ଶାନ୍ତଶୀଳା
ଦାନେ ମୁକ୍ତ ହସ୍ତା ସାକ୍ଷାତ କମଳା
ମଧୁର ଭାଷିଣୀ, ଆହ୍ଲାଦ ଦାୟିନୀ
ଅଭୟ ପ୍ରଦାନେ ଶଙ୍କର ମୋହିନୀ"

× × ×

"ନିଜ ସୁଖ ଲାଗି ନଥିଲା ତ ସ୍ପୃହା
ପର ଦୁଃଖ ଦେଖି କାନ୍ଦୁଥିଲା ହିଆ
ଦୀନ ଦରିଦ୍ରଙ୍କ ହୃଦୟ ସଙ୍ଗାଳି
କ୍ଷୁଧାତୁରଙ୍କର ଥିଲା ଅନ୍ନଥାଳି" ।

× × ×

ପତିକୁଳ ପିତୃ କୁଳ ଉଦ୍ଧାରିଣୀ
କଳିରେ ସାବିତ୍ରୀ ସତୀକୁଳ ରାଣୀ,
ପୂର୍ବ ପୁରୁଷଙ୍କ ତପସ୍ୟାର ଫଳେ
ଅଥବା ଜାହ୍ନବୀ ଜାତ ଦ୍ୱିଜ କୁଳେ ।"

ବୋଉର ଅବର୍ତ୍ତମାନରେ ମୋର ମନେପଡ଼େ ନନାଙ୍କର ସେହି ପୁରୁଣା କବିତା -

କୋଟି ଲାବଣ୍ୟର ଅନୁପମ ଖଣି
ସାଗର ସମ୍ଭୂତା ବିଷ୍ଣୁ ପାଟରାଣୀ
କରିବାକୁ ନିଜ ହୃଦୟ ମଣ୍ଡନ
ନେଇଛନ୍ତି ଇଛି ସେ ଯୋଗ୍ୟ ସୁମନ ।

ଦେବ ଦ୍ୱିଜଭକ୍ତି ଥିଲା ନିରନ୍ତର
ସାଧୁସନ୍ଥ ପାଇଁ ସଦା ମୁକ୍ତ ଦ୍ୱାର
ପୁରଜନେ ଶ୍ରଦ୍ଧା ରହିଥିଲା ପୁରି
ପରିଜନେ ସ୍ନେହ ଥିଲା ସର୍ବୋପରି ।
ସତୀ ତେଜ ପୁଞ୍ଜେ ମଳିନ ଭାସ୍କର
ଅମ୍ବର ତେଜିଣ ଗଲେ ଅସ୍ତାଚଳ
ନିଜର କଳଙ୍କ ଲୁଚାଇବା ଆସେ
ଅଦୃଶ୍ୟ ହୋଇଲେ ଚନ୍ଦ୍ରମା ଆକାଶେ ।

ଧରାତଳେ କର୍ମ ସରିଲା ଯେଦିନ
ଅମରାବତୀରୁ ଆସିଲା ଆହ୍ୱାନ
ନିଜେ ଜନ୍ତୁରାଜ ଅମର ବିମାନେ
ଆସି ଘେନିଗଲେ ସେ ନାରୀ ରତନେ ।

ପୁରାଣ ପ୍ରସିଦ୍ଧା ସାବିତ୍ରୀ ସୁନ୍ଦରୀ
ଅହଲ୍ୟା, ଦ୍ରୌପଦୀ ତାରା, ମନ୍ଦୋଦରୀ
ରହିଛନ୍ତି ଯହିଁ ତହିଁ ଯୋଗ୍ୟାସନ
ଲଭିକର ସତୀ ଶାନ୍ତି ସୁଧାପାନ ।
କର ଶୁଭାଶୀଷ ରହି ଦିବ୍ୟଧାମେ
ବିଚ୍ଛେଦ ବିଧୁର ଅଧମ ସନ୍ତାନେ
ଲଭି ଧନ ଜ୍ଞାନ ବିପୁଳ ସମ୍ମାନ
ଉଡାନ୍ତୁ ଜନନୀ ଗୌରବ କେତନ ।

ଏହି କେତୋଟି ପଦ ହେଉଛି ବୋଉର ମହନୀୟ ଚରିତ୍ରର ସ୍ୱର୍ଣ୍ଣାଭ ଦିଗ । ମନେପଡେ ସନ୍ଥ କବିଙ୍କର ଗୋଟିଏ ପଦ :-

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁଦେଖୁ କେବା ସହୁ ।
ମୋ ଜୀବନ ପଛେ ନର୍କେ ପଡିଥାଉ
ଜଗତ ଉଦ୍ଧାର ହେଉ ।"

ଲୋକଙ୍କର ଦୁଃଖ ଯନ୍ତ୍ରଣାରେ ତାର ହୃଦୟ ଦ୍ରବୀଭୂତ ହୋଇଯାଏ । ମନ ଆକୁଳ ହୋଇଉଠେ, ସେ ତାର ନିଷ୍କାମ ସେବାଦ୍ୱାରା ଈଶ୍ୱରଙ୍କ ଆଡକୁ ଅଗ୍ରସର ହୋଇଚାଲିଥାଏ । ସେ ନଥିଲା ଏକ ମାନବୀ ସେଥିଲା ଦିବ୍ୟ ଦେହଧାରିଣୀ ଏକ ମହାମାନବୀ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ବୋଉ ଆମର ସ୍କୁଲ୍ ମାଡ଼ି ନାହିଁ । କିନ୍ତୁ ସେ ଥିଲା ଆମ ପାଇଁ ଏକ ଚଳନ୍ତି ବିଦ୍ୟାଳୟ । ପ୍ରଥମ ଶିକ୍ଷକ । ସଂସ୍କାରର ସେ ଯେଉଁ ଔଷଧ ପାନକ ଆମକୁ ଖୁଆଇ ଦେଇଛି, ତାହା ସଂଜୀବନୀ ପରି ଆମ ଜୀବନର ସକଳ ସମସ୍ୟାକୁ ଆଜି ପର୍ଯ୍ୟନ୍ତ ସମାଧାନ କରିବାରେ ସହାୟକ ହେଉଛି । ସେ ରାମାୟଣ, ମହାଭାରତ, ଗୀତା, ଚଉତିଶା ପରି ପାରମ୍ପରିକ ପୁରାଣ ସାହିତ୍ୟକୁ ଅନର୍ଗଳ ଗାଇ ପାରୁଥିଲା । ସେ ସବୁ ବହିକୁ ଯତ୍ନର ସହିତ ମୁଁ ଆଲମାରି ଭିତରେ

ସାଇତି ରଖିଛି; ବୋଉର ସ୍ମୃତିର ସନ୍ତକ କରି । ଯେଉଁ ପୁରାଣ ବହି କେଉଁଠି ମିଳିବନି ସେ ବୋଉ ପାଖରେ ମିଳିବ । ସୃଜନଶୀଳତା ଥିଲା ତାର ଏକ ଜନ୍ମଗତ ପ୍ରତିଭା । ଶ୍ରେଣୀଗୃହ ଦେଖି ନଥିଲେ ମଧ ମୋ ବୋଉ ଥିଲା ଜଣେ ଆଶୁକବି ଓ ବିଦୁଷୀ ମହିଳା । ନନାଙ୍କର ଅନବଦ୍ୟ ସୃଷ୍ଟି ବିଭିନ୍ନ ଛନ୍ଦ ଓ ରାଗରେ ସମୃଦ୍ଧ ସଂପୂର୍ଣ୍ଣ ରାମାୟଣ "ଗୀତି ରାମାୟଣ"ର ଶବ୍ଦସଂଯୋଜନା ଓ ସ୍ୱର ନିର୍ଦ୍ଧାରଣ ତାର ବିନା ସ୍ପର୍ଶରେ ଅସମ୍ପୂର୍ଣ୍ଣ ରହି ଯାଇଥାଆନ୍ତା । ଭକ୍ତ କବି ଜୟଦେବଙ୍କ ଲିଖିତ 'ଗୀତଗୋବିନ୍ଦ'ର ଅସଂପୂର୍ଣ୍ଣ ପଦକୁ ଭଗବାନ ଶ୍ରୀକୃଷ୍ଣ ଆସି ପୂରଣ କଲାଭଳି ନନାଙ୍କ ଦ୍ୱାରା ରଚିତ 'ଗୀତି ରାମାୟଣ' ଆଦି ବହୁ ଭକ୍ତିପୂର୍ଣ୍ଣ ଗୀତି କବିତାର ଅସଂପୂର୍ଣ୍ଣ ପଦକୁ ସେ ପୂରଣ କରିଥିଲା ।

ନନା ଗାଁ ହାଇସ୍କୁଲ୍ ଭାର୍ଗବୀ ବିଦ୍ୟାମନ୍ଦିରରେ ଦୀର୍ଘ ୨୦ ବର୍ଷ କାଳ ଶିକ୍ଷକତା କରି ସସମ୍ମାନେ ଅବସର ଗ୍ରହଣ କରିଥିଲେ । ଅବସର ପରେ ନନାଙ୍କ ସୃଜନ ଜଗତ ସହ ଅଙ୍ଗାଙ୍ଗୀ ଭାବରେ ଏକ ସକ୍ରିୟ ଅଂଶୀଦାର ଥିଲା ସେ । ନିଜେ ମଧ ବହୁତ ଗୀତ ଲେଖିଛି । ଭାଇନାଙ୍କ ମାନସିକ ବିକୃତି ଓ ସେ ରାଞ୍ଚିଯିବା ପରେ ତାଙ୍କୁ ନେଇ ତାର ମର୍ମସ୍ପର୍ଶୀ କବିତା ସେ ବୋଲୁଥିବା ସମୟରେ ପାଷାଣ ହୃଦୟ ତରଳିଯିବ । ଆଖି ଲୋତକ ପ୍ଲାବିତ ହୋଇଯାଏ । ତାକୁ ବୋଲିବା ସଂଗେ ସଂଗେ ଅନ୍ୟ ଭଜନ, ଭଞ୍ଜ କବିତା ଗାନ କରି ସେ ତାର ଅସ୍ଥିର ମାନସିକ ସନ୍ତୁଳନକୁ ସ୍ଥିର କରିବାକୁ ଚେଷ୍ଟା କରୁଥାଏ । ଏହା ବ୍ୟତୀତ "ବିରହ କୋଇଲି" ଭଳି ବହୁ ଗୀତ ସେ ରଚନା କରିଛି । ସ୍ୱରଚିତ ବିରହ କୋଇଲି କବିତାରେ ଭାଇନାଙ୍କର ରାଂଚିରେ ଥିବା ବେଳେ ତାର ମାତୃ ସ୍ନେହର ବାସ୍ତବତାକୁ ପ୍ରତିଭାତ କରୁଥିବା ଗୋଟିଏ ପଦ...

"କୋଇଲି ଲୋ ଚିନ୍ତାଇଛି ମୋହର ପଣତ,
ତନୟ ଚିନ୍ତାରେ ହୁଏ ସତତ ସନ୍ତପ୍ତ ।
କୋଇଲିଲୋ ଥାଇ ପ୍ରାଣ ନଥିବା ସମାନ,
ସ୍ଥବିର ବୟସେ ଧାତା ଦେଲା ଏ କଷଣ ଲୋ" ।

ସେ ଥିଲା ଅତ୍ୟନ୍ତ ସଂଗୀତପ୍ରିୟ । ଜୀବନ ସଂଗୀତର ସା-ରେ-ଗା-ମା, ଜୀବନ ବଗିଚାର ମଧୁରିମା । ସାହି ପଡ଼ିଶାରେ କାହାର ବାହାଘର, ବ୍ରତଘର ଆଦିରେ ବୋଉ ପାଖକୁ ବରାଦ ଆସେ ଗୀତ ଲେଖିବା ପାଇଁ । ସେ ବିଭିନ୍ନ ରାଗ ଓ ଛାନ୍ଦ ସମ୍ବଳିତ ଗୀତ ଲେଖି ଦିଏ । ଏହା ଛଡ଼ା ସେ ବହୁ ଜଣାଣ ଓ ଭଜନ ମଧ ରଚନା କରିଛି । ଅସରନ୍ତି ଜଞ୍ଜାଳ, ଅଶେଷ ଦୁଃଖ କଷ୍ଟ ଭିତରେ ମଧ ତାର ଅମ୍ଳାନ କାବ୍ୟିକ ପ୍ରତିଭା ବିକଶିତ ହୋଇ ଉଠିଥିଲା । ମୋର ବଡ ଭାଣେଜୀ ତାରା ଯାହାକୁ ସେ ତାର ବାଲ୍ୟକାଳରୁ ଲାଳନ ପାଳନ କରି ବଡ କରିଥିଲା ତାର ବାହାଘରକୁ ନନା ଲେଖିଥିବା ଗୋଟିଏ ଗୀତର ସ୍ୱର ସଂଯୋଜନା ଓ ରସକୁଲ୍ୟା ରାଗରେ ସୁମଧୁର କଣ୍ଠରେ ବୋଲିବା ଯେ ଶୁଣିଛି ସେ ମନ୍ତ୍ର ମୁଗ୍ଧ ହୋଇ ସେହି ଠାରେ ଠିଆ ହୋଇ ରହିଯାଇଛି । ଯାହାର ମୁଁ ଉଦ୍ଧୃତାଂଶ ପାଠକମାନଙ୍କ ଅବଗତି ନିମନ୍ତେ ଏଠାରେ ପ୍ରକାଶ କରୁଛି ।

(ରାଗ ରସକୁଲ୍ୟା)

"ଊନବିଂଶ ସତାବନ ବର୍ଷର
ମାର୍ଗଶୀର୍ଷ ଶନୈଶ୍ଚର ବାସର
ଜନମିଲୁ ଯେବେ କୁଳଚନ୍ଦ୍ରମା
ଦେଖାଇଲୁ ତୋର ରୂପ ସୁଷମା
ଭାବିତ ନଥିଲି ମନେ ଯେ

ତୋ ଶୁଭ ବିବାହ ଦାଂପତ୍ୟ ଜୀବନ
ଦେଖିବି ଶେଷ ଜୀବନେ ଯେ" । (୧)

"ପିତୃ ମାତୃ କୋଳୁ ନେଲି ଛଡାଇ
ମାତାମହୀ ଅଙ୍କ ଦେଲି ମଣ୍ଡାଇ
ମଳୟ ପରଶେ ଲତା ସୁନ୍ଦରୀ
ଧରେ ଧରଣୀରେ ଅପୂର୍ବ ଶିରୀ
ତେସନେ ସ୍ନେହ ସଲିଳ ଯେ
ପାଇ ବଢ଼ିଥିଲୁ ରବିକର ସ୍ପର୍ଶେ
ଶୋହେ ଯଥା ଶତଦଳ ଯେ" ।

"ଚତୁର୍ଦ୍ଦଶ ବର୍ଷ ବୟସ କାଳେ
ନେଇ ସମର୍ପିଲି ଜନନୀ କୋଳେ
ପୂଜ୍ୟ ପିତୃଗୁଣ କରି ଅର୍ଜନ
ଲଭିଲୁ ସମାଜେ ଯୋଗ୍ୟ ଆସନ ।
ଜ୍ଞାନୀ ଗୁଣୀ ଗୁରୁଜନ ଯେ
ଗାଇଲେ ସୁନାମ ହେଲେ ହେଁ ନିର୍ଦ୍ଧନ
ମଣିଲି ନିଜକୁ ଧନ୍ୟ ଯେ" ।

"ଦୁର୍ଗାମାଧବଙ୍କ ଅର୍ଚ୍ଚନା ଫଳେ
ଦୁର୍ଗାମାଧବଙ୍କୁ ସେ ଭାଗ୍ୟ ବଳେ
ସମ୍ବନ୍ଧୀ ଭାବରେ ପାଇ ଜନନୀ
ତାଙ୍କ ସଙ୍ଗେ ତୋତେ ଦେବ ମେଲାଣି
ବୁହାଇ ନୟନୁ ନୀର ଯେ
ତୁହି ପରା ତାର ହୃଦୟର ହାର
ବଂଶ ଭବିଷ୍ୟ ସମ୍ବଳ ଯେ" ।

x x x x

"ନୀଳାଚଳ ପତି ପଦେପ୍ରଣତି
ଢ଼ାଳି ମାଗୁ ଭିକ୍ଷା ବୃଦ୍ଧ ଦମ୍ପତି
ହୁଅ ବୀର ପ୍ରସୂ ସୌଭାଗ୍ୟବତୀ
ଲଭ ପିତା ମହୀ ସୁନାମ ଖ୍ୟାତି
ରଖିକୁଳ ଅଭିମାନ ଯେ
ଆରତ ନାଶନ ବିପଦ ଭଂଜନ
ଶ୍ରୀ ପଦେ ନିଅ ଶରଣ ଯେ ।

ଲୋକ ଚିହ୍ନିବାରେ ସେ କେବେ ବି ଭୁଲ୍ କରିନି । ମୃତ୍ୟୁ ପୂର୍ବରୁ ସେ ମୋତେ ଏକାନ୍ତରେ କହିଥିଲା ଯେ ଗ୍ରାମର ଲେଙ୍କୁ ପରିବାର ତଥା ପାରମ୍ପରିକ ପ୍ରଜାମାନଙ୍କୁ "ଦେଖୁଥିବୁ" । ତାର ଶେଷ ଜୀବନ ପର୍ଯ୍ୟନ୍ତ ସେମାନଙ୍କର ନିଃସ୍ୱାର୍ଥପର ସେବା, ଭକ୍ତି ଓ ଆନ୍ତରିକତା ତାଙ୍କ ଉପରେ ବୋଉର ଅଶେଷ ମାତୃ ଆଶୀର୍ବାଦ ବର୍ଷା କରିଥିଲା । ଯାହା ଫଳରେ ଲେଙ୍କୁ ଘର ଆଜି ଗାଁ ର ଏକ ପ୍ରତିଷ୍ଠିତ ପରିବାର ଭାବେ ପରିଗଣିତ ଓ ଆଜି ପର୍ଯ୍ୟନ୍ତ ମୋର "ମାତୃ ପିତୃ ଭବନ" ସମେତ ଗ୍ରାମରେ ନନା ବୋଉଙ୍କ ଦ୍ୱାରା ଅର୍ଜିତ ଭୁସମ୍ପତ୍ତିର ସୁ ରକ୍ଷଣା ବେକ୍ଷଣ ମଣ୍ଟୁ କରୁଛି । ତତ୍କାଳୀନ ପ୍ରଜା ମାନେ ବହୁ ଭଲରେ ଅଛନ୍ତି ଓ ଜମି ଚାଷ କରୁଛନ୍ତି । ତାର ଆଶୀର୍ବାଦ କେବେ ଅନ୍ୟଥା ହୋଇନି । ଆଉ ଅଭିଶାପ ? ସେ କାହାକୁ ଦେଇନି । ସମସାମୟିକ ମଣିଷର ବ୍ୟଥା ଓ ବେଦନାକୁ ତାର ସାଧ୍ୟ ମତେ ସମାଧାନ କରିଛି । ଆଜି ପର୍ଯ୍ୟନ୍ତ ତାର ବହୁତ ଧରମ ପୁଅ, ଧରମ ଝିଅ ବି ଅଛନ୍ତି । ତାର ଜୀବଦ୍ଦଶାରେ ସେମାନଙ୍କର ସମସ୍ତ ଶୁଭ ଅଶୁଭ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ ଓ ସହଯୋଗ ର ହାତବଢ଼ାଇବା ତାର ବିସ୍ତାରିତ ମାତୃତ୍ୱ କୁ ତେଜୋଦୀପ୍ତ କରୁଥିଲା ।

ବିବାହର ଦୀର୍ଘ ୧୮ ବର୍ଷର ପ୍ରତୀକ୍ଷା ପରେ ଭାଇନା ଜନ୍ମ ଗ୍ରହଣ କଲେ । କିନ୍ତୁ "ବିଧିର ବିଧାନ କେ କରିବ ଆନ" । ଅଳ୍ପଦିନ ଭିତରେ ତାଙ୍କର

ମସ୍ତିଷ୍କ ବିକୃତି ଘଟିଲା । ଆମେ ସବୁ ପିଲା । ସେହି ଦିନ ଠାରୁ ଭାଇନା ହୋଇଗଲେ ତାର ଏକମାତ୍ର ଚିନ୍ତା ଓ ଆକର୍ଷଣର କେନ୍ଦ୍ରବିନ୍ଦୁ । କିନ୍ତୁ ତାରି ଭିତରେ ଅନ୍ୟ ୩ ସନ୍ତାନଙ୍କ ଯତ୍ନ ନେବା ସହିତ ତାର ନାତି, ନାତୁଣୀଙ୍କର ଯତ୍ନ ଓ ସେବାରେ ସେ କେବେ ଅବହେଳା କରି ନାହିଁ । ମୋର ବଡ଼ ଭାଣେଜୀ ତାରା ଓ ବଡ଼ ଭଣଜା ଚିନ୍ତା ତା ପାଖରେ ଦୀର୍ଘ ବର୍ଷ କାଳ ରହି ଗାଁ ରେ ପାଠ ପଢୁଥିଲେ । ସେ ନଥିଲା ତାଙ୍କର ଆଈ । ସେ ଥିଲା ତାଙ୍କର ପିଲାବେଳର ବୋଉ । ସେ ଘର ତାଙ୍କର ଥିଲା 'ଆଈଘର', ମାମୁ ଘର କି ଅଜାଘର ନୁହେଁ ।

ସେ ଥିଲା ସର୍ବଂସହା । ଘର, ପରିବାର, ସନ୍ତାନ, ବନ୍ଧୁବାନ୍ଧବଙ୍କୁ ସମ୍ଭାଳିବା ସହ ବିଭିନ୍ନ ବୃତ୍ତିରେ ସର୍ବୋଚ୍ଚ ଶିଖରରେ ପହଞ୍ଚି ପାରିଥିବା ନାରୀର ସେ ଥିଲା ଏକ ଅନନ୍ୟ ଉଦାହରଣ । ସେ ଥିଲା ପରିବାରର ସୁରକ୍ଷାକାରିଣୀ ଓ ଦୁର୍ଗତିନାଶିନୀ । ତା ସାଂଗକୁ ପରିବାରର ଅର୍ଥଭଣ୍ଡାର ଓ ବିଦ୍ୟାଭଣ୍ଡାର ଦାୟିତ୍ୱ ଥିଲା ତାର; ଯଦିଓ ମୋର ପିତା ଜଣେ ଶିକ୍ଷକ ଥିଲେ ଓ ମୋ ବୋଉ ଶ୍ରେଣୀ ଗୃହ ଦେଖୁନଥିଲା ।

ମୋ ବୋଉଥିଲା ଆମ ପରିବାରର ଏକ ମହାଦ୍ରୁମ ଭଳି । ଆମେ ସବୁଥିଲୁ ଗଛର ଡାଳ ଓ ଶାଖା ପ୍ରଶାଖା । ସେ କିନ୍ତୁ ଥିଲା ସେହି ମହାଦ୍ରୁମର ମୂଳ, ଯେଉଁ ମହାଦ୍ରୁମହିଁ ଆମକୁ ଜୀବନର ଝଡ, ଝଂଜା ଓ ମହାବାତ୍ୟାରୁ ରକ୍ଷା କରୁଥିଲା । ତାର ଅବର୍ତ୍ତମାନରେ ମୂଳ ବିନା ଡାଳ ଅର୍ଥହୀନ । କେତେବେଳେ ଆସକ୍ତି ଓ ମୋହରେ ଅଂଧ ହୋଇଗଲେ, ସେ ଥିଲା ଆମର ଦିବ୍ୟଚକ୍ଷୁ ଓ ଆମର ସୁସଂହତ ଭାଷା । ଐଶ୍ୱରିକ ଶକ୍ତିସ୍ୱରୂପା ଥିଲା ବୋଧେ ସେ । ଅଭୟ ଆଶ୍ରୟ ସ୍ଥଳ ଥିଲା ତାର କୋଳ ଓ ପଣତ କାନି । ମୃତ୍ୟୁ ଦେବତାର ଅପହଂଚ ଇଲାକା । ସେଥିଲା ଅମୃତହସ୍ତା । ତାରି ସ୍ପର୍ଶରେ ରୋଗରୁ ସୁସ୍ଥ ହେଉଥିଲୁ ଆମେ ଭାଇ ଓ ଭଉଣୀ ମାନେ ।

ତାର ଜୀବନ ବିତିଗଲା ଭାଇନାଙ୍କ ଚିନ୍ତାରେ ଓ ସେବାରେ । ଭାଇନାଙ୍କ ଯତ୍ନ ନେବାରେ ବିଶେଷ କରି ୩୦ ବର୍ଷର ବଡ଼ ପୁଅକୁ ଚିକିତ୍ସା ପାଇଁ ରାଞ୍ଚି ପଠାଇବା ପରେ ତାର ମାନସିକ ଅସ୍ଥିରତା ମୋର ଭଲ ଭାବରେ ମନେଅଛି । ବିଭିନ୍ନ ପର୍ବ ପର୍ବାଣିରେ ଘର ଆନନ୍ଦ ମୁଖର ଥିବା ସମୟରେ କିନ୍ତୁ କାନ୍ଦୁଥିଲା ଏକମାତ୍ର ମୋର ବୋଉ, ରାଂଚିରେ ଥିବା ଭାଇନାଙ୍କ ଅନୁପସ୍ଥିତି କଥା ମନେପକାଇ । ୬ ମାସପରେ ଭାଇନା ଫେରିଲେ ସତ କିନ୍ତୁ ତାଂକର ମାନସିକ ବିକୃତିର କିଛି ପରିବର୍ତ୍ତନ ଘଟିନଥାଏ, କିନ୍ତୁ ବୋଉ ଖୁସି । ଭାଇନାଙ୍କ ଯତ୍ନରେ ଅବହେଳା ନ ହେବା ପାଇଁ ସେ ଦୁଇ ଜଣ ଲୋକଙ୍କୁ ଘରେ ରଖିଥାଏ । ଗାଁ ରେ ଥିବା ପଡ଼ିଶା ଘରର ସ୍ତ୍ରୀ ଲୋକମାନେ, ସର୍ବୋପରି ଲେଙ୍କୁ ଘର, ବାବନ ଘର ବୋଉର ପାଖେ ପାଖେ ରହୁଥିଲେ । କିନ୍ତୁ ଅବସର ପରେ ନନାଙ୍କର ମସ୍ତିଷ୍କ ବିକୃତି ତାର ଚିନ୍ତା ଓ ଦାୟିତ୍ୱ ବହୁ ପରିମାଣରେ ବଢ଼ାଇ ଦେଇଥିଲା । ନନାଙ୍କ ପରି ସେ ମଧ୍ୟ ବାଲ୍ୟଜୀବନରୁ ଆଜିପର୍ଯ୍ୟନ୍ତ ବାରମ୍ବାର ବହୁ ପରୀକ୍ଷା, ଘାତ ପ୍ରତିଘାତ ଓ ବିପର୍ଯ୍ୟୟ ଭିତର ଦେଇ ଗତି କରିଛି ।

ବୟସର ସାୟାହ୍ନ ଓ ଦୁର୍ବଳ ଶରୀର ନେଇ ସେ ହୋଇପଡ଼ିଲା ରୋଗାକ୍ରାନ୍ତ । ମାନସିକ ସ୍ତରରେ ଭାଙ୍ଗି ପଡିଲା । ଆଉ ଗାଁରେ ରହିବାର ସାହସ ହେଲାନି । ଶେଷରେ ଘରର ସମସ୍ତ ଦାୟିତ୍ୱ ସେ ତାର ଅତି ବିଶ୍ୱସ୍ତ ଲେଙ୍କୁ ଓ ତାର ସ୍ତ୍ରୀଙ୍କୁ ଦେଇ ମୋ

ପୁଅ ରିକୁନ୍ ଓ ଜୁବୁଲିଙ୍କର ତାର ବହୁ ଆକାଂକ୍ଷିତ ବ୍ରତ ଘର ସାରି ମୋ ସହିତ ଚାଲି ଆସିଥିଲା ଭୁବନେଶ୍ୱର ।

ବୋଉଥିଲା ମୋର ପ୍ରେରଣାର ଉତ୍ସ । ବାଲ୍ୟକାଳରେ ତାରି ତୁଣ୍ଡରୁ ରାମାୟଣ, ମହାଭାରତ, ଶୁଣି ଶୁଣି ମୋର ବାଲ୍ୟ ଜୀବନ ପ୍ରଭାବିତ ହୋଇଥିଲା । ଆଗରୁ ଲେଖିଛି ସୃଜନଶୀଳତା ଥିଲା ତାର ଏକ ଜନ୍ମଗତ ପ୍ରତିଭା । ସେ ଥିଲା ଏକରେ ଅନେକ ଓ ଅନେକରେ ଏକ ।

ଭୁବନେଶ୍ୱରରେ ସେ ମୋ ଶାଶୁ ଶ୍ୱଶୁରଙ୍କ ପାଖରେ ଦୀର୍ଘ ଦୁଇବର୍ଷ କାଳ ଭଲରେ ରହିଥିଲା । ମୋର ଶ୍ୱଶୁର ମୋ ନନାଙ୍କର ସାକ୍ଷୀ ଗୋପାଳ ବିଦ୍ୟାଳୟରେ ଛାତ୍ର ଥିଲେ । ତେଣୁ, ମୋ ବୋଉ, କିମ୍ବା ତାଙ୍କ ଝିଅର ଶାଶୁ, ବୋଲି ନୁହେଁ, ନିଜ ଗୁରୁପତ୍ନୀ ଭାବି ତାର ସମସ୍ତ ସୁ ବନ୍ଦୋବସ୍ତ ସେ କରିଥିଲେ । ମୋର ସ୍ତ୍ରୀ ଓ ପିଲାମାନେ ଅଧିକାଂଶ ସମୟ ତା ପାଖରେ ଆସି ରହୁଥିଲେ । ତା ପରେ ଘରର ଅତି ନିକଟରେ ରହୁଥିବା ମୋର ଦୁଇ ନାନୀ, ତାର ନାତି ନାତୁଣୀ ଓ ଜୋଇଁ ମାନଙ୍କୁ ସବୁ ଦିନ ଦେଖିବାର ସୁଯୋଗ ପାଉଥିଲା, ଭାଇନା ଥିଲେ ତା ପାଖରେ । ଅଳ୍ପଘର ହେଲେମଧ ନିଜେ ଅସୁବିଧାରେ ରହି ମୋ ବୋଉ ଭାଇନାଙ୍କ ଯତ୍ନରେ ମୋର ଶାଶୁ ଶ୍ୱଶୁର ସବୁବେଳେ ଯତ୍ନବାନଥିଲେ । କିନ୍ତୁ ନନାଙ୍କର ଅବର୍ତ୍ତମାନରେ ଅତୀତର ସେହି ଆନନ୍ଦମୟ ଜୀବନ ଟାଣି ହୋଇ ଯାଇଥିଲା ବିଷାଦର ଅନ୍ଧାରି ମୂଳକକୁ । ଅତୀତର ସେହି ଅଭୁଲା ସ୍ମୃତିକୁ ଉଖାରି ଉଖାରି ସେ ଏକ ଅବ୍ୟକ୍ତ ମାନସିକ ଓ ଶାରୀରିକ ଅସୁସ୍ଥତାରେ ପୀଡିତ ହୋଇପଡିଥିଲା । କ୍ଷୀଣ ଓ ଦୁର୍ବଳ ହୋଇ ଯାଇଥିଲା ତାର ତନ ଓ ମନ ।

ମୋର ବୋଉଥିଲା ଜଣେ ଧର୍ମପ୍ରାଣା ମହିଳା । ଭାଇନା ରାଞ୍ଚି ଯିବା ପରେ ସେ ନିଶ୍ଚିତ କରିଥିଲା ଭାଇନା ଫେରିବା ପର୍ଯ୍ୟନ୍ତ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ସେବାରେ ନିଜକୁ ସମର୍ପଣ କରି ତାର ମର୍ମନ୍ତୁଦ ଦୁଃଖକୁ ଲାଘବ କରିବାକୁ । ସେହି ଅନୁସାରେ ନନାଙ୍କର ପୁରୀର ଗଦାଧର ହାଇସ୍କୁଲ୍‌କୁ ବଦଳି ହେଲା ଓ ଆମେ ରହିଲୁ ପୁରୀର "ଗୁଡ଼ିଆ ସାହିରେ", ସେଠାରେ ମଧ ସେ ହୋଇପାରିଥିଲା ସମସ୍ତଙ୍କର 'ମାଆ' । ମୋ ବୋଉ ସଧବା ସମୟରେ ମଧ ନିଷ୍ଠାର ସହ ହବିଷ କରେ । ଆକାଶ ଦୀପ ଲଗାଏ । ପୁରୀରେ ଥିବାବେଳେ ନିଜ ହାତରେ ବଳିତା ପ୍ରସ୍ତୁତ କରି ଜଗନ୍ନାଥଙ୍କ ପାଖରେ ଦୀପ ପାଇଁ ବ୍ୟବହାର କରେ । ହବିଷ ଖାଇବା ପାଇଁ ବହୁ ଦୁଃଖୀରଙ୍କିଙ୍କୁ ଡ଼ାକି ଖାଇବାକୁ ଦିଏ । ଏହି ଈଶ୍ୱର ବିଶ୍ୱାସ ତାକୁ ମହାମାରୀ କଲେରାରେ ପିଡୀତା ଥିବା ସମୟରେ ମରଣ ମୁହଁରୁ ବଞ୍ଚାଇ ରଖିଥିଲା ।

ପୁରୀରେ କାର୍ତ୍ତିକ ମାସରେ ପ୍ରତିଦିନ ଶ୍ରୀ ଜଗନ୍ନାଥ ଦର୍ଶନ କରେ । ସବୁ ମନ୍ଦିର ଦର୍ଶନ କରି, ସମସ୍ତ ତୀର୍ଥ ପୁଷ୍କରିଣୀରେ ସ୍ନାନକରି ସେ ମହାପୁଣ୍ୟ ଅର୍ଜନକରିଛି । ସେତେବେଳେ ମୁଁ ତା ସହିତମଧ ପ୍ରତ୍ୟେକ ସ୍ଥାନ ପରିଦର୍ଶନ କରିଛି ।

ସେ ଥିଲା ଏକ ଆଦର୍ଶ, ସତ୍ୟନିଷ୍ଠ ନାରୀହୃଦୟର ଅବିକଳ୍ପ ବିସ୍ମୟ । ପ୍ରଥମେ ଚାକିରିରେ ଯୋଗଦାନ କଲାବେଳକୁ ଯାଇଥିଲି ବୋଉ ପାଖକୁ । କହିଲି "ବୋଉ, ମୁଁ କାଲି ଯାଜପୁରରେ ତହସିଲଦାର ଭାବେ ପ୍ରଥମ ଚାକିରିରେ ଯୋଗ ଦେବାକୁ ଯାଉଛି । ମୋତେ ଆଶୀର୍ବାଦ କର ।" "ଦୁଃଖୀରଙ୍କୀଙ୍କ କଥା ବୁଝୁଥିବୁ । କାହାକୁ ଭୋକିଲାରେ ଦୁଆରୁ ଫେରାଇ ଦେବୁନି । ପର ପଇସାକୁ ଚାହିଁବୁନି । ନ୍ୟାୟ ଦଣ୍ଡଧରି

ସେବା କରିବୁ । ବଡ଼ ଭିଣୋଇଙ୍କ ପରି ସୁନାମ ଅର୍ଜନ କରିବୁ । ଧର୍ମ ବାଟରେ ଚାଲୁଥିବୁ । ମାଆ ବିରଜା ତୋତେ ସହାୟ ହେବେ" । ଏହାହିଁ ଥିଲା ତାର "ଗାନ୍ଧାରୀର ଆଶୀର୍ବାଦ" । ଧନ୍ୟ ସେ ଜନନୀ । ଧନ୍ୟ ତାର ଉତ୍ତୁଙ୍ଗ ମାତୃତ୍ୱ । ଧନ୍ୟ ତାର ବିଚାର ବନ୍ତତା । ତାର ସାର୍ବଜନୀନ ସନ୍ତାନ ବତ୍ସଳତା ତଥା ବିସ୍ତାରିତ ମାତୃସ୍ନେହର ପଟାନ୍ତର ନାହିଁ । ମାତୃସ୍ନେହର ସୌରଭମୟ ପୁଷ୍ପ ଉପବନରେ ସେ ଥିଲା ରଜନୀଗନ୍ଧା । ଯେଉଁମାନେ ତା ସହିତ ମିଶିବାର ସୁଯୋଗ ପାଇଛନ୍ତି ସେମାନେ ତାର ତ୍ୟାଗ ଓ ବ୍ୟକ୍ତିତ୍ୱକୁ ପାଖରୁ ଚିହ୍ନିବାର ଦୁର୍ଲଭ ଅବକାଶ ଅଳ୍ପ ବହୁତେ ପାଇଛନ୍ତି । ତାର ସେବା ଓ ସ୍ୱାଭିମାନ ହେଉଛି ଆମ ପରିବାରର ଅସ୍ମିତା, ମହାର୍ଘ ସମ୍ପତ୍ତି ।

ମୋ ବୋଉ ଥିଲା ଆମ ପରିବାରରେ ସମ୍ପର୍କର ସେତୁ । ମାମୁ ଘରଠାରୁ ଆରମ୍ଭ କରି ନିକଟ ସମ୍ପର୍କୀୟଙ୍କ ବ୍ୟତୀତ କେତେ ଯେ ସମ୍ପର୍କ ସେ ରକ୍ଷା କରିଥିଲା ତାର ହିସାବ ନାହିଁ । ପୁରୀର ଗଦୁ କକେଇଙ୍କ ଝିଅ ମନୋରମା ନାନୀ ଙ୍କୁ ମୋର ଦୁଇ ଭଉଣୀଙ୍କ ସହ ସମାନ ଦୃଷ୍ଟିରେ ଦେଖୁଥିଲା । ପୁରୀ ଗଲେ ତାଙ୍କ ଘରକୁ ଯିବା ନିଶ୍ଚିତ । ତା ଛଡ଼ା ତାର ଏକାଧିକ ଧରମ ପୁଅ ଓ ଧରମ ଝିଅ । ସେ ତା ଜୀବଦ୍ଦଶାରେ ସେ ସମ୍ପର୍କକୁ ବଜାୟ ରଖି ପାରିଥିଲା । ଗଦୁ କକେଇ ଓ ଖୁଡ଼ି ମୋତେ ପୁଅ ଭଳି ଦେଖୁଥିଲେ ।

ଦିନେ ହଠାତ୍ ସନ୍ଧ୍ୟାବେଳେ ପ୍ରମୋଦ (ମୋର ସାଙ୍ଗ) ମୋତେ ଫୋନ୍ କରି କହିଲା, "ବୋଉଙ୍କ ଦେହ ସିରିଅସ୍" । ଭାଇନାଙ୍କୁ ଧରି ଶୀଘ୍ର ଭୁବନେଶ୍ୱରରେ ପହଞ୍ଚିବା ପାଇଁ । ସେତେବେଳେ ପିଲାମାନଙ୍କ ସହ ମୋର ସ୍ତ୍ରୀ ଭୁବନେଶ୍ୱରରେ ଥିଲେ । ମୁଁ ଅନୁଗୋଳରେ ଅତିରିକ୍ତ ଜିଲ୍ଲାପାଳ ଭାବେ ଅବସ୍ଥାପିତ ଥିଲି । ପ୍ରମୋଦ ନ କହିଲେ ମଧ୍ୟ ମୁଁ ଠିକ୍ ବୁଝି ପାରିଥିଲି ଯେ ବୋଉର ଆର ପାରିକି ଯିବା ଆସନ୍ନ କିମ୍ବା ସେ ଆଉ ନାହିଁ । ମୋତେ ତାର ତିନି ଦିନ ପୂର୍ବରୁ ମୁଁ ଭୁବନେଶ୍ୱରରୁ ଫେରିବା ବେଳେ ଡ଼ାକ୍ତର ଇଙ୍ଗିତ ଦେଇ ସାରିଥିଲେ ଓ ପ୍ରସ୍ତୁତ ରହିବା ପାଇଁ ସତର୍କ ସୂଚନା ଦେଇଥିଲେ । ଆସି ପହଞ୍ଚିଲି । ଦେଖିଲି ତାର ପାର୍ଥିବ ଶରୀର ଖଟ ଉପରେ ଶୋଇ ରହିଛି । ପାର୍ଥକ୍ୟ ଏତିକି ଯେ 'ବୋଉ' ଡ଼ାକ ଶୁଣି ଆଉ କୋଳେଇ ନଉନି କି ଭାଇନା କିପରି ଅଛି ବୋଲି ପଚାରୁନି । ମାଟିରେ ମିଶିଯାଇଛି ତାର ମାଟିର ଶରୀର । ଭାଇନା ଜାଣିପାରି କହିଥିଲେ "ଯା ବୈକୁଣ୍ଠକୁ ଯାଆ" । ସେ ନିଦ୍ରାରୁ ସେ ଆଉ ଉଠିବନି, କେହି ବି ଉଠନ୍ତିନି । ନାନୀ, ଭିଣୋଇ, ନାତି, ନାତୁଣୀ ସମସ୍ତେ ପହଞ୍ଚିଥିଲେ । ଅବଶୋଷ ରହିଗଲା ସବୁଦିନକୁ । ମୃତ୍ୟୁ ସମୟରେ ପାଟିରେ ଜଳ ଟୋପେ ଦେଇପାରିଲିନି । ନାନାଙ୍କ ତୁଣ୍ଡରେ ଶେଷ ଢ଼ୋକ ପାଣି ଦେବାପରି ତାର ବୋହୂ ହିଁ ତା ପାଟିରେ ଶେଷ ଢ଼ୋକ ପାଣି ଦେଇଥିଲେ । ଉପସ୍ଥିତ ରହିପାରିଲିନି ତାର ଶେଷ ଦର୍ଶନ ପାଇଁ । କଣ କହିଥାଆନ୍ତା । କହିଥିଲେ କହିଥାଆନ୍ତା 'ଭାଇନାର ଯତ୍ନ ନେଉଥିବୁ । ତାକୁ ଅବହେଳା କରିବୁନି ।' ଏହା ମୋ ଅନୁପସ୍ଥିତିରେ ତାର ବୋହୂଙ୍କୁ ମଧ୍ୟ ସେ କହିଥିଲା । ସବୁଠାରୁ ବଡ ଅବଶୋଷ ମୃତ୍ୟୁ ପୂର୍ବରୁ ଭାଇନାଙ୍କୁ ତା ପାଖରେ ପହଁଚାଇ ପାରିଲିନି । ନକହି ପାରିଲେ ମଧ୍ୟ ସେ ଭାଇନାଙ୍କୁ ନିଶ୍ଚୟ ଖୋଜିଥିବ । ଜୋଇଁ, ଝିଅ, ନାତି ନାତୁଣୀ ସମସ୍ତଙ୍କ ଉପସ୍ଥିତି ସତ୍ତ୍ୱେ ସେ ଭାଇନାଙ୍କୁ ନଦେଖି ଶାନ୍ତିରେ ଯାଇପାରିନଥିବ । ତାର ମର ଶରୀରକୁ ଧରି ଝୁଲୁ

ସହିତ ଗାଁ କୁ ଆସିଲି । ଦୁଆର ମୁହଁରେ ଗହଳି ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲି । ଶେଷ କୁସୁମାଞ୍ଜଳି ପ୍ରଦାନ ଅବସରରେ ସମସ୍ତେ କହୁଥିଲେ "ଚାଲିଗଲେ ସମସ୍ତ ଅସହାୟ ଓ ଅନାହାରଙ୍କର ମାଆ" । ସତେ ଯେପରି ମରଣ ତାକୁ ଅଧିକ ମହୀୟସୀ କରି ଦେଇଥିଲା । ଉତ୍କଳର ନଭମଣ୍ଡଳରୁ ଅସ୍ତମିତ ହୋଇଗଲା ଏକ ଦିପ୍ତୀବନ୍ତ ଓ ଆଭାମୟ ତାରକା ସବୁଦିନ ପାଇଁ ।

ସେ ମହୀୟସୀ ମହିଳାଙ୍କ ଜୀବନ ପ୍ରଦୀପ ଚିର ଦିନ ପାଇଁ ନିର୍ବାପିତ ହୋଇଯାଇଥିଲା । ସାଂସାରିକ ବନ୍ଧନକୁ ଛିନ୍ନ କରି ଅମୃତର ସନ୍ତାନ ସେ ଚାଲିଗଲା ଚିର ଶାଶ୍ୱତ ଶାନ୍ତିର ନିଳୟ ଅମର୍ତ୍ତ୍ୟ ପୁରକୁ । କିନ୍ତୁ ନନାଙ୍କର ଅବର୍ତ୍ତମାନର ଦୁଃଖଦ ଅନୁଭୂତିରେ ଆଉ ଗୋଟିଏ ଫର୍ଦ ଯୋଡ଼ା ହୋଇଗଲା । ଥିଲୁ ପିତୃହରା । ହେଲୁ ମାତୃହରା । ସମସ୍ତଙ୍କ ଆଖିରେ ହୋଇଗଲୁ ଅନାଥ । କଥାରେ ଅଛି ପିତାଙ୍କ ମୃତ୍ୟୁରେ ପୃଥିବୀର ଅଧେ ଚାଲିଯାଏ । କିନ୍ତୁ ମାତୃ ବିଚ୍ଛେଦରେ ସମଗ୍ର ପୃଥିବୀ ଚାଲିଯାଏ । ମୋତେ ଲାଗିଲା, ସବୁଥାଇ ବି ଆମେ ଆଜି ସର୍ବହରା । ସେ ଯେଉଁ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି କରିଦେଇ ଗଲା, ସେ ଶୂନ୍ୟସ୍ଥାନ, କାଚଫ୍ରେମ ଭିତରେ ଫଟୋର ମଣିଷହୋଇ କାନ୍ଥରେ ଟଙ୍ଗା ହୋଇଥିବା ତାର ଫଟୋ କିମ୍ବା ଠାକୁର ଘରେ ଥିବା ତାର ତୈଳ ଚିତ୍ର ଅଥବା ପ୍ରତିଦିନର ପ୍ରାତଃ ସ୍ମରଣୀୟତା ଦ୍ୱାରା ପୂରଣ ହୋଇପାରୁନି । ସବୁବେଳେ ଅନୁଭବ କରୁଛି ମୁଁ ତାର ଅନୁପସ୍ଥିତି । ଘରର ପର୍ବ ପର୍ବାଣିରେ, ଉତ୍ସବ ଦିନରେ, ବା ରୋଗ ଶଯ୍ୟାରେ ମୋର ଅବୁଝା ମନ ତାକୁ ଖୋଜି ବୁଲୁଛି । ମର୍ମେ ମର୍ମେ ଅନୁଭବ କରୁଛି ମୋ ବୋଉକୁ । ରୋଗଶଯ୍ୟାରେ ଶୋଇଥିବା ବେଳେ ରାତିରାତି ଅନିଦ୍ରା ରହି ଆରୋଗ୍ୟ ପାଇଁ ଅବିରତ ବିକଳ ହେଉଥିବା ବିଗଳିତ ଜନନୀ ପ୍ରାଣର ବୋଉ ଥିଲା ଏକ ଉତ୍ସର୍ଗୀକୃତ ଉଦାହରଣ ।

ରୋଗ ଶଯ୍ୟାରେ ମୁଁ ଖୋଜି ପାଉନି ତାର ସେ ହସ୍ତର ଅମୃତ ସ୍ପର୍ଶ । ଏହା ହେଉଛି ସୃଷ୍ଟିର ନିଷ୍ଠୁର ସତ୍ୟ । ତେବେ ତାର ଦିବ୍ୟ ଦୃଷ୍ଟି ଏ ବିଚ୍ଛେଦବିଧୁର ପିତୃମାତୃ ଅଙ୍କହରା ଅନାଥ ସନ୍ତାନମାନଙ୍କ ଉପରେ ସଦା ସର୍ବଦା ରହିଥାଉ, ତା ସହ ଦେଖାହେବା ଯାଏ ସେହି ଅମର୍ତ୍ତ୍ୟପୁରରେ । ତାର ଦିବ୍ୟ ଦୃଷ୍ଟି ପିତୃ ମାତୃ ବିଚ୍ଛେଦର ଦାବାନଳକୁ ନିର୍ବାପିତ କରୁ ଏହା ହିଁ ବିଭୁପଦରେ ପ୍ରାର୍ଥନା । ଆମର ସାମୂହିକ ସ୍ମୃତିର ସେ ଦେଦୀପ୍ୟମାନ ହୋଇ ରହିଥିବ । ତାର କହିଥିବା କଥା ଅନୁସାରେ ତୀର୍ଥ ରାଜ ମହୋଦଧିରେ, ଯେଉଁଠିକି ନନାଙ୍କର ଅସ୍ଥି ବିସର୍ଜନ ହୋଇଥିଲା, ତାର ଅସ୍ଥି ବିସର୍ଜନକରି ଫେରି ଆସିଥିଲି ପୁଣି ସେହି ପୁରୁଣା କର୍ମକ୍ଷେତ୍ରକୁ ଗାଁରେ ସମସ୍ତ କର୍ମ ସମାପନ ପରେ ।

ଏହି ଥିଲା ଆଜିର ଦିନରେ ମୋର ଅଶ୍ରୁତର୍ପଣ, ମୋର ଦେବୀ ସ୍ୱରୂପିଣୀ ପରଲୋକଗତା ଜନନୀ ପାଇଁ । ଏହିଠି ଶେଷ କରୁଛି ମୋର ବିନମ୍ର ସ୍ୱରଲିପି, ବୋଉର ସ୍ମୃତି ମନ୍ଥନ ।

ବିଦାୟ ନେବା ପୂର୍ବରୁ ମୁଁ କେତୋଟି କଥା ଏ ଆଲେଖ୍ୟ ପ୍ରତି ଅପ୍ରସାଙ୍ଗିକ ହେଲେ ବି କହିବାକୁ ଇଚ୍ଛା ପ୍ରକାଶ କରୁଛି । ଜୀବନରେ ମୃତ୍ୟୁ ବିଭିନ୍ନ ମାର୍ଗ ଦେଇ ଆସୁଥିବା ବେଳେ ଜନ୍ମର ମାର୍ଗ କେବଳ ମାତା ।

ନଦୀର ସ୍ରୋତ ଯେପରି ବହି ଚାଲିଥାଏ, ଆଉ ପଛକୁ ଫେରି ନଥାଏ, ସେହିପରି କାଳର କରାଳ ସ୍ରୋତରେ ପ୍ରତିଟି ମୁହୂର୍ତ୍ତ ଉଣା ହୋଇ ଚାଲିଛି

ସମସ୍ତଙ୍କ ଜୀବନ ପାଞ୍ଜିରୁ । ସେହି ଦୃଷ୍ଟିରୁ ମାଆ ସୃଷ୍ଟିର ଅମର ବରଦାନ, ପରମାତ୍ମାଙ୍କର ଏକ ଅନୁପମ ଆଶୀଷ ଏ କଥା ଆଜିର ସନ୍ତାନ ମାନେ ଭୁଲିଯିବା ଅନୁଚିତ । ବିଳାପ କରୁଛି ଆଜି ମାଆର ବାତ୍ସଲ୍ୟ କିନ୍ତୁ ମାଗୁନି ସେ ମମତାର ମୂଲ । ସେ ମୂଲ୍ୟ ସମସ୍ତଙ୍କ ପାଇଁ ଅମାପ, ଆଜୀବନ ଅଶୁଝା ।

କର୍ତ୍ତବ୍ୟର କୈବଲ୍ୟକୁ ଅବହେଳା କରି ଆମେ ସାଜିଛୁ ଅମଡାପଥର ଯାତ୍ରୀ । ଜୀବନର ସାୟାହ୍ନରେ ସବୁ ମାଆ ଆଶା କରନ୍ତି ଯେ ପୁଅ ତାଙ୍କ ପାଇଁ ହେଉ "ଶ୍ରବଣ କୁମାର" । ସୃଷ୍ଟିରେ ମାଆ ସମସ୍ତଙ୍କର ସ୍ଥାନ ନେଇପାରେ କିନ୍ତୁ କେହି ତାର ସ୍ଥାନ ନେଇ ପାରନ୍ତିନି । ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ, ନଦୀର ସ୍ରୋତ ଯେପରି ନିଜର ଉତ୍ପତ୍ତିସ୍ଥଳଠାରୁ ସବୁବେଳେ ନିମ୍ନରେ ଥାଏ, ଠିକ୍ ସେହିପରି ଜନ୍ମଦାତ୍ରୀ ମାଆ ଠାରୁ ଆଉ କେହି ଉର୍ଦ୍ଧ୍ୱକୁ ଉଠିପାରିବେ ନାହିଁ । ମୋ ମାଆପରି ସବୁ ମାଆମାନେ ନିଜ ସ୍ୱାମୀ ସନ୍ତାନଙ୍କ ପାଇଁ ଅଭୟଦାୟିନୀ, ଦେବୀ ସ୍ୱରୂପିଣୀ । ପିଲାବେଳେ କାନ୍ଦୁଥିବା ବେଳେ, ମାଆ ବ୍ୟସ୍ତ ହୋଇ ପାଟିରେ କ୍ଷୀର ବୋତଲ ଦେଇଦିଏ । ସ୍କୁଲ ଗଲାବେଳେ ଟିଫିନ୍ ବକ୍ସ ପ୍ରସ୍ତୁତ କରି ବ୍ୟାଗ୍ ଭିତରେ ରଖିଦିଏ ଓ ସ୍କୁଲରୁ ଫେରିବା ପରେ ଖାଇବା ପାଇଁ ପଖାଳକଂସା ବାଢ଼ିଦିଏ, ସେଇ ପୁଅ ବଡ଼ ହୋଇଗଲେ ମାଆ କିନ୍ତୁ କାନ୍ଦୁଛି, କହୁଛି ପୁଅ ମୋତେ ଖାଇବାକୁ ଦେଉନି । ବାରଦ୍ୱାର ବୁଲୁଛି ପେଟ ଚାଖଣ୍ଡକ ପାଇଁ ଖାଇବା ଯୋଗାଡ କରିବାକୁ । ତାର ବାର୍ଦ୍ଧକ୍ୟ କି ବିଧବା ଭତ୍ତା କିମ୍ବା ପେନ୍‌ସନ୍‌ଟଙ୍କା ଆମେ ଜୋରକରି ଛଡ଼ାଇ ନେଉଛୁ । କିନ୍ତୁ ଆଜିର ପୁଅବୋହୂ କାଲି ବି ବାପା ମାଆ ହେବେ । ସେତେବେଳେ ତାଙ୍କ ପୁଅଠାରୁ ଏପରି ବ୍ୟବହାର ତାଙ୍କୁ ସମୁଚିତ ଶିକ୍ଷା ଦେବ । ଆଜିର ସମାଜରେ ଏପରି ଦୃଷ୍ଟାନ୍ତ ବିରଳ ନୁହେଁ । ଆମର ବ୍ୟକ୍ତି ଜୀବନ ଆଜି କୁଳଷିତ । ମୁଁ କହିଛି ଆମେ ଆଜି ଅମଡା ବାଟର ଯାତ୍ରୀ, ଦିଗ୍‌ଭ୍ରାନ୍ତ ଓ ଉଦ୍‌ଭ୍ରାନ୍ତ ଭାବରେ । ସମୟ ସ୍ରୋତରେ ମାତୃତ୍ୱ ଆଜି ମୂର୍ଚ୍ଛିତା, ଆମର ଉଦ୍‌ଭଟ ମାନସିକତାରେ ସେ ଆଜି ଉପେକ୍ଷିତା । ଆମକୁ ପୋଷି କୋଳରେ ଶୁଆଇ ଯିଏ ପିଲାବେଳଠାରୁ ବଡପର୍ଯ୍ୟନ୍ତ ଆଣିଛି ସେ ଆଜି ଶୁଏ ଗ୍ୟାରେଜ ଘରେ, ଦାଣ୍ଡପିଣ୍ଡାରେ, କିମ୍ବା ଖୋଲା ଆକାଶତଳେ ନହେଲେ ବୃଦ୍ଧାଶ୍ରମରେ । ହେ ଉଦ୍‌ଭ୍ରାନ୍ତ ମଣିଷ, ଆଖିର ପ୍ରତିଟି ପଲକରେ, ପ୍ରତିଟି ପ୍ରହରରେ ମାଆ ଆମର ସ୍ମରଣୀୟା । ସମ୍ମାନନୀୟା ଓ ବନ୍ଦନୀୟା । ଏହାହିଁ ହେଉଛି ସତ୍ୟ । ଏହାକୁ ସ୍ୱୀକାର କରି ଶିଖିବା ଆଜି ସମସ୍ତଙ୍କର କର୍ତ୍ତବ୍ୟ ହେବା ଉଚିତ ।

ମୋ ବୋଉ ଆଜି ଯେଉଁଠି ଥିଲେ ବି ମୋ ମନରେ କିନ୍ତୁ ଚିରଶ୍ୟାମଳ ଓ ସବୁଜ ଭାବରେ ବିରାଜମାନ । କବିଙ୍କ ଭାଷାରେ "ମରିନାହିଁ ସେତ ଚିର ଜୀବନ୍ତ" ଠିକ୍ ମୋ ନନାଙ୍କ ଭଳି । ତାର ଆତ୍ମା ପରମାତ୍ମାରେ ବିଲୀନ ହେଉ ଏହା ହିଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ବିନମ୍ର ପ୍ରାର୍ଥନା ।

ସ୍ନେହାଧୀନ ପୁତ୍ର

**କାହ୍ନୁ**

●●●

# ଆତ୍ମଚରିତର ପ୍ରଜ୍ଞାଦୀପ୍ତ ଅନୁଶୀଳନ...



ଡକ୍ଟର ମାନସ ରଞ୍ଜନ ଦେବତା

ଓଁ ବନ୍ଦେ ଦେବମୁମାପତିଂ ସୁରଗୁରୁଂ ବନ୍ଦେ ଜଗତ୍ କାରଣମ୍
ବନ୍ଦେ ପନ୍ନଗଭୂଷଣଂ ମୃଗଧରଂ ବନ୍ଦେ ପଶୁନାଂ ପତିମ୍ ।
ବନ୍ଦେ ସୂର୍ଯ୍ୟ ଶଶାଙ୍କ ବହ୍ନି ନୟନଂ ବନ୍ଦେ ମୁକୁନ୍ଦ ପ୍ରିୟମ୍
ବନ୍ଦେ ଭକ୍ତ ଜନାଶ୍ରୟଂ ଚ ବରଦଂ ବନ୍ଦେ ଶିବ ଶଙ୍କରମ୍ ॥

ଦେବ ଦେବ ମହାଦେବ, ଉମାପତି, ଦେବତାମାନଙ୍କ ଗୁରୁ, ଜଗତର କାରଣ ପନ୍ନଗ (ସର୍ପ) ଦ୍ୱାରା ଭୂଷିତ, ମୃଗଚର୍ମଧାରୀ, ପଶୁପତି, ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ସନ୍ନିବେଶିତ ତ୍ରିନେତ୍ର, ଶ୍ରୀ ବିଷ୍ଣୁଙ୍କର ଅତ୍ୟନ୍ତ ପ୍ରିୟ ଓ ପୂଜ୍ୟ, ଭକ୍ତଜନମାନଙ୍କର ଆଶ୍ରୟଦାତା, ବରଦାତା ସେହି ପ୍ରଭୁ ଶିବଶଙ୍କରଙ୍କୁ ମୁଁ ଭକ୍ତିପୂତ ବନ୍ଦନା କରୁଅଛି ।

ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ସଂଜାତ ଲେଖନୀ ମୁନରୁ ପରିସ୍ଫୁଟ ଆତ୍ମଚରିତ ତାଙ୍କର ଆତ୍ମଲିପି, ବଂଶର ଇତିବୃତ୍ତ, ତାଙ୍କର ବାଲ୍ୟାବସ୍ଥା, କୈଶୋରାବସ୍ଥା, କର୍ମମୟ ଜୀବନ, ତାଙ୍କ ଗ୍ରାମର ଇତିହାସ, ଶିକ୍ଷକ ଜୀବନର ଅନୁଭବ, ତତ୍କାଳୀନ ଗ୍ରାମ୍ୟ ଜୀବନଜୀବିକା, ରାଜ୍ୟର ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା, ଗ୍ରାମାଞ୍ଚଳରେ ଏକ ପ୍ରଗତିଶୀଳ ଶୈକ୍ଷିକ ପରିବେଶ ସୃଷ୍ଟି କରି ତତ୍କାଳୀନ ଶିକ୍ଷା, ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ଗୁଣାତ୍ମକ ମାନର ବିକାଶ ପାଇଁ ସାମାଜିକ ଉତ୍ତରଦାୟିତ୍ୱ ଏବଂ ସର୍ବୋପରି ନିଜର ପୁତ୍ରକୁ ପତ୍ର ମାଧ୍ୟମରେ ଦେଇଥିବା ମୂଲ୍ୟବୋଧଭିତ୍ତିକ ଉପଦେଶରେ ପରିପୁଷ୍ଟ ।

ସ୍ୱର୍ଗତ ମହାପାତ୍ରଙ୍କର ପ୍ରଜ୍ଞାପାରମିତାରେ ଉଦ୍‌ବୁଦ୍ଧ ହୋଇ ସମାଜରେ ପ୍ରତିଷ୍ଠିତ ହୋଇଥିବା ଅନେକ ଛାତ୍ରଙ୍କର ଅଭିବ୍ୟକ୍ତି, ତାଙ୍କର କନ୍ୟା, ବଧୂ ତଥା ଆତ୍ମୀୟସ୍ୱଜନ ମାନଙ୍କର ଅନୁରାଗ ଏବଂ ସର୍ବୋପରି ତାଙ୍କର ପୁତ୍ର କୃଷ୍ଣଚନ୍ଦ୍ରଙ୍କର ଆବେଗଭରା ଭାବୋଚ୍ଛ୍ୱାସର ଏକ ତାତ୍ତ୍ୱିକ ଅନୁଶୀଳନ କରିବା ଆବଶ୍ୟକ ମନେ କରିଥିଲି । ତାଙ୍କର ଦୀର୍ଘଦିନର ଅନୁଭୂତି, ଆତ୍ମଚରିତ ମାଧ୍ୟମରେ ପ୍ରଦତ୍ତ ସନ୍ଦେଶ, ତାଙ୍କର ଆତ୍ମୋତ୍ସର୍ଗ ଓ ଆତ୍ମସଙ୍କଳ୍ପ ଭଳି ମହନୀୟ ଭାବନାର ମୂଲ୍ୟାୟନ କରିବା ବାସ୍ତବିକ ଏକ ଆହ୍ୱାନ ଅଟେ ।

# ଦିବଂଗତ ମହାପାତ୍ରଙ୍କର ସନ୍ଦର୍ଶ

## ୧. ଈଶ୍ୱର ବିଶ୍ୱାସ

'ସ ପର୍ଯ୍ୟଗାତ୍ ଶୁକ୍ରଂ ଅକାୟଂ ଅବ୍ରଣଂ ଅସ୍ନାବିରଂ ଶୁଦ୍ଧଂ ଅପାପବିଦ୍ଧଂ' 'ଯଜୁର୍ବେଦ'

- ଯିଏ ସର୍ବଜ୍ଞ, ସର୍ବବ୍ୟାପକ, ସର୍ବଶକ୍ତିମାନ, ଯିଏ ଶରୀର ବନ୍ଧନକୁ ଆସନ୍ତି ନାହିଁ, ଜନ୍ମମୃତ୍ୟୁର ବନ୍ଧନ ଓ ଦୁଃଖ ଯନ୍ତ୍ରଣାର ବନ୍ଧନରୁ ମୁକ୍ତ, ସେ ଅପାର ଶକ୍ତିବଳରେ ସୃଷ୍ଟିର ରଚନା, ପାଳନ ଓ ସଂହାର କରନ୍ତି ଏବଂ ପ୍ରତ୍ୟହ ଜୀବକୁ ତା'ର କର୍ମଫଳ ଅର୍ଥାତ୍ ନ୍ୟାୟ ପ୍ରଦାନ କରନ୍ତି, ସେହି ସର୍ବଶକ୍ତିମାନ ପରମେଶ୍ୱରଙ୍କୁ ପ୍ରତ୍ୟହ ଆରାଧନା କରି ତାଙ୍କ ପାଦ ପଙ୍କଜରେ ନିଜକୁ ସମର୍ପଣ କରି ନିଜର କର୍ତ୍ତବ୍ୟ କରିବା ଉଚିତ୍ ।

## ୨. ସତ୍ୟ କଥନ

ସତ୍ୟେନ ଧାର୍ଯ୍ୟତେ ପୃଥ୍ୱୀ ସତ୍ୟେନ ତପତେ ରବିଃ

ସତ୍ୟେନ ବାତିବାୟୁଶ୍ଚ ସର୍ବେ ସତ୍ୟେ ପ୍ରତିଷ୍ଠିତମ୍ ।

- ଯେପରି ପୃଥିବୀ ସତ୍ୟକୁ ଧାରଣ କରିଥାଏ, ସେପରି ସତ୍ୟରୁ ସୂର୍ଯ୍ୟଙ୍କର ତେଜ, ସତ୍ୟରୁ ବାୟୁ ପ୍ରବହମାନ ଏବଂ ଯାହା ପୃଥିବୀରେ ଦୃଶ୍ୟମାନ ସବୁ ସତ୍ୟରୁ ସମ୍ଭବ ଅଟେ । ସତ୍ୟ ହିଁ ଈଶ୍ୱର । ସତ୍ୟ ପଥରେ ଗମନ, ସତ୍ୟ କଥନ ଓ ସତ୍ୟାନୁରାଗୀ ହେଲେ ଈଶ୍ୱର ଦର୍ଶନ ପ୍ରାପ୍ତି ହୋଇଥାଏ ।

## ୩. ଧର୍ମ

ଧ୍ରୀୟତେ ଯତ୍ ଆତ୍ମ ଉନ୍ନୟନାର୍ଥଂ ତତ୍ ଧର୍ମଃ ।

- ଆତ୍ମାର ଉନ୍ନତି ନିମନ୍ତେ ଯେଉଁ ଗୁଣ ଗୁଡିକ ଧାରଣ କରାଯାଏ ତାହା ଧର୍ମ ଅଟେ । ଧୃତି (ଧୈର୍ଯ୍ୟ), କ୍ଷମା, ନ୍ୟାୟ, ପବିତ୍ରତା, ସଂଯମତା, ଧୀଃ (ବିକଶିତ ବୁଦ୍ଧି), ବିଦ୍ୟା, ସତ୍ୟ, ଦୟା, ଅହିଂସା ଏହି ଦଶଟି ପବିତ୍ର ଓ ମହନୀୟ ଗୁଣଗୁଡିକୁ ଧାରଣ କରିବା ଧର୍ମ ଅଟେ ।

## ୪. କର୍ମ

"କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷର ସମୁଦ୍ଭବମ୍

ତସ୍ମାତ୍‌ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍" (ଗୀତା-କର୍ମଯୋଗ, ତୃତୀୟୋଦ୍ଧ୍ୟାୟ-ଶ୍ଳୋକ.୧୫)

- କର୍ମ ପ୍ରକୃତିରୁ ଉତ୍ପନ୍ନ । ପ୍ରକୃତି ପରମବ୍ରହ୍ମଙ୍କ ଠାରୁ ଉତ୍ପନ୍ନ । ଏଣୁ ସର୍ବଶକ୍ତିମାନ ପରମେଶ୍ୱର ସର୍ବଦା ଯଜ୍ଞରେ ପ୍ରତିଷ୍ଠିତ ଅଟନ୍ତି ।

## ୫. ବିଦ୍ୟା

ବିଦ୍ୟା ବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି

ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ।

(ଗୀତା-କର୍ମଯୋଗ, ପଞ୍ଚମ ଅଧ୍ୟାୟ, ଶ୍ଳୋକ - ୧୮)

- ଜ୍ଞାନୀଜନମାନେ ବିଦ୍ୟା ଓ ବିନୟଯୁକ୍ତ ବ୍ରାହ୍ମଣ ତଥା ଗୋ, ହସ୍ତୀ, ଶ୍ୱାନ ଓ ଚଣ୍ଡାଳ ଠାରେ ସମଦର୍ଶୀ ହୋଇ ସେମାନଙ୍କୁ ସମଦୃଷ୍ଟିରେ ଦେଖନ୍ତି ।

ବିଦ୍ୱତ୍ୱଂ ଚ ନୃପତ୍ୱଂ ଚ ନୈବ ତୁଲ୍ୟଂ କଦାଚନ
ସ୍ୱଦେଶେ ପୂଜ୍ୟତେ ରାଜା ବିଦ୍ୱାନ ସର୍ବତ୍ର ପୂଜ୍ୟତେ ।

- ବିଦ୍ୱାନ ବ୍ୟକ୍ତି ଓ ଜଣେ ରାଜା କେବେ ହେଲେ ସମାନ ହୋଇପାରିବେ ନାହିଁ କାରଣ ରାଜା କେବଳ ନିଜ ରାଜ୍ୟରେ ପ୍ରତିଷ୍ଠା ଲାଭ କରେ କିନ୍ତୁ ବିଦ୍ୱାନ ବ୍ୟକ୍ତି ସର୍ବତ୍ର ପୂଜା ପାଇଥାଏ । ତେଣୁ ବିଦ୍ୱାନ ବ୍ୟକ୍ତି ଶ୍ରେଷ୍ଠ ଅଟେ ।

## ୬. ସତ୍ ସଂସର୍ଗ

ଚନ୍ଦନଂ ଶୀତଳଂ ଲୋକେ ଚନ୍ଦନାଦପି ଚନ୍ଦ୍ରମା
ଚନ୍ଦ୍ର ଚନ୍ଦନୟୋର୍ମଧ୍ୟେ ଶୀତଳା ସାଧୁସଙ୍ଗତି ।

- ସଂସାରରେ ଚନ୍ଦନର ବିଶେଷ ଗୁଣ ଶୀତଳତା । ଚନ୍ଦନଠାରୁ ତତୋଧିକ ଶୀତଳ ହେଉଛନ୍ତି ଚନ୍ଦ୍ର । ଚନ୍ଦ୍ର ତଥା ଚନ୍ଦନଠାରୁ ସାଧୁ ସଂଗତି ଶୀତଳତମ ଅଟେ ।

ତ୍ୟଜ ଦୁର୍ଜନ ସଂସର୍ଗ ଭଜ ସାଧୁ ସମାଗମମ୍
କୁରୁ ପୁଣ୍ୟ ମହାରାତ୍ରଂ ସ୍ମର ନିତ୍ୟମ ନିତ୍ୟତଃ ।

- ଦୁର୍ଜନମାନଙ୍କ ସଙ୍ଗ ତ୍ୟାଗକରି ସଜ୍ଜନମାନଙ୍କର ସଙ୍ଗ କରିବା ଉଚିତ୍ । ଦିବାରାତ୍ରି ଉତ୍ତମ କାର୍ଯ୍ୟ କରି ଈଶ୍ୱରଙ୍କୁ ସ୍ମରଣ କରିବା ମାନବ ଧର୍ମ ଅଟେ ।

## ୭. ଧନ

ବିଦ୍ୟୟା ବପୁଷା ବାଚା ବସ୍ତ୍ରେଣ ବୈଭବେନ ଚ
'ବ' କାର ପଞ୍ଚ ଦୁର୍ଲଭାଃ ନରଃ ପ୍ରାପ୍ନୋତି ଗୌରବମ୍ ।

- ବିଦ୍ୟା, ବପୁ (ଶରୀର), ବାକ୍‌ଶକ୍ତି (ବାଗ୍ମୀତା), ବସ୍ତ୍ର ଓ ବୈଭବ (ଐଶ୍ୱର୍ଯ୍ୟ) ଏହି ପଞ୍ଚ 'ବ' କାରଯୁକ୍ତ ଗୌରବର ଅଧିକାରୀ ସଂସାରର ସର୍ବୋତ୍ତମ ଧନ ଅଟେ ।

## ୮. ସଞ୍ଚୟଶୀଳତା

ଜଳବିନ୍ଦୁ ନିପାତେନ କ୍ରମଶଃ ପୂର୍ଜତେ ଘଟଃ
ଏ ହେତୁଃ ସର୍ବ ବିଦ୍ୟାନାଂ ଧର୍ମତ୍ର୍ୟ ଚ ଧର୍ମସ୍ୟ ଚ ।

- ଜଳ ବିନ୍ଦୁ ବିନ୍ଦୁ ହୋଇ ଯେପରି ଘଟ କ୍ରମଶଃ ପୂର୍ଣ୍ଣ ହୋଇଥାଏ । ଏଣୁ ବିଦ୍ୟା, ଧନ ଓ ଧର୍ମ ସଞ୍ଚୟ କରିବା ମାନବ ଜୀବନର ସର୍ବଶ୍ରେଷ୍ଠ ଧର୍ମ ଅଟେ ।

## ୯. ପତ୍ନୀ

ଯସ୍ୟ ପୁତ୍ରୋ ବଶୀଭୂତୋ ଭାର୍ଯ୍ୟା ଛନ୍ଦାନୁଗାମିନୀ

ବିଭବେ ଯସ୍ୟ ସନ୍ତୁଷ୍ଟିସ୍ତସ୍ୟ ସ୍ୱର୍ଗ ଇହେ ବହି ।

- ନିଜର ଆଜ୍ଞାଧୀନ ପୁତ୍ର, ବେଦମତୀ ପତ୍ନୀ, ସ୍ୱଧନରେ ସନ୍ତୁଷ୍ଟ ବ୍ୟକ୍ତିର ସ୍ୱର୍ଗ ସୁଖ ଫଳ ପ୍ରାପ୍ତି ହୁଏ ।

ପତିର୍ହି ଦୈବତଂ ସ୍ତ୍ରୀଣାଂ ପତିରେବ ପରାୟଣାମ୍

ଅନୁଗମ୍ୟଃ ସ୍ତ୍ରୀୟା ସାଧ୍ୱୀ ପତିଃ ପ୍ରାଣଧନେଶ୍ୱରଃ ।

- ପତ୍ନୀ ମାନଙ୍କର ପତି ହିଁ ଦେବତାତୁଲ୍ୟ ଓ ପରମ ଆଶ୍ରୟ ଅଟନ୍ତି । ତେଣୁ ନିଜର ପ୍ରାଣେଶ୍ୱର ପତିଙ୍କୁ ପତିବ୍ରତା ପତ୍ନୀ ସମସ୍ତ ସତ୍‌କର୍ମରେ ଅନୁଗମନ କରିବା ବିଧେୟ ।

## ୧୦. ପୁତ୍ର

ପିତରୋ ଯସ୍ୟ ତୃପ୍ୟନ୍ତି ସେବୟା ଚ ଗୁଣେନ ଚ

ତସ୍ୟ ଭାଗୀରଥି ସ୍ନାନଂ ମହତ୍ତ୍ୟ ହନି ବର୍ତ୍ତତେ ।

- ଯେଉଁ ପୁତ୍ରର ସେବା ଓ ଗୁଣରେ ପିତାମାତା ସନ୍ତୁଷ୍ଟ, ସେ ପ୍ରତ୍ୟହ ଗଙ୍ଗା ସ୍ନାନର ପୁଣ୍ୟ ଲାଭ କରିଥାଏ ।

ଏକେନାପି ସୁପୁତ୍ରେଣ ବିଦ୍ୟାଯୁକ୍ତେ ଚ ସାଧୁନା

ଆହ୍ଲାଦିତଂ କୁଳଂ ସର୍ବ ଯଥା ଚନ୍ଦ୍ରେଣ ଶର୍ବରୀ ।

- ଚନ୍ଦ୍ରମାଙ୍କ ଦ୍ୱାରା ଯେପରି ରାତ୍ରିର ଶୋଭା ବର୍ଦ୍ଧନ ହୁଏ, ସେହିପରି ଜଣେ ବିଦ୍ୱାନ ସୁପୁତ୍ର ଦ୍ୱାରା କୁଳ ଗୌରବାନ୍ୱିତ ହୋଇଥାଏ ।

## ୧୧. ଶିକ୍ଷା

ଶିକ୍ଷା ଶିଶୁର ବୌଦ୍ଧିକ ବିଭବ । ଶିଶୁର ଅନ୍ତର୍ନିହିତ ପ୍ରତିଭାର ବିକାଶ ହିଁ ଶିକ୍ଷାର ମୂଳମନ୍ତ୍ର । ଶିକ୍ଷା ମନୁଷ୍ୟର ମାନବିକ ମୂଲ୍ୟବୋଧ ବିକାଶର ପ୍ରତୀକ ଅଟେ । ଏହା ଶିଶୁର ଜୀବନ ବ୍ୟାପୀ ସାଧନା ଅଟେ ।

## ୧୨. ଶିକ୍ଷକ

ଶିକ୍ଷକ ଛାତ୍ରର ଚରିତ୍ର ଗଠନ, ମାନସିକ ଓ  ବୌଦ୍ଧିକ ବିକାଶର ଉତ୍ସ । ଆତ୍ମଶୃଙ୍ଖଳା, ଆତ୍ମୋତ୍ସର୍ଗ ମନୋଭାବ ଥିବା ଶିକ୍ଷକ ଏକ ଅଭିନବ ଶୈକ୍ଷିକ ପରିବେଶ ସୃଷ୍ଟି କରି ଛାତ୍ର ସମାଜ ଆଗରେ ଚିର ବନ୍ଦିତ ହୁଏ ।

## ୧୩. ଆତ୍ମୀୟ ସ୍ୱଜନ

ସତ୍ୟଂ ମାତା ପିତା ଜ୍ଞାନଂ ଧର୍ମୋ ଭ୍ରାତା ଦୟା ସଖା

ଶାନ୍ତିଃ ପତ୍ନୀ କ୍ଷମାପୁତ୍ରଃ ଷଡତେ ମମ ବାନ୍ଧବାଃ ।

- ଆମ୍ଭମାନଙ୍କର ଆତ୍ମୀୟ ସ୍ୱଜନ ୬ ଜଣ ଅଟନ୍ତି ଯଥା ମାତା ସତ୍ୟ, ପିତା ଜ୍ଞାନ, ଭ୍ରାତା ଧର୍ମ, ଦୟା ମିତ୍ର, ପତ୍ନୀ ଶାନ୍ତି ଓ ପୁତ୍ର କ୍ଷମା ଅଟେ ।

ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ଶତ୍ରୁ ବିଗ୍ରହେ

ରାଜଦ୍ୱାରେ ଶ୍ମଶାନେ ଚ ଯ ତିଷ୍ଠତି ସଃ ବାନ୍ଧବଃ ।

- ସମ୍ପଦ, ବିପଦ, ଦୁର୍ଭିକ୍ଷ, ଶତ୍ରୁଦମନରେ, ରାଜଦ୍ୱାରରେ ଏବଂ ଶ୍ମଶାନରେ ଯିଏ ଉପସ୍ଥିତ ରହେ ଓ ସାହାଯ୍ୟ କରେ ସିଏ ପ୍ରକୃତ ବନ୍ଧୁ ଅଟେ ।

## ୧୪. ଶରୀର

ଅପି କ୍ରିୟାର୍ଥଂ ସୁଲଭଂ ସମିତ୍‌କୁଶମ୍, ଜଳାନ୍ୟାପି ସ୍ନାନବିଧିକ୍ଷମାଣି ତେ

ଅପି ସ୍ୱଶକ୍ତ୍ୟା ତପସି ପ୍ରବର୍ତ ସେ, ଶରୀର ମାଦ୍ୟଂ ଖଳୁଧର୍ମ ସାଧନମ୍

କୁମାର ସମ୍ଭବ - ମହାକବି କଳିଦାସ

- ଭଗବାନ ଶିବ ତପସ୍ୟା ନିମନ୍ତେ ଶରୀର ଉପରେ ଗୁରୁତ୍ୱ ଦେଇଛନ୍ତି । ମନୁଷ୍ୟର ଶରୀର ଧର୍ମ ପାଳନ ନିମନ୍ତେ ସୁଲଭ କାଷ୍ଠ ଓ ସବୁଜ ଘାସ, ବା କୁଶ ଉପରେ ନିର୍ଭର କରେ । ପବିତ୍ର ସ୍ନାନ ନିମନ୍ତେ ଜଳର ଆବଶ୍ୟକତା ଅଛି । ନିଜର ସାଧମତେ ତପସ୍ୟା କରିବା ଉଚିତ୍ । ତେଣୁ ତୁମର ଶରୀର ଧର୍ମ ରକ୍ଷା ନିମନ୍ତେ ଉଦ୍ଦିଷ୍ଟ । ଶରୀର ସୁସ୍ଥ ରହିଲେ ଧର୍ମ କାର୍ଯ୍ୟ ସମାପନ କରାଯିବ ।

## ୧୫. ମୃତ୍ୟୁ

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ

ତସ୍ମାଦପରିହାର୍ଯ୍ୟେର୍ଥେ ନ ତ୍ୱଂ ଶୋଚିତୁମର୍ହସି । (ଗୀତା- ଦ୍ୱିତୀୟ ଅଧ୍ୟାୟ - ଶ୍ଳୋକ-୨୭)

- ମନୁଷ୍ୟ ମରଣଶୀଳ । ଜନ୍ମ ହୋଇଥିବା ମନୁଷ୍ୟର ମୃତ୍ୟୁ ସୁନିଶ୍ଚିତ ଓ ଅଟଳ । ଭଗବାନ ଶ୍ରୀକୃଷ୍ଣ କହିଲେ ହେ ପରଂତପ ଅର୍ଜୁନ, ଯାହା ଅନିବାର୍ଯ୍ୟ, ସେହି ମୃତ୍ୟୁ ବିଷୟରେ ତୁମେ ଶୋକ କରିବା ଉଚିତ୍ ନୁହେଁ । ଜନ୍ମ ଓ ମୃତ୍ୟୁ ଚିରନ୍ତନ ସତ୍ୟ । ପ୍ରତ୍ୟହ ଲୋକ ମୃତ୍ୟୁମୁଖରେ ପଡିବା ଦେଖି ମଧ୍ୟ ମନୁଷ୍ୟ ମାୟାଗ୍ରସ୍ତ ହୋଇ ଭାବୁଛି ଯେ ମୃତ୍ୟୁ ମୋ ଜୀବନରେ କେବେ ଆସିବ ନାହିଁ । ଏହା ହିଁ ସଂସାର ମୋହର ବୈଚିତ୍ର୍ୟ ।

ପୁଣ୍ୟାତ୍ମା ସ୍ୱର୍ଗତ ମହାପାତ୍ରଙ୍କର ଈଶ୍ୱର ବିଶ୍ୱାସ, ସତ୍ୟ, ଧର୍ମ, କର୍ମ, ବିଦ୍ୟା, ସତ୍‌ସଙ୍ଗ, ଧନ, ପରୋପକାର, ପତ୍ନୀ, ପୁତ୍ର, ଆତ୍ମୀୟସ୍ୱଜନ, ସ୍ୱାସ୍ଥ୍ୟ, ବନ୍ଧୁ, ଶିକ୍ଷା, ଶିକ୍ଷକ ଓ ସର୍ବୋପରି ଚିରନ୍ତନ ସତ୍ୟ ମୃତ୍ୟୁ ଉପରେ ଅଭିବ୍ୟକ୍ତି, ସାମାଜିକ ଉତ୍ତରଦାୟିତ୍ୱ ତଥା ସମସ୍ତ ଛାତ୍ର ଛାତ୍ରୀଙ୍କର ଗୁରୁଭକ୍ତିର ନିଦର୍ଶନ ଆଗାମୀ କାଲିର ବଂଶଧରମାନଙ୍କ ପାଇଁ ଏକ ଦିଗ୍‌ଦର୍ଶୀ ଦିଗନ୍ତ ହେବ ।

ପ୍ରତ୍ୟେକ ବିଦ୍ୟମାନ ପୂର୍ବତନ ଛାତ୍ର ଓ ଛାତ୍ରୀ ତାଙ୍କର ସନ୍ଦେଶ ଓ ଆଦର୍ଶକୁ ଅନୁଧ୍ୟାନ କରି ତାହାର ଅନୁପାଳନର ଆତ୍ମସମୀକ୍ଷା କରିବା ସଂଗେ ସଂଗେ ଅଧ୍ୟୟନ କରିଥିବା ବିଦ୍ୟାଳୟ ଏବଂ ନିଜ ଗ୍ରାମର ବିଦ୍ୟାଳୟରେ ଶିକ୍ଷାର ଗୁଣାତ୍ମକ ମାନ ବିକାଶ ପାଇଁ ସତତ ଚେଷ୍ଟିତ ହେବା ବାଞ୍ଛନୀୟ ।

ବିଦ୍ୟାଳୟରେ ଅଧ୍ୟୟନରତ ଛାତ୍ର/ଛାତ୍ରୀମାନଙ୍କ ମଧ୍ୟରୁ ଅନ୍ତତଃ ଜଣେ ମେଧାବୀ ତଥା ଆର୍ଥିକ ଅନଗ୍ରସର ଶ୍ରେଣୀଭୁକ୍ତ ଛାତ୍ର/ଛାତ୍ରୀକୁ ପୋଷ୍ୟ ଛାତ୍ର/ଛାତ୍ରୀ ଭାବେ ଗ୍ରହଣ କରି ନିଜସ୍ୱ ଆୟୁରୁ ତା'ର ଉଚ୍ଚଶିକ୍ଷା ଖର୍ଚ୍ଚ ବହନ କରି ସ୍ୱାବଲମ୍ବୀ କରିବା ତଥା ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷାନୁଷ୍ଠାନର ଉନ୍ନତି ଏବଂ ଶୈକ୍ଷିକ ପରିବେଶ ସୃଷ୍ଟି ନିମନ୍ତେ ଲାଇବ୍ରେରି digitalisation (ସାଂଖ୍ୟିକ ତଥ୍ୟ ଓ ପୁସ୍ତକ କମ୍ପ୍ୟୁଟରୀକରଣ) ନିମନ୍ତେ ଯଥାସାଧ୍ୟ ଆର୍ଥିକ ସାହାଯ୍ୟ ପ୍ରଦାନ କରି ସାମାଜିକ ଓ ବୌଦ୍ଧିକ ଉତ୍ତରଦାୟିତ୍ୱ ସମ୍ପନ୍ନ କଲେ ସ୍ୱର୍ଗତ ମହାପାତ୍ରଙ୍କର ଅମର ଆତ୍ମା ପ୍ରତି ଏହା ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

ସ୍ୱର୍ଗତ ମହାପାତ୍ରଙ୍କର ଶ୍ରଦ୍ଧେୟ କନ୍ୟା, ପୁତ୍ର ଓ ଆତ୍ମୀୟ ସ୍ୱଜନମାନେ ତାଙ୍କର ଉଲ୍ଲିଖିତ ସନ୍ଦେଶ, ଆଦର୍ଶ ଓ ମୂଲ୍ୟବୋଧ କେତେକାଂଶରେ ଅନୁସରଣ କରିଅଛନ୍ତି ତାହା ଆତ୍ମସମୀକ୍ଷା କରିବା ଆବଶ୍ୟକ । ତାଙ୍କର ଭାବନା ଓ ସନ୍ଦର୍ଶର ବାସ୍ତବ ରୂପାୟନ ତାଙ୍କ ପ୍ରତି ଏକ ନୈସର୍ଗିକ ପ୍ରୀତ୍ୟୁପହାର ସହ ଶାଶ୍ୱତ ପୁଷ୍ପାଞ୍ଜଳି ହେବ ।

ଆତ୍ମଚରିତରେ ଲିପିବଦ୍ଧ ମୂଲ୍ୟବୋଧ, ହିତୋପଦେଶ ଅନୁସୃତ ହେଲେ ଦିବଂଗତ ମହାପାତ୍ରଙ୍କର ଅନ୍ତିମ ଅଭିଳାଷ, ଚାରିତ୍ରିକ ଉତ୍କର୍ଷ ଓ ଏକ ପ୍ରଗତିଶୀଳ ଶିକ୍ଷା ତଥା ସୁଦୂରପ୍ରସାରୀ ଶିକ୍ଷା ବ୍ୟବସ୍ଥା ମାଧ୍ୟମରେ ଏକ ସରସ, ସୁନ୍ଦର ଓ ଭିତ୍ତିପ୍ରଦ ସମାଜ ଗଠନ କରିବାରେ ତାଙ୍କର ନିରବଚ୍ଛିନ୍ନ ପ୍ରୟାସ ଚରିତାର୍ଥ ହେବା ନେଇ ମୁଁ ଆଶାବାଦୀ ।

ଓଁ ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ, ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ<br>
ସ୍ୱସ୍ତି ନସ୍ତାକ୍ଷର୍ୟୋ ଅରିଷ୍ଟନେମିଃ, ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ।<br>
ଯଶସ୍ୱୀ ଦେବରାଜ ଇନ୍ଦ୍ର, ସର୍ବଜ୍ଞ ସୂର୍ଯ୍ୟଦେବ, ଅରିଷ୍ଟ ନିବାରକ ପକ୍ଷୀରାଜ ଗରୁଡ<br>
ବୁଦ୍ଧିର ପ୍ରଭୁ ବୃହସ୍ପତି ସମସ୍ତ ଦେବତା ଆମ୍ଭମାନଙ୍କର କଲ୍ୟାଣ କରନ୍ତୁ ।

- ଗୁଣମୁଗ୍ଧ

**ମାନସ**



## ମାନପତ୍ର



ଜନ୍ମ - ୧୯୦୬ ମସିହା
ମୃତ୍ୟୁ - ଅଗଷ୍ଟ ୧୯୮୫ ମସିହା

ଲିପିକାର - ପଣ୍ଡିତ ଗଣେଶ୍ୱର ମହାପାତ୍ର
ଏମ୍.ଏ. ବିଏଡ୍, ହେଡ୍‌ମାଷ୍ଟର

**ଛାତ୍ରବତ୍ସଳ ପ୍ରବୀଣ ଶିକ୍ଷକ, ସାରସ୍ୱତ ସାଧକ, ଦାର୍ଶନିକ ତଥା ଓଡ଼ିଶା ଶିକ୍ଷାବିଭାଗର ଅର୍ଦ୍ଧଶତାବ୍ଦୀର ଇତିହାସ "ଭାର୍ଗବୀ ପ୍ରଜ୍ଞାକଳ୍ପ" ନାରାୟଣ ମହାପାତ୍ରଙ୍କ ଅମର 'ଆତ୍ମଚରିତ' ଉନ୍ମୋଚନ ଅବସରରେ ସେହି ମହାନ୍ ଦିବଂଗତ ଆତ୍ମାଙ୍କ ପ୍ରତି ମରଣୋତ୍ତର ସମ୍ମାନ ।**

"ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନସେବୟା
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନଃ ତତ୍ତ୍ୱଦର୍ଶିନଃ ।।"

### ହେ ପୁଣ୍ୟାତ୍ମନ୍ !

ଆଜକୁ ଛତିଶ (୩୬) ବର୍ଷ ତଳେ ପବିତ୍ର ଗମ୍ଭାପୂର୍ଣ୍ଣିମା ତିଥିରେ ବାର୍ଦ୍ଧକ୍ୟ ଜନିତ ରୋଗରେ ପୀଡିତ ହୋଇ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁରଠାରେ ଉଚ୍ଚ ସରକାରୀ ପଦବୀରେ ଅବସ୍ଥାପିତ ନିଜ ସୁପୁତ୍ର କୃଷ୍ଣଚନ୍ଦ୍ରଙ୍କ ବାସଭବନରେ ଚିକିତ୍ସିତ ହେଉଥିବା କାଳରେ ଆପଣ ଶାଶ୍ୱତ ଶାନ୍ତିର ନିଳୟକୁ ଚାଲିଗଲେ । ଆପଣଙ୍କ ଅଗଣିତ ଛାତ୍ରଛାତ୍ରୀ, ବନ୍ଧୁବର୍ଗ ବିଭିନ୍ନ ଶିକ୍ଷାନୁଷ୍ଠାନର ଶିକ୍ଷକ ଶିକ୍ଷୟିତ୍ରୀ, ସାହିତ୍ୟାନୁରାଗୀ, ଗ୍ରାମ ତଥା ଅଞ୍ଚଳବାସୀ କେବଳ ମର୍ମାହତ ହେଲେ ନାହିଁ ବରଂ ଶିକ୍ଷା ବିଭାଗର ଆକାଶରୁ ଏକ ଉଜ୍ଜଳ ଜ୍ୟୋତିଷ୍କ ଅପସରି ଗଲା ବୋଲି ଅନୁଭବ କଲେ । ଆପଣଙ୍କ ଉଚ୍ଚକୋଟୀର ଶିକ୍ଷାଦାନ, ଓଡ଼ିଆ ଭାଷା ପ୍ରତି ଅନୁରାଗ, ସ୍ୱାଧୀନଚେତନା, ସମାଜସେବା ଓ ଜାତିପ୍ରେମ ଆପଣଙ୍କୁ କେବଳ ଏକ ସ୍ୱତନ୍ତ୍ର ଆସନରେ ସମାସୀନ କରାଇନାହିଁ ବରଂ ଆପଣଙ୍କ ରଚିତ କାବ୍ୟ, ଅନେକ କବିତା, ଭଜନ ଜଣାଣ ଓ ଅସଂଖ୍ୟ ଉପଦେଶାମୃତ ଆପଣଙ୍କୁ ତିରୋଧାନ ପରେ ମଧ୍ୟ ଅମରତ୍ୱ ପ୍ରଦାନ କରିଅଛି । ଅସାଧାରଣ ପ୍ରତିଭା ସମ୍ପନ୍ନ ତଥା ସାମାଜିକ

ଚେତନା ପୁଷ୍କଳ ଆପଣ ଗ୍ରାମାଞ୍ଚଳରେ ଯେଉଁ ଶୈକ୍ଷିକ ବାତାବରଣ ସୃଷ୍ଟି କରି ଅଗଣିତ ଛାତ୍ରଛାତ୍ରୀଙ୍କ ହୃଦୟରେ ଜ୍ଞାନପ୍ରଦୀପ ପ୍ରଜ୍ୱଳନ କରିଥିଲେ ତାହା ଆଜି ଅନିର୍ବାଣ ଦୀପଶିଖା ପରି ଭବିଷ୍ୟତକୁ ଆଲୋକିତ କରିଛି, କରୁଛି ଓ କରୁଥିବ ।

## ହେ ଗୁଣୀଗଣାଗ୍ରଗଣ୍ୟ !

ପରାଧୀନ ଭାରତରେ ୧୯୦୬ ମସିହାରେ ବ୍ରାହ୍ମଣକୁଳ ସ୍ୱାଭିମାନର ପ୍ରତୀକ, ପୁରୀ ଜିଲ୍ଲା ଷୋଳଶାସନ ଅନ୍ତର୍ଗତ ବୀରନରସିଂହପୁର ଗ୍ରାମର ପୁଣ୍ୟପ୍ରାଣ ଗଣେଶ୍ୱର ମହାପାତ୍ରଙ୍କ ଏକମାତ୍ର ପୁତ୍ର ରୂପେ ଆପଣ ଜାତ ହୋଇଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟକାଳରୁ ଆପଣଙ୍କ ପ୍ରଚଣ୍ଡ ପ୍ରତିଭା, ଜ୍ଞାନାନ୍ୱେଷୀ ମନୋଭାବ, ବିନମ୍ରତା ଓ ଗୁରୁଭକ୍ତିର ପରିଚୟ ମିଳିଥିଲା । ଶୈଶବରେ ସଂଘର୍ଷର କଷଟି ପଥର ଉପରେ ପରୀକ୍ଷିତ ଆପଣ ଥିଲେ ଶୁଦ୍ଧ ଓ ଏକନିଷ୍ଠ । ବାଲ୍ୟକାଳରୁ ଆପଣଙ୍କ ସୁଗୁଣ ବିକଶିତ ହୋଇଥିଲା ଓ ଆପଣ ଉନ୍ନତିର ସୋପାନ ଆରୋହଣର ସ୍ୱପ୍ନ ଦେଖୁଥିଲେ । ପାରିବାରିକ ଧନାଭାବ ଆପଣଙ୍କ ଇଚ୍ଛାଶକ୍ତିର ବାଧକ ସାଜିପାରିନଥିଲା । ବିରଳ ପ୍ରତିଭାଧର ଆପଣ ଯେ ସଫଳତାର ତୁଙ୍ଗଶିଖରୀକୁ ଆରୋହଣ କରିବେ, ଏଥିରେ ଅଣୁମାତ୍ର ସନ୍ଦେହର ଅବକାଶ ନଥିଲା । ଆପଣ ଗ୍ରାମ ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷାଲାଭ କରି ଭର୍ଣ୍ଣାକୁଲାର ଉତ୍ତୀର୍ଣ୍ଣ ହେଲାପରେ ମାଧ୍ୟମିକ ଶିକ୍ଷା ସମାପ୍ତ କରିଥିଲେ । ପରେ କଟକ ରେଭେନ୍ସା ମହାବିଦ୍ୟାଳୟରୁ ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତତ୍‌ପରେ ପବିତ୍ର ଶିକ୍ଷକ ବୃତ୍ତିକୁ ଗ୍ରହଣ କରି ବିଦ୍ୟାଦାନ ମାଧ୍ୟମରେ ସମାଜ ସେବା କରିବାକୁ ସଂକଳ୍ପ ବଦ୍ଧ ଆପଣ କର୍ମନିଯୁକ୍ତ ହେଲେ ।

## ହେ ଉଦାରହୃଦୟ !

ପରାଧୀନ ଭାରତ । ଆପଣ ତତ୍‌କାଳୀନ ସମୟରେ ଓଡ଼ିଶା ତଥା ଗ୍ରାମାଞ୍ଚଳର ଦୁର୍ଦ୍ଦଶା ଅନୁଭବ କରି ଶିକ୍ଷକ ଜୀବନରେ ସମାଜସେବା କରିବାକୁ ମନବଳାଇଲେ । ଅନ୍ଧବିଶ୍ୱାସ, କୁସଂସ୍କାର ଓ ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସହ ନାରୀଶିକ୍ଷାର ପ୍ରସାର, ସାମ୍ୟବାଦ, ଜାତିପ୍ରୀତି ଓ ଦେଶପ୍ରେମର ବାର୍ତ୍ତା ଦେବା ପାଇଁ ଆପଣ ସଙ୍କଳ୍ପବଦ୍ଧ ହେଲେ । ନିଜର ମୌଳିକତା, ନିର୍ଭୀକତା, ସତ୍ୟବାଦୀତା କର୍ମତତ୍ପରତା, ସମୟାନୁବର୍ତ୍ତୀତା ଓ ଶୃଙ୍ଖଳିତ କାର୍ଯ୍ୟକଳାପ ମାଧ୍ୟମରେ ଅଳ୍ପ ଦିନରେ ଜଣେ ବିଦ୍ୱାନ ତଥା ଗୁଣୀ ଶିକ୍ଷକ ଭାବେ ସର୍ବତ୍ର ପୂଜିତ ହେଲେ । ଇଂରାଜୀ, ସାହିତ୍ୟ ଓ ଭୂଗୋଳ ସହ ସଂସ୍କୃତ ଶିକ୍ଷାଦାନ ଦେବାରେ ଆପଣ ଥିଲେ ଅଦ୍ୱିତୀୟ ।

## ହେ ବିଦ୍ୱାନ୍ !

ଏକ ଶୁଭଲଗ୍ନରେ ଆପଣ ପ୍ରଥମେ ପୁରୀ ଜିଲ୍ଲା ଅନ୍ତର୍ଗତ ଶାସନ ଦାମୋଦରପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ୧୯୨୮ ମସିହାରୁ ୧୯୩୧ ମସିହା ଯାଏ ଶିକ୍ଷକତା କରିବା କାଳରେ ଆପଣ ଖୁବ୍ ଲୋକପ୍ରିୟ ହୋଇଥିଲେ । ୧୯୩୧ ରୁ ୧୯୩୩ ମସିହାଯାଏ ମଫସଲ କାକଟପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କରିବା ସମୟରେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ତତ୍‌କାଳୀନ ରାଜନୈତିକ ନେତୃବର୍ଗଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଅଭିଭାବକ ଓ ଛାତ୍ରଛାତ୍ରୀଙ୍କ ବିଶ୍ୱାସଭାଜନ ହେବା ସହ ଦରିଦ୍ର ବ୍ୟକ୍ତିଙ୍କ ବନ୍ଧୁ ରୂପେ ଗରିବ ଛାତ୍ରଛାତ୍ରୀଙ୍କୁ ବିଦ୍ୟାଳୟାଭିମୁଖୀ କରିବା ପାଇଁ ସର୍ବଦା ଯତ୍ନ କରୁଥିଲେ । ୧୯୩୪ ରୁ

୧୯୩୬ ମସିହା ଯାଏଁ ଆପଣ କଟକ ସିଟି ସ୍କୁଲ୍‌ରେ ଶିକ୍ଷା ଗ୍ରହଣ କରିବା ପରେ ୧୯୩୬ରୁ ୧୯୪୧ ମସିହା ଯାଏଁ ସତ୍ୟବାଦୀ ବିଦ୍ୟାଳୟରେ ଶିକ୍ଷାଦାନ କରିବାର ସୁଯୋଗ ପାଇଲେ ଓ ସେହିଠାରେ ନିଜର ସାହିତ୍ୟ ସାଧନା ପାଇଁ ପ୍ରେରଣା ଲାଭ କଲେ । ପଞ୍ଚସଖାଙ୍କ ସାନ୍ନିଧ ଲାଭ କରି ଆପଣ ଜାତିପ୍ରୀତି, ଦେଶପ୍ରେମ ଓ ଓଡ଼ିଆ ଭାଷା ପ୍ରତି ଅନୁରାଗ ପ୍ରଦର୍ଶନ କଲେ । ପୁସ୍ତକକୁ ଆପଣ ନିଜ ବନ୍ଧୁବୋଲି ଭାବିବା ସହ ଲେଖନୀକୁ ପ୍ରେମ କରି ସାହିତ୍ୟ ରଚନା ଆରମ୍ଭ କଲେ । ତତ୍‌ପରେ ୧୯୪୧ରୁ ୧୯୪୩ ଯାଏଁ ଟାଙ୍ଗୀ ଉଚ୍ଚ ବିଦ୍ୟାଳୟରେ ଆପଣ ଶିକ୍ଷାଦାନ କରି ଅଜସ୍ର ସମ୍ମାନର ଅଧିକାରୀ ହେଲେ । ପୁନର୍ବାର ଆପଣ ୧୯୪୩ରୁ ୧୯୪୯ ଯାଏଁ ସତ୍ୟବାଦୀ ବିଦ୍ୟାଳୟରେ କର୍ମ ସମ୍ପାଦନ କରିବା ପରେ ଏକ ଆଦର୍ଶ ଶିକ୍ଷକ ରୂପେ ଉଭା ହେଲେ । ଶିକ୍ଷା ବିଭାଗର ଆଦେଶ ବଳରେ ଆପଣ ସ୍ଥାନାନ୍ତରିତ ହୋଇ ୧୯୪୯ରୁ ୧୯୫୬ ଯାଏଁ ପୁରୀ ଜିଲ୍ଲାର ଜ୍ଞାନପୀଠ ଭାର୍ଗବୀ ହାଇସ୍କୁଲ, ବୀରନରସିଂହ ପୁରଠାରେ ନିଜର ପବିତ୍ର ବୃତ୍ତି ଦକ୍ଷତାର ସହ ସଂପାଦନ କରିବା ସମୟରେ କର୍ତ୍ତୃପକ୍ଷଙ୍କ ଆଦେଶରେ ପୁରୀ ଗଦାଧର ହାଇସ୍କୁଲକୁ ମାତ୍ର ଏକବର୍ଷ ପାଇଁ ସ୍ଥାନାନ୍ତରିତ ହୋଇଥିଲେ । ମାତ୍ର ତତ୍‌କାଳୀନ ଶିକ୍ଷାମନ୍ତ୍ରୀଙ୍କ ପ୍ରତ୍ୟକ୍ଷ ହସ୍ତକ୍ଷେପରେ ଆପଣ ପୁନର୍ବାର ସସମ୍ମାନ ନିଜ ଗ୍ରାମସ୍ଥ ଭାର୍ଗବୀ ହାଇସ୍କୁଲକୁ ସ୍ଥାନାନ୍ତରିତ ହୋଇଥିଲେ । ୧୯୫୫ଠାରୁ ୧୯୬୯ ମସିହା ଯାଏଁ ସେଠାରେ ନିଜ ବୃତ୍ତିଗତ ଶିକ୍ଷକ ଜୀବନର ପୂର୍ଣ୍ଣଚ୍ଛେଦ ଟାଣିଥିଲେ ଓ ସସମ୍ମାନ ଅବସର ଗ୍ରହଣ କରିଥିଲେ ।

**ହେ ପ୍ରଜ୍ଞାପୁରୁଷ !**

ଆପଣଙ୍କ ଆଦର୍ଶ ପାରିବାରିକ ଜୀବନର ଇତିବୃତ୍ତି ଅତୀବ ମହନୀୟ । ଆପଣଙ୍କ ପରିବାରରେ ପ୍ରତ୍ୟେକ ଏକ ଏକ ଆଦର୍ଶ ସାମାଜିକ ଦର୍ପଣ କହିଲେ ଅତ୍ୟୁକ୍ତି ହେବନାହିଁ ।

ଆପଣ ଶିକ୍ଷକ ଜୀବନର ଅୟମାରମ୍ଭରେ ସତ୍ୟବାଦୀ ନିକଟସ୍ଥ ଶ୍ରୀ ରାମଚନ୍ଦ୍ରପୁର ଶାସନରେ ଜନ୍ମିତା ଗୁଣବତୀ ଧର୍ମପରାୟଣା ରାଧାମଣି ଦେବୀଙ୍କ ପାଣିଗ୍ରହଣ କରି ଦୁଇ ପୁତ୍ର ଓ ଦୁଇ କନ୍ୟାଙ୍କର ଜନକ ହୋଇଥିଲେ । ଜ୍ୟେଷ୍ଠପୁତ୍ର ଲିଙ୍ଗରାଜ ପରଲୋକଗାମୀ ହୋଇଛନ୍ତି । ଜ୍ୟେଷ୍ଠକନ୍ୟା ନାରୀରତ୍ନ ସଂଗୀତ ନିପୁଣା ଉମାମଣୀ ଗ୍ରାମର ବିଶିଷ୍ଟ ବ୍ୟକ୍ତି ସ୍ୱର୍ଗତଃ ଗଦାଧର ମିଶ୍ରଙ୍କ ସୁପୁତ୍ର ଓଡ଼ିଶା ଅର୍ଥସେବାର ଅଧିକାରୀ ଗୁଣବାନ୍ ତଥା ରୂପବାନ୍ ପୁରୁଷୋତ୍ତମ ମିଶ୍ରଙ୍କ ପାଣିଗ୍ରହଣ କରିଥିବା ବେଳେ କନିଷ୍ଠା କନ୍ୟା ଉଚ୍ଚଶିକ୍ଷିତା ଗୁଣବତୀ ତଥା ପ୍ରଧାନ ଶିକ୍ଷୟିତ୍ରୀ ଭାବେ ଅବସର ଗ୍ରହଣ କରିଥିବା ରମାମଣୀ ଓଡ଼ିଶା ଜେଲ୍‌ସେବାର ଅଧିକ୍ଷକ ନାରାୟଣ ମିଶ୍ରଙ୍କୁ ଜୀବନସାଥୀ ଭାବେ ଗ୍ରହଣ କରିଥିଲେ । କନିଷ୍ଠ ପୁତ୍ର କୃଷ୍ଣଚନ୍ଦ୍ର ଭାରତୀୟ ପ୍ରଶାସନିକ ସେବାର ଜନୈକ ବରିଷ୍ଠ ଅଧିକାରୀ । ସେ ପ୍ରଧାନ ଶିକ୍ଷକ ସ୍ୱର୍ଗତ ବିଶ୍ୱନାଥ ନନ୍ଦଙ୍କ ଜ୍ୟେଷ୍ଠାକନ୍ୟା ଉଚ୍ଚଶିକ୍ଷିତା ତଥା ନାରୀସୁଲଭ ସକଳ ସଦ୍‌ଗୁଣାବଳୀ ଭୂଷିତା ନିହାରପ୍ରଭାଙ୍କ ପାଣିଗ୍ରହଣ କରିଛନ୍ତି । ଆପଣଙ୍କ ପୌତ୍ର ଉଚ୍ଚଶିକ୍ଷିତ ଓ ପୌତ୍ରୀମାନେ ସତ୍‌ପାତ୍ରରେ ପ୍ରଦତ୍ତା । ଆପଣଙ୍କ କନିଷ୍ଠା କନ୍ୟା ରମାମଣୀ ଭାର୍ଗବୀ ଉଚ୍ଚବିଦ୍ୟାଳୟରୁ ମାଟ୍ରିକ ପାସ୍ କରିଥିବା ପ୍ରଥମ ଛାତ୍ରୀ ଓ ତତ୍‌ପରେ ପୁରୀ ମହିଳା ମହାବିଦ୍ୟାଳୟରେ ଅଧ୍ୟୟନ କରିଥିବା ପ୍ରଥମ ଗ୍ରାଜୁଏଟ୍ । ପରେ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ଧାରିଣୀ ଓ ପ୍ରଶିକ୍ଷଣ ପ୍ରାପ୍ତା । ନିଜ କନିଷ୍ଠା କନ୍ୟା ରମାମଣୀଙ୍କୁ ମହାବିଦ୍ୟାଳୟରେ ପଢ଼ାଇବା ପରେ ଏ ଅଞ୍ଚଳରେ ନାରୀ ଶିକ୍ଷାର ଜାଗରଣ ହେଲା ବୋଲି ଲୋକମୁଖରୁ ପ୍ରଶଂସା ଶୁଣାଯାଏ ।

ଆପଣଙ୍କ ଗୃହରେ ନିତ୍ୟ ସଂଗୀତ ସାଧନା କରନ୍ତି ଆପଣଙ୍କ ଦୁଇ କନ୍ୟା । ନିତ୍ୟ ଅତିଥି ଅଭ୍ୟାଗତମାନେ ଆପଣଙ୍କ ଗୃହରେ ଭୋଜନ କରନ୍ତି । ପର୍ବପର୍ବାଣୀ, ଜାନିଯାତ୍ରା ସବୁକିଛି ସମ୍ପନ୍ନ ହୁଏ । ପରୋପକାର ହିଁ ଆପଣଙ୍କ ପରିବାରର ଆଦର୍ଶ । ତ୍ୟାଗ ଓ ଉତ୍ସର୍ଗରେ ଆପଣ ପାଇଥାନ୍ତି ପରମ ଆନନ୍ଦ । 'ଏକଶ୍ଚନ୍ଦ୍ରସ୍ତମୋହନ୍ତି' ପରି ସୁପୁତ୍ର କୃଷ୍ଣଚନ୍ଦ୍ର ନିଜ ଚାରିତ୍ରିକ ସୌରଭରେ ବଂଶ ଗରିମାକୁ ମହକାଇ ସୁରଭିତ କରିଛନ୍ତି - କହିବା ବାହୁଲ୍ୟ ମାତ୍ର ।

"ଏକେନାପି ସୁବୃକ୍ଷେଣ ପୁଷ୍ପିତେନ ସୁଗନ୍ଧିନା ବାସିତଂ ତଦବନଂ ସର୍ବଂ ସୁପୁତ୍ରେଣ କୁଳଂ ଯଥା ।" ଏହି ଚାଣକ୍ୟ ଉକ୍ତି କୃଷ୍ଣଚନ୍ଦ୍ରଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ।

## ହେ ସାରସ୍ୱତ ସାଧକ !

ଆପଣଙ୍କ ପାଇଁ ସତ୍ୟବାଦୀର ପଞ୍ଚସଖା ହିଁ ଆଦର୍ଶର ଦର୍ପଣ । ସତ୍ୟବାଦୀ ଯୁଗର ସାହିତ୍ୟ ରସ ଆପଣଙ୍କ ଶିରା ପ୍ରଶିରାରେ ପ୍ରବାହିତ । ଦେଶପ୍ରେମ, ସତ୍ୟନିଷ୍ଠା, ଜାତିପ୍ରୀତି, ମାତୃଭାଷା ପ୍ରୀତି ଆପଣଙ୍କ ଆଦର୍ଶ, ଆପଣଙ୍କ ସାହିତ୍ୟ ରଚନା ମଧ୍ୟରେ କାବ୍ୟ କବିତା ଓ ଉପଦେଶାତ୍ମକ ମୂଲ୍ୟବାନ ଉକ୍ତି ଆପଣଙ୍କ ଅମର ସୃଷ୍ଟି ରୂପେ ବିଦ୍ୟମାନ ଓ ଆପଣଙ୍କୁ ଅମରତ୍ୱ ପ୍ରଦାନ କରୁଛି ଓ କରିବ ।

କୁହାଯାଏ -

ନରତ୍ୱଂ ଦୁର୍ଲଭଂ ଲୋକେ ବିଦ୍ୟା ତତ୍ର ସୁଦୁର୍ଲଭା
କବିତ୍ୱଂ ଦୁର୍ଲଭଂ ଲୋକେ ଶକ୍ତିସ୍ତତ୍ର ସୁଦୁର୍ଲଭା ।

ଆପଣ ବିଦ୍ୱାନ୍ ଓ ଆପଣଙ୍କ ରଚନାର ଯେଉଁ ଶବ୍ଦର ତରଙ୍ଗ ଝଙ୍କୃତ ଓ ପ୍ରବାହିତ ତାହା ଆପଣଙ୍କ ସୃଜନୀଶକ୍ତିର ବଳିଷ୍ଠ ପ୍ରମାଣ ।

ଜ୍ଞାନ ଯେ ଶିକ୍ଷାଗତ ଯୋଗ୍ୟତାର ଅନୁଗାମୀ ନୁହେଁ ଏହା ଆପଣ ନିଜ ରଚନା ମଧ୍ୟରେ ପ୍ରମାଣିତ କରିଛନ୍ତି । ବିବିଧ ବିଦ୍ୟା ଆପଣଙ୍କ ରସନାଗ୍ର ନର୍ତ୍ତକୀ କହିବା ବାହୁଲ୍ୟମାତ୍ର ।

ଆପଣଙ୍କ ପଦ୍ୟ ରଚନାରେ ଅଳଙ୍କାର ଶାସ୍ତ୍ରର ସଫଳ ପ୍ରୟୋଗ ଦେଖାଯାଏ । ଅନୁପ୍ରାସ, ଯମକ ଉପମା, ଉତ୍ପ୍ରେକ୍ଷା, ରୂପକ ଅଳଙ୍କାରର ବହୁଳ ପ୍ରୟୋଗ ସହ ବିବିଧ ରାଗ ରାଗିଣୀର ଯେଉଁ ସମନ୍ୱୟ ଦୃଶ୍ୟମାନ ହୁଏ ତାହା ଓଡ଼ିଆ ଭାଷାରେ ରଚିତ ଯେ କୌଣସି ସ୍ୱୀକୃତି ପ୍ରାପ୍ତ କାବ୍ୟକୃତି ଠାରୁ କୌଣସି ଗୁଣରେ କମ୍ ନୁହେଁ, ବରଂ ସମଧିକ ।

ଆପଣଙ୍କ ରଚିତ 'ଗୀତି ରାମାୟଣ' ସଂସ୍କୃତ ରାମାୟଣର କଥାବସ୍ତୁ ଉପରେ ଆଧାରିତ ଓ ଏହାର ସାହିତ୍ୟିକ ମୂଲ୍ୟ ଅତୁଳନୀୟ । ରାଗ ବଙ୍ଗଳାଶ୍ରୀ, କଳଷା, ଚୋଖୀ, ରାମକେରୀ, ରସକୁଲ୍ୟା, କଳହଂସ କେଦାର, ଭୈରବୀ, ଶଙ୍କରାଭରଣ, ଚିନ୍ତା ଭୈରବ, କାମୋଦୀ, କାଳୀ, ଚନ୍ଦ୍ରକେଳୀ, ଧନାଶ୍ରୀ, କଳାଶ୍ରୀ, ଆଷାଢ଼ଶୁକ୍ଳ, ଆହାରୀ, ନଟବାଣୀ ଓ ବିଭାସ କେଦାର ଆଦି ରାଗ ଓ ବୃତ୍ତରେ ପୁଷ୍କଳ ହୋଇଛି ଯାହା ଉତ୍କଳ ବାଣୀମନ୍ଦିରର ଏକ ଅମୂଲ୍ୟ ଗ୍ରନ୍ଥ ପ୍ରାୟ । ଆପଣ ନିଜର ଏହି କାଳଜୟୀ ସାହିତ୍ୟ-କୃତି-'କୁସୁମର ମାଳା' ଉତ୍କଳ ଭାରତୀଙ୍କ ଗଳାରେ ପିନ୍ଧାଇ ନିଜ ଅନନ୍ୟ କବିତ୍ୱର ପ୍ରମାଣ ଦେଇଛନ୍ତି । ଓଡ଼ିଆ ଭାଷାରେ ରଚିତ ଏହି 'ଗୀତି ରାମାୟଣ କାବ୍ୟ' ଓଡ଼ିଆ ଭାଷାର ସମ୍ପଦ କହିବା ଯଥାର୍ଥ । ସେହିପରି 'ଜନ୍ମଭୂମି' କବିତାରେ ନିଜର ଜନ୍ମଭୂମି ପ୍ରତି ଆପଣଙ୍କ ମମତା ଓ ଭକ୍ତି ଯେପରି ପ୍ରକାଶିତ ତାହାର ପଟାନ୍ତର ନାହିଁ । ଆପଣ ଅନେକ ଭଜନ, ଜଣାଣ, ପଲ୍ଲୀଗୀତ ରଚନା କରିବା ସହ ଅନେକ ଉପଦେଶାତ୍ମକ ପୁସ୍ତକ ରଚନା କରିଛନ୍ତି । ସ୍ତ୍ରୀ ଶିକ୍ଷା,

ସଂସ୍କୃତ ଶିକ୍ଷା, ଡ଼ାକ୍ତରୀ ଶିକ୍ଷା ଆଦି ଅନେକ ଉପାଦେୟ ଶିକ୍ଷା ଆପଣ ଆତ୍ମଚରିତ ମାଧ୍ୟମରେ ସମାଜକୁ ଉପହାର ଦେଇଛନ୍ତି । ଆପଣ ମନୁଷ୍ୟର ଚାରିତ୍ରିକ ମୂଲ୍ୟବୋଧର ଉନ୍ନତି ପାଇଁ ସତ୍ୟକଥନ, ସତ୍ ସଂପର୍କ, ଈଶ୍ୱର ବିଶ୍ୱାସ, ଧର୍ମ, ଗୁରୁଭକ୍ତି ବିଷୟରେ ନିଜର ଯେଉଁ ଲବ୍ଧଜ୍ଞାନ ଅର୍ପଣ କରିଛନ୍ତି ତାହାର ପଟ୍ଟାନ୍ତର ନାହିଁ । ଆପଣ ହିତପୋଦେଶ ଦେବା ଛଳରେ ବିଦ୍ୟା, ସ୍ୱାସ୍ଥ୍ୟ, ଅର୍ଥ, ପତ୍ନୀ, ପୁତ୍ର, ଖାଦ୍ୟ, ପାନୀୟ, ସଂଚୟ, ଋଣ ପ୍ରକୃତ ବନ୍ଧୁର ସଂଜ୍ଞା ବିଷୟରେ ଜ୍ଞାନ ଦାନ କରିଛନ୍ତି ଯାହା ପ୍ରଣିଧାନ ଯୋଗ୍ୟ ।

## ହେ ଶିଶୁ-ହୃଦ-କୈରବମୋଦ-ଚନ୍ଦ୍ର !

ଆପଣ ଭାର୍ଗବୀ ଭାବଧାରାର ସ୍ୱଚ୍ଛ ଦର୍ପଣ । ଗୁରୁ ଗୌରବର ଅଧିକାରୀ । ଆପଣ ଓଡ଼ିଶା ଶିକ୍ଷା କ୍ଷେତ୍ରରେ ଏକ ଅର୍ଦ୍ଧ ଶତାବ୍ଦୀର ଇତିହାସ । ଭାର୍ଗବୀ ନଦୀର ପବିତ୍ର ପ୍ରବାହ ପରି ଆପଣଙ୍କ ପବିତ୍ର ଅନ୍ତରାତ୍ମା ଦୁଃଖୀ, ଦୀନ, ନିପୀଡ଼ିତ ଛାତ୍ର ଛାତ୍ରୀଙ୍କ ପାଇଁ ସର୍ବଦା ସଂବେଦନଶୀଳ । ଆପଣଙ୍କ ପୃଷ୍ଠପୋଷକତାରେ କେତେ ଯେ ଅନ୍ଧାର ପରିବାରରେ ଆଲୋକବର୍ତ୍ତିକା ଜଳିଛି ତା'ର ସ୍ୱୀକୃତି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ମଫସଲ ହାଇସ୍କୁଲରୁ ଓଡ଼ିଶା ପ୍ରଥମ ଦଶ ଜଣଙ୍କ ମଧ୍ୟରେ ଛାତ୍ରଙ୍କୁ ସ୍ଥାନିତ କରି ଆପଣ ବିସ୍ମୟ ସୃଷ୍ଟି କରିଛନ୍ତି । ଗ୍ରାମାଞ୍ଚଳରେ ନାରୀ ଶିକ୍ଷାର ପ୍ରସାର ଆପଣଙ୍କ ମହନୀୟ କୀର୍ତ୍ତି ହୋଇଥିବା ବେଳେ ଶିକ୍ଷାକ୍ଷେତ୍ରରେ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଆପଣଙ୍କ ସଂଗ୍ରାମ ଅବିସମ୍ବାଦିତ । ଆପଣଙ୍କ ଗ୍ରାମପ୍ରୀତି ଓ ସ୍ୱଇଚ୍ଛା ହେତୁ ଆପଣଙ୍କ ମରଶରୀର ପବିତ୍ର ଗ୍ରାମଶ୍ମଶାନରେ ପଞ୍ଚ ମହାଭୂତରେ ଲୀନ ହୋଇଛି । ପ୍ରିୟ ପୁତ୍ର କୃଷ୍ଣଚନ୍ଦ୍ର ମୁଖାଗ୍ନି ଦେବାବେଳେ ଶତ ଶତ ଛାତ୍ର ନିଜ ଆଖିର ଲୁହରେ ଆପଣଙ୍କ ପ୍ରତି ଅନ୍ତିମ ଅର୍ଘ୍ୟ ଅର୍ପଣ କଲେ କହିବା ବାହୁଲ୍ୟ ମାତ୍ର ।

## ହେ ଯଶସ୍ୱୀ ମହାଗୁରୁ !

ସଂସ୍କୃତ କହେ "କୀର୍ତ୍ତିର୍ଯସ୍ୟ ସ ଜୀବତି ।" ଶିକ୍ଷକଙ୍କ ଜୀବନର ପୁଣ୍ୟ କୀର୍ତ୍ତି ଆପଣଙ୍କୁ ଅମର କରିଛି । ଆପଣଙ୍କର ଅମୃତସ୍ରାବୀ - ସାହିତ୍ୟକୃତି ଓ ବିରଳ କବିତ୍ୱ ଅନିର୍ବଚନୀୟ । ଆପଣଙ୍କ 'ଆତ୍ମଚରିତ' ପୁସ୍ତକ ଆପଣଙ୍କ ଜୀବନ କୋଣାର୍କର ଯଶୋଗାନ କରୁ । ବିଷ୍ଣୁଲୋକରେ ଥାଇ ଆପଣ ଛାତ୍ରଛାତ୍ରୀଙ୍କ ମସ୍ତକରେ ଆଶୀର୍ବାଦର ମୁଦ୍ରା ଟେକିଥାଆନ୍ତୁ । ଆପଣଙ୍କର ଗୁଣମୁଗ୍ଧ ଛାତ୍ରସମାଜ ଆପଣଙ୍କୁ ଆଜି ମରଣୋତ୍ତର - ଶିକ୍ଷକ ସମ୍ମାନ **"ଭାର୍ଗବୀ ପ୍ରଜ୍ଞାକଳ୍ପ"** ଉପାଧିରେ ଭୂଷିତ କରୁଅଛି ।

॥ ଇତି ଶମ୍ ॥

ଆପଣଙ୍କର ପ୍ରିୟ ଛାତ୍ରଛାତ୍ରୀ ବୃନ୍ଦ

●●●

**ଶ୍ରୀ ଗଣେଶ୍ୱର ମହାପାତ୍ର ପ୍ରାକ୍ତନ ଛାତ୍ର, ସଂସ୍କୃତ ଶାସ୍ତ୍ରରେ ସ୍ନାତକୋତ୍ତର ଡିଗ୍ରୀ ହାସଲ ପରେ ବିଭିନ୍ନ ବିଦ୍ୟାଳୟରେ ଶିକ୍ଷାଦାନ ପରେ ପ୍ରଧାନ ଶିକ୍ଷକ ଭାବେ ଅବସର ଗ୍ରହଣ କରିଛନ୍ତି ।**

## ଅଭିମତ ଛାତ୍ର ଛାତ୍ରୀ, ଗ୍ରାମବାସୀ ଓ ବୁଦ୍ଧିଜୀବୀ ମାନଙ୍କ ଠାରୁ



# JAY JAGANNATH

**Justice B.N.Mahapatra**
Former Judge, the Odisha High Court
Presently Chairman, Claims Commission
set up by the Hon'ble Supreme Court of India

*I am glad to know that the autobiography of my revered Guru (teacher) late Narayan Mohapatra is going to be published. The moment lifely image of my Guru late Narayan Mohapatra flashes in my mind, I become nostalgic and begin to reminisce about the year 1965 when the English language was taught for the first time to pupils of class VI and it was the late Narayan Mohapatra who was teaching us English in class VI and VII in Bhargabi High School. Subsequently he also taught us Geography in lucid style in higher classes.*

*Today, whatever a little I have achieved, it is due to the blessings of the Almighty, my parents and my Gurus. One of such Gurus is Late Narayan Mohapatra. An ideal teacher of high moral, he was endowed with immense knowledge, impartial to all, sincere, punctual, kind-hearted and was dedicated to his profession.He was imparting his profound knowledge among the students without expecting anything in return, unlike Guru Dronacharya who demanded the right-hand thumb of his disciple Ekalavya towards Guru Dakshina. His manner of teaching was unique, super and remarkable. He wrote one Essay book in simple English which was very much useful and could be easily understood by students of Class VII and VIII. Being inspired by the said Essay book I started attempting to express my various thoughts in English from Class VII. Many of his students were/are highly placed in Government and Non-Government Sectors and have served the nation in different spheres.*

*The foundation led by late Narayan Mohapatra, my Guru at my early age was subsequently accelerated by many other respected Gurus. One of them is his*

*illustrious son Krushna Chandra Mohapatra who taught me Political Science in honors classes in S.C.S. College, Puri. Krushna Chandra Mohapatra is the bright son of a bright father. He was a renowned Lecturer in Political Science and an excellent Public Administrator who started his career as a lecturer in Political Science and retired as a member of the Odisha Public Service Commission. I am privileged to be a student of both the father and son and fortunate to get opportunities to learn many things from them who were giants in their respective subjects. I am really indebted to them. Their contribution towards nurturing students could make many of them worthy and productive citizens of the society.*

*I hope and believe that the society will be immensely benefited if teachers of the present days would follow the footprints of my Pujya Guru Late Narayan Mohapatra. On this auspicious occasion, I with folded hands offer my heartful prayer to the sacred soul of my Guru.*

*Place: Bhubaneswar*
*(Justice Biswanath Mahapatra)*
*Date: 07.04.2021*

Justice Mohapatra was the former Judge of the Odisha High Court, at present Chairman, Claims Commission set up by the Hon'ble Supreme Court of India

●●●



# Message

**Jagatbandhu Mahapatra, IPS**

*My Dear Kanhu,*

*Thanks for letting me know that you are going to publish the autobiography of our beloved teacher, Narayan Babu. The memory goes back to the first half of 60s when I joined class 8 in Bhargabi High School. I clearly remember the first period he came to our class to teach English Paper-I. He put the book on the table and started to explaining what were fables and parables and the difference between the two. There he stressed the importance of English Paper-I in learning English language. The sequence of such classes went on for the next four years till our batch left the school in 1965. Whether in the classroom or outside, where ever we met occasionally he simply talked about studies and tried to point out the lapse he used to find in me. To be frank, I was little afraid of him as he was a contemporary of my father and they knew each other very well since their childhood. (The house of the maternal uncle of my father was situated in Biranarasinghpur and my father was a student of Biswanath M.E.School, the earlier name of Bhargabi High School). Narayan Babu used to remain very serious whether within or outside the class. I used to visit his village very frequently as a number of our relations belonged to that village. A few of our teachers then teaching in our school also belonged to that village. I used to visit the houses of my relatives from my childhood days during annual religious festivities and family functions. The striking piece of my memory that I still carry with me was a little peculiar. In the pre-Board test after classes were closed, he called me to his side and told me not to mind the Test results, and prepare for the final examination. He blessed me that I would be doing definitely better there. Later on his blessings came out to be prophetic.*

*His autobiography anyway will be carrying a few pieces of contemporary incidents of the idyllic four years formative period of our lifespan. That shall remain as delightful and cherished memory for all times to come.*

*Thanking you.*

*C-3, Hills Enclave, Dam Side*
*Kanke Road, Ranchi - 834008*
*Former D.G. of Police, Jharkhand*

●●●

Shri Jagatbandhu Mohapatra, IPS, retired as Director General of police in the State of Jharkhand. He is staying at Hills Enclave, Damside, Kanke Road, Ranchi.

ଓଁ ଅସତୋ ମା ସଦ୍‌ଗମୟ



# ହେ ଈଶ୍ୱର, ମୋତେ ଅସତ୍ୟରୁ ସତ୍ୟର ସନ୍ଧାନ ଦିଅନ୍ତୁ

ପ୍ରଫେସର ଡ. ଗୋପୀନାଥ ମହାପାତ୍ର

ଚନ୍ଦ୍ରୋଭାସିତଶେଖରେ ସ୍ମରହରେ
ଗଙ୍ଗାଧରେ ଶଙ୍କରେ
ସର୍ପୈର୍ଭୂଷିତ କଣ୍ଠ କର୍ଣ୍ଣବିବରେ
ନେତ୍ରୋତଥ୍ ବୈଶ୍ୱାନରେ ।
ଦନ୍ତିତ୍ୱକ୍‌କୃତ ସୁନ୍ଦରାମ୍ବର - ଧରେ
ତ୍ରୈଲୋକ୍ୟ ସାରେ ହରେ
ମୋକ୍ଷାର୍ଥଂ କୁରୁ ଚିତ୍ତବୃତ୍ତି
ମଖିଳାମନ୍ୟୈସ୍ତୁ କିଂ କର୍ମଭିଃ ।

(ଶିବ ସ୍ତୋତ୍ରମାଳା) - ପ୍ରଫେସର ଡ.ଅନନ୍ତ ମିଶ୍ର

ଯାହାଙ୍କର ମସ୍ତକରେ ଶଶୀକର ଶୋଭିତ, ଯାହାଙ୍କ ଦ୍ୱାରା କାମଦେବ ଦଗ୍ଧୀଭୂତ, ଯାହାଙ୍କର ଜଟାରେ ପତିତପାବନୀ ଗଙ୍ଗା ବିଦ୍ୟମାନ, ସଂସାରର ଯେ ମଙ୍ଗଳ କାରକ, ଯାହାଙ୍କର କଣ୍ଠ ସର୍ପବେଷ୍ଟିତ, ଯାହାଙ୍କର ତୃତୀୟ ନେତ୍ରରୁ ଅଗ୍ନି ସ୍ଫୁଲିଙ୍ଗ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ ଯେ ସର୍ବପୂଜ୍ୟ, ସେହି ପ୍ରଭୁ ଶଙ୍କରଙ୍କ ପାଦରେ ପରିତ୍ରାଣ ନିମନ୍ତେ ସବିନୟେ ଧ୍ୟାନ କରୁଅଛି ।

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।

ଶ୍ରୀମଦ୍ ଭଗବତ୍ ଗୀତା - ଦ୍ୱିତୀୟୋଽଧ୍ୟାୟଃ
(ଶ୍ଳୋକ - ୨୨)

ଆତ୍ମା ଅବିନଶ୍ୱର ଓ ଶାଶ୍ୱତ । ବସ୍ତ୍ର ପୁରୁଣା ହେଲେ ମନୁଷ୍ୟ ଯେପରି ପୁରୁଣା ଲୁଗାକୁ ପରିତ୍ୟାଗ କରି ନୂତନ ବସ୍ତ୍ର ପରିଧାନ କରେ, ସେହିପରି ଆତ୍ମା ମନୁଷ୍ୟର କର୍ମମୟ ଜୀବନର ଅବସାନ ପରେ ପାର୍ଥିବ ଶରୀର ପରିତ୍ୟାଗ କରି ଏକ ନୂତନ ଶରୀରରେ ବିଦ୍ୟମାନ ହୁଏ । ଏହାକୁ ଆତ୍ମା ଓ ପରମାତ୍ମାର ମିଳନ ବୋଲି ଅଭିହିତ କରାଯାଏ ।

ମୋର ପୂଜନୀୟ ଗୁରୁ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ପୂର୍ବକ ତାଙ୍କର ଅଶେଷ ଗୁଣାବଳୀର ଆଲୋକପାତ କରୁଅଛି ।

ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନରତ ଥିବା ସମୟରେ ସ୍ୱର୍ଗତ ମହାପାତ୍ରଙ୍କର ଅନାବିଳ ସ୍ନେହ, ଅସାଧାରଣ ବିଦ୍‌ବତ୍ତା, ଚାରିତ୍ରିକ ଉତ୍କର୍ଷ ତଥା ଅନୁପମ ବିଦ୍ୟାଦାନ ଶୈଳୀ ମୋତେ ବିଶେଷଭାବେ

ଅନୁପ୍ରାଣିତ କରିଥିଲା । ଜଣେ ବିଦ୍ୟାନୁରାଗୀ ବ୍ୟକ୍ତିତ୍ୱ ଭାବରେ ବିଦ୍ୟା ସର୍ବଶ୍ରେଷ୍ଠ ଧନଭାବେ ସେ ପ୍ରତିପାଦିତ କରିଥିଲେ ।

"ନକ୍ଷତ୍ରଂ ଭୂଷଣଂ ଚନ୍ଦ୍ରୋ ନାରୀଣାଂ ଭୂଷଣଂ ପତି
ପୃଥିବୀ ଭୂଷଣଂ ରାଜା ବିଦ୍ୟା ସର୍ବତ୍ର ଭୂଷଣଂ ।"

ଅସଂଖ୍ୟ ନକ୍ଷତ୍ର ଗଣ ମଧ୍ୟରେ ଚନ୍ଦ୍ର ଅଳଙ୍କାର ସଦୃଶ । ପତି ନାରୀମାନଙ୍କର ଅଳଙ୍କାର ଅଟେ । ସେଭଳି ଜଣେ ପ୍ରଜାନୁରଞ୍ଜନ ରାଜା ପୃଥିବୀର ଅଳଙ୍କାର କିନ୍ତୁ ବିଦ୍ୟା ସର୍ବ ଅଳଙ୍କାର ଭୂଷିତ ଅଟେ ।

ମନୁସ୍ମୃତି ଆଧାରରେ ତାଙ୍କର ଚରିତ୍ରର ବିଶେଷତ୍ୱ ଥିଲା :-

"ଅଦ୍‌ଭି ଗାତ୍ରାଣି ଶୁର୍ଜ୍ୟନ୍ତି ମନଃ ସତ୍ୟେନ ଶୁଦ୍ଧ୍ୟତି
ବିଦ୍ୟା ତପୋଭ୍ୟାଂ ଭୂତାତ୍ମା ବୁଦ୍ଧିର୍ଜ୍ଞାନେନ ଶୁଦ୍ଧ୍ୟତି ।"

(ମନୁସ୍ମୃତି)

ଜଳ ଶରୀରର ମଳିକୁ ଧୌତ କରି ଦେଇପାରେ । ସତ୍ୟ ଆଚରଣ ମନର ଅପବିତ୍ରତାକୁ ଧୌତ କରେ । ବିଦ୍ୟା ଓ ତପ ଦ୍ୱାରା ଆତ୍ମାର ପାପସଂସ୍କାର ନାଶ ହୁଏ ଓ ଜ୍ଞାନ ଦ୍ୱାରା ବୁଦ୍ଧିର ଶୋଧନ ହୁଏ ।

ସ୍ୱର୍ଗତ ମହାପାତ୍ରଙ୍କର ପୁତ୍ର କୃଷ୍ଣଚନ୍ଦ୍ର ତାଙ୍କ ପିତାଙ୍କର ଆତ୍ମଚିନ୍ତନ ଓ ଧୀଶକ୍ତିର ଆଲେଖ୍ୟ 'ଆତ୍ମଚରିତ" ପ୍ରକାଶ କରିବାର ପ୍ରୟାସ ବାସ୍ତବିକ ଅଭିନନ୍ଦନୀୟ । ସେହି ମର୍ମରେ ଉପସ୍ଥାପିତ ମତ :-

"ଏକେନାପି ସୁବୃକ୍ଷେଣ
ପୁଷ୍ପତେନ ସୁଗନ୍ଧିନା
ବାସିତଂ ତଦ୍‌ବନଂ ସର୍ବ
ସୁପୁତ୍ରେଣ କୁଳଂ ଯଥା ।"

ଗୋଟିଏ ମାତ୍ର ବୃକ୍ଷର ସୁଗନ୍ଧଯୁକ୍ତ ଫୁଲର ମହକରେ ସମଗ୍ର ବନସ୍ଥଳୀ ସୁରଭିତ ହୋଇଥାଏ । ସେହିପରି ଏକ ସୁଗୁଣସମ୍ପନ୍ନ ପୁତ୍ର ବଂଶକୁ ଗୌରବମଣ୍ଡିତ କରିଥାଏ । କୃଷ୍ଣଚନ୍ଦ୍ର ଏକ ସୁପୁତ୍ର ଭାବରେ ତାଙ୍କ ପରିବାରର କୁଳମଣ୍ଡନ କରିଅଛନ୍ତି ।

ଜଣେ ପ୍ରାତଃ ସ୍ମରଣୀୟ ପ୍ରତିଭାସମ୍ପନ୍ନ ଗୁରୁଙ୍କର ଅଲିଭା ସ୍ମୃତି ମୋର ହୃଦୟ ବୀଣାରେ ଝଙ୍କୃତ କରୁଛି ସତ୍ୟ ଓ ଶାନ୍ତିର ରାଗିଣୀ ।

ପରିଶେଷରେ, ସେହି ଅମ୍ଲାନ ବ୍ୟକ୍ତିତ୍ୱଙ୍କର ପଦାରବିନ୍ଦରେ ମୁଁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ପ୍ରଭୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ତାଙ୍କର ଆଶୀଷ ପ୍ରଦାନ ନମନ୍ତେ ବିନମ୍ର ପ୍ରଣତି ଜଣାଉଛି ।

ପୂର୍ବତନ କୁଳପତି
ସଦାଶିବ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ

•••

ପ୍ରଫେସର ମହାପାତ୍ର ଜଣେ ମେଧାବୀ ଛାତ୍ର ଥିଲେ । ଛାତ୍ର ସମୟରୁ ସେ ଦିନେ ଏପରି ଉଚ୍ଚ ପଦରେ ପ୍ରତିଷ୍ଠିତ ହେବାର ଜଣା ଯାଉଥିଲା । ନିଜର ଅଧ୍ୟବସାୟ ଓ ନିଷ୍ଠାବଳରେ ସେ ପୁରୀ ସ୍ଥିତ ସଦାଶିବ ସଂସ୍କୃତ ବିଶ୍ୱ ବିଦ୍ୟାଳୟର କୁଳପତି ପଦ ମଣ୍ଡନ କରିଥିଲେ ।

# ଆମର ସାର୍ ନାରଣ ବାବୁ (ସ୍ୱର୍ଗତ ନାରାୟଣ ମହାପାତ୍ର) ଭାର୍ଗବୀ ହାଇସ୍କୁଲ, ବୀରନରସିଂହପୁରଙ୍କ ଆତ୍ମଚରିତ ଉନ୍ମୋଚନର ଅବସରରେ



ଡାକ୍ତର ଅଶୋକ କୁମାର ମହାପାତ୍ର

ମୁଁ ମୋର ଗାଁ ସ୍କୁଲ୍‌ରୁ ପ୍ରଥମ ଶ୍ରେଣୀ ପାସ୍ କରି ଭାର୍ଗବୀ ହାଇସ୍କୁଲ୍‌ରେ ୧୯୬୨ ମସିହାରେ ଯୋଗ ଦେଲି । ଆମ ଗାଁରୁ ବୀର ନରସିଂହପୁର ଓ ସାକ୍ଷୀଗୋପାଳ ପ୍ରାୟତଃ ୫ରୁ ୬ କିଲୋମିଟର । ସାକ୍ଷୀଗୋପାଳ ବନବିଦ୍ୟାଳୟ ହେଲା ଓଡିଶାର ଗୋଟିଏ ସ୍ୱନାମଧେୟ ବିଦ୍ୟାଳୟ । ହେଲେ ବିଦ୍ୟାଳୟରେ ନାମ ଲେଖାପାଇଁ ବଡ ଭିଡ । ବିଦ୍ୟାଳୟରେ ନାମ ଲେଖାଇବା ପାଇଁ ଗାଁ, ଆଖପାଖ ଗାଁ ଓ ଦୂର ଦୂରାନ୍ତରୁ ଭଲ ଭଲ ଛାତ୍ରମାନେ ଆସନ୍ତି । ସାକ୍ଷୀଗୋପାଳ ହାଇସ୍କୁଲ୍‌ରେ ସେତେବେଳେ ୬ଷ୍ଠ ଶ୍ରେଣୀରେ ୩୦ ଜଣ ଛାତ୍ର ପଢୁଥିଲେ । ଏଣୁ ଆମ ଗାଁରୁ ବହୁତ ପିଲା ଭାର୍ଗବୀ ହାଇସ୍କୁଲ୍‌କୁ ଯାଉଥିଲେ । ତେଣୁ ଆମମାନଙ୍କ ପାଇଁ ଏପରି କିଛି ଅସୁବିଧା ନଥିଲା ।

ଆମ ସ୍କୁଲ୍‌ରେ ୬ଷ୍ଠ ଶ୍ରେଣୀରେ ଦୁଇଟି ବିଭାଗ ଥିଲା । ଆମ ସାରମାନଙ୍କ ମଧ୍ୟରୁ ନାରାୟଣ ସାର୍ ଅନ୍ୟତମ ଥିଲେ । ସେ ବିଦ୍ୟାଳୟର ଦ୍ୱିତୀୟ ବରିଷ୍ଠ (ସିନିୟର୍) ଶିକ୍ଷକ ଥିଲେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଗୋବିନ୍ଦ ଚନ୍ଦ୍ର ପୃଷ୍ଟିଙ୍କ ଅନୁପସ୍ଥିତିରେ ନାରାୟଣ ସାର୍ ତତ୍ତ୍ୱାବଧାନ କରନ୍ତି । ସେ ଆମକୁ ଇଂରାଜୀ ପଢାଉଥିଲେ । ସେତେବେଳେ ସାର୍‌ମାନେ ପାଠ ପଢାଇବା ସହ ପିଲାମାନଙ୍କୁ ନିଜର ପୁଅଭଳି ଦେଖୁଥିଲେ । ସାର୍, ବୀରନରସିଂହପୁରରୁ ଏବଂ ଆଉ ଆମେ ସବୁ ବୀରଗୋବିନ୍ଦପୁରରୁ ଥିଲୁ । ଶ୍ରେଣୀରେ ମାତ୍ର ୨୫-୩୦ ଛାତ୍ର ଥିବାରୁ ସାର୍ ପିଲାମାନଙ୍କୁ ଭଲ ଭାବରେ ଜାଣିଥିଲେ । ଆଜି ଆଉ ସେଭଳି ଶିକ୍ଷକ ଓ ଛାତ୍ରଙ୍କର ସମ୍ପର୍କ ନାହିଁ ।

ଆମ ନାରାୟଣ ସାର୍ ଥିଲେ ଜଣେ ଭଲ ଶିକ୍ଷକ । କାରଣ ଇଂରାଜୀ ଭଳି ବିଷୟକୁ ପଢାଇବା ଓ ପିଲାଙ୍କୁ ବୁଝାଇବା କଷ୍ଟ । ଆମ ସମୟରେ ଇଂରାଜୀ ୬ଷ୍ଠ ଶ୍ରେଣୀରୁ ଆରମ୍ଭ ହୋଇଥିଲା । ସାର୍ ଇଂରାଜୀ ଏବଂ ଭୂଗୋଳ ପଢାଉଥିଲେ । ମୋର ଆଜି ବି ମନେ ଅଛି, ସାର୍ ଆସିବାବେଳକୁ ସବୁପିଲା ତୁନି ହୋଇ ବସିଥାନ୍ତି । କାରଣ ପିଲାମାନେ ଭାବୁଥିଲେ ସାର୍ ବହୁତ ଶକ୍ତ ଲୋକ । ଗଣ୍ଡଗୋଳ ଓ ପାଟିତୁଣ୍ଡ କଲେ ଗାଳି ଓ ଦଣ୍ଡ ମିଳିବ । ତେଣୁ ପିଲାମାନେ ସୁନାପିଲା ପରି ଶୃଙ୍ଖଳିତ ଭାବେ ବସିଥାନ୍ତି ।

ଆମ ସ୍କୁଲ୍‌ରେ ଗୋଟାଏ ଶିକ୍ଷକଙ୍କ ପାଇଁ ବସିବା ରୁମ୍ (କମନ୍ ରୁମ୍) ଥିଲା । ଶିକ୍ଷକଙ୍କ ମଧ୍ୟରେ କଣ୍ଠ ସାର୍ ଓ ନାରାୟଣ ସାର୍ ବରିଷ୍ଠ ଥା'ନ୍ତି । ବୋଧହୁଏ ସେତେବେଳେ ତାଙ୍କୁ ୫୦-୫୫ ବର୍ଷ

ହୋଇଥିବ । ଅନ୍ୟ ସାର୍‌ମାନେ ଯଥା ଯଦୁବାବୁ, କ୍ଷୀରୋଦବାବୁ, ଉମାବାବୁ, ଭାନୁବାବୁଙ୍କ ସମେତ ୧୪-୧୫ ଜଣ ଶିକ୍ଷକ ଥିଲେ । ନାରାୟଣ ସାର୍ ଓ କଣ୍ଠ ପଣ୍ଡିତେ ବୟୋଜ୍ୟେଷ୍ଠ ଥିବାରୁ ଅନ୍ୟମାନେ ତାଙ୍କ ସାଙ୍ଗରେ ମିଶି ପାରୁନଥିଲେ । ସେମାନଙ୍କ ବୟସ ୩୦ ରୁ ୪୫ ବର୍ଷ ମଧ୍ୟରେ ଥିଲା । ତେଣୁ କଣ୍ଠ ସାର୍ ଓ ନାରାୟଣ ସାର୍ ଏକାଠି ବସିବା ସହ ଚା' ଦୋକାନରୁ ଚା' ମଗାଇ ପିଅନ୍ତି ।

ନାରାୟଣ ସାର୍ ଥିଲେ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ ଓ ପିତୃତୁଲ୍ୟ । ଛାତ୍ରମାନଙ୍କର ସର୍ବାଙ୍ଗୀନ ଉନ୍ନତି ହିଁ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ଯାହାକି ଆଜିର ଦିନରେ ଶିକ୍ଷକଙ୍କ ମଧ୍ୟରେ ଏହା ଦେଖିବାକୁ ମିଳୁନି । ଏହି ଅତୁଳନୀୟ ଶିକ୍ଷକଙ୍କର ଜୀବନଶୈଳୀ, ଚାଲିଚଳନ ତଥା ପାଠ ପଢାଇବାର ପଦ୍ଧତି ବିରଳ ଓ ବହୁମାତ୍ରାରେ ଛାତ୍ର ଜୀବନକୁ ପ୍ରଭାବିତ କରିପାରିଛି । ଆଜି ଆମେ ସବୁ ଛାତ୍ର ନାରାୟଣ ସାର୍‌ଙ୍କଠାରେ ଋଣୀ । ବିଦ୍ୟାଳୟର ପରିବେଶ, ବାତାବରଣ, ଶିକ୍ଷକ ଓ ଛାତ୍ରମାନଙ୍କର ସମ୍ପର୍କ ଓ ପାଠପଢାର ଶୈଳୀ ପିଲାମାନଙ୍କୁ ଭଲ ଛାତ୍ର ସହ ଭଲ ମଣିଷ ଭଳି ଗଢିତୋଳିବାରେ ବଡ ମହତ୍ତ୍ୱପୂର୍ଣ୍ଣ ଭୂମିକା ନେଇଥାଏ । ଆଜି ମୁଁ ସାର୍‌ଙ୍କୁ ମୋର ଅନ୍ତରରୁ ନମସ୍କାର କରି ତାଙ୍କର ଆଶୀର୍ବାଦ ଭିକ୍ଷା କରୁଛି । ତାଙ୍କର ଅମର ଆତ୍ମା ଜୀବିତ ଥାଉ, ଆମକୁ ଦେଖି ଖୁସିରେ ଗଦ୍‌ଗଦ୍ ହୁଅନ୍ତୁ ଏବଂ ସର୍ବଦା ଆଶିଷ ପ୍ରଦାନ କରନ୍ତୁ ।

(କୁଳପତି, ଶିକ୍ଷା ଓ ଅନୁସନ୍ଧାନ (ସୋଆ)
ବିଶ୍ୱବିଦ୍ୟାଳୟ)

●●●

ଡାକ୍ତର ଅଶୋକ କୁମାର ମହାପାତ୍ର ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ପ୍ରିୟ ଛାତ୍ର ଥିଲେ । ସେ ଅଧୁନା ଶିକ୍ଷା ଓ ଅନୁସନ୍ଧାନ (ସୋଆ) ବିଶ୍ୱବିଦ୍ୟାଳୟରେ କୁଳପତି ଭାବେ କାର୍ଯ୍ୟରତ । ଏହା ପୂର୍ବରୁ ସେ ଭୁବନେଶ୍ୱର ସ୍ଥିତ AIIMS ପ୍ରଥମ ନିର୍ଦ୍ଦେଶକ ଥିଲେ ।



# "ତସ୍ମୈ ଶ୍ରୀ ଗୁରବେ ନମଃ"

ରମା ଦେବୀ

ବଡ଼ ଆନନ୍ଦର କଥା । ମୋ ବାଲ୍ୟଗୁରୁ ସ୍ୱର୍ଗୀୟ ଶ୍ରୀଯୁକ୍ତ ନାରାୟଣ ମହାପାତ୍ରଙ୍କର ଆତ୍ମଜୀବନୀ ପୁସ୍ତକ ପ୍ରକାଶ କରୁଅଛନ୍ତି ବୋଲି ତାଙ୍କ ସୁପୁତ୍ର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମହାପାତ୍ରଙ୍କ ଠାରୁ ଶୁଣିବାକୁ ପାଇଲି ଏବଂ ତାଙ୍କ ବିଷୟରେ ମୋର କିଛି ଅଭିମତ ଜାଣିବାକୁ ଇଚ୍ଛା କରି ମୋତେ ଲେଖାଟିଏ ଦେବାକୁ ସେ ଅନୁରୋଧ କରିଛନ୍ତି ।

ସେଥିପାଇଁ ଆଜି ମୁଁ ପ୍ରାୟ ଅଶୀ ବର୍ଷ ତଳର ଅତୀତ କଥାକୁ ସ୍ମରଣ କଲି । ମୋର ଭାରତମାତା ଛାପ ଥିବା କନାବ୍ୟାଗ୍‌ରେ ଖାତା ବହି ଧରି ସାଙ୍ଗମାନଙ୍କ ସହିତ ସତ୍ୟବାଦୀ ବନବିଦ୍ୟାଳୟର ପ୍ରଥମ ଶ୍ରେଣୀରେ ଯାଇ ବସି ପଢ଼ିବା ବେଳକୁ ବାହାରୁ ଭାରି ଗୋଳମାଳ ଶୁଭିଲା । ଯାଇ ଦେଖେ ତ କେତେଜଣ ପିଲା ଘଣ୍ଟା ବାଜିବା ପରେ ମଧ ଶ୍ରେଣୀକୁ ନ ଆସି ବାହାରେ ବାଟି ଖେଳୁଥିଲେ । ବିଦ୍ୟାଳୟକୁ ନୂଆ ହୋଇ ଆସିଥିବା ଗୁରୁ ନାରାୟଣ ମହାପାତ୍ର, ଇଂରାଜୀ ଶିକ୍ଷକ, ଦେଖିବାକୁ ଡଉଲଡାଉଲ ଛୋଟିଆ ମଣିଷଟିଏ । ଯାହା କହନ୍ତି ସାନ ସାପର ବିଷ ବେଶି । ପାଠ ପଢ଼ାଇବାରେ ଅତି ବିଚକ୍ଷଣ, ସେ ଲଇଁ ପଡି ଗୋଟି ଗାତରୁ ଗୋଟିତକ ଗୋଟାଇ ଉଠିଲାବେଳକୁ, ଯେଉଁ ପିଲାଟି ବାଟି ଗାତ ପାଖରେ ଥିଲା ସାଙ୍ଗ ଭାବି ସାର୍‌ଙ୍କ ଗାଲରେ ଶକ୍ତ ଚାପୁଡାଟିଏ ଦେଇ ବୁଲିପଡି ଚାହିଁଲା ବେଳକୁ ସାର୍ ନିଜେ । ପିଲାଟିର ମୁହଁ ଶେତା ପଡିଗଲା । କ୍ଷମା ମାଗିବାକୁ ପାଟିରୁ କଥା ବାହାରୁନଥାଏ । ସାର୍ କିନ୍ତୁ ତା' ପିଠିକୁ ଆପୁଡେଇ ବୁଝଉଥା'ନ୍ତି । ପିଲାଟି ସାର୍‌ଙ୍କ ଗୋଡତଳେ ପଡି କ୍ଷମା ମାଗିଚାଲିଥାଏ । ସାର୍‌ଙ୍କ କଥାରେ ସେ ପିଲାଟି ବାଟିତକ ନେଇ ବନବିଦ୍ୟାଳୟ ପାଖ ଖାଲିଥିବା ସ୍ଥାନରେ ଫିଙ୍ଗିଦେଇ ଆସିଲା ବେଳକୁ ଆମେ ସମସ୍ତେ ସୁନାପିଲାପରି ଶ୍ରେଣୀଗୃହରେ ବସିଥାଉ । ସାର୍ ତାକୁ ପାଖରେ ବସାଇ କିଛି ସମୟ ବୁଝାଇଲା ପରେ ପାଠପଢ଼ା ଆରମ୍ଭ ହୋଇଥିଲା । ମୋର ପିଲାମନ ବୁଝିଥିଲା ଯେ କର୍ପୂର ଉଡିଗଲେ ବି କନାର ମହକ ଅଛି । ଆମ ପୂଜ୍ୟ ଗୁରୁଦେବ, ସେହି ପୁଣ୍ୟତୀର୍ଥ ମଣିଷଗଢ଼ା କାରଖାନାର ଥିଲେ ଜଣେ ଉପଯୁକ୍ତ କାରିଗର ।

ସାର୍ ବନବିଦ୍ୟାଳୟର ଛାତ୍ର ନଥିଲେ ସତ କିନ୍ତୁ ତାଙ୍କ ଜନ୍ମସ୍ଥାନ ପୁରୀ ନିକଟସ୍ଥ ବୀରନରସିଂହପୁର ଶାସନ ଗ୍ରାମରେ ଏବଂ ତାର ଅଳ୍ପଦୂର ଆମ ଗାଁ ଶ୍ରୀରାମଚନ୍ଦ୍ରପୁର ଶାସନରେ ତାଙ୍କ ଶ୍ୱଶୁରଙ୍କ ଘର ଥିଲା । ସେ ପଞ୍ଚସଖାଙ୍କର ପରମ ଭକ୍ତଥିଲେ ଏବଂ ମୋର ପିତା ପଣ୍ଡିତ ନୀଳକଂଠଙ୍କୁ ଦେବତୁଲ୍ୟ ଭକ୍ତି କରୁଥିଲେ । ସିଏ ଆମ ପରିବାରର ଜଣେ ପରମ ହିତୈଷୀ ଥିଲେ ବୋଲି ନିମ୍ନୋକ୍ତ ଘଟଣାରୁ ଜଣାପଡେ । ମୋ ଉପର ଭଉଣୀ ଇନ୍ଦିରା ନାନୀ ତାଙ୍କ ଗାଁର ଜଣେ ବ୍ୟକ୍ତି ଯେକି ମୋ ନନା ନୀଳକଂଠଙ୍କର ଅତ୍ୟନ୍ତ ଜଣାଶୁଣା ଥିଲେ, ତାଙ୍କ ଶଳାଙ୍କ ସହ ବିବାହ ପ୍ରସ୍ତାବ ଆଣିଥିଲେ । ବାପା ମା ଛେଉଣ୍ଡ ସେହି ପିଲାଟିର କୌଣସି ଘରଦ୍ୱାର ନଥିବାରୁ ସେ ଭିଣେଇଙ୍କ ଉପରେ ସବୁ କଥାରେ ନିର୍ଭରଶୀଳ ଥିଲା । କିନ୍ତୁ ଅତ୍ୟନ୍ତ ମେଧାବୀ ଛାତ୍ର ହିସାବରେ ଇଂରାଜୀ ଏମ୍.ଏ. ରେ ପ୍ରଥମଶ୍ରେଣୀରେ ପ୍ରଥମ ହେବାର ସୁନାମ ଅର୍ଜନ କରିଥିଲା । ମୋ ନନା ଏଥିରେ ଖୁସି ହୋଇ "ବିଦ୍ୟାଧନ ମହାଧନ" ହିସାବରେ ତା ସହିତ ବିବାହ ସମ୍ବନ୍ଧ ସ୍ଥିର କରିଦେଇଥିଲେ । ହଠାତ୍ ନନା ଙ୍କ ପାଖକୁ ଗୋଟିଏ ବେନାମୀ ଚିଠି ଆସିଲା ଯେଉଁଥିରେ ଅତ୍ୟନ୍ତ ଅନୁନୟ ବିନୟ ଭାବରେ କ୍ଷମାପ୍ରାର୍ଥନା ସହିତ ଲେଖାଯାଇଥିଲା, ପିଲାଟି ଦୁରାରୋଗ୍ୟ ରୋଗରେ ପୀଡିତ । ଆପଣ ସେଠାରେ ଜମା ଆଗାନ୍ତୁ ନାହିଁ । ଇତି ଆପଣଙ୍କ ଆଜ୍ଞାଧୀନ ଜଣେ ହିତାକାଂକ୍ଷୀ । ଚିଠିଟି ବେନାମୀ ଥିଲା ସତ କିନ୍ତୁ ଲେଖାର ଭାଷାଟି ବଡ ମର୍ମସ୍ପର୍ଶୀ ଥିଲା ଯେଉଁଥି ପାଇଁ ବିଭାଘର ଭାଙ୍ଗି ଯାଇଥିଲା ।

୧୯୫୭ ମସିହାର ନିର୍ବାଚନ ବେଳେ ଘରକୁ ଘର ବୁଲି ଲୋକଙ୍କ ସହ ମିଶି ଭୋଟ ପ୍ରଚାର କରିବାରେ ମୋର ଭାରି ଆଗ୍ରହ ଥାଏ । ସେବର ମୋ ନନା ନୀଳକଂଠ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରୁ ଓଡିଶା ବିଧାନସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥାନ୍ତି । ପୁରୀରୁ ବିଧାନସଭା ପ୍ରାର୍ଥୀ ସ୍ୱର୍ଗତ ହରିହର ବାହିନୀପତିଙ୍କ ପାଇଁ ତାଙ୍କ ସ୍ତ୍ରୀଙ୍କୁ ସଙ୍ଗରେ ଧରି ମୁଁ ଗାଁ କୁ ଗାଁ ପ୍ରଚାର କାର୍ଯ୍ୟରେ ଲାଗିଥାଏ । ସେଦିନ ଭାଗ୍ୟକୁ ବୀରନରସିଂହପୁର ଗ୍ରାମକୁ ପାଇଥାଉ । ଗାଁଟି ଖୁବ୍ ବଡ । ବୁଲୁ ବୁଲୁ ସଂଧ୍ୟା ହୋଇଗଲା । ଗୁରୁଦେବ ତାଙ୍କ ଘରକୁ ଡାକିନେଲେ । ଗୁରୁ ମା' ରାଧାମଣୀ ଦେବୀ, ଆମ ଗାଁ ଝିଅ ଏବଂ ମୋ ପିଲାଦିନର ରାଧାନାନୀ । ଆମକୁ ଦେଖି ଖୁସିରେ ତାଙ୍କ ଗୋଡ ତଳେ ଲାଗୁ  ନଥାଏ । ବହୁଦିନ ପରେ ମୋ ଗୁରୁଙ୍କ ସଙ୍ଗରେ ଦେଖା ହେଲା । ସେ ଅତି ଆଦରରେ ଆମକୁ ରାତିକ ତାଙ୍କ ଘରେ ଯେଉଁ ଆତିଥ୍ୟ ଦେଇଥିଲେ ତାହା କେବେ ଭୁଲି ପାରିବିନି । ବାହିନୀପତିଙ୍କ ସ୍ତ୍ରୀ ଗୌରୀ ଦେବି ଯେକି ରାଧାନାନୀଙ୍କର ମଧ୍ୟ ଦୂର ସମ୍ପର୍କୀୟ ହେବେ, ସେ ଦୁହେଁ ରୋଷେଇରେ ଗପସପରେ ଲାଗିଥାନ୍ତି । ମୁଁ, ମୋ ଗୁରୁଦେବ, ତାଙ୍କ ଉପର ଘର ପିଣ୍ଡାରେ ବସି ବହୁତ ପୁରୁଣା କଥା ଆଲୋଚନା ବେଳେ ସେ ଦିନର ବେନାମୀ ଚିଠିଟିର ଉନ୍ମୋଚନ ହୋଇଗଲା । ସାର୍ କହିଥିଲେ "ସେ ପିଲାଟି ଦୁରାରୋଗ୍ୟ ରୋଗରେ ପିଡୀତ ହୋଇ କିଛି ଦିନପରେ ମୃତ୍ୟୁବରଣ କଲା ।" ମୁଁ କହିଥିଲି "ଆଜ୍ଞା ! ସେ ବେନାମୀ ପତ୍ରଟି ଆମ ପରିବାର

ପ୍ରତି ଗୋଟିଏ ଆଶୀର୍ବାଦ ପତ୍ର ଥିଲା । ତେବେ ବେନାମୀ ଆପଣ କାହିଁକି ଦେଇଥିଲେ ?" ସେ ଉତ୍ତରରେ କହିଥିଲେ "ନୀଳକଂଠଙ୍କୁ ପରା ଉତ୍କଳର ଦୁର୍ବାସା କହନ୍ତି, କାଳେ ରାଗିବେ, ମୋ ନାଁ ଦେବାକୁ ଭୟ ଲାଗିଲା ।" ଏବେତ ନନା କି ନାନୀ କେହି ହେଲେ ଆଉ ନାହାନ୍ତି । କେବଳ ଅତୀତକୁ ରୋମନ୍ଥନ କରିବାର ସୁଯୋଗ ଦେଇଥିବାରୁ ଶ୍ରୀ କୃଷ୍ଣଚନ୍ଦ୍ରଙ୍କୁ ବହୁ କଲ୍ୟାଣ ସହିତ ଆଶୀର୍ବାଦ ପ୍ରଦାନ କରୁଅଛି । ଜଗନ୍ନାଥ ଭଲ କରନ୍ତୁ ।

ଦ୍ୱାରକାପୁରୀ, ଦ୍ୱାରକାନାଥ ଦାସ ଲେନ୍

ମାଟିମଣ୍ଡପ ସାହି, ପୁରୀ



ରମା ଦେବୀ ହେଉଛନ୍ତି ଅନ୍ୟତମ ପଞ୍ଚସଖା, ବାଗ୍ମୀ, ଦେଶପ୍ରେମୀ ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାଶଙ୍କ ସୁପୁତ୍ରୀ ଓ ପୁରୀର ସ୍ୱନାମଧନ୍ୟ ଆଇନ୍‌ଜୀବୀ ସ୍ୱର୍ଗତ ଦ୍ୱାରକାନାଥ ଦାଶଙ୍କ ସହଧର୍ମିଣୀ । ପ୍ରାକ୍ତନ ଛାତ୍ରୀ । ସେ ଜଣେ ସମାଜସେବୀ ।



# ଆତ୍ମକଥା: ଜଣେ ଶିକ୍ଷକଙ୍କର

ପ୍ର. ଡ. ପ୍ରଫୁଲ୍ଲ କୁମାର ରଥ

ଆମ ଗାଁର ଜଣେ ବିଶିଷ୍ଟ ଶିକ୍ଷକ ସ୍ୱର୍ଗତଃ ନାରାୟଣ ମହାପାତ୍ରଙ୍କର ଆତ୍ମକଥା ଯେ ତାଙ୍କର ସୁଯୋଗ୍ୟ ସନ୍ତାନମାନଙ୍କର ବିଶେଷ କରି ତାଙ୍କର ପୁତ୍ର ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ରଙ୍କ ପ୍ରଚେଷ୍ଟା ଓ ପ୍ରଯତ୍ନରେ ପ୍ରକାଶ ପାଇବାକୁ ଯାଉଛି ତାହା ଅତି ଆନନ୍ଦର କଥା । ସେହି ଆତ୍ମକଥାର ପ୍ରକାଶ ସମ୍ପର୍କରେ ଦୁଇପଦ ଲେଖିବାର ସୁଯୋଗ ମତେ ଅତ୍ୟନ୍ତ ଆନନ୍ଦ ଦେଉଅଛି । ପରମ୍ପରାର ବହୁ ପରିଭାଷା ଭିତରୁ ମୋତେ ଗୋଟିଏ ପରିଭାଷା ସଠିକ ମନେ ହୁଏ ଯେ ପୂର୍ବପୀଢ଼ିର ଭାବନା, ଚିନ୍ତା ଏବଂ ଚେତନାକୁ ସଠିକ ଭାବରେ ପରବର୍ତ୍ତୀ ପୁରୁଷ ପାଇଁ ଘେନିଯିବା ହିଁ ପରମ୍ପରା । ଜୀବିତାବସ୍ଥାରେ ଆମେ ଆମ ପୂର୍ବପୁରୁଷଙ୍କର ଏହି ଭାବନା ଆଦିକୁ ଗୁରୁତ୍ୱ ଦେଇ ନଥାଉ । ଯାହା କିଛି ଆମେ ପର ପୁରୁଷ ପାଇଁ ଘେନିଯାଉ ତାହା ମୁଖ୍ୟତଃ ବାଚିକ-ବହନ । ପରନ୍ତୁ ଉପଯୁକ୍ତ ଦାୟାଦମାନେ ସେହି ଭାବନା-ଚେତନାକୁ ପୁରୁଷ ପରେ ପୁରୁଷ ପାଇଁ ବୋହି ନେଇ ଦାୟାଦତ୍ୱକୁ ସାର୍ଥକ କରନ୍ତି । ଆଗରୁ ଶୁଣି ଶୁଣି ତାହାକୁ ବହନ କରୁଥିଲେ ପରବର୍ତ୍ତୀ ପୀଢ଼ିକୁ । ଅନ୍ୟଥା ସ୍ମରଣ କରୁଥିଲେ । ଏବେ କିନ୍ତୁ କେତେକ ପରିବର୍ତ୍ତନ କାରଣରୁ ଏକ ଲେଖା ସହସ୍ର ଅଲେଖାର ସ୍ଥାନ ନେଇଅଛି ।

ବୁଦ୍ଧଙ୍କ ସମୟରୁ ଆଦି ଶଙ୍କରଙ୍କ ସମୟରୁ ଚରିତଗ୍ରନ୍ଥ ରଚନାର ଧାରା ଭାରତରେ ଥିଲା । ଅଶ୍ୱଘୋଷଙ୍କର 'ବୁଦ୍ଧଚରିତ', 'ଶଙ୍କର ବିଜୟ ମକରନ୍ଦ' ଏହି ଧାରାର ଉଜ୍ଜ୍ୱଳ ଆଲୋକ ସ୍ତମ୍ଭ । ସେହି ଦିନଠାରୁ ଚରିତଗ୍ରନ୍ଥ ଲେଖା ହୋଇ ଚାଲିଛି । ଅବଶ୍ୟ ପୂର୍ବରୁ ଏପରି ଗ୍ରନ୍ଥକୁ 'ଇତିହାସ' କୁହାଯାଉଥିଲା, ଯେପରି 'ରାମାୟଣ' । ଆଦି ଶଙ୍କର ଓ ବୁଦ୍ଧଦେବଙ୍କର ଦୁଇ ହଜାର ବର୍ଷ ପରେ ଲେଖା ହୋଇଅଛି 'ଶ୍ରୀ ଚୈତନ୍ୟ ଚରିତାମୃତ', ଦିବାକର ଦାସ ବିରଚିତ 'ଶ୍ରୀଜଗନ୍ନାଥ ଚରିତାମୃତ' । ଅଧିକାଂଶ ପୁରାଣ ଏବଂ ଇତିହାସ ଗ୍ରନ୍ଥରେ 'ଭଗବାନ ଉବାଚ' ବା 'ନାରଦ ଉବାଚ' ଆଦିରୁ ଏହି ଗ୍ରନ୍ଥଗୁଡ଼ିକରେ ଆତ୍ମଜୀବନୀର ଆଦ୍ୟରୂପ ପ୍ରତିଫଳିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଗତ ଦେଢ଼ଶହ ବର୍ଷ ତଳୁ ପାଶ୍ଚାତ୍ୟ ଢ଼ଙ୍ଗରେ ଆତ୍ମଜୀବନୀ ଓ ଜୀବନୀ ଲେଖା ହେଲା । ଫକୀରମୋହନଙ୍କର 'ଆତ୍ମଚରିତ' ଗୋଦାବରୀଶଙ୍କର 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ' ଆଦି ଉଚ୍ଚ ସ୍ତରର ରଚନା । ଜୀବନୀ ଓ ଆତ୍ମଜୀବନୀର ଇତିହାସ ଯାହା ହେଉ ନା କାହିଁକି ଏହି ଲେଖାଗୁଡ଼ିକ ଅନେକ ଅଜ୍ଞାତ ଅଧ୍ୟାୟକୁ ଆଲୋକିତ କରିଥାଏ । ସେହି କ୍ରମରେ ମାୟାଧର ମାନସିଂହଙ୍କର 'ଶିକ୍ଷାବିତ୍‌ର ଗାଥା'ର ଉପଯୋଗିତା ଯେତିକି, ପ୍ରକାଶ ପାଉଥିବା ନାରାୟଣ ମହାପାତ୍ରଙ୍କର ଆତ୍ମଜୀବନୀର ଉପଯୋଗିତା ମଧ୍ୟ ସେତିକି ।

ଓଡ଼ିଶାର ଇତିହାସରେ ପୁରୀ ସନ୍ନିକଟ ବ୍ରାହ୍ମଣ ଶାସନବାଡର ଇତିହାସ ପୂରା ଲିପିବଦ୍ଧ ହୋଇନାହିଁ । 'ଷଟ୍‌କର୍ମ ନିରତେଭ୍ୟଃ' ବୋଲି ଯେଉଁ ବ୍ରାହ୍ମଣମାନଙ୍କର କଥା ବହୁ ପ୍ରାଚୀନ ଅଭିଲେଖ ମାନଙ୍କରେ ଉଲ୍ଲିଖିତ ଅଛି ଓଡିଶାର ଶାସନବାଡର ସେହି ବ୍ରାହ୍ମଣମାନଙ୍କର ସାମାଜିକ ଜୀବନର ଇତିହାସ ଆଜିଯାଏଁ ବିସ୍ତୃତ ଭାବରେ ଦଲିଲଭୁକ୍ତ କରାଯାଇନାହିଁ । ସେହି ଅନୁପଲବ୍ଧିକୁ ଦିବଂଗତ ନାରାୟଣ ମହାପାତ୍ରଙ୍କର ଆତ୍ମଜୀବନୀ ଅନେକ ପରିମାଣରେ ଉପଲବ୍ଧ କରାଇବାର ସାହାଯ୍ୟ କରିବ । ଏହି ସାମାଜିକ ଉପଯୋଗିତା ନିମିତ୍ତ କ୍ରିୟାନ୍ୱୟନରେ ତାଙ୍କର ପୁତ୍ର କନ୍ୟାମାନଙ୍କର ଉଭୟ ପ୍ରତ୍ୟକ୍ଷ ବା ପରୋକ୍ଷ ଯୋଗଦାନ ପ୍ରଶଂସାଯୋଗ୍ୟ ।

ଭୋଇ ବଂଶର ରାଜା ନରସିଂହଦେବ (୧୬୨୨-୧୬୪୭) ବସାଇଥିବା ବୀରନରସିଂହପୁର ଗ୍ରାମର 'ଷଟ୍‌କର୍ମ ନିରତେଭ୍ୟଃ' ବ୍ରାହ୍ମଣମାନେ ବିଗତ ଶତାବ୍ଦୀର ଏକ ସନ୍ଧିକ୍ଷଣରେ ଶିକ୍ଷକତା କରିବାକୁ ଅଗ୍ରଣୀ ହୋଇଥିଲେ । ଏହି ଶାସନର ଅନେକ ସାମନ୍ତ ବ୍ରାହ୍ମଣଙ୍କୁ ଗଡ଼ଜାତର ରାଜାମାନେ ନିମନ୍ତ୍ରଣ କରି ସେମାନଙ୍କ ରାଜ୍ୟକୁ ନେଇଥିଲେ । ତଦ୍‌ଭିନ୍ନ ଅନେକ କଟକର ବିଖ୍ୟାତ ବିଦ୍ୟାଳୟ ମହାବିଦ୍ୟାଳୟମାନଙ୍କର ଅଧ୍ୟାପନା ବୃତ୍ତିରେ ଯୋଗ ଦେଇଥିଲେ । ସେତେବେଳେ ବ୍ରାହ୍ମଣ ବୈଶ୍ୟର ବୃତ୍ତିଗ୍ରହଣ କରିବାକୁ କୁଣ୍ଠିତ ହେଉଥିଲେ । ଏହି କାଳସୀମାର ମଧ୍ୟବର୍ତ୍ତୀ ସମୟରେ ଦିବଂଗତ ନାରାୟଣ ମହାପାତ୍ର ଶିକ୍ଷକତା କଲେ । ସେ ଉଚ୍ଚ ବିଦ୍ୟାଳୟରେ ଇଂରାଜି, ଭୂଗୋଳ ପଢ଼ାଉଥିଲେ ଓ ଅତି ଭଲ ପଢ଼ାଉଥିଲେ । ବେଶୀ ଦିନ ସେ ସାକ୍ଷୀଗୋପାଳ ହାଇସ୍କୁଲରେ କାର୍ଯ୍ୟ କଲା ପରେ ଆମ ଗାଁର ଭାର୍ଗବୀ ହାଇସ୍କୁଲକୁ ବଦଳି ହୋଇ ଆସିଥିଲେ । ଅତି କଠୋର ସମୟାନୁବର୍ତ୍ତୀ ସ୍ୱର୍ଗତ ମହାପାତ୍ର ଭାର୍ଗବୀ ଉଚ୍ଚବିଦ୍ୟାଳୟରେ ପଂଚସଖା ସଂସ୍କୃତିର ଅଗ୍ରଗଣ୍ୟ ବାର୍ତ୍ତାବହ ଥିଲେ । ପ୍ରତିଦିନ ସକାଳୁ ଚାଲିଚାଲି ଚଟିହୀନ ପାଦରେ ହାଇସ୍କୁଲକୁ ଯିବା ମୁଁ ନିଜେ ଦେଖିଛି । ତତ୍ ସହିତ ଗାଁରେ ସମବାୟ ଆନ୍ଦୋଳନକୁ ସଫଳ କରିବାରେ ତାଙ୍କର ଭୂମିକା ଥିଲା ଅନନ୍ୟ । ତାଙ୍କର ନିରଳସ ଜୀବନ ଓ କଠୋର କର୍ତ୍ତବ୍ୟ ପରାୟଣତା ପିତୃ ଆଶୀର୍ବାଦ ରୂପେ ପୁତ୍ର କୃଷ୍ଣଚନ୍ଦ୍ର ମହାପାତ୍ରଙ୍କୁ ସରକାରୀ ଚାକିରୀରେ ଉଚ୍ଚପଦସ୍ଥ କରାଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ ଗାଁର ଅନ୍ୟଜଣେ ଦିବଂଗତ ଶିକ୍ଷକ ଦାମୋଦର ମିଶ୍ରଙ୍କର କନ୍ୟା ହେଉଛନ୍ତି ପ୍ରଥମ ମହିଳା ଗ୍ରାଜୁଏଟ ଏବଂ ସ୍ୱର୍ଗତଃ ମହାପାତ୍ରଙ୍କର କନ୍ୟା ଦ୍ୱିତୀୟ ଗ୍ରାଜୁଏଟ । ଏହା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଅଛି ଯେ ପୁରୀ ଶାସନବାଡର ବ୍ରାହ୍ମଣମାନେ ଶାସ୍ତ୍ରୀୟ ବିଧି ନିଷେଧକୁ ଯେପରି କଠୋର ଭାବରେ ପାଳନ କରୁଥିଲେ ଠିକ୍ ସେହିପରି ରକ୍ଷଣଶୀଳତାରୁ ଦୂରରେ ଥିଲେ । ସେଇଥିପାଇଁ ଆମ ଗାଁର ୧୮୮୦ ମସିହାରେ ପ୍ରତିଷ୍ଠିତ 'ଆର୍ଯ୍ୟନୀତି ପ୍ରଦୀପ ଗ୍ରନ୍ଥାଗାର' ଏକ ଐତିହାସିକ ଅନୁଷ୍ଠାନ ଯାହା ଅନେକ ସମାଜ ସଂସ୍କାର କରିବାରେ ଅଗ୍ରଣୀ ହୋଇଥିଲା । ସେ ଯାହା ହେଉ ପ୍ରକାଶିତ 'ଆତ୍ମଜୀବନୀ' ଅନେକ ଅଜ୍ଞାତ ଅତୀତର କଥା ଜଣାଇବ ଯାହାକୁ ପାଠକମାନେ ଶ୍ରଦ୍ଧାର ସହିତ ପଢ଼ିବେ ବୋଲି ଆଶା । ଇତି ଅଳମତି ବିସ୍ତରେଣ ।

**ସ୍ନେହାଧୀନ ପ୍ରଫୁଲ୍ଲ**

●●●



# ନାରାୟଣ ମହାପାତ୍ରଙ୍କ ସ୍ମୃତିରେ

**ପ୍ର. ଡ. ପ୍ରଫୁଲ୍ଲ ମହାପାତ୍ର**

ଶୁଣିଲି ସାରଙ୍କର ଆତ୍ମଚରିତ ଉନ୍ମୋଚନ ହେଉଛି । ଯାହାଙ୍କର ଅବଦାନ ଓ ଆଶୀର୍ବାଦରେ ମୁଁ ଆଜି ସମାଜରେ ପ୍ରତିଷ୍ଠିତ ହୋଇପାରିଛି, ସେ ମହାଶୟ ମୋର ପରମପୂଜ୍ୟ ଗୁରୁଦେବଙ୍କ ଆତ୍ମଜୀବନୀ ଉନ୍ମୋଚନରେ ମୋର ବହୁତ କିଛି ଲେଖିବାର ଇଚ୍ଛା ଥିଲେ ମଧ୍ୟ ମୋର ଶାରୀରିକ ଅସୁସ୍ଥତା ଅନ୍ତରାୟ ହୋଇଛି । ଖାଲି ଏତିକି ଲେଖୁଛି ସାର୍ ଥିଲେ ପିତୃତୁଲ୍ୟ । ସେଥିଲେ ଆମ୍ଭମାନଙ୍କ ବନ୍ଧୁ, ଉପଦେଷ୍ଟା ଓ ଦିଗ୍‌ଦର୍ଶକ । ଚରିତ୍ର ଗଠନ ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏହା ଥିଲା ସାର୍‌ଙ୍କ ଶିକ୍ଷାର ମୂଳତତ୍ତ୍ୱ । ମୋର ଶିକ୍ଷା ବିଭାଗରେ ଅଧ୍ୟାପନା ଓ ପ୍ରଶାସନିକ କ୍ଷେତ୍ରରେ ତାହାହିଁ ମୋର ପଥପ୍ରଦର୍ଶକ ହୋଇ ରହିଥିଲା ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା ସାର୍‌ଙ୍କ ଆତ୍ମାର ସଦ୍‌ଗତି ହେଉ, ପରମାତ୍ମାରେ ବିଲୀନ ହେଉ । ଅମରପୁରୀରୁ ସେ ଆମକୁ ଶେଷ ଜୀବନ ପର୍ଯ୍ୟନ୍ତ ଆଶୀର୍ବାଦ କରୁଥାନ୍ତୁ ।

ଶ୍ରଦ୍ଧେୟ
**ପ୍ରଫୁଲ୍ଲ**

•••

ପ୍ରଫେସର ଡ. ପ୍ରଫୁଲ୍ଲ ମହାପାତ୍ର, ଟି.ଇ. ଏବଂ ଏସ୍‌ସିଆର୍‌ଟି, ଓଡ଼ିଶା, ଭୁବନେଶ୍ୱରର ନିର୍ଦ୍ଦେଶକ ଥିଲେ । ସେ ମଧ୍ୟ ବୋର୍ଡ ଅଫ୍ ସେକେଣ୍ଡାରୀ ଏଜୁକେଶନ୍, ଓଡ଼ିଶା, କଟକର ସଭାପତି ଥିଲେ । ଅବସର ପରେ ସେ ମୁଖ୍ୟ ପରାମର୍ଶଦାତା ଭାବେ ଏସ୍.ଆର୍.ସି. ଫର୍ ଏ.ଇ., ଓଡ଼ିଶା, ଭୁବନେଶ୍ୱରରେ କାମକରୁଥିଲେ ।



# ଅଭୁଲା ସ୍ମୃତି

ଶ୍ରୀ ସତ୍ୟନାରାୟଣ ମିଶ୍ର

ଭାର୍ଗବୀ ହାଇସ୍କୁଲ୍‌ର ସମ୍ମାନନୀୟ ପୂର୍ବତନ ଶିକ୍ଷକ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ 'ଆତ୍ମଚରିତ' ପ୍ରକାଶ ପାଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ ହେଲି । ସ୍ୱର୍ଗତ ମହାପାତ୍ର ଆମ ଅଞ୍ଚଳର ଓ ଆମ ସ୍କୁଲରେ ନାରଣ ବାବୁ ଭାବରେ ସୁପରିଚିତ ଥିଲେ । ତାଙ୍କର ଯୋଗ୍ୟ ପୁତ୍ର କାହ୍ନୁ ଭାଇନା (ଶ୍ରୀକୃଷ୍ଣ ଚନ୍ଦ୍ର ମହାପାତ୍ର, ଅବସରପ୍ରାପ୍ତ ଆଇ.ଏ.ଏସ୍)ଙ୍କ ବଳିଷ୍ଠ ଉଦ୍ୟମରେ ଏହି ଆତ୍ମଚରିତ ଆତ୍ମପ୍ରକାଶ କରିବାକୁ ଯାଉଛି । ସ୍ୱର୍ଗତ ନାରଣ ବାବୁଙ୍କ ମହାନ୍ ଆତ୍ମା ପାଇଁ ଏହା ଏକ ଉପଯୁକ୍ତ ସମ୍ମାନ । ତାଙ୍କଭଳି ଖ୍ୟାତନାମା, ନୀତିନିଷ୍ଠ ଆଦର୍ଶ ଶିକ୍ଷକଙ୍କଠାରୁ ଯାହା ଶିକ୍ଷା ଓ ପ୍ରେରଣା ଲାଭ କରିଥିଲି, ସେ ବିଷୟରେ ନିଜର ଅନୁଭୂତି ବର୍ଣ୍ଣନା କରିବାବେଳେ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ବୀରନରସିଂହପୁର ପ୍ରାଥମିକ ମୌଳିକ ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ସମାପ୍ତି ପରେ ଗ୍ରାମର ସୁବିଖ୍ୟାତ ଓ ସମ୍ଭ୍ରାନ୍ତ ଭାର୍ଗବୀ ହାଇସ୍କୁଲ୍‌ରେ ପାଠ ପଢିବା ଏକ ବଡ ସୁଯୋଗ ଥିଲା । ବହୁ ପ୍ରବୀଣ, ଧୁରୀଣ, ଜ୍ଞାନୀ ଶିକ୍ଷକମାନଙ୍କର ବିଶେଷ ଅଧ୍ୟାପନା ଶୈଳୀ ଓ ଅସାମାନ୍ୟ ଚରିତ୍ର ବଳର ଆଲୋକରେ ସ୍କୁଲ୍‌ର ସୁନ୍ଦର ପରିବେଶ ଥିଲା ଜ୍ଞାନ ଲାଭର ଏକ ମହାନ୍ ଉତ୍ସ । ବହୁ ସମ୍ମାନାସ୍ପଦ ଶିକ୍ଷକ, ଏକାଧିକ ବିଷୟରେ ସେମାନଙ୍କର ଗଭୀର ଦକ୍ଷତା ପାଇଁ ଛାତ୍ର ମହଲରେ ସୁନାମ ଅର୍ଜନ କରିଥିଲେ ।

ନାରାୟଣ ବାବୁଙ୍କ ଭଳି ଜଣେ ଦକ୍ଷ ଶିକ୍ଷକଙ୍କଠାରୁ ଶିକ୍ଷା ଲାଭ କରି ମୁଁ ଗର୍ବିତ ଓ ଗୌରବାନ୍ୱିତ । ଭୂଗୋଳ ଓ ସାମାଜିକ ଶିକ୍ଷା ବିଷୟର ଲବ୍ଧ ପ୍ରତିଷ୍ଠ ଶିକ୍ଷକଭାବେ ସେ ଆମ୍ଭମାନଙ୍କୁ ଶିକ୍ଷାଦାନ କରିଥିଲେ । ବହୁ ଅନ୍ୟ ଶିକ୍ଷକଙ୍କ ପରି ସେ ପ୍ରତ୍ୟେକ ଛାତ୍ରର ଶିକ୍ଷା, ଚରିତ୍ର ଗଠନ ଉପରେ ସଦା ଯତ୍ନଶୀଳ ଥିଲେ । ତାଙ୍କର ସମସ୍ତ ଛାତ୍ର, ଶିକ୍ଷା ସଙ୍ଗେ ସଙ୍ଗେ କ୍ରୀଡା, ସାଂସ୍କୃତିକ କାର୍ଯ୍ୟକ୍ରମ ଓ ସମାଜସେବାରେ କିପରି ସଫଳ ହେବେ, ଏହା ତାଙ୍କ ହୃଦୟରେ ସଦା ସର୍ବଦା ଉଙ୍କି ମାରୁଥିଲା ।

ଏବେବି ମନେପଡେ ବେଳେ ବେଳେ ନାରଣ ବାବୁଙ୍କ ମୃଦୁ ଭର୍ତ୍ସନା, ଯଦି ଠିକ୍ ସମୟରେ ନିର୍ଦ୍ଧାରିତ କାର୍ଯ୍ୟ ସମାପନ ନକରିଥାଉ । କିନ୍ତୁ ସେ ଭର୍ତ୍ସନାର ପଛ ଆଢୁଆଳରେ ଥିଲା ସ୍ନେହ ଓ ଶୁଭକାମନାର ଆଶୀର୍ବାଦ । ସବୁ ଛାତ୍ରଙ୍କ ମନରେ ବିଦ୍ୟାନୁରାଗ, ନିଷ୍ଠା ଓ କର୍ତ୍ତବ୍ୟ ପରାୟଣତା

ଭରିଦେବା ପାଇଁ ତାଙ୍କର ଉଦ୍ୟମ ଥିଲା । ଅନେକ ବର୍ଷପରେ ଆମେ ବୁଝିପାରିଲୁ ତାଙ୍କର ଭର୍ତ୍ସନାର ଅନ୍ତର୍ନିହିତ ଉଦ୍ଦେଶ୍ୟ ।

ନାରଣବାବୁ ଥିଲେ ଶୃଙ୍ଖଳା ଓ ସମୟାନୁବର୍ତ୍ତିତାର ପ୍ରତୀକ । ଏବେ ବି ମୋ ଆଖି ଆଗରେ ନାଚି ଉଠୁଛି, ମୋ ଭାଇ ଓ ମୁଁ ତାଙ୍କୁ ବହୁଥର ଆମ ଘର ସାମନାରେ ନିର୍ଦ୍ଧାରିତ ସମୟ ପୂର୍ବରୁ ସ୍କୁଲ୍ ଯିବାର ଦେଖିଛୁ । ତାଙ୍କୁ ଦେଖିଦେଲେ ଆମେ ତରତର ହୋଇ ବାହାରିପଡୁ ସ୍କୁଲରେ ଶୀଘ୍ର ପହଞ୍ଚିବା ପାଇଁ ।

ନାରଣବାବୁ ଥିଲେ ଆମ ଗାଁର ପ୍ରମୁଖ ଶିକ୍ଷକ ଓ ଗାଁର ଅନ୍ୟ ଶିକ୍ଷକ, ଯଥା– ଉମାବାବୁ, ଭାନୁବାବୁ, ଶାମ୍ଭବାବୁ ଓ ବିମ୍ବାବାବୁ ଏମାନଙ୍କଠାରୁ ବୟୋଜ୍ୟେଷ୍ଠ ଓ ସେମାନଙ୍କର ଶିକ୍ଷକ ମଧ୍ୟ । କେବଳ କଣ୍ଡୁ ପଣ୍ଡିତେ ଥିଲେ ତାଙ୍କର ସମସାମୟିକ । ଗାଁର ପିଲାମାନେ କିପରି ଭଲ ପାଠ ପଢିବେ, ଭଲ ମଣିଷ ହେବେ ଓ ଜୀବନରେ ଉନ୍ନତି କରିବେ, ସେଥିପାଇଁ ଏହି ଶିକ୍ଷକମାନେ ସର୍ବଦା ମନୋନିବେଶ କରୁଥିଲେ ।

ଅନେକ ଦିନରୁ ନାରଣବାବୁଙ୍କ ଦେହାନ୍ତ ହୋଇଗଲାଣି, କିନ୍ତୁ ତାଙ୍କ ସହିତ ନିଆରା ସମ୍ପର୍କର ଡୋର ଏବେବି ଅତୁଟ । ସେ ପ୍ରଦାନ କରିଥିବା ଶିକ୍ଷା ଓ ଉପଦେଶ ଆମ ପାଇଁ ଅମୂଲ୍ୟ ସମ୍ପଦ । ଆମର ଚଲାପଥକୁ ବିକଶିତ କରିବା ପାଇଁ ତାଙ୍କର ଅନବଦ୍ୟ ଅବଦାନ ସବୁବେଳେ ଆଖି ଆଗରେ ଝଲସି ଉଠେ । ସେ ପବିତ୍ର ଆତ୍ମା ପାଇଁ ଆମ ହୃଦୟରେ ଶ୍ରଦ୍ଧା ଓ ସମ୍ମାନର ନିର୍ଝରିଣୀ କଳ କଳ ହୋଇ ବହି ଚାଲିଛି ଓ ଚାଲିବ । ସେହି ପବିତ୍ର ଆତ୍ମାର ଚରଣରେ କୋଟି କୋଟି ପ୍ରଣାମ କରି ମୁଁ ତାଙ୍କର ଆଶୀର୍ବାଦ କାମନା କରୁଛି । କାହ୍ନୁ ଭାଇନା ମତେ ସାର୍‌ଙ୍କ ବିଷୟରେ କିଛି ଅନୁଭୂତି ବର୍ଣ୍ଣନା କରିବାକୁ ସୁଯୋଗ ଦେଇଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ଅବସରପ୍ରାପ୍ତ ମୁଖ୍ୟ ମହାପ୍ରବନ୍ଧକ,
ଇଣ୍ଡିଆନ ଓଭରସିଜ ବ୍ୟାଙ୍କ ଓ
ଅବସରପ୍ରାପ୍ତ ଆନ୍ତରିକ ଲୋକପାଳ,
ଷ୍ଟେଟବ୍ୟାଙ୍କ ଅଫ ଇଣ୍ଡିଆ, ବିକାନେର୍ ଓ ଜୟପୁର ।



ଶ୍ରୀଯୁକ୍ତ ସତ୍ୟନାରାୟଣ ମିଶ୍ର, ପ୍ରାକ୍ତନ ଛାତ୍ର, ମୁଖ୍ୟ ମହାପ୍ରବନ୍ଧକ, ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କ, ଆନ୍ତରିକ ଲୋକପାଳ, ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ, ବିକାନେର୍ ଓ ଜୟପୁରରେ କାର୍ଯ୍ୟରତ ଥାଇ ଅବସର ଗ୍ରହଣ କରିଅଛନ୍ତି । ସେ ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାପିତ । ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କର ସର୍ବଭାରତୀୟ ସ୍ତରରେ ମୁଖ୍ୟ ସ୍ଥାନ ଅଧିକାର କରି ସେ ନିଜ ସହ ତାଙ୍କର ଶିକ୍ଷକ ଓ ପରିବାରର ଗୌରବ ବର୍ଦ୍ଧନ କରିଛନ୍ତି ।

# ସୁରେଶ୍ୱର ମିଶ୍ରଙ୍କର ସ୍ମୃତିରୁ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ ଉପଲକ୍ଷେ



ଇଂ. ସୁରେଶ୍ୱର ମିଶ୍ର

କାହ୍ନୁର ନନା (ସ୍ୱର୍ଗତ ନାରାୟଣ ମହାପାତ୍ର) ଓ ମୋର ନନା (ସ୍ୱର୍ଗତ ନୀଳକଣ୍ଠ ମିଶ୍ର) ଘନିଷ୍ଠ ବନ୍ଧୁଥିଲେ । ଉଭୟଙ୍କର ଅମିୟ ବ୍ୟକ୍ତିତ୍ୱ । ସେମାନେ ଶିକ୍ଷାଦାନ ପାଇଁ ଜୀବନ ଉତ୍ସର୍ଗ କରିଥିଲେ । ନନା ବିଶ୍ୱନାଥ ମି.ଇ ସ୍କୁଲର ଜଣେ ପ୍ରତିଷ୍ଠାତା ଥିଲେ, ଯାହାକି ପରେ ଭାର୍ଗବୀ ହାଇସ୍କୁଲରେ ନାମିତ ହେଲା । ନନା ପ୍ରଥମରୁ ପଣ୍ଡିତ ଦାୟିତ୍ୱରେ ଥିଲେ । ଆମ ଘରର ବ୍ୟବଧାନ ୨୦୦ ମିଟରରୁ କମ୍ । ସକାଳ ୯.୩୦ ପାଖାପାଖି ଦୁହେଁ ଏକାଠି ସ୍କୁଲ ଚାଲି ଚାଲି ଯାଆନ୍ତି । ନାରଣ ସାର୍ ଭଲ ଇଂରାଜୀ ପଢାନ୍ତି । ନନାଙ୍କର ଏବଂ ନାରଣ ସାର୍‌ଙ୍କର ମଧ୍ୟରେ ଯେ କେବଳ ପାନଖିଲ ଆଦାନ ପ୍ରଦାନ ପାଇଁ ବୁଝାମଣା ଥିଲା ତା'ନୁହେଁ, ଆଉ ଏକ ବୁଝାମଣା ମାଧ୍ୟମରେ ୧୯୫୯ ମସିହା ମୋର ଷଷ୍ଠ ଶ୍ରେଣୀ ଗ୍ରୀଷ୍ମ ଛୁଟିରେ ନାରଣ ସାର୍‌ଙ୍କ ପାଖକୁ ମୁଁ ଇଂରାଜୀ ବ୍ୟାକରଣ ପଢିବାକୁ ଯାଉଥିଲି ଏବଂ ତାର ପର ଗ୍ରୀଷ୍ମ ଛୁଟିରେ କାହ୍ନୁ (ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର) ଆମଘରକୁ ସାହିତ୍ୟ ପଢିବାକୁ ଆସୁଥିଲା । ମାଟ୍ରିକ ପରେ ଆମେ ଗାଁରୁ ସହରକୁ ଆସିଲୁ । ନନା ଏବଂ ନାରଣ ସାର୍ ସେମାନଙ୍କର ଅବଶିଷ୍ଟ ଜୀବନ ଗାଁରେ ଶିକ୍ଷାଦାନରେ ନିୟୋଜିତ କରି ଶେଷରେ ତିରୋଧାନ କଲେ ।

ଏବେ ତାଙ୍କର ଆମପ୍ରତି ଅବଦାନ ମନେପଡେ ।

**ଅବସରପ୍ରାପ୍ତ ମୁଖ୍ୟଯନ୍ତ୍ରୀ**

•••

ଶ୍ରୀଯୁକ୍ତ ସୁରେଶ୍ୱର ମିଶ୍ର ୧୯୬୪ ମସିହାରେ ଭାର୍ଗବୀ ହାଇସ୍କୁଲରୁ ମାଧ୍ୟମିକ ପରୀକ୍ଷାରେ ଓଡିଶାର ପ୍ରଥମ ଦଶଜଣଙ୍କ ମଧ୍ୟରେ ସ୍ଥାନପାଇ ବିଦ୍ୟାଳୟ ଓ ଶିକ୍ଷକମାନଙ୍କୁ ଗୌରବମଣ୍ଡିତ କରିବା ସହ ପରବର୍ତ୍ତୀପିଢିର ସହପାଠୀମାନଙ୍କୁ ଉତ୍ସାହିତ କରିଥିଲେ । ତାଙ୍କ ପରଠାରୁ ଆଜି ପର୍ଯ୍ୟନ୍ତ ବିଦ୍ୟାଳୟର କୌଣସି ଛାତ୍ର ସେ ସ୍ଥାନ ପୂରଣ କରି ପାରିନାହାନ୍ତି । ଶ୍ରୀ ମିଶ୍ର ମୁଖ୍ୟଯନ୍ତ୍ରୀ ଭାବେ ଅବସର ଗ୍ରହଣ କରିଅଛନ୍ତି । ବର୍ତ୍ତମାନ ରାଉରକେଲାରେ ଅବସ୍ଥାପିତ ।



# ସାର୍‌ଙ୍କ ସ୍ମୃତିରେ

ଡକ୍ଟର ସଙ୍କର୍ଷଣ ମିଶ୍ର

କର୍ମଯୋଗୀ ସାର ସ୍ୱର୍ଗୀୟ ନାରାୟଣ ମହାପାତ୍ର ଆମ ଗାଁ ବୀରନରସିଂହପୁରର ଏକ ଅସାଧାରଣ ଓ ଅମୂଲ୍ୟ ଦିବ୍ୟ ଜ୍ୟୋତିବିନ୍ଦୁ ଥିଲେ । ଗ୍ରାମର ଓ ପରିବାରର ପୃଷ୍ଠଭୂମି ତାଙ୍କୁ ନିଷ୍ଠାବାନ ଓ ନୀତିମୟ କରିଥିଲା । ସେ ଚାକିରି ଜୀବନରୁ ଶେଷ ପର୍ଯ୍ୟନ୍ତ ସରଳ, ଶାନ୍ତ ଓ ନିର୍ମଳ ଥିଲେ । ତାଙ୍କୁ ବିରକ୍ତ ହେବା, ରାଗିବା କିମ୍ବା କଟୁକଥା କହିବା କେହି କେବେ ଦେଖିନାହାଁନ୍ତି । ସେ ଶିକ୍ଷକତା ଛଡ଼ା ଜଣେ ପ୍ରକୃତ ଗ୍ରାମବାସୀ ଭାବରେ ନିଜକୁ ପରିଚୟ ଦିଅନ୍ତି । ଆମକୁ ଭୂଗୋଳ ପଢାନ୍ତି । ପୃଥିବୀର ପ୍ରତ୍ୟେକ ସ୍ଥାନ ନ ଦେଖି ମ୍ୟାପରେ ଚିହ୍ନିତ କରିଦିଅନ୍ତି । ସେ ଗାଁର ବହୁ ଶିକ୍ଷିତ ଯୁବକଙ୍କୁ ଚାକିରି ଦେବାରେ ସହଯୋଗ ଓ ସାହାଯ୍ୟ କରିଥିଲେ । ପରିବାରରେ, ଗାଁରେ ଓ ଆଖପାଖରେ ସମସ୍ତେ ତାଙ୍କୁ ଅପାର ଆଦର ଓ ସମ୍ମାନ ଦେଇଥାଆନ୍ତି । ସାରଙ୍କ ସ୍ନେହ, ଆଦର ଓ ଉପଦେଶ ମୋତେ ଡ଼ାକ୍ତରି ପଢିବାକୁ ବିଶେଷ ପ୍ରେରଣା ଦେଇଥିଲା । ସେ ଜଣେ ଗାଁର ସୁଯୋଗ୍ୟ ସନ୍ତାନ ଥିଲେ । ସ୍ୱର୍ଗରେ ତାଙ୍କ ଆତ୍ମା ଶାନ୍ତିରେ ରହୁ ଓ ଆମମାନଙ୍କୁ ସ୍ୱର୍ଗରୁ ଆଶୀର୍ବାଦ ଦିଅନ୍ତୁ ।

ରିଟାୟାର୍ଡ଼ ମେଡ଼ିକାଲ ଅଫିସର
ବିଜେନୁର, ଉତ୍ତରପ୍ରଦେଶ

•••

ଡାକ୍ତର ସଙ୍କର୍ଷଣ ମିଶ୍ର ଜଣେ ପ୍ରତିଭାବାନ ଛାତ୍ର ଥିଲେ । ନିଜର ଅଧ୍ୟବସାୟ, ସଂକଳ୍ପ ଓ ସାଧନା ବଳରେ ସେ ଜଣେ ସ୍ୱନାମଧନ୍ୟ ଡାକ୍ତର ଭାବରେ କର୍ମ ରହିତ ହୋଇ ଏବେ ଉତ୍ତରପ୍ରଦେଶର ବିଜେନୁର୍ ଠାରେ ଅବସ୍ଥାନ କରୁଛନ୍ତି ।



# ମୋ ସ୍ମୃତିରେ ନାରାୟଣ ସାର୍

ଡକ୍ଟର ପ୍ରକାଶ ଚନ୍ଦ୍ର ମହାନ୍ତି

ପୁଣ୍ୟତୋୟା ଭାର୍ଗବୀ ନଦୀ କୂଳସ୍ଥିତ ବିଦ୍ୟାମନ୍ଦିର ଭାର୍ଗବୀ ଉଚ୍ଚବିଦ୍ୟାଳୟରେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲି ଷଷ୍ଠ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ । ଉକ୍ତ ବିଦ୍ୟାଳୟରେ ସ୍ୱର୍ଗତ ନାରାୟଣ ସାରଙ୍କ ସହିତ, ସମସ୍ତ ତତ୍କାଳୀନ ଶିକ୍ଷକ ମାନଙ୍କ ଠାରୁ ଏକ ବଳିଷ୍ଠ ଗୁରୁକୁଳ ଶିକ୍ଷାଲାଭ କରିଥିଲୁ ସମସ୍ତ ଛାତ୍ରଛାତ୍ରୀବୃନ୍ଦ ।

କାଲିପରି ମନେ ପଡୁଛି । ଷଷ୍ଠଶ୍ରେଣୀରେ ପ୍ରବେଶ କରିଥାଏ । କ୍ଲାସକୁ ନାରଣ ସାର୍ ଆସି ଚେୟାରରେ ବସିପଡ଼ି ଆମ୍ଭମାନଙ୍କ ସହିତ କଥାବାର୍ତ୍ତା ହୋଇ ପଚାରିଲେ ପିଲାଏ ଇଂରାଜୀ ଟ୍ରାନ୍ସଲେସନ ଜାଣିଛ ? ଆମେ ହଁ ଭରିଲୁ । ତାପରେ ସାର୍ କୋଡୋଟି ଓଡ଼ିଆ ବାକ୍ୟକୁ ଇଂରାଜୀରେ ଅନୁବାଦ କରି ଖାତା ଦେଖାଇବାକୁ ନିର୍ଦ୍ଦେଶ ଦେଲେ । ଯଥା ଶୀଘ୍ର ଟ୍ରାନ୍ସଲେସନ କରି ଖାତା ଦେଖାଇଲି । ସାର୍ କହିଲେ ହଉ ଯା ଠିକ୍ କରିଲେଖ । କିନ୍ତୁ ଠିକ୍ ଲେଖିବାକୁ ମୁଁ ମୋ ସିଟ୍‌ରେ ସ୍ଥିର ହୋଇ ବସିଲି । ଯେତେବେଳେ ସମସ୍ତ ପିଲା ଖାତା ଦେଇ ସାରିଲେ ସାର୍ ସବୁ ଖାତା ଦେଖିସାରି ମୋ ଖାତାଟି ସମସ୍ତ ପିଲା ଦେଖିବା ପାଇଁ କହି ମୁଁ କିପରି ସବୁ ଠିକ୍ ଲେଖିଛି କହି ଉତ୍ସାହିତ କଲେ ।

ସେ ଦିନର ଉକ୍ତ ପ୍ରେରଣାତ୍ମକ ଉତ୍ସାହରେ ନିଜର ଠିକ୍ କଥାରେ ଦୃଢ଼ ରହି ଆତ୍ମପ୍ରତ୍ୟୟ ସୃଷ୍ଟି କରିବାରେ ଏହା ସହଜାତ ପ୍ରବୃତ୍ତିରେ ପରିଣତ ହେଲା

ସମୟକ୍ରମେ ଡ଼ାକ୍ତର ହୋଇ ସାରଙ୍କ ପାରିବାରିକ ଚିକିତ୍ସକ ହେବାର ସୁଯୋଗ ପାଇ ସାରଙ୍କ ପରିଣତ ବୟସରେ ଶୁଭେଚ୍ଛା, ଆଶୀର୍ବାଦ, ସୁ ପରାମର୍ଶ ମୋର ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଗଠନରେ ସହାୟକ ହେଲା ।

ବେଦ କହିଲା: ନୈବଂ ବିଧାଭବେତ୍ ସୃଷ୍ଟିଃ ଜରାମରଣ ବର୍ଜିତ, ଅର୍ଥାତ, ବାର୍ଦ୍ଧକ୍ୟ ଓ ମୃତ୍ୟୁ ବିନା ସୃଷ୍ଟି ସମ୍ଭବ ନୁହେଁ । ଜନ୍ମହେଲେ ମୃତ୍ୟୁ ବି ନିଶ୍ଚିତ, କିନ୍ତୁ ସାରଙ୍କ କାର୍ଯ୍ୟଧାରା, ପ୍ରେରଣା, ବ୍ୟବହାର ଏକ ଅମ୍ଳାନ ସ୍ମୃତିର ସ୍ୱାକ୍ଷର ଛାଡ଼ି ଯାଇଛି ଯାହାକି ଚିରଦିନ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି ।

ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ

ପୂର୍ବତନ ମେଡିକାଲ ଅଫିସର
କେନ୍ଦ୍ର ସ୍ୱାସ୍ଥ୍ୟ ବିଭାଗ

•••

ଡକ୍ଟର ପ୍ରକାଶ ଚନ୍ଦ୍ର ମହାନ୍ତି ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ପ୍ରିୟ ଛାତ୍ର ଥିଲେ । କେନ୍ଦ୍ର ସରକାରଙ୍କର ମେଡିକାଲ ଅଫିସର ଭାବେ କାର୍ଯ୍ୟରତ ଥାଇ ଅବସର ଗ୍ରହଣ କରିଛନ୍ତି ।



# ନାରାୟଣ ସାର୍‌ଙ୍କ ପାଇଁ ପଦେ...

ଡଃ ସୁରେନ୍ଦ୍ର ନାଥ ଚିନରା

ଭବିଷ୍ୟତ ପିଢ଼ିପାଇଁ ସ୍ୱର୍ଗତ ଗୁରୁ ନାରାୟଣ ସାର୍‌ଙ୍କର ନୀତି ଓ ଆଦର୍ଶକୁ ଉଜ୍ଜୀବିତ ରଖିବାପାଇଁ ତାଙ୍କ ପରିବାର ତରଫରୁ ତାଙ୍କର ଆତ୍ମଜୀବନୀ ପ୍ରକାଶ ପାଉଥିବା ଶୁଣି ଏହାର ଉଦ୍ଦେଶ୍ୟ ନିଶ୍ଚିତ ଫଳପ୍ରଦ ହେବ ଏଥିରେ ସନ୍ଦେହ ନାହିଁ ।

ଭାରତ ସ୍ୱାଧୀନତାପ୍ରାପ୍ତି ପରେ ପରେ ଯାହା ଜଣାଯାଏ ତତ୍‌କାଳୀନ ପାଶ୍ଚତ୍ୟ ଶିକ୍ଷା କେବଳ ମୁଷ୍ଟିମେୟ ଆର୍ଥିକ ସ୍ୱଚ୍ଛଳ ପରିବାର ମଧ୍ୟରେ ସୀମିତ ଥିଲା । ଅବଶ୍ୟ ସେ ସମୟରେ କେତେଜଣ ଆଗ୍ରହୀ ବ୍ୟକ୍ତି ବିଶେଷଙ୍କ ଉଦ୍ୟମ ଫଳରେ ଉକ୍ତ ଶିକ୍ଷାର ପ୍ରସାର ପାଇଁ ଗ୍ରାମାଞ୍ଚଳ ତଥା ବ୍ରାହ୍ମଣ ବହୁଳ ଶାସନାଞ୍ଚଳରେ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଥିଲା । କିନ୍ତୁ ଉପଯୁକ୍ତ, ଶିକ୍ଷକଙ୍କର ଘୋର ଅଭାବ ପରିଲକ୍ଷିତ ହୋଇଥିଲା । ପାଶ୍ଚାତ୍ୟ ଶିକ୍ଷା ପାଇଁ ଇଂରାଜୀ ଜ୍ଞାନ ନିହାତି ଆବଶ୍ୟକ । ତେଣୁ ଯେଉଁ ଶିକ୍ଷକ ମିଳୁଥିଲେ ସେମାନେ ବିଦେଶୀ ଭାଷା ଶିକ୍ଷା ଦେବାପାଇଁ ଅନଚ୍ଛକ ଥିଲେ । ତେଣୁ ଉକ୍ତ ଶିକ୍ଷାଦାନର ଅଭାବ ପୂରଣ ପାଇଁ ସମୟେ ସମୟେ ତତ୍‌କାଳୀନ କଲେଜ ପଢୁଆ ପିଲାମାନଙ୍କୁ ପାଠ ଛାଡି ମଝିରେ ମଝିରେ ପଢ଼ାଇବାକୁ ପଳାଇ ଆସିବାକୁ ପଡୁଥିଲା । ମୋର ସୀମିତ ଜ୍ଞାନ ମଧ୍ୟରେ ଯାହା ଜାଣିଛି ତାହା ଘଟିଥିଲା ନାରାୟଣ ସାର୍‌ଙ୍କର ଶିକ୍ଷକତା ଜୀବନରେ । ଶିକ୍ଷାଦାନକୁ ନାରାୟଣ ସାର୍ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ ।

ନିଜ ଅଞ୍ଚଳରେ କିପରି ଶିକ୍ଷାର ପ୍ରସାର ହେବ, ପାଶ୍ଚାତ୍ୟ ଶିକ୍ଷାପ୍ରତି ଜନସାଧାରଣଙ୍କର ଆଗ୍ରହ ପ୍ରକାଶ ପାଇବ ସେଥିପାଇ ତତ୍‌କାଳୀନ ସାକ୍ଷୀଗୋପାଳ ଶିକ୍ଷାଞ୍ଚଳ ତ୍ୟାଗ କରି ନାରାୟଣ ସାର୍ ସ୍ୱଳ୍ପ ବେତନ ମିଳିଲେ ସୁଦ୍ଧା ନିଜ ଗ୍ରାମ ନିକଟସ୍ଥ ଭାର୍ଗବୀ ହାଇସ୍କୁଲରେ ଯୋଗଦାନ କରି ନିଜର ଅଭିଳାଷ ପୂର୍ଣ୍ଣ କରିବାରେ ସଫଳ ହୋଇଥିଲେ ।

କର୍ମକ୍ଷେତ୍ରରେ ସଦାସର୍ବଦା ଗର୍ବ, ଅହଂକାରକୁ ଦୂରରେ ରଖି ନିଜକୁ ଏକ ଶାନ୍ତ, ସରଳ, ସ୍ୱଳ୍ପଭାଷୀ, ନିରାଡମ୍ବର ଓ ଛାତ୍ରବତ୍ସଳ ଆଦର୍ଶ ଶିକ୍ଷକ ରୂପେ ଛାତ୍ର ସମାଜରେ ସୁପରିଚିତ ଥିଲେ । ସମୟାନୁବର୍ତ୍ତିତା ଥିଲା ସାରଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ପରିଚୟ ।

ଶିକ୍ଷାଦାନକୁ ନାରାୟଣ ସାର୍ କେବେହେଲେ ନିଜର ପେସାରୂପେ ଗ୍ରହଣ କରିନଥିଲେ । ସମ୍ଭବତଃ, ସେଥିପାଇଁ ଆର୍ଥିକ ଅନଟନ ଥିବା ବହୁ ଛାତ୍ରଙ୍କୁ ମଣିଷ କରି ଗଢ଼ିବାରେ ସମର୍ଥ ହୋଇଥିଲେ ।

ବେତ୍ରାଘାତ କିମ୍ବା କୌଣସି ଶାରୀରିକ ଦଣ୍ଡ ଦେଇ ମନରେ ଭୟ ସୃଷ୍ଟି କରି ଶିକ୍ଷାଦାନ କରିବାରେ ସାର ପକ୍ଷପାତୀ ନଥିଲେ । ବରଂ ଉଦାହରଣ ଓ ଗଳ୍ପ ମାଧ୍ୟମରେ ପାଠ ପ୍ରତି ଆଗ୍ରହ ସୃଷ୍ଟି କରିବା ଥିଲା ତାଙ୍କର ଧର୍ମ ଓ କର୍ତ୍ତବ୍ୟ । ପାଠ୍ୟ ପୁସ୍ତକ ଲବ୍ଧ ଜ୍ଞାନ ଜଣକୁ ଉପାର୍ଜନକ୍ଷମ କରିପାରେ, କିନ୍ତୁ ତାହା ସମାଜରେ ଜଣକୁ ସୁପ୍ରତିଷ୍ଠିତ କରିବା ପାଇଁ ଯଥେଷ୍ଟ ନୁହେଁ । ସେଥିପାଇଁ ପାଠ୍ୟପୁସ୍ତକ ବ୍ୟତୀତ ବ୍ୟବହାରିକ ଶିକ୍ଷାପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ । ସମ୍ଭବତଃ ସାରଙ୍କ ପରିବାରରେ ପ୍ରତ୍ୟେକ ସଦସ୍ୟ ସୁଶିକ୍ଷା ପାଇବା ସହିତ ବ୍ୟବହାରିକ ଶିକ୍ଷା ଲାଭକରି ଓଡିଶା ଭିତରେ ଓ ବାହାରେ ସୁନାମ ଅର୍ଜନ ପାଇଁ ସମର୍ଥ ହୋଇଛନ୍ତି ।

ଶିକ୍ଷାଦାନ ସହ ନାରାୟଣ ସାର୍‌ଙ୍କର ଅନ୍ୟଏକ ଅନ୍ତର୍ନିହିତ ପରିଚୟ ହେଲା ସେ ଜଣେ ଗଭୀର ଧର୍ମବିଶ୍ୱାସୀ ଥିଲେ । ସେ କୌଣସି ଧର୍ମ ସଂପ୍ରଦାୟ ସହିତ ନିଜକୁ ସାମିଲ କରିନାହାନ୍ତି, କିମ୍ବା ଦୀକ୍ଷା ଗ୍ରହଣ କରିନାହାନ୍ତି । କିନ୍ତୁ ପ୍ରଭୁ ଜଗନ୍ନାଥଙ୍କ ପାଦତଳେ ନିଜକୁ ସମର୍ପଣ କରିଦେଇ ନିଜର କର୍ତ୍ତବ୍ୟ ସାଧନ କରି ଚାଲିଥିଲେ । ବଡ ଆଶ୍ଚର୍ଯ୍ୟ କଥା ସେ କେବେ ହେଲେ ନିଜକୁ ପ୍ରଭୁର ଭକ୍ତ ବୋଲି ପ୍ରକାଶ୍ୟରେ ପରିଚୟ ଦେଇନାହାନ୍ତି । ବରଂ ଆଶ୍ଚର୍ଯ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ନିତ୍ୟ ଦର୍ଶନ ପାଇଁ ନିଜ ଜୀବନରେ ଶେଷ ସମୟ ବେଳକୁ ନିଜ ଗ୍ରାମରେ ଶିକ୍ଷାନୁଷ୍ଠାନ ଭାର୍ଗବୀ ହାଇସ୍କୁଲକୁ ତ୍ୟାଗ କରି ପୁରୀ ସହରରେ ଗଦାଧର ହାଇସ୍କୁଲକୁ ବଦଳି ହୋଇ ଆସିଥିଲେ ।

ପୁରୀରେ ବାସ କରିବା ସମୟରେ ନାରାୟଣ ସାର୍ ତାଙ୍କର ଧର୍ମଭିତ୍ତିକ ଅଗାଧ ଜ୍ଞାନର ପରିଚୟ ସୃଷ୍ଟି କରିଛନ୍ତି । ପ୍ରଭୁ ଜଗନ୍ନାଥଙ୍କୁ ଆଧାର କରି ବହୁ ଭଜନ ଓ ଜଣାଣ ରଚନା କରିଯାଇଛନ୍ତି । ନିକଟ ଭବିଷ୍ୟତରେ ସେଗୁଡିକ ପ୍ରକାଶ କରାଯିବା ପାଇଁ ଉଦ୍ୟମ ଚାଲିଛି ।

ସ୍ୱର୍ଗତ ନାରାୟଣ ସାର୍‌ଙ୍କ ପରି ଜଣେ ଉଦାର ହୃଦୟବାନ ଓ ମହାନ ଗୁରୁଙ୍କର ସଂସ୍ପର୍ଶରେ ଆସିବା ଘଟଣା ପ୍ରାୟ ୬୪ ବର୍ଷତଳର । ମୋ ପାଇଁ ଏହାଥିଲା ଈଶ୍ୱର ପ୍ରେରିତ ଓ ସୌଭାଗ୍ୟପୂର୍ଣ୍ଣ । ୧୯୫୭ ମସିହା ବେଳକୁ ସାର୍ ଭାର୍ଗବୀ ହାଇସ୍କୁଲରେ ଶିକ୍ଷାଦାନ କରୁଥିଲେ । ମୋର ବାପାଙ୍କ ସହିତ ସେ ସମୟରେ ତାଙ୍କର ଘନିଷ୍ଠ ସମ୍ପର୍କ ରହିଥିଲା । ମୋର ସେତେବେଳକୁ ଲକ୍ଷ୍ୟହୀନ କୈଶୋର ଅବସ୍ଥା । ତେଣୁ ସାର୍ ତାଙ୍କ ଶିକ୍ଷାନୁଷ୍ଠାନରେ ଯୋଗ ଦେବାପାଇଁ ବାପାଙ୍କୁ ବାରମ୍ବାର ପ୍ରବର୍ତ୍ତାଇ ଥିଲେ । ଏବଂ ସେଠାରେ ମୋର ସମସ୍ତ ଶିକ୍ଷା, ହଷ୍ଟେଲରେ ରହିବା ଓ ଖାଇବା ପାଇଁ ସମସ୍ତ ସୁବନ୍ଦୋବସ୍ତ କରିଦେବାପାଇଁ ବାପାଙ୍କୁ ଆଶ୍ୱାସନା ଦେଇଥିଲେ । ତଦନୁଯାୟୀ ତତ୍କାଳୀନ ପ୍ରଧାନ ଶିକ୍ଷକ ମଦନ ସାର୍‌ଙ୍କ ଦ୍ୱାରା ମୋର ପ୍ରବେଶିକା ପରୀକ୍ଷା ଓ ହଷ୍ଟେଲ ତତ୍ତ୍ୱାବଧାରକ ସୁଦର୍ଶନ ସାର୍‌ଙ୍କୁ ନାରାୟଣ ସାର୍ ବ୍ୟକ୍ତିଗତ ଅନୁରୋଧ କରି ସେଠାରେ ରହିବା ଓ ଖାଇବା ପାଇଁ ସମସ୍ତ ସୁବନ୍ଦୋବସ୍ତ କରିଦେଇଥିଲେ । ସେଥିପାଇଁ ସାର୍‌ଙ୍କ ପାଖରେ ଚିର ଋଣୀ ।

ଅନ୍ୟ ଛାତ୍ରଙ୍କ ଅପେକ୍ଷା ମୋର ସ୍ଥାନ ଥିଲା ବହୁ ଊର୍ଦ୍ଧ୍ୱରେ । ପୁତ୍ରତୁଲ୍ୟ ମୋତେ ସମସ୍ତ ପ୍ରକାର ସ୍ନେହ ଶ୍ରଦ୍ଧା ଦେଇ ତାଙ୍କ ପରିବାରର ଜଣେ ସଦସ୍ୟ ବୋଲି ବିଚାର କରୁଥିଲେ । ପର୍ବପର୍ବାଣିରେ ସାର୍‌ଙ୍କର ପରିବାର ସହିତ ପିଠାପଣା ଖାଇଥିଲି । ମୋ ପାଇଁ ଅପାର ଆନନ୍ଦ । ଏହା ବର୍ଣ୍ଣନାତୀତ ।

ସାର୍‌ଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ତତ୍ତ୍ୱାବଧାନ ଫଳରେ ମୋର ବିଶୃଙ୍ଖଳିତ କୈଶୋର ଶୃଙ୍ଖଳିତ ହେବା ସହ ଭବିଷ୍ୟତରେ ଉଚ୍ଚଶିକ୍ଷା ପାଇଁ ଭିତ୍ତିପ୍ରସ୍ତର ପକାଇବା ସମ୍ଭବ ହୋଇ ପାରିଲା । ସେଥିପାଇଁ ସାର୍‌ଙ୍କ ପାଦତଳେ ମୋର ଶତ ପ୍ରଣାମ ଓ ତାଙ୍କର ଆଶୀର୍ବାଦ ମଧ୍ୟ ଭିକ୍ଷା କରୁଛି ।

ଶାସ୍ତ୍ରରେ ଯଥାର୍ଥରେ କୁହାଯାଇଛି

"ଗୁରୁର୍ବ୍ରହ୍ମା, ଗୁରୁର୍ବିଷ୍ଣୁ, ଗୁରୁର୍ଦ୍ଦେବୋ ମହେଶ୍ୱରଃ
ଗୁରୁଃ ସାକ୍ଷାତ୍ ପରମ୍ ବ୍ରହ୍ମ, ତସ୍ମୈ ଶ୍ରୀ ଗୁରବେ
ନମଃ"

ଅବସର ପ୍ରାପ୍ତ ଅଧ୍ୟକ୍ଷ
ସାଲେପୁର ମହାବିଦ୍ୟାଳୟ, କୌସ୍ତୁଭ
ଏସ୍-୨୮, ମୈତ୍ରୀ ବିହାର, ଭୁବନେଶ୍ୱର



ଡକ୍ଟର ସୁରେନ୍ଦ୍ର ନାଥ ଚିନରା ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ଜଣେ ପ୍ରିୟ ଛାତ୍ର ଥିଲେ । ସାଲେପୁର ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ କର୍ମମୟ ଜୀବନରୁ ଅବସର ଗ୍ରହଣ କରିଅଛନ୍ତି । ଅଧୁନା, ଏସ୍-୨୮ ମୈତ୍ରୀବିହାର, ଭୁବନେଶ୍ୱର ଠାରେ ଅବସ୍ଥାନ କରୁଅଛନ୍ତି ।



# ଗୁରୁ ପ୍ରଣାମ

ଶ୍ରୀ ଭିକାରୀ ମିଶ୍ର

ବହୁ ବର୍ଷ ପରେ, ଜୀବନର ସାୟାହ୍ନରେ ଗୁରୁଙ୍କ ସ୍ମୃତି ଚାରଣର ଅବକାଶ ମିଳିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି ।

ସ୍ୱ ନାରାୟଣ ମହାପାତ୍ରଙ୍କ ସହିତ ମୋର ପାରିବାରିକ ସମ୍ପର୍କର ନିବିଡ଼ତା ଯଥେଷ୍ଟଥିଲେ ହେଁ ମୁଁ କିନ୍ତୁ ଛାତ୍ର- ଶିକ୍ଷକ ସମ୍ପର୍କକୁ ଅଧିକ ଗୁରୁତ୍ୱ ଦିଏ – ତେଣୁ ସମ୍ବୋଧନ କରେ – ସାର୍ । ଆମ ଗାଁ ର ଭାର୍ଗବୀ ହାଇ ସ୍କୁଲରେ ସେ ଥିଲେ ମୋର ଶିକ୍ଷକ । ତାଙ୍କର ଶିକ୍ଷା ଦାନର ଶୈଳୀ ଅତ୍ୟନ୍ତ ଉଚ୍ଚ କୋଟୀର ଥିଲା । ବିଶେଷତଃ ସାହିତ୍ୟ, ସଂସ୍କୃତ, ଭୂଗୋଳରେ ତାଙ୍କର ଗଭୀର ଜ୍ଞାନ ଥିଲା । ସାର୍ ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଦୀର୍ଘବର୍ଷ ଧରି ଶିକ୍ଷକ ମଧ ଥିଲେ ।

ସାର୍ ପିଲାଦିନରୁ ମତେ ବହୁତ ଭଲ ପାଉଥିଲେ । ତାଙ୍କରି ନିୟମିତ ସୁପାରିସ ହେତୁ ମୁଁ ବିଦ୍ୟାଳୟର ଅଷ୍ଟମ ଶ୍ରେଣୀ ଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ସ୍କୁଲ୍ ଫି ରିହାତି ପାଇପାରୁଥିଲି । ଫଳରେ ମୋର ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବା ସମ୍ଭବ ହେଇଥିଲା ।

ମୋ ଚାକିରି ସମୟରେ ସାମୟିକ ବିଭ୍ରାଟ ଯୋଗୁ ୧୯୬୫ ମସିହାରେ ମେଡ଼ିକାଲ୍ ଛୁଟି ନେଇ ଅନିର୍ଦ୍ଦିଷ୍ଟ କାଳ ପାଇଁ ଗାଁରେ ରହିଲି । ସେଇ ସମୟରେ ଗାଁରେ ଗୋଟେ ତେଜରାତି ଦୋକାନ କରିବାର ନିର୍ଣ୍ଣୟ ନେଇ କାମ ଆରମ୍ଭ କଲି । ଅବଶ୍ୟ ମୋର ଗୋଟିଏ ବେକାର ସାନ ଭାଇକି ଥଇଥାନ କରିବା ଏହାର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ସାର୍, ଏଥିପାଇଁ ମତେ ବହୁତ ଉତ୍ସାହିତ କରିଥିଲେ । ମତେ ନିଜେ ସାଙ୍ଗରେ ନେଇ ଚନ୍ଦନପୁର ବଜାରର ଗୋଦାମ ମାଲିକ ବ୍ରଜ ସାହୁଙ୍କ ସହିତ ପରିଚୟ କରାଇ ଦେଇଥିଲେ । ସେ ସାର୍‌ଙ୍କୁ ବହୁତ ସମ୍ମାନ ଦେଉଥିଲେ । ଏହା ପରେ ବ୍ରଜ ସାହୁଙ୍କ ସହିତ ମୋର ବ୍ୟବସାୟିକ ସମ୍ପର୍କ ବହୁତ ଘନିଷ୍ଠ ହେଇଥିଲା ।

ଦିନେ ସାର୍ କହିଲେ – "ଭିକାରୀ ଆଜି ଟିକିଏ ସାଙ୍ଗ ହେଇ ପୁରୀ ଯିବା ।" ଦିନେ ନାହିଁ, କାଲେ ନାହିଁ, ଆଜି ସାର୍ କହୁଛନ୍ତି ଯେତେବେଳେ – ଗଲି । ପରେ ଜାଣିଲି ତାଙ୍କ ସାନଝିଅ ରମା ପାଇଁ ପାତ୍ର ଦେଖିବାକୁ ଯାଉଛନ୍ତି । ପାତ୍ର ଦେଖା ହେଲା । ଫେରିଲା ବେଳକୁ ପାତ୍ର ବିଷୟରେ ଟିକିନିଖି ସବୁ ଆଲୋଚନା କରି ମୋର ମତାମତ ପଚାରିଲେ । ମୋର ଦ୍ୱିମତ ହେବାର ନଥିଲା । ତେଣୁ ସମ୍ମତି ଜଣାଇଲି ଓ ସେଇଠାରେ ହିଁ ତା'ର ବିବାହ ହେଲା ।

କିନ୍ତୁ, ଶେଷ ପର୍ଯ୍ୟନ୍ତ ମୁଁ ବୁଝିପାରିଲିନି, ସାର୍ ମତେ କାହିଁକି ବାଛିଥିଲେ ସାଙ୍ଗରେ ନେଇ ମତାମତ ଦବା ପାଇଁ ?

ଆଉ ଦିନକର କଥା ମନେ ପଡୁଛି । ମୋର ତୃତୀୟ ଝିଅ ସରଜୁର ବାହାଘର ନିମନ୍ତ୍ରଣ ପତ୍ର ନେଇ ଯାଇଥାଏ ସାର୍‌ଙ୍କୁ ଦେବା ପାଇଁ । ନିମନ୍ତ୍ରଣ ପତ୍ର ଦେଖି, ଆନନ୍ଦରେ ଗଦ୍‌ଗଦ ହୋଇ କହିଲେ – "ମୁଁ କଳ୍ପନା କରିପାରୁନି"- କାଲିର ଭିକାରୀ, ଯିଏ ଅଭାବ ଯୋଗୁଁ ପାଠ ପଢ଼ିବା ପାଇଁ ସଂଘର୍ଷ କରୁଥିଲା, ଆଜି ତିନି ତିନିଟି ଝିଅଙ୍କର ବାହାଘର କରିବା ପାଇଁ ସମର୍ଥ ହେଇ ପାରିଛି ?" ସେ ଏତେ ଆନନ୍ଦ ବିହ୍ୱଳ ଥିଲେ ଯେ - ସତେ ଯେମିତି ଏ ସଫଳତା ତାଙ୍କ ନିଜର ଥିଲା ।

ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରଭାବ ସାର୍‌ଙ୍କ ଉପରେ ନିଶ୍ଚୟ ଥିଲା । ଅବସର ପରେ ସମାଜ ସେବା ପାଇଁ ସେ ଆଗ୍ରହୀ ଥିଲେ । ଆମ ଗାଁରେ କୃଷି ଭିତ୍ତିକ ସେବା ସମବାୟ ସମିତି ଗଠନ ପାଇଁ ସେ ଅକ୍ଲାନ୍ତ ପରିଶ୍ରମ କରି ଶେଷରେ ସଫଳ ହେଇଥିଲେ ଓ ତା'ର ସଭାପତି ରହି ଉତ୍ତରୋତ୍ତର ଉନ୍ନତି ପାଇଁ ଚେଷ୍ଟିତ ଥିଲେ ।

ସାର୍‌ଙ୍କର କବି ପ୍ରତିଭା ସମ୍ବନ୍ଧରେ ଊଣା ଅଧିକେ ସମସ୍ତେ ଜାଣନ୍ତି । ଆମେ ପାଠ ପଢ଼ିବା ସମୟରେ ବ୍ରତଘର ଓ ବାହାଘର ପାଇଁ ଆଶୀର୍ବାଦ ଗୀତିକା ଲେଖିଦବା ପାଇଁ ସାର୍‌ଙ୍କୁ ଅନୁରୋଧ କଲେ ସେ ଯେଉଁ ଗୀତ ଲେଖି ଦିଅନ୍ତି – ସତେ, ଏତେ ସୁନ୍ଦର ଓ ଭାବପୂର୍ଣ୍ଣ ହୁଏ ଯେ ସମସ୍ତଙ୍କ ମନକୁ ଛୁଏଁ । ଅବସର ପରେ ସେ କେତେ ଗୁଡିଏ କାବ୍ୟ ରଚନା କରିଛନ୍ତି ଓ ସେଥିରୁ କେତେକ ପ୍ରକାଶିତ ମଧ୍ୟ । ସେ କାବ୍ୟ ଗୁଡିକର ମୂଲ୍ୟାୟନ କଲେ ତାହା ପୁରାତନ ସ୍ୱନାମଧନ୍ୟ କବି ମାନଙ୍କର ସମକକ୍ଷ – ଏଥିରେ ସନ୍ଦେହ ନାହିଁ ।

ଅସୁସ୍ଥ ଥିବାରୁ ଅଧିକ କିଛି ଲେଖି ପାରୁନି । ସାର୍‌ଙ୍କ ସଂସ୍ପର୍ଶରେ ଯେତିକି ଆସିଛି ସେ ସବୁର ସ୍ମୃତି - ଅଲିଭା, ଅବିସ୍ମରଣୀୟ ।

ପ୍ରଣାମ

ଅବସରପ୍ରାପ୍ତ ଅଧିକ୍ଷକ<br>
ଜାତୀୟ ପରିସଂଖ୍ୟାନ କାର୍ଯ୍ୟାଳୟ



ଶ୍ରୀଯୁକ୍ତ ଭିକାରୀ ମିଶ୍ର ବୀରନରସିଂହପୁର ଗ୍ରାମର ଜଣେ ମୁଖ୍ୟ ବ୍ୟକ୍ତି ଭାବେ ସୁପରିଚିତ । କେନ୍ଦ୍ର ସରକାରଙ୍କ ଅଧିନରେ ଚାକିରି କରି ଜାତୀୟ ପରିସଂଖ୍ୟାନ ବିଭାଗରେ ଅଧିକ୍ଷକ ଭାବରେ ଅବସର ଗ୍ରହଣ କରିଥିଲେ । ସେ ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାନ କରୁଥିବା ସମୟରେ ଅତ୍ୟନ୍ତ ଦୁଃଖର ସହ ପ୍ରକାଶ କରୁଛି ଯେ ଶ୍ରୀ ମିଶ୍ରଙ୍କର ଦେହାନ୍ତ ହୋଇଯାଇଛି ୮୬ ବର୍ଷ ବୟସରେ ଗତ ଜୁଲାଇ ମାସରେ ।

## ନାରାୟଣ ସାରଙ୍କ ଆତ୍ମଚରିତ ପ୍ରକାଶନ ଅବସରରେ

# ଛିନ୍ନ ପୃଷ୍ଠାରୁ ଚେନାଏ



ଡ଼କ୍ଟର ଶିତିକଣ୍ଠ ମିଶ୍ର

ସ୍ୱାଭିମାନ ହେଉଛି ମନୁଷ୍ୟତାର ଚାବିକାଠି, ପୌରୁଷର ରାଜମୁକୁଟ-ଯାହାର ଅମୃତମୟ ସ୍ପର୍ଶ ପାଇ ସାଧାରଣ ମାନବ ଉଦାରତାର ଆର୍ଦଶରେ ଅନୁପ୍ରାଣିତ ହୋଇ, ହୁଏ ମହିମାମଣ୍ଡିତ । ସେହିଭଳି ଜଣେ ସ୍ୱାଭିମାନୀ ବ୍ୟକ୍ତିତ୍ୱ ଥିଲେ ସ୍ୱର୍ଗତ ନାରାୟଣ ମହାପାତ୍ର, ବୃତ୍ତିରେ ଥିଲେ ଜଣେ ଶିକ୍ଷକ । ଜଣେ ଶିକ୍ଷକ କେବଳ ନୀତିନିଷ୍ଠ ଜୀବନ ଯାପନ କଲେ ଆଦର୍ଶ ଶିକ୍ଷକ ହୋଇ ପାରନ୍ତି ନାହିଁ । ଆଦର୍ଶ ମଣିଷ ଗଢିବାର ଦାୟିତ୍ୱ ଯେ ଇଚ୍ଛାକୃତ ଭାବରେ ଗ୍ରହଣ କରିନିଅନ୍ତି, ସେ ହେଉଛନ୍ତି ଶିକ୍ଷକ । ସେହିଭଳି ଜଣେ ଉଦାରମନା, ପରୋପକାରୀ ଓ ଗୁଣଗ୍ରାହୀ ଶିକ୍ଷକ ଥିଲେ ସ୍ୱର୍ଗତ ନାରାୟଣ ମହପାତ୍ର ।

ଯୌବନର ପ୍ରଥମ ପାହାଚରେ ଦୁଇଗୋଟି ପୁଅ ଓ ଦୁଇଟି ଝିଅକୁ କୋଳରେ ପାଇ ସେ ଆତ୍ମ ବିଭୋର ଥିଲେ, ମାତ୍ର ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ସମସ୍ତଙ୍କୁ ମଣିଷ ପରି ମଣିଷ କରିବା କଷ୍ଟକର ବ୍ୟାପାର । ସଂସାରିକ ଜୀବନରେ ବହୁ ବାଧା-ପ୍ରତିବନ୍ଧକ ପଡ଼ିଥିଲା ଓ ଅନ୍ଧାର ଭିତରେ ସେ କେବେ ବାଟବଣା ହୋଇନଥିଲେ କି ତାଙ୍କ ସାଧନା କକ୍ଷଚ୍ୟୁତ ହୋଇ ନଥିଲା ।

ଜ୍ୟେଷ୍ଠପୁତ୍ର "ଲିଙ୍ଗରାଜ"ଙ୍କର ମସ୍ତିଷ୍କ ବିକୃତି ତାଙ୍କୁ ନିଶ୍ଚିତ କଷ୍ଟ ଦେଇଥିବ, କିନ୍ତୁ କନିଷ୍ଠ ପୁତ୍ର "କୃଷ୍ଣଚନ୍ଦ୍ର" ଅବସର ପ୍ରାପ୍ତ I.A.S ଅଫିସର ବିଭିନ୍ନ ଜିଲ୍ଲାର ଜିଲ୍ଲାପାଳ ଏବଂ ଅନ୍ୟାନ୍ୟ ଉଚ୍ଚ ପଦବୀରେ ସଫଳତାର ସହ କାର୍ଯ୍ୟକରି ଅବସର ପରେ ଓଡ଼ିଶା ପବ୍ଲିକ ସର୍ଭିସ୍ କମିଶନ (OPSC)ର ସଦସ୍ୟ ତଥା ସାମୟିକ ଅଧ୍ୟକ୍ଷ ରୂପେ କାର୍ଯ୍ୟକରି କେବଳ ତାଙ୍କ ପରିବାର ପାଇଁ ନୁହେଁ ଆମ ଗ୍ରାମବାସୀଙ୍କୁ ଗର୍ବିତ କରିଛନ୍ତି ।

ମନେପଡ଼େ ହଜିଲା ଦିନର କିଛି ଅଭୁଲା ସ୍ମୃତି । ମୋ ପିତାମହ(ବାପା) ସ୍ୱର୍ଗତ ପଣ୍ଡିତ ହରିହର ମିଶ୍ର ଥିଲେ ଜଣେ ପ୍ରବୀଣ ଶିକ୍ଷାବିତ୍ । ମାତୃଭାଷା, ସଂସ୍କୃତ ଓ ଭୂଗୋଲ ରେ ଥିଲା ଅଗାଧ ଜ୍ଞାନ, ମାତ୍ର ଇଂରାଜୀରେ ସ୍ୱର୍ଗତ ନାରାୟଣ ମାହପାତ୍ରଙ୍କର ଜ୍ଞାନ ଓ ପଢାଇବା ଶୈଳୀକୁ ସେ (ବାପା) ପ୍ରଶଂସା କରୁଥିଲେ । ତେଣୁ ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ମୋର ଷଷ୍ଠ ଶ୍ରେଣୀରେ ନାମ ଲେଖା ହେବାପରେ ମୋର ଇଂରାଜୀ ଜ୍ଞାନର ପରିମାର୍ଜନା ପାଇଁ ମତେ ମୋ ବାପା ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ ନିକଟକୁ

ପଠାଇଥିଲେ । ତାଙ୍କ ସାନପୁଅ କାହ୍ନୁ ଭାଇନା ମୋ ବାପାଙ୍କ ପାଖରେ ଗଣିତ ଶିକ୍ଷାପାଇଁ ନିୟମିତ ଆସୁଥିଲେ । ମୋ ଜ୍ଞାତ ସାରରେ ସାର ସେଥିପାଇଁ କିଛି ପାରିଶ୍ରମିକ ନେଇନାହାନ୍ତି ବରଂ ତାଙ୍କ ଘରର ଜଣେ ସଦସ୍ୟ ଭାବରେ ମୋତେ (ତାଙ୍କ ନାତୁଣୀ ତାରାମଣୀ ସହ) ପ୍ରତିଦିନ କିଛି ନା କିଛି ଖାଇବାକୁ ମିଳୁଥିଲା । ମାଆଙ୍କର ସେ ଆଦର ଓ ସ୍ନେହ ଆଜି ବି ମନେ ଅଛି । ଏହା ନିରାଟ ସତ୍ୟ ଯେ ଛାତ୍ର ଜୀବନରେ ପାଠ ପଢିବା ମୋ ପାଇଁ (Last priority) ଶେଷ ପ୍ରାଥମିକତା ଥିଲା । ପରିବର୍ତ୍ତୀ ସମୟରେ ନାରାୟଣ ସାର୍ ଅଷ୍ଟମ ଓ ନବମ ଶ୍ରେଣୀରେ ଆମର ଭୂଗୋଳ ଶିକ୍ଷକ ଥିଲେ । ସେ କେବେ ବି ଶ୍ରେଣୀକୁ ବହି କିମ୍ବା ଖାତା ନେଇ ଆସନ୍ତି ନାହିଁ । ବୋଧହୁଏ ତାଙ୍କର ସେ ସବୁର ଆବଶ୍ୟକତା ନଥାଏ । ମୋର ମନେ ପଡ଼େ ଭାରତର ମାନଚିତ୍ର ତାଙ୍କ ଚୌକି ପଛରେ ଲଗାଯାଇଥାଏ । ମାତ୍ର ସେ ପଛପଟକୁ ମୁହଁ ନକରି ସୂଚକ ବାଡ଼ି (Pointer) ସାହାଯ୍ୟରେ ଯେ କୌଣସି ସ୍ଥାନରେ ପହଞ୍ଚି ପାରନ୍ତି । ମୋ ଭଳି ପାଠ ସହ ସମ୍ପର୍କ ନଥିବା ଜଣେ ଛାତ୍ର ସାରଙ୍କର ଜ୍ଞାନ ଗରିମା ଉପରେ ଅବତାରଣା କରିବା ଧୃଷ୍ଟତା ହେବ ।

ଆଜି ଯଦି ଏତେ ଉଚ୍ଚ ସୋପାନରେ ମୁଁ ଉପନୀତ, ତେବେ ତାର ମୂଳଦୁଆ ବୋଧହୁଏ ପକାଇଥିବା ମୋର ପିତାମହଙ୍କ ସହିତ ଦୁଇଜଣ ପ୍ରବୀଣ ଶିକ୍ଷକ- ସ୍ୱର୍ଗତ ନାରାୟଣ ମହାପାତ୍ର ଓ ସ୍ୱର୍ଗତ ଉମାକାନ୍ତ ମହାପାତ୍ର, ଥିଲେ ଅଗ୍ରଗଣ୍ୟ । ହେଲେ ଗୁରୁ ଦକ୍ଷିଣା ଗ୍ରହଣ କରିବା ପାଇଁ ସେମାନେ ଆଉ ଇହ ଜଗତରେ ନାହାନ୍ତି ।

ଆମ ଗାଁକୁ ନେଇ ଆମର କେତେ ଗର୍ବ ଆଉ ଗୌରବ । ଗାଁ ର ମାଟି, ପାଣି ପବନର କଥା ଯେ କହେ, ସେ ଆମର ନମସ୍ୟ । ଏହି ଗ୍ରାମର ଜଣେ ପ୍ରାକ୍ତନ ଆଶୁକବି ୰ ପୂର୍ଣ୍ଣଚନ୍ଦ୍ର ମିଶ୍ର ଦିନେ ଗାଇ ଉଠିଥିଲେ

ଅତି ଟେକସାର ଦାଣ୍ଡ ଓସାର ଲୋ,<br>
ବୀର ନରସିଂହପୁର<br>
ନରସିଂହ ପୁରେ ତିନିଶ ଘରଲୋ<br>
ନୀଳକଣ୍ଠେ ଜମିଦାର,<br>
ଏଗାଁଆ ନଡ଼ିଆ ବହୁତ ବଢିଆ<br>
ପିଠାକୁ ରାତିରେ ଲୋଡ଼ା,<br>
ଗାଁ ଲୋକଙ୍କର ହାଡ଼ ମାଉଁସ ଲୋ<br>
ନଡ଼ିଆ ରସରେ ଗଢା,<br>
ଦେଉଳ ପୋଖରୀ ସେତ ଗାଁ ଶିରୀ<br>
ଆଉ ନ ଅଛିରେ କାହିଁ<br>
ଲୋକେ କହିବାର ଶୋଳ ଶାସନରେ<br>
ଏ କାଟର ଗାଁ ନାହିଁ

ତାଙ୍କରି ଧାରାକୁ ଆଗେଇ ନେଇ କବି ୰ନାରାୟଣ ମହାପାତ୍ରଙ୍କ ଲେଖନୀ ମୁନରୁ ଦିନେ ଝରି ପଡ଼ିଥିଲା, ତାଙ୍କ କନ୍ୟା ରମିନାନୀଙ୍କୁ ଦେଉଥିବା ନିଜ ଜନ୍ମଭୂମିର ଗରିମା 'ଜନ୍ମଭୂମି' କବିତାରେ । ଗ୍ରାମ ପ୍ରତି ସ୍ୱର୍ଗତ ମହାପାତ୍ରଙ୍କର ଆବେଗ ଥିଲା ଅତି ଦୀର୍ଘ ଓ ମର୍ମସ୍ପର୍ଶୀ ।

xxxxxx

"ଏହି ସେ ନଗରୀ ଦେବ ଲୀଳାଭୂମି<br>
ସନ୍ନିକଟେ ତାର ତୋର ଜନ୍ମଭୂମି"<br>
ଶ୍ରୀକ୍ଷେତ୍ର ଅଦୂରେ ବହଇ ତଟିନୀ<br>
ଭୃଗୁ ଋଷିକନ୍ୟା ପତିତପାବନୀ,

ତଟ ଦେଶ ଯାର ଚିର ସୁଶ୍ୟାମଳ
ଉପବନେ ଶୋଭେ ପୁନ୍ନାଗ ରସାଳ,
ଉତ୍କଳର ମହାଯଶା ମହୀପତି
ଗଂଗ ବଂଶୋଦ୍ଭବ ପ୍ରଖ୍ୟାତ ନୃପତି,
ସେ ନଦୀ ପୁଳିନେ ତୋଳିଲେ ନଗର
ନାମ ଦେଲେ ବୀର ନରସିଂହପୁର,
ଘରେ ଘରେ ଥିଲା ଦେବ ନୀରାଜନା
ପୂଜା ବୈଶ୍ୱଦେବ ଅତିଥି ଅର୍ଚ୍ଚନା,
ବୈଦିକ ମନ୍ତ୍ରର ସୁମଧୁର ଧ୍ୱନି
ପୂରି ରହିଥିଲା ଆକାଶ ଅବନୀ,
ବ୍ରହ୍ମ ତେଜୋଦୀପ୍ତ ,ଏ ଦ୍ୱିଜ ନଗର
ଉତ୍କଳେ ଲଭିଲା ବିପୁଳ ଆଦର,
ଭାର୍ଗବୀ ପୁଳିନେ ଦିଶିଲା ଶୋଭନ
ଜାହ୍ନବୀ ପୁଳିନେ ଯଥା ତପୋବନ"

ଆମ ଗ୍ରାମର ପୁରୋଧା ମାନେ ସମାଜର ଉପଦେଷ୍ଟା ଭାବେ ଚାରିଆଡ଼େ ଖ୍ୟାତି ଅର୍ଜନ କରିଥିଲେ । ସେହି ଶାସନର ଦାୟାଦ ମାନଙ୍କ ସମ୍ମୁଖରେ ତାର ପ୍ରାଚୀନ ଉଜ୍ଜ୍ୱଳ ଇତିହାସର ଦୃଷ୍ଟାନ୍ତ ଉପସ୍ଥାପନ କରି, ସାଂପ୍ରତିକ ଅବକ୍ଷୟମୁଖୀ ମୂଲ୍ୟବୋଧ ଓ ଜ୍ଞାନ ଲିପ୍ସାକୁ ପୁନଃ ଜାଗରିତ କରିବା ପାଇଁ କବି ୰ନାରାୟଣ ସାର୍‌ଙ୍କର ଆବେଗଭରା କେତୋଟି ପଦ ଏଠାରେ ଉପସ୍ଥାପନ କରି ତାଙ୍କ କବି ମହିମା ତଥା ଗ୍ରାମ ପ୍ରତିଥିବା ଆକର୍ଷଣର ପରିଚୟ ପ୍ରଦାନ କରୁଛି ।

"ତୋର ଜନ୍ମଭୂମି ନୁହଁଇ ଊଷର
ଅବା କଣ୍ଟକିତ ବିଜନ ପ୍ରାନ୍ତର ।
ଗୌରବ ମଣ୍ଡିତ ପୂର୍ବ ଇତିବୃତ୍ତ
ତାମ୍ର ଫଳକରେ ରହିଛି ଲିଖିତ ।
ଏହି ଜନ ପଦ ଅମର ସଂଗୀତ
କର୍ଣ୍ଣ କୁହରରେ ନତ୍ୟ ନିନାଦିତ ।
ସେ ଦିନର କଥା ପଡ଼ିଲେ ଶ୍ରବଣେ
ଦୁଃସହ ବେଦନା ଜାତହୁଏ ପ୍ରାଣେ ।
କେଉଁ ଦେବତାର ଅଭିଶାପ ଫଳେ
କର୍ମ ନାଶା ପରି ପଡ଼ିଛି ଉତ୍କଳେ ।
ବସନ୍ତର ସ୍ନିଗ୍ଧ ମୃଦୁଳ ପବନ
ଯହିଁ କରୁଥିଲା ନିତ୍ୟ ସଞ୍ଚରଣ ।
ନିଦାଘ ସନ୍ତାପେ ହୋଇ ଜର୍ଜରିତ
ତରୁଲତା ତହିଁ ନହୁଏ ପୁଷ୍ପିତ ।
କୋକିଳର ବୀଣା ଜିଣା କଣ୍ଠସ୍ୱନ
ମଧୁ ପାନରତ ମଧୁପ ଗୁଞ୍ଜନ ।
କର୍ଣ୍ଣ ପଟହରେ ନିନାଦିତ ହୋଇ
ଜନଗଣ ମନ ଏବେ ତୋଷୁ ନାହିଁ ।
ଦାୟାଦ ସୂତ୍ରରେ ହୋଇ ଅଧିକାରୀ
ତାର ସୁତେ ଆଜି ହେଉଛନ୍ତି ଘାରି ।
ପୂର୍ବ ପୁରୁଷଙ୍କ ପବିତ୍ର ଶୋଣିତ
ଯାହାଙ୍କ ଶିରାରେ ହୁଏ ପ୍ରବାହିତ ।
ଆହା ଆଜି ସେତ ଦିଶନ୍ତି ମଳିନ
ନିଶାକାଳେ ଯଥା ଦିଶଇ ନଳିନ ।
ଯେ ଗ୍ରାମ କେଦାର ଚିର ସୁଶ୍ୟାମଳ
ଉପବନେ ଶୋହେ ରମ୍ଭା ନାରିକେଳ
ତାର ସୁତେ କିଂପା କଟାନ୍ତି ଜୀବନ
ମରୁଦେଶବାସୀ ଯାଯାବର ସମ

ନାହିଁ ତ୍ୟାଗ ନାହିଁ ଈଶ୍ୱର ବିଶ୍ୱାସ

ମିଥ୍ୟା କପଟତା କରି ଅଛି ଗ୍ରାସ ।

ହିଂସା ,ଅଭିମାନ, ବିଳାସ ବ୍ୟସନ

ପାତିଛନ୍ତ ଚିନ୍ତା ରାଜ୍ୟେ ନଜାସନ

ପାଶ୍ଚାତ୍ୟ ଶିକ୍ଷାର ତୁଙ୍ଗ ଅଭିମାନ

ଶୃଙ୍ଗେ ଚଢି କିଂପା କର ଆସ୍ଫାଳନ

ଜନମ ଭୂମିର ପୂର୍ବ ସ୍ମୃତି ଭାଳି

ଚିନ୍ତା ନଳେ ଆହା ହୃଦଯାଏ ଜଳି

କବି କଥା ମନେ ହୁଅଇ ଉଦିତ

"ଗଳାଣିତ ଗଲା କଥାରେ ସଂଗୀତ"

ସେହି ଗ୍ରାମ ସେହି ବାଣୀ ନିକେତନ

ତାହାର କ୍ରୋଡରେ ଲଭିଛ ଜନମ

X X X X X X X

ବାସ୍ତବରେ ସ୍ୱର୍ଗତ ମହାପାତ୍ରଙ୍କ ଜନ୍ମଭୂମି ପ୍ରତି ଆସକ୍ତି, ଅନୁରାଗ ଓ କବି ପ୍ରତିଭାର ପଟାନ୍ତର ନାହିଁ ।

ଲେଖି ବସିଲେ ଅନେକ କଥା ସ୍ଥାନ ଅଧିକାର କରିବ । ତେଣୁ ସେହି ସ୍ୱର୍ଗତ କବି ପ୍ରାଣ "ନାରାୟଣ ସାରଙ୍କ" ପାଦପଦ୍ମରେ ପ୍ରଣତି ଢାଳି ମୋ ଲେଖାକୁ ଏଇଠି ବିରାମ ଦେଉଛି ।

ବୀର ନରସିଂହ ପୁର



ଡକ୍ଟର ଶିତିକଣ୍ଠ ମିଶ୍ର, ପ୍ରାକ୍ତନ ଛାତ୍ର, ପୂର୍ବତନ ନିର୍ଦ୍ଦେଶକ, ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟୁରିଜିମ୍ ଆଣ୍ଡ୍ ହସ୍‌ପିଟାଲିଟି ମ୍ୟାନେଜ୍‌ମେଣ୍ଟ, ଭାରତ ସରକାର ଭାବେ କାର୍ଯ୍ୟରତ ଥିଲେ ଏବଂ ଅଧୁନା ଆଡ୍‌ଭାଇଜର୍ କମ୍ ଡିନ୍ ଫ୍ୟାସିଲିଟି ଅଫ୍ ହସ୍‌ପିଟାଲିଟି ଆଣ୍ଡ୍ ଟୁରିଜିମ୍ ମ୍ୟାନେଜ୍‌ମେଣ୍ଟ ଏସ୍‌ଓଏ ୟୁନିଭର୍‌ସିଟି, ଭୁବନେଶ୍ୱରରେ କାର୍ଯ୍ୟରତ ।



# ନାରାୟଣ ନିରାଜନା

ଡ଼. ନିରଞ୍ଜନ ମହାନ୍ତି

**"ସଂସାର ବିଷ ବୃକ୍ଷସ୍ୟ ଦ୍ୱେବ ମଧୁରେ ଫଳେ**
**କାବ୍ୟାମୃତ ରସାସ୍ୱାଦ ସଜ୍ଜନ ସଙ୍ଗମ ସହ"**

କବିଙ୍କ ଭାଷାରେ ଏ ସଂସାର ଏକ ବିଷବୃକ୍ଷ । ମଣିଷ ପ୍ରତିଟି ମୁହୂର୍ତ୍ତରେ ଏ ସଂସାର ରୂପକ ବୃକ୍ଷରୁ ବିଷଫଳ ଖାଇ ଜର୍ଜରିତ । ଏଥିରେ ଥିବା ଦୁଇଟି ମଧୁର ଫଳ ମଣିଷକୁ ଆତ୍ମତୃପ୍ତି ଦିଏ । ଗୋଟିଏ ହେଲା କାବ୍ୟାମୃତ ରସ ଆସ୍ୱାଦନ କରିବା । ଦ୍ୱିତୀୟଟି ହେଲା ସଜ୍ଜନଙ୍କ ସାନିଧ୍ୟ ।

ମୁଁ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କୁ ଦେଖିନାହିଁ । ତାଙ୍କର ସୁପୁତ୍ର କୃଷ୍ଣଚନ୍ଦ୍ର ମହାପାତ୍ର ୨୦୦୩ ମସିହାରେ ଖୋରଧାରେ ଜିଲ୍ଲାପାଳ ଭାବେ ଅବସ୍ଥାନ କରୁଥିବା ସମୟରେ କେତେକ ପାଣ୍ଡୁଲିପି ମୋର ହସ୍ତଗତ ହୋଇଥିଲା । ଯେତେବେଳେ ଏସବୁ ପ୍ରକାଶନର ବ୍ୟବସ୍ଥା କରାଗଲା ମୁଁ ସମସ୍ତ ପାଣ୍ଡୁଲିପି ତନ୍ନ ତନ୍ନ କରି ପଢ଼ିବାର ସୁଯୋଗ ପାଇଲି ଓ ଏହାର ଅମୃତସମ ରସ ଆସ୍ୱାଦନ କରି ସେହି ସ୍ରଷ୍ଟା ମହାପୁରୁଷଙ୍କ ରୂପ କଳ୍ପନା କଲି । ରୂପକଳ୍ପନା କରିବାର କଳା ମୁଁ ସାମାନ୍ୟ ହାସଲ କରିଥାଏ । ଖୋରଧାର ବହୁବୀର ପାଇକ ଓ ମହାମନିଷୀଙ୍କ କାର୍ଯ୍ୟକଳାପ ଓ ଚରିତ୍ରକୁ ନେଇ ମଧ୍ୟ ମୁଁ ସେମାନଙ୍କର ଫଟୋଚିତ୍ର ପ୍ରସ୍ତୁତ କରିଛି ଯାହା ସବୁ ମିଡିଆରେ ସୁଲଭ ।

ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ ଫଟୋଚିତ୍ର ଦେଖିବା ପୂର୍ବରୁ ତାଙ୍କର ଆତ୍ମ ଜୀବନୀ ପାଠ କରି ମୁଁ ଯେଉଁ ସବୁ ରୂପ କଳ୍ପନା କରିଥିଲି ବାସ୍ତବରେ ଫଟୋ ଦେଖିବା ପରେ ତାହା ସମାନ ପରି ମନେ ହେଲା ।

ଯେତେବେଳେ ସ୍ୱର୍ଗତ ମହାପାତ୍ରଙ୍କର ପୁସ୍ତକ ପ୍ରକାଶନ ଆରମ୍ଭ ହେଲା ମୁଁ ତାଙ୍କର ଓ ତାଙ୍କ ପରିବାର ସଦସ୍ୟମାନଙ୍କ ଆଲୋକ ଚିତ୍ରଗୁଡ଼ିକ କମ୍ପ୍ୟୁଟରରେ ଡିଜାଇନ୍ କରୁଥିବା ସମୟରେ ସେ ଫଟୋ ଦେଖି ମୁଁ ହତବାକ ହୋଇଗଲି । କାରଣ ମୁଁ କରିଥିବା ରୂପ କଳ୍ପନା ସହିତ ତାହା ପାଖାପାଖି ନବେ ଭାଗ ସମାନ ଥିଲା ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଝିଅ ଇନ୍ଦିରା ଗାନ୍ଧୀଙ୍କୁ ଦେଇଥିବା ପତ୍ରଗୁଡ଼ିକ ଯେମିତି କେବଳ ପାରିବାରିକ କଥାରେ ସୀମିତ ନୁହେଁ ବରଂ ସମାଜ ବିଜ୍ଞାନ ଓ ରାଜନୀତି ଦର୍ଶନ, ବିଚାର, ବଂଚିବାର କଳା, ପରିଚାଳନା

କୌଶଳରେ ପରିପୂର୍ଣ୍ଣ, ସେମିତି ସ୍ୱର୍ଗତ ମହାପାତ୍ର, ତାଙ୍କର ସୁପୁତ୍ର ଶ୍ରୀ କୃଷ୍ଣ ଚନ୍ଦ୍ର ମହାପାତ୍ରଙ୍କୁ ଲେଖିଥିବା ଚିଠି ଗୁଡ଼ିକ ଅତିମାର୍ମିକ, ଭାବଗର୍ଭକ । ତତ୍କାଳୀନ ସମାଜର ଦର୍ପଣ । ସେଥିରେ ସାହିତ୍ୟ ଓ ଭାଷାର ଲାଳିତ୍ୟ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଜଣେ ପାଠକକୁ ଚରିତ୍ର ଗଠନରେ, ଗୋଟିଏ ସମୟରେ ସାମାଜିକ ବ୍ୟବସ୍ଥା, ରାଜନୀତି, କୂଟନୀତିକୁ ପ୍ରତିହତ କରିବାର କୌଶଳ ସନ୍ନିବେଶିତ । ମଣିଷ ଆତ୍ମକୈନ୍ଦ୍ରିକ ନ ହୋଇପାରେ । ପରୋପକାର ଓ ଦେଶପ୍ରୀତିରେ ଅଭିମନ୍ତ୍ରିତ ହେବାର ଶିକ୍ଷା ଗ୍ରହଣ କରି ପାରିବ । ୧୯୨୮ ମସିହାରୁ ତାଙ୍କର କର୍ମମୟ ଜୀବନ ଶାସନ ଦାମୋଦରପୁର ହାଇସ୍କୁଲରୁ ଆରମ୍ଭ ହୋଇ କାକଟପୁର, କଟକ, ସତ୍ୟବାଦୀ, ଗଦାଧର ସ୍କୁଲ ଶେଷରେ ଭାର୍ଗବୀ ହାଇସ୍କୁଲରୁ ଅଧ୍ୟାପନା ସାରି ଅବସର ଗ୍ରହଣ କରିଥିଲେ । ଏହି ମର୍ଯ୍ୟାଦା ସମ୍ପନ୍ନ ବିଦ୍ୟାଳୟମାନଙ୍କରୁ ତାଙ୍କ ସାନିଧ୍ୟରେ ଆସିଥିବା ବହୁ ଛାତ୍ରଛାତ୍ରୀ ଦେଶ ବିଦେଶ ବିଭିନ୍ନ ସ୍ଥାନରେ ଲବ୍ଧ ପ୍ରତିଷ୍ଠିତ । ତାଙ୍କରି ଆଦର୍ଶରେ ଅନୁଗାମୀ ବହୁ ଛାତ୍ରଛାତ୍ରୀ ମଧ୍ୟ ତାଙ୍କର ପ୍ରତ୍ୟକ୍ଷ ସହଯୋଗରେ ନିଜର କୃତିତ୍ୱ ପ୍ରଦର୍ଶନ କରି ଆସିଛନ୍ତି । ଶିକ୍ଷା କ୍ଷେତ୍ରରେ, ବିଚାର ବିଭାଗ, ଆଇନ, ବିଜ୍ଞାନ କ୍ଷେତ୍ରରେ ବହୁ ଛାତ୍ରଛାତ୍ରୀ ମଧ୍ୟ ଶୀର୍ଷସ୍ଥାନକୁ ମଣ୍ଡନ କରିପାରିଛନ୍ତି ।

ସ୍ୱର୍ଗତ ମହାପାତ୍ରଙ୍କର ଗୋଟିଏ ଗୋଟିଏ କ୍ଷୁଦ୍ର ଆଲେଖ୍ୟ ରାତ୍ରି ଆକାଶରେ ଗୋଟିଏ ଗୋଟିଏ ଦୀପ୍ତିମାନ ନକ୍ଷତ୍ର । ଧ୍ରୁବତାରା ପରି ପଥହରା ପଥିକକୁ ସଠିକ ଦିଶା ପ୍ରଦର୍ଶନ କରିପାରିବା ବିଦ୍ୟା, ଅର୍ଥ, ସ୍ୱାସ୍ଥ୍ୟ, ପତ୍ନୀ, ପୁତ୍ର, ଖାଦ୍ୟ ଓ ପାନୀୟ, ସଂଚୟଶୀଳତା, ଋଣ, ପ୍ରକୃତ ବନ୍ଧୁ, ଅନ୍ତିମ ଅଭିଳାଷ ଇତ୍ୟାଦି ବହୁ ଉପାଦେୟ କୃତି ଏକ ମୂଲ୍ୟବୋଧ ଥିବା ମଣିଷ ଭିତରେ ଗୋଟିଏ ଗୋଟିଏ ଉପାଦାନ । ବହୁ ମହାନ ଗୁରୁଙ୍କୁ ଆମେ ତାଙ୍କର ଆଲୋକଚିତ୍ର ଦେଖି ମନେପକାଉ । ତାଙ୍କର ଆଦର୍ଶକୁ ପାଥେୟ କରି ଆମର କର୍ମମୟ ଜୀବନ ଗତିଶୀଳ ହୁଏ । ସମାଜରେ କ୍ରମଶଃ ଏହିଭଳି ବ୍ୟକ୍ତିତ୍ୱ ହଜିଗଲା ପରେ ପରିବର୍ତ୍ତିତ ସାମାଜିକ ବ୍ୟବସ୍ଥାରେ ଜଣେ ଜଣେ ରୋଲ ମଡେଲ୍ ଖୋଜି ପାଇବା କଷ୍ଟ । ଗୁରୁ ନାରାୟଣ ମହାପାତ୍ରଙ୍କ ଚରଣରେ ମୋର କୋଟି ପ୍ରଣାମ । ତାଙ୍କ କଲମ ମୁନରୁ ଝରିଥିବା ଅମୃତ ପାନ କରି ମୁଁ କୃତ୍ୟକୃତ୍ୟ ।

- ମଧୁସୁଦନ ନଗର, ଖୋର୍ଦ୍ଧା



# ପୂଜ୍ୟଗୁରୁ ସ୍ୱର୍ଗତ ନାରାୟଣ ମହାପାତ୍ର ମହୋଦୟଙ୍କ ଅମ୍ଳାନ ସ୍ମୃତିରେ



ଶ୍ରୀ ରମାକାନ୍ତ ମିଶ୍ର

କବିବର ରାଧାନାଥଙ୍କ ଅନୁଭୂତିସିଦ୍ଧ ପଂକ୍ତି ଅନୁସାରେ,

"ସ୍ମୃତି ତ ନୁହଇ କେବେ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର" ।

ବାସ୍ତବିକ ପୂଜ୍ୟ ଗୁରୁ ନାରାୟଣ ମହାପାତ୍ରଙ୍କ ସ୍ମୃତି ଭୁଲିବାର ନୁହେଁ । ପୁରୀର ଅନ୍ୟତମ ପ୍ରତିଷ୍ଠିତ ଶାସନ ବୀରନରସିଂହପୁର ଗ୍ରାମର, ପୁଣ୍ୟାତ୍ମା ଉତ୍କଳ ମଣିଙ୍କ ମାତୃଭୂମିର ଅନତି ଦୂରରେ ପୁରାଣ ତଥା ଇତିହାସ ପ୍ରସିଦ୍ଧ ପୁଣ୍ୟତୋୟା ଭାର୍ଗବୀ ନଦୀ କୂଳରେ, ଆମ୍ର, ପଣସ, ନାରିକେଳ, ପୁନ୍ନାଗ ସମେତ ନିଘଞ୍ଚ ଛାୟାପ୍ରଦ ଦୀର୍ଘସ୍ଥାୟୀ "ଦାମିଆକାଣ୍ଡି" ବଟ ବୃକ୍ଷାଦି ପରିବେଷ୍ଟିତ ପ୍ରାକ୍ ସ୍ୱାଧୀନତା କାଳର ସୁପ୍ରାଚୀନ ଭାର୍ଗବୀ ଉଚ୍ଚ ବିଦ୍ୟାଳୟର ଜଣେ ସ୍ୱନାମଧନ୍ୟ କୃତ ବିଦ୍ୟ ଶିକ୍ଷକ ଭାବରେ ପୂଜ୍ୟ ମହାପାତ୍ର ୧୯୪୯ ମସିହାରୁ ୧୯୬୯ ମସିହା ପର୍ଯ୍ୟନ୍ତ ଶିକ୍ଷକତା କରିଥିଲେ । ଅତୀବ ସରଳ, ଆମାୟିକ, ଦିବ୍ୟଗୁଣ ସମ୍ପନ୍ନ ବ୍ୟକ୍ତିତ୍ୱ ମହାପାତ୍ର ମହୋଦୟ ଶିକ୍ଷାଗତ ଯୋଗ୍ୟତା ଭିତ୍ତିରେ ଗରିଷ୍ଠ ନଥିଲେ ମଧ୍ୟ ସତ୍ୟବାଦୀ ବନ ବିଦ୍ୟାଳୟର ପରିମାପକରେ ଗରିଷ୍ଠ ନଥାଇ ଋଷି ପ୍ରତିମ ଆଚାର୍ଯ୍ୟ ହରିହର ଯେପରି ଅଗ୍ରଗଣ୍ୟ ଶିକ୍ଷକ ଭାବରେ ଗଣ୍ୟ, ମହାପାତ୍ର ମହୋଦୟ ତଦନୁରୂପ ଶିକ୍ଷାଦାତା ରୂପେ ଖ୍ୟାତ ଥିଲେ । ଉଚ୍ଚ ଶ୍ରେଣୀ ମାନଙ୍କରେ ସେ ଇଂରାଜୀ, ଭୂଗୋଳ, ଓଡ଼ିଆ ଆଦି ମନୋଜ୍ଞ ଶୈଳୀରେ ପଢ଼ାଉଥିଲେ । ବିଶ୍ୱ ବିଜୟୀ ପୁରୁଷ ସିଂହ ସ୍ୱାମୀ ବିବେକାନନ୍ଦଙ୍କ ଅଭିମତ ଅନୁସାରେ ସେ "Man making, character building education"ର ପ୍ରବକ୍ତା ଥିଲେ ।

ଅଧିକନ୍ତୁ ଇଂରାଜୀର ଆପ୍ତ ବଚନ

*"A good teacher teaches*
*A better teacher motivates*
*A best teacher inspires"*

ସେ ନିଃସନ୍ଦେହରେ "A best teacher inspires" ଶ୍ରେଣୀଭୁକ୍ତ ଥିଲେ । କାର୍ଯ୍ୟଦକ୍ଷତା ଦୃଷ୍ଟିରୁ ସେ ପ୍ରଧାନ ଶିକ୍ଷକଙ୍କ ଅନୁପସ୍ଥିତିରେ ଭାରପ୍ରାପ୍ତ ପ୍ରଧାନ ଶିକ୍ଷକର ଗୁରୁ ଦାୟିତ୍ୱ ନିର୍ବାହ କରୁଥିଲେ ।

ମୁଁ ମହୋଦୟଙ୍କର ଜଣେ ଛାତ୍ର ଭାବରେ ମୋର ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ୧୯୫୪ ମସିହାରୁ ୧୯୬୨ ମସିହା ପର୍ଯ୍ୟନ୍ତ ଉପକୃତ । ସୁଯୋଗ୍ୟ ଶିକ୍ଷକ, ଛାତ୍ର ହୃଦୟ ଦର୍ପଣରେ ସ୍ୱଚ୍ଛ ପ୍ରତିବିମ୍ବିତ ହୋଇଥାଆନ୍ତି । ମୋ ପୂଜ୍ୟ ଗୁରୁ ହୃଦୟରେ ପ୍ରତିବିମ୍ବିତ ଶିକ୍ଷକ; ଏହା ଦ୍ୱିଧା ବିରତ ।

ମହୋଦୟ ବୀରନରସିଂହପୁର ଶାସନର ପ୍ରଥମ ଖଣ୍ଡିର ବାସିନ୍ଦା ଥିଲେ । ସେ ଜଣେ ଉଚ୍ଚକୋଟୀର ସମାଜସେବୀ ଭାବରେ ପରିଚିତ । ସେ ବୀରନରସିଂହପୁର ସେବା ସମବାୟ ସମିତିର ପ୍ରତିଷ୍ଠାତା ଥିଲେ । ସେ ପ୍ରତାପରାମଚନ୍ଦ୍ରପୁର (ପାଟେଳୀ) ଗ୍ରାମରେ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ଥିଲେ । ଉକ୍ତ ଶିକ୍ଷାନୁଷ୍ଠାନ ସମ୍ପ୍ରତି ଉଚ୍ଚ ବିଦ୍ୟାଳୟରେ ପରିଣତ । ସାର୍ ସରଳ, ଅମାୟିକ, ଛାତ୍ର ବତ୍ସଳ ଥିଲେ । ସେ ଲୁଗା ଓ ଫୁଲ ସାର୍ଟ ପରିଧାନ କରୁଥିଲେ । ତାଙ୍କର ଶରୀର କ୍ଷୀଣକାୟ ଥିଲା । ସେ ପାଦରେ ଚଟି ବା ଜୋତା ବ୍ୟବହାର କରିବା କେବେ ମୋ ଦୃଷ୍ଟିରେ ଆସିନାହିଁ ।

ଜଣେ ଉଚ୍ଚଶ୍ରେଣୀୟ ସଂସାରୀ ଭାବରେ ସେ ଆଦର୍ଶ ଓ ଉଚ୍ଚ ଶିକ୍ଷା ପ୍ରାପ୍ତ ପୁତ୍ର ଓ କନ୍ୟା ସନ୍ତାନର ଜନକ । ଜ୍ୟେଷ୍ଠ ଜାମାତା ଜଣେ ଶାନ୍ତ, ସରଳ ସମାଜସେବୀ, ବହୁ ବ୍ୟକ୍ତିଙ୍କୁ କର୍ମ ସଂସ୍ଥାନ ପ୍ରଦାନକାରୀ ରାଜ୍ୟ ସରକାରଙ୍କ "ଓଡ଼ିଶା ଅର୍ଥ ସେବା"ର ପ୍ରମୁଖ ପ୍ରଶାସକ ସ୍ୱର୍ଗତ ପୁରୁଷୋତ୍ତମ ମିଶ୍ର (ବାଉ ଭାଇନା) ଆମ୍ଭ ଗ୍ରାମ ବୀରନରସିଂହପୁର ପ୍ରଥମ ଖଣ୍ଡିର ବାସିନ୍ଦା ଚିର ସ୍ମରଣୀୟ । ପୂଜ୍ୟ ମହାପାତ୍ରଙ୍କ ଜ୍ୟେଷ୍ଠା କନ୍ୟା (ଉମା ନାନୀ) ପ୍ରୋକ୍ତ ମିଶ୍ର ମହୋଦୟଙ୍କର ସହଧର୍ମିଣୀ । କନିଷ୍ଠା କନ୍ୟା ରମାମଣି ମହାପାତ୍ର ଯେ କି ମୋର ବିଦ୍ୟାଳୟ ଜୀବନର ସହପାଠିନୀ ଥିଲେ, ସମ୍ପ୍ରତି ଅବସରପ୍ରାପ୍ତ ପ୍ରଧାନ ଶିକ୍ଷୟତ୍ରୀ । ରାୟ ଖଣ୍ଡି ଗ୍ରାମନିବାସୀ ସ୍ୱର୍ଗତ ନାରାୟଣ ମିଶ୍ର, ଯେ କି ରାଜ୍ୟ ସରକାରଙ୍କ ଜେଲ୍ ବିଭାଗର ଉଚ୍ଚ ପଦସ୍ଥ ଅଧିକାରୀ ଥିଲେ, ରମାମଣି ତାଙ୍କର ସହଧର୍ମିଣୀ । କନିଷ୍ଠ ସନ୍ତାନ କୃଷ୍ଣ ଚନ୍ଦ୍ର ମହାପାତ୍ର, ଭାରତୀୟ ପ୍ରଶାସନିକ ସେବା (I.A.S), ସେବା ନିବୃତ୍ତ ହୋଇ ଅବସର ଗ୍ରହଣ କରିସାରିଛନ୍ତି ।

ଶ୍ରୀମଦ୍ ଭାଗବତର ସ୍ୱତଃ ସିଦ୍ଧ ପଂକ୍ତି ଅନୁସାରେ

"ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହେଲେ ହେଁ ମରଇ" ।

ତଦନୁସାରେ ପୂଜ୍ୟ ନାରାୟଣ ମହାପାତ୍ର ମହୋଦୟଙ୍କର ଇହଲୀଳା ସମ୍ବରଣ ୧୯୮୫ ମସିହାରେ ଏକ ଧର୍ମ ପ୍ରଭାବିତ ଦିବସ ଗଙ୍ଗା ପୂର୍ଣ୍ଣିମାରେ ସଂଘଟିତ ହୋଇଥିଲା । ମହୋଦୟଙ୍କର ପାର୍ଥିବ ଶରୀର ସିନା ପଞ୍ଚଭୂତରେ ବିଲୀନ, ମାତ୍ର ଯଶୋ ଦେହରେ ସେ ଚିର ଆୟୁଷ୍ମାନ ଏହା ନିଃସନ୍ଦେହ ।

ସ୍ୱାମୀ ବିବେକାନନ୍ଦଙ୍କ ଅଭିମତ ଅନୁସାରେ,

*"They alone live who live for others".*

ଏ ପରିପ୍ରେକ୍ଷୀରେ ମହୋଦୟଙ୍କର ସୁକର୍ମ ବିଜଡ଼ିତ ଜୀବନ ପ୍ରତି ସ୍ୱାମୀଜୀଙ୍କ ଉପଯୁକ୍ତ ସିଦ୍ଧାନ୍ତ ବିଶେଷ ପ୍ରଯୁଜ୍ୟ ।

ମହୋଦୟଙ୍କ ସୁଯୋଗ୍ୟ ପୁତ୍ର କୃଷ୍ଣଚନ୍ଦ୍ର ପିତାଙ୍କର ଆତ୍ମଚରିତ ପ୍ରକାଶ ପରିପ୍ରେକ୍ଷୀରେ ମୋତେ ଅନୁରୋଧ କରିଥିବାରୁ ଏତାଦୃଶ ପ୍ରବାଦ ପୁରୁଷଙ୍କ ସମ୍ବନ୍ଧରେ ଯତ୍‌କିଞ୍ଚିତ ଆଲୋକପାତ କରିବାର ସୁଯୋଗ ଲାଭ କରି ମୁଁ କୃତାର୍ଥ ।

ରାଜ୍ୟପାଳ ପୁରସ୍କୃତ,
ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ
ପୁରୀ ଜିଲ୍ଲା ସ୍କୁଲ୍, ପୁରୀ ଓ ପ୍ରାକ୍ତନ ଶିକ୍ଷା ଜିଲ୍ଲା ଅଧିକାରୀ

ଶ୍ରୀ ରମାକାନ୍ତ ମିଶ୍ର, ପ୍ରାକ୍ତନ ଛାତ୍ର, ରାଜ୍ୟପାଳ ପୁରସ୍କୃତ, ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ, ପୁରୀ ଜିଲ୍ଲା ସ୍କୁଲ, ପୁରୀ ଓ ପ୍ରାକ୍ତନ ଶିକ୍ଷା ଜିଲ୍ଲା ଅଧିକାରୀ ଅଟନ୍ତି । ସେ ବୀରନରସିଂହପୁର ଦ୍ୱିତୀୟ ଖଣ୍ଡିର ବାସିନ୍ଦା ।



# ମତାମତ

**ଶ୍ରୀଧର ବିଶ୍ୱାଳ, ଓ.ଏ.ଏସ୍.**

ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମହାପାତ୍ର, ସେବା ନିବୃତ୍ତ ସର୍ବଭାରତୀୟ ସେବା ଅଧିକାରୀ । ସହଯାତ୍ରୀ ଭାବରେ ତାଙ୍କ ସହ ଚାଲୁଥିବା ସମୟରେ ଦିନେ ହଠାତ୍ କହିଲେ ଯେ ତାଙ୍କର ସ୍ୱର୍ଗୀୟ ପିତା ଶିକ୍ଷକ ନାରାୟଣ ମହାପାତ୍ର ଜଣେ କବି ଥିଲେ ଏବଂ ସେ ରଚନା କରିଥିବା ଅନେକ ପଦ୍ୟାବଳୀ ଏବେ ତାଙ୍କର ଦୃଷ୍ଟିଗୋଚର ହୋଇଛି । ତାଙ୍କର ପିତା ଲେଖିଥିବା ଏକ ପଦ୍ୟ ବହି (ରାମାୟଣ) ମତେ ପାଠ କରିବାକୁ ଦେଇ କହିଥିଲେ ତାଙ୍କ ପିତା ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଚାକିରି କରୁଥିଲେ । ସେହି ସମୟର ଏକ ଘଟଣା ବର୍ଣ୍ଣନା କଲେ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଥିବା ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା କରିବା ସମୟରେ 'କୁସୁମ ପରଶେ ପଟ ନିସ୍ତରେ' ପରି ସେଠାରେ ନାରାୟଣ ବାବୁ ପଣ୍ଡିତ ନୀଳକଣ୍ଠ ଦାଶ, ଆଚାର୍ଯ୍ୟ ହରିହରଙ୍କ ପରି ମହାନ୍ ଜନନେତାଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ନିଜକୁ ସେମାନଙ୍କ ଭାବଧାରାରେ ଉତ୍ସର୍ଗ କରିଥିଲେ । ତାଙ୍କର ନିଜର ଧୀମତ୍ତା ଥିଲା କିନ୍ତୁ, ଉପରୋକ୍ତ କୃତିବିଦ୍‌ମାନଙ୍କ ଗହଣରେ ଆସିଥିବାରୁ ତାହା ଆହୁରି ଶାଣିତ ହୋଇଥିଲା । ପଦ୍ୟ 'ରାମାୟଣ' ତାଙ୍କର ଏକ ନିଦର୍ଶନ । ବହିଟିକୁ ପାଠ କରି ମୁଁ ଅତ୍ୟନ୍ତ ଭାବବିହ୍ୱଳ ହୋଇପଡ଼ିଥିଲି । ପ୍ରତ୍ୟେକ ଅଧ୍ୟାୟ ଉପାଦେୟ ଏବଂ ଏକ ବିଶେଷ ଛନ୍ଦରେ ବର୍ଣ୍ଣିତ । ମନେହେଲା ! ସେ ବହି ଯେପରି ଉତ୍କଳର ଅନେକ ଖ୍ୟାତନାମା ଛନ୍ଦ ଲେଖକଙ୍କ ସହ ଟକ୍କର ଦେଇପାରିବ ।

ଅନ୍ୟ ଏକ ଦିନ କୃଷ୍ଣବାବୁ ତାଙ୍କ ପିତାଙ୍କ ଦ୍ୱାରା ରଚିତ "ଜନ୍ମଭୂମି" ନାମରେ ଏକ କ୍ଷୁଦ୍ର କବିତା ବହି ଦେଇ ସେହି ବହି ସମ୍ବନ୍ଧୀୟ ମୋର ମତାମତ ଦେବାକୁ ଅନୁରୋଧ କଲେ । ପୁସ୍ତକଟି ଲେଖକ ତାଙ୍କ କନ୍ୟା ନିକଟକୁ ଉପଦେଶ ଛଳରେ ଲେଖିଛନ୍ତି କିନ୍ତୁ, ବିଷୟବସ୍ତୁ ତାଙ୍କର ଜନ୍ମଭୂମି 'ବୀର ନରସିଂହପୁର'ର ଭବ୍ୟ ବର୍ଣ୍ଣନା । ଏପରି କି ଦେଖିବାକୁ ଗଲେ ବହିଟିର ପ୍ରତ୍ୟେକ ପଦ ଉନ୍ନତ ସାହିତ୍ୟର ଏକ ନିଛକ ଉଦାହରଣ । ତନ୍ମଧ୍ୟରୁ ଗୋଟିଏ ପାରା

"ବ୍ରହ୍ମ ତେଜୋଦୀପ୍ତ ଏ ଦ୍ୱିଜ ନଗର,<br>
ଉତ୍କଳେ ଲଭିଲା ବିପୁଳ ଆଦର

ଭାର୍ଗବୀ ପୁଳିନେ ଦିଶିଶଳା ଶୋଭନ,
ଜାହ୍ନବୀ ପୁଳିନେ ଯଥା ତପୋବନ

କବି ଏହି କ୍ଷୁଦ୍ର ପୁସ୍ତକରେ ତାଙ୍କର ଜନ୍ମଭୂମିର ମହାନତା ଶତଜିହ୍ୱାରେ ବର୍ଣ୍ଣନା କରିଛନ୍ତି । ଏହା ବ୍ୟତୀତ ତାଙ୍କର କନ୍ୟାକୁ ମଧ୍ୟ ସେ 'ଶର୍ମିଷ୍ଠା' କାବ୍ୟରେ କବି ଗଙ୍ଗାଧର ମେହେରଙ୍କର କଣ୍ୱମୁନିଙ୍କ ଶକୁନ୍ତଳାଙ୍କୁ ଦେଇଥିବା ଉପଦେଶ ପରି ଅତ୍ୟନ୍ତ ହୃଦୟଗ୍ରାହୀ ।

କବି ଲେଖିଛନ୍ତି -

"ମହାର୍ଘ ବସନ ସ୍ୱର୍ଣ୍ଣ ଆଭରଣ
ଆର୍ଯ୍ୟ ଲଳନାର ନୁହଇ ଭୂଷଣ,

ଦୟା, କ୍ଷମା, ପ୍ରୀତି, ସେବା, ସହିଷ୍ଣୁତା
ଗୁଣେ ହୁଏ ନାରୀ ଜଗତ ବନ୍ଦିତା ।"

ଏହା ଏକ ଏପରି ପୁସ୍ତକ ଯେ ତାହାକୁ ପ୍ରତ୍ୟେକ ନାରୀ ପାଠ କରିବା ଉଚିତ । ତେବେ ଦୁର୍ଯୋଗରୁ ଏପରି ପୁସ୍ତକ ଲୋକଲୋଚନରୁ ଦୂରରେ ରହିବା ଉତ୍କଳ ସାହିତ୍ୟ ପାଇଁ ଏକ ଦୁର୍ଭାଗ୍ୟ । କୃଷ୍ଣବାବୁ କହୁଥିଲେ ସେ ଏହି ବହିଟିକୁ ବହୁ ସଂଖ୍ୟାରେ ପ୍ରିଣ୍ଟ୍ କରି ବିଭିନ୍ନ ସାହିତ୍ୟିକ ସଂସ୍ଥାକୁ ପ୍ରେରଣ କରିବେ । ଏହା ଏକ ପୁତ୍ରର ତାଙ୍କ ସ୍ୱର୍ଗାରୋହଣ କରିଥିବା ପିତାଙ୍କ ପ୍ରତି ଏକ ବିଶେଷ ଶ୍ରଦ୍ଧାଞ୍ଜଳି । ଆଶା, ଉତ୍କଳର ପାଠକଗଣ ଏହି ବହିଟିକୁ ପଠନ କରିବାର ସୁଯୋଗ ପାଇବେ ।

ଶୁଭାକାଂକ୍ଷୀ
ଶ୍ରୀଧର ବିଶ୍ୱାଳ



ଅବସର ପ୍ରାପ୍ତ ପ୍ରଶାସକ, ସେ ବର୍ତ୍ତମାନ ଆଇଆର୍‌ସି ଭିଲେଜ୍‌ରେ ଅବସ୍ଥାନ କରୁଛନ୍ତି ।



# ମନେପଡନ୍ତି ସ୍ୱର୍ଗତ ନାରାୟଣ ସାର୍

ଡା. ବାଳକୃଷ୍ଣ କୁଅଁର

ଭାର୍ଗବୀ ନଦୀ କୂଳରେ ପୂର୍ବ ଗୌରବକୁ ନେଇ ଦଣ୍ଡାୟମାନ ଭାର୍ଗବୀ ହାଇସ୍କୁଲ । ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଯେଉଁ କେତୋଟି ସ୍କୁଲ୍ ପୁରୀ ଜିଲ୍ଲାରେ ନିଜର ନାମକୁ ଧନ୍ୟ କରିଥିଲେ ତା'ମଧ୍ୟରୁ ଏହା ଥିଲା ଅନ୍ୟତମ । ସ୍ୱାଧୀନତା ପରେ ଜନ୍ମ ନେଇ ବହୁ କୃତୀ ଛାତ୍ରଙ୍କୁ ତାଙ୍କର ଭବିଷ୍ୟତ ଗଢିବାରେ ସାହାଯ୍ୟ କରେ । ଉଚ୍ଚକୋଟୀର ଶିକ୍ଷାଦାନ ଆକର୍ଷଣ କରିଥିଲା ୭ ରୁ ୮ କି.ମି. ବ୍ୟାସାର୍ଦ୍ଧରେ ଥିବା ଛାତ୍ର ଓ ଛାତ୍ରୀମାନଙ୍କୁ । ଦୁଇଧାଡି ଚାଳଘରକୁ ନେଇ ନଦୀର ବନ୍ଧକଡରେ ଏହା ଗଢି ଉଠିଥିଲା । ଛାତ୍ରାବାସର ସୁବିଧା ଦୂର ଦୂରାନ୍ତର ଛାତ୍ରମାନଙ୍କୁ ରହିବା ପାଇଁ ସୁଯୋଗ ଦେଇଥିଲା ।

୧୯୬୦ ମସିହା ଥିଲା ମୋ ପାଇଁ ସୁବର୍ଣ୍ଣ ସୁଯୋଗ । ଘର ପାଖରେ (ଉଚ୍ଚ ପ୍ରାଥମିକ) ଶିକ୍ଷା ଲାଭ ପରେ ଉଚ୍ଚଶିକ୍ଷା ପାଇଁ ଏହି ସ୍କୁଲରେ ନାମ ଲେଖାଇଥିଲି । ଷଷ୍ଠଶ୍ରେଣୀରୁ ଏକାଦଶ ପର୍ଯ୍ୟନ୍ତ ପ୍ରାୟ ଦୁଇଟି Section ଥିଲା । ସ୍କୁଲର ଶିକ୍ଷକବୃନ୍ଦ ସମୟାନୁବର୍ତ୍ତୀ ଥିଲେ । ଶିକ୍ଷାଦାନ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ସେହି ପୂଜ୍ୟ ଗୁରୁମାନଙ୍କ ମଧ୍ୟରେ ଆମେ ସ୍ୱର୍ଗତ ନାରାୟଣ ମହାପାତ୍ର ସାର୍‌ଙ୍କୁ ପାଇଥିଲୁ । ୬ଷ୍ଠ ଓ ୭ମ ଦୁଇଟି ଶ୍ରେଣୀର ସେଥିଲେ ଭୂଗୋଳ ଶିକ୍ଷକ । ଶିକ୍ଷାଦାନ ଅତ୍ୟନ୍ତ ସରଳ ଥିଲା । ଶିକ୍ଷକ ଓ ପିଲାମାନଙ୍କ ମଧ୍ୟରେ ମଧୁର ସଂପର୍କ ଥିଲା । ଧନୀ, ଦରିଦ୍ର ଓ ଜାତିବର୍ଣ୍ଣ ନିର୍ବିଶେଷରେ ଶିକ୍ଷାଦାନ କରୁଥିଲେ । ଭୂଗୋଳ ପାଠ କ'ଣ ଓ ଏହା ସମ୍ବନ୍ଧରେ ଅତି ନିଖୁଣଭାବରେ ଛୋଟ କୋମଳମତି ବାଳକ ଓ ବାଳିକାମାନଙ୍କୁ ବୁଝାଇ ଦେଉଥିଲେ । ଏବେ ଅତୀତ ସ୍ମୃତି ମନେପଡେ । ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷାରେ ଭୂଗୋଳ ବିଷୟରେ ମୁଁ ଶୀର୍ଷସ୍ଥାନ ଅଧିକାର କରୁଥିଲି । ନଥିଲା ବାଛବିଚାର । ଛାତ୍ରର ଜ୍ଞାନକୁ ପ୍ରଶଂସା କରୁଥିଲେ । ଏଭଳି ଗୁରୁଙ୍କୁ ମୋର ଚିର ନମସ୍କାର । ସଂସାରରୁ ବିଦାୟ ନେଲେଣି ସତ କିନ୍ତୁ ତାଙ୍କର ଅମର କୀର୍ତ୍ତି ଓ ଶିକ୍ଷାଦାନ ମୋର ଚିରସ୍ମରଣୀୟ ହୋଇ ରହିବ । ଦାମିଆ କାଣ୍ଡି, ବରଗଛ ଏବେବି ଦଣ୍ଡାୟମାନ । ସ୍କୁଲ୍‌ଘରର ପରିବର୍ତ୍ତନ ଘଟିଛି । ଚାଳଘର ଯାଇ କୋଠାଘର

ହୋଇସାରିଛି । ମାତ୍ର English Medium ଶିକ୍ଷାର ପ୍ରସାରରେ ଓଡିଆ ସ୍କୁଲ୍‌ଗୁଡିକ ପରିଚୟ ହରାଇଛନ୍ତି । ପିଲାମାନଙ୍କର ସଂଖ୍ୟା କମିଯାଉଛି । ନାହିଁ ସେହି ସମୟର ସ୍ନେହ ଓ ମମତା, ଗଣେଶ ପୂଜା ଓ ସରସ୍ୱତୀ ପୂଜାର ଉତ୍ସବମୁଖର ସମୟ ।

ଆମର ତତ୍‌କାଳୀନ ଶିକ୍ଷକମାନଙ୍କ ମଧ୍ୟରେ ନାରାୟଣ ସାର୍‌ଙ୍କର ଆଦର୍ଶ, ଶିକ୍ଷାଦାନ, ଛାତ୍ର ବତ୍ସଳତା ଅସୀମ । ଇଂରାଜୀ, ସାମାଜିକ ବିଜ୍ଞାନ ଓ ଭୂଗୋଳ ଶାସ୍ତ୍ରରେ ସେ ଥିଲେ ଅତ୍ୟନ୍ତ ଧୁରୀଣ । ସତ୍ୟବାଦୀ ବନବିଦ୍ୟାଳୟ ଆଦର୍ଶର ସେଥିଲେ ଜଣେ ଚଳମାନ ବାର୍ତ୍ତାବହ ଓ ଚରିତ୍ର ଗଠନର ସୁଦକ୍ଷ ବିଶ୍ୱକର୍ମା । ତାଙ୍କରି ଅବଦାନ ଯୋଗୁଁ ମୋ ଭଳି ଶହ ଶହ ଛାତ୍ର ଆଜି ସମାଜରେ ମଣିଷ ହୋଇପାରିଛନ୍ତି ।

ସେହି ଦିବଂଗତ ପୂଜନୀୟ ଶିକ୍ଷକ ନାରାୟଣ ମହାପାତ୍ର ସାର୍‌ଙ୍କୁ ହୃଦୟର ଅନ୍ତରରୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ତାଙ୍କ ଅମର ଆତ୍ମା ଯୁଗ ଯୁଗ ଧରି ଶାନ୍ତିରେ ବିଶ୍ରାମ ନେଉ ।

ଗାୟତ୍ରୀ ବିହାର, କ୍ୟାଣ୍ଟନ୍‌ମେଣ୍ଟ ରୋଡ୍
ବକ୍ସି ବଜାର, କଟକ - ୭୫୩୦୦୧

●●●

ଡାକ୍ତର ବାଳକୃଷ୍ଣ କୁଅଁର ସ୍ୱର୍ଗତଃ ମହାପାତ୍ରଙ୍କର ଜଣେ ପ୍ରିୟଛାତ୍ର । ତୁଳସୀ ଦୁଇ ପତ୍ରରୁ ବାସିବା ପରି ସ୍କୁଲରେ ଶିକ୍ଷା ଗ୍ରହଣ କରିବା ଦିନଠାରୁ ଡାକ୍ତର କୁଅଁରଙ୍କର ପ୍ରତିଭା ପ୍ରତୀୟମାନ ହେଉଥିଲା ଏବଂ ଶେଷରେ ସେ ଓଡ଼ିଶାର ଜଣେ ବିଶିଷ୍ଟ ସ୍ନାୟୁ ବିଶେଷଜ୍ଞ ଡାକ୍ତର ହିସାବରେ ଏସ୍.ସି.ବି. ମେଡିକାଲ କଲେଜରୁ ପ୍ରଫେସର ରହି ଅବସର ଗ୍ରହଣ କରିଥିଲେ । ବର୍ତ୍ତମାନ ସେ କଟକରେ ଜଣେ ସ୍ୱନାମଧନ୍ୟ ଡାକ୍ତର ।



# "ଗୁରବେ ନମଃ"

ଡକ୍ଟର ସଦାଶିବ ମହାପାତ୍ର

ସ୍ୱନାମଧନ୍ୟ ପୁରୀ ଜିଲ୍ଲା ବୀରନରସିଂହପୁର ଗାଁରେ ଆମର ପ୍ରିୟ ଶିକ୍ଷକ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ ଜନ୍ମ । ସେଇ ଗାଁ ଟି ମୋର ଭିଟାମାଟି । ତା'ରି ପାଣି ପବନରେ ଗଢା ହୋଇଛି ଆମର ଭାଗ୍ୟଡୋରି । ଗାଁର ଜ୍ଞାନୀ ଗୁରୁଜନମାନେ ଆମର ଚିର ନମସ୍ୟ । ଶିକ୍ଷାଦାନ କରିଥିବା ଗୁରୁମାନଙ୍କର ଅତୁଳନୀୟତା ଏବେବି ମନରେ ସଂରକ୍ଷିତ । ପିଲାଟି ଦିନରୁ ମୁଁ ତାଙ୍କ ପରିବାର ସଙ୍ଗେ ସୁପରିଚିତ ଥିଲି । ମାଉସୀ ଭାରି ସ୍ନେହୀ-ପିଲାବେଳେ ମତେ ତାଙ୍କ ପୁଅ 'କାହ୍ନୁ' ସାଙ୍ଗେ ମାହାର୍ଦ୍ଦ ବନ୍ଧୁତାରେ ଯୋଡି ଦେଇଥିଲେ, ଯାହା ଆଜି ପର୍ଯ୍ୟନ୍ତ ମଧ୍ୟ ଆମେ ବଜାୟ ରଖିଛୁ ।

ସାର୍ ଭାରି ସାଧାସିଧା ଲୋକ । ସେଥିଲେ ଅଜାତଶତ୍ରୁ । କାହା ସାଙ୍ଗରେ ବିବାଦ ନାହିଁ କି କୌଣସି ଅଯଥା କଥାରେ ପଶିବାକୁ ପସନ୍ଦ କରନ୍ତି ନାହିଁ । ସ୍ପଷ୍ଟବାଦୀ, ନିରପେକ୍ଷ ଓ ସ୍ୱାଧୀନ ଚେତା ମଧ୍ୟ । ମୋ ନନାଙ୍କର ପ୍ରାୟ ସମସାମୟିକ ଥିବାରୁ ବେଳେବେଳେ ଗାଁ ଦାଣ୍ଡରେ ଯିବା ଆସିବାବେଳେ ଆମ ପିଣ୍ଡାରେ ବସି କେତେଥର କଥାବାର୍ତ୍ତା ହେବାର ଦେଖିଛି । ମୁଁ ପ୍ରାଇମେରୀ ସ୍କୁଲରେ ପଢିଲାବେଳେ ସେ ଗ୍ରାମ ବାହାରେ ରହି ସତ୍ୟବାଦୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ, କିନ୍ତୁ ମୁଁ ଭାର୍ଗବୀ ବିଦ୍ୟାଳୟରେ ପଢିଲାବେଳେ ଆମର ପ୍ରିୟ ଶିକ୍ଷକ ହୋଇଗଲେ । ଇଂରାଜୀ, ଭୂଗୋଳ ବିଷୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଷଷ୍ଠ ଶ୍ରେଣୀରେ ପଢିଲାବେଳେ ସେ ମଧ୍ୟ ଆମ ଶ୍ରେଣୀ ଶିକ୍ଷକ ଥିଲେ । ଭଲ ପଢୁଥିବା ଛାତ୍ରଛାତ୍ରୀଙ୍କ ପ୍ରତି ତାଙ୍କର ସ୍ୱତନ୍ତ୍ର ଦୃଷ୍ଟି ରହୁଥିଲା । ଦିନେ ହଠାତ୍ ସକାଳେ ମୁଁ ଦେଖିଲାବେଳକୁ ସାର୍ ଆସି ଆମ ଦୁଆରେ ନନାଙ୍କୁ କଣ କହୁଛନ୍ତି । ମତେ ଡକରା ପଡିଲା । ସାର୍ କହିଲେ, 'ପଢାପଢିରେ କିଛି ଅସୁବିଧା ହେଲେ ମୋ ପାଖକୁ ପଳେଇ ଆସିବୁ' । ଏ ସୁବିଧା ପାଇ ଭାରି ଖୁସି ହୋଇଗଲି । ବେଳେବେଳେ ଦରକାର ପଡିଲେ ସାରଙ୍କଠାରୁ ପାଠ ବୁଝିନିଏ । ମତେ ଇଂରାଜୀରେ ସୁନ୍ଦର ଭାବରେ ଲେଖିବାର ଅଭ୍ୟାସ କରାଇଦେବା ସଙ୍ଗେ ସଙ୍ଗେ ଅନ୍ୟ ବିଷୟରେ ମଧ୍ୟ ପ୍ରଶ୍ନ ପଚାରି ଅନେକ ସନ୍ଦେହ ଦୂର କରି ଦେଇଥା'ନ୍ତି । ତାଙ୍କଭଳି ଜଣେ ଆଦର୍ଶ ଶିକ୍ଷକଙ୍କଠାରୁ ବିଦ୍ୟା ଗ୍ରହଣ ମୋ ପାଇଁ

ବଡ ଆଶୀର୍ବାଦ ଥିଲା । ସ୍କୁଲରେ ପଢାଇଲା ବେଳେ ଶ୍ରେଣୀ କକ୍ଷରେ ଆମେ ସମସ୍ତେ ଏକାଗ୍ରଚିତ୍ତରେ ତାଙ୍କ ଅନର୍ଗଳ ଭାଷଣ ଶୁଣୁଥିଲୁ । ନିୟମାନୁବର୍ତ୍ତିତା ଓ ଶ୍ରେଣୀ କକ୍ଷର ଶୃଙ୍ଖଳା ବିଷୟରେ ଅନୁକରଣ କରୁଥିଲୁ ।

ଅବସର ପରେ ସାର୍ ଗାଁର ସମବାୟ ସଂସ୍ଥାର ଦାୟିତ୍ୱ ନେଇ ଅନେକ କଲ୍ୟାଣମୂଳକ କାର୍ଯ୍ୟ କରିଥିଲେ । ଆମେ ଗାଁକୁ ବୁଲି ଆସିଲାବେଳେ ତାଙ୍କୁ ପ୍ରଣାମ ଜଣାଇଲା ବେଳେ ଭାରି ଖୁସି ହୋଇ ଭଲମନ୍ଦ ପଚାରି ବୁଝୁଥିଲେ । ମାଉସୀ ତ ଥିଲେ ଆମର ଅତିପ୍ରିୟ, ଜଣେ ବିରଳ ବ୍ୟକ୍ତିତ୍ୱ । ତାଙ୍କ ପିଲାମାନେ ସମସ୍ତେ ଉଚ୍ଚଶିକ୍ଷିତ । ତାଙ୍କ ଝିଅ ରମିନାନୀ ଓ ପୁଅ କାହ୍ନୁ (କୃଷ୍ଣଚନ୍ଦ୍ର) ବହୁତ ଭଲ ପଢୁଥିଲେ । ସେମାନେ ତାଙ୍କ ଚାକିରି ଜୀବନରେ ବି ସୁପ୍ରତିଷ୍ଠିତ ହୋଇ ବହୁତ ସମ୍ମାନ ଲାଭ କରିଛନ୍ତି । ଏବେ ଆମେ ସବୁ ବହୁବର୍ଷ ତଳୁ କର୍ମ ଜଞ୍ଜାଳରୁ ଅବସର ନେଇ ବାହାରେ ଅଧିଷ୍ଠିତ ହୋଇଛୁ । ଗାଁକୁ କେତେବେଳେ ଗଲେ ଅନେକ ପୁରୁଣା ସ୍ମୃତି ସ୍ୱତଃ ମନରେ ଉଙ୍କିମାରେ । ସାର୍‌ଙ୍କ ଘରଆଡେ ଆଖି ପଡିଲେ ତାଙ୍କ କଥା ସବୁ ମନେ ପଡିଥାଏ । ସେଇଭଳି ଜଣେ ଆଦର୍ଶ ଶିକ୍ଷକଙ୍କ ପଦରେ ମୋର ଭକ୍ତିପୂତ ପ୍ରଣାମ ।

ପ୍ରାକ୍ତନ ଅଧ୍ୟକ୍ଷ, ରାଜଧାନୀ ମହାବିଦ୍ୟାଳୟ,
ଭୁବନେଶ୍ୱର



ଡଃ ସଦାଶିବ ମହାପାତ୍ର, ପ୍ରାକ୍ତନ ଛାତ୍ର ରାଜଧାନୀ ମହାବିଦ୍ୟାଳୟ, ଭୁବନେଶ୍ୱରର ଅଧକ୍ଷ ଭାବରେ ଅବସର ଗ୍ରହଣ କରିଅଛନ୍ତି । ସେ ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାପିତ । ଛାତ୍ର ଜୀବନରେ ସେ ଜଣେ ମେଧାବୀ ଛାତ୍ର ଥିଲେ ଓ ସ୍ୱର୍ଗତ ମହାପାତ୍ରଙ୍କର ଅତି ପ୍ରିୟ ଛାତ୍ର ଭାବେ ଜଣାଶୁଣା ।



# ନାରାୟଣ ସାର୍‌ଙ୍କ ସ୍ମରଣେ କିଛି କଥା

ବିଧୁ ଭୂଷଣ ମିଶ୍ର

ବୀରନରସିଂହପୁର ଭାର୍ଗବୀ ହାଇସ୍କୁଲ୍‌ରେ ଶିକ୍ଷାଦାନ କ୍ଷେତ୍ରରେ ଯେଉଁ କେତେଜଣ ଆଗଧାଡିର ଶିକ୍ଷକ ରହିଥିଲେ ସେମାନଙ୍କ ଭିତରୁ ନାରାୟଣ ମହାପାତ୍ର (ସାର୍) ଅନ୍ୟତମ । ଜଣେ ଆଦର୍ଶ ଶିକ୍ଷକ, ଛାତ୍ରବତ୍ସଳ ଓ ସୁଶିକ୍ଷକ ଭାବେ ବହୁତ ସୁନାମ ଅର୍ଜନ କରିଥିଲେ । ତାଙ୍କର ଅନେକ ଛାତ୍ରଛାତ୍ରୀ ତାଙ୍କଠାରୁ ଶିକ୍ଷା ଗ୍ରହଣକରି ଜୀବନରେ ସୁପ୍ରତିଷ୍ଠିତ ହୋଇ ପାରିଛନ୍ତି । ଆମେ ଭାର୍ଗବୀ ହାଇସ୍କୁଲ୍‌ରେ ଶିକ୍ଷାଗ୍ରହଣ କରୁଥିବା ବେଳେ ସାର୍ ଆମକୁ ଭୁଗୋଳ ବିଷୟରେ ପଢାଉଥିଲେ । ତାଙ୍କର ଶିକ୍ଷାଦାନ ବହୁତ ଉଚ୍ଚକୋଟୀର ଥିଲା । ସାର୍ ବହୁତ ସରଳ ଓ ସାଧାରଣ ଜୀବନଯାପନ କରୁଥିଲେ । ସାର୍ ଆମ ଗ୍ରାମ ବୀରନରସିଂହପୁରର ବାସିନ୍ଦା ହୋଇଥିବାରୁ ତାଙ୍କ ସାଙ୍ଗେ ଆମମାନଙ୍କର ସଂପର୍କ ଅଧିକ ନିବିଡ ଥିଲା । ନିଜର ପିଲାମାନଙ୍କୁ ଉତ୍ତମ ଶିକ୍ଷାପ୍ରଦାନ କରାଇ ସୁପ୍ରତିଷ୍ଠିତ କରାଇ ପାରିଥିଲେ । ଗ୍ରାମର ପୁରଷୋତ୍ତମ ମିଶ୍ର (ବାଉ ଭାଇନା) ତାଙ୍କର ବଡ ଜୋଇଁ ଓ ରାୟଖଣ୍ଡି ଗ୍ରାମର ନାରାୟଣ ମିଶ୍ର ସାନ ଜୋଇଁ । ଉଭୟେ ଓଡିଶା ସରକାରଙ୍କର ଗୁରୁତ୍ୱପୂର୍ଣ୍ଣ ପଦବୀରେ କାର୍ଯ୍ୟକରି ସୁନାମ ଅର୍ଜନ କରିଥିଲେ । ସାର୍‌ଙ୍କ ସାନପୁଅ ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର (କାହ୍ନୁ ଭାଇନା) ଉଚ୍ଚଶିକ୍ଷା ପରେ ଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେଇ ବିଭିନ୍ନ ଜିଲ୍ଲାର ଜିଲ୍ଲାପାଳ ଓ ଓଡିଶା ସରକାରଙ୍କ ଅଧୀନରେ ଉଚ୍ଚ ପଦବୀରେ ସଫଳତାର ସହ କାର୍ଯ୍ୟ କରି ସୁନାମ ଅର୍ଜନ କରିବାପରେ ଏବେ ଅବସର ପରେ ଭୁବନେଶ୍ୱରରେ ରହୁଛନ୍ତି । ସାର୍‌ଙ୍କ ସାନଝିଅ ଡଃ ରମାମଣୀ ମିଶ୍ର (ରମି ନାନୀ) ଉଚ୍ଚଶିକ୍ଷା ପରେ ବିଭିନ୍ନ ସ୍କୁଲରେ ଶିକ୍ଷୟିତ୍ରୀ ଭାବେ ଶିକ୍ଷାଦାନ କରି ଶେଷରେ ୪ ନମ୍ବର ସ୍କୁଲ୍‌ରେ ପ୍ରଧାନ ଶିକ୍ଷୟିତ୍ରୀ ହୋଇ ଏବେ ଅବସର ପରେ ଭବନେଶ୍ୱରରେ ରହୁଛନ୍ତି । ସାର୍‌ଙ୍କ ନାତି, ନାତୁଣୀ ସମସ୍ତେ ଉଚ୍ଚଶିକ୍ଷା ଗ୍ରହଣ କରି ସୁପ୍ରତିଷ୍ଠିତ ହୋଇ ପାରିଛନ୍ତି । ସାର୍‌ଙ୍କୁ ଆମର ଏତିକି ପ୍ରାର୍ଥନା ସବୁବେଳେ ତାଙ୍କର ଗୁରୁପ୍ରତିମ ଆଶୀର୍ବାଦ ଆମ ସମସ୍ତଙ୍କ ଉପରେ ଥାଉ ଓ ସମସ୍ତେ ମଙ୍ଗଳରେ ରହିଥାଆନ୍ତୁ ।

ଓଁ ଜୟ ନୀଳକଣ୍ଠ, ଓଁ ଜୟ ଜଗନ୍ନାଥ

- ପିପି

ଶ୍ରୀଯୁକ୍ତ ବିଧୁଭୂଷଣ ମିଶ୍ର, ପ୍ରାକ୍ତନ ଛାତ୍ର, ଡେପୁଟି ମ୍ୟାନେଜର, ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ ଭାବେ କାର୍ଯ୍ୟରତ ଥାଇ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଅଛନ୍ତି । ଅଧୁନା ବିଏଲ୍-୩୦, ଭିଏସ୍ଏସ୍ ନଗର, ଭୁବନେଶ୍ୱରଠାରେ ଅବସ୍ଥାନ କରୁଅଛନ୍ତି ।



# ମୋର ପରମ ପୂଜ୍ୟ ଗୁରୁଜୀଙ୍କ ସ୍ମୃତିରେ

ଇଂ ନାରାୟଣ ଶତପଥୀ

ଜାତସ୍ୟହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟଚ
ତସ୍ମାଦପରିହାର୍ଯ୍ୟର୍ଥେ ନତ୍ୱଂ ଶୋଚିତୁମର୍ହସି

"କେହି ରହି ନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ
ସର୍ବେ ନିଜନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।"

ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ, ଏହାହିଁ ଧ୍ରୁବ ସତ୍ୟ । କିନ୍ତୁ କିଛି ବ୍ୟକ୍ତିବିଶେଷଙ୍କ ବିୟୋଗ ସମାଜରେ ଓ ପରିବାରରେ ଆଣିଦିଏ ଶୂନ୍ୟତା । ସେହିପରି ଜଣେ ଅସାମାନ୍ୟ ପ୍ରତିଷ୍ଠିତ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ମୋର ପୂଜ୍ୟଗୁରୁ ନାରାୟଣ ସାର୍ । ସେ ଆଜି ଆମ ଗହଣରେ ନାହାନ୍ତି ସତ, କିନ୍ତୁ ଛାଡ଼ିଯାଇଛନ୍ତି ତାଙ୍କ ଅମ୍ଳାନ ସ୍ମୃତି । ତାଙ୍କର ସ୍ମୃତି ଚାରଣ କରି ଆଜି ମୁଁ ନିଜକୁ ଧନ୍ୟ ମଣୁଛି । ମୁଁ ଥିଲି ତାଙ୍କର ଜଣେ ପ୍ରିୟ ଛାତ୍ର । ପୁରାତନ ଯୁଗର ଗୁରୁ ଶିଷ୍ୟ ପରମ୍ପରାକୁ ଆମେ ବଜାୟ ରଖିଥିଲୁ । ସେ ଥିଲେ ଜଣେ ସରଳ, ଅମାୟିକ, ସତ୍ୟନିଷ୍ଠ, ପ୍ରତ୍ୟୁତ୍ପନ୍ନମତି କର୍ତ୍ତବ୍ୟପରାୟଣ ଶିକ୍ଷକ ଓ ସମସ୍ତଙ୍କୁ ଭଲ ପାଉଥିବା ବିଜ୍ଞପୁରୁଷ । ସାଧାରଣଜ୍ଞାନ ଠାରୁ ଆରମ୍ଭ କରି ବୈଷୟିକଜ୍ଞାନ – ସବୁଥିରେ ତାଙ୍କର ଦକ୍ଷତା ଥିଲା । ଛାତ୍ରାବସ୍ଥାରୁ ନେଇ କର୍ମକ୍ଷେତ୍ର ପର୍ଯ୍ୟନ୍ତ ତାଙ୍କରି ପ୍ରେରଣା ମୋତେ ସମାଜରେ ପ୍ରତିଷ୍ଠିତ କରାଇଥିଲା । ଆଜି ମୁଁ ଯାହା, ସବୁକିଛି ତାଙ୍କର ଦାନ । ଆଜି ମୋର ପରିଣତ ବୟସରେ ମୁଁ ତାଙ୍କୁ ଝୁରୁଛି । ଠିକ୍ ସମୟରେ ତାଙ୍କରି ଦିଗ୍‌ଦର୍ଶନରେ ଅନୁପ୍ରାଣିତ ହୋଇ ମୁଁ ତାଙ୍କଠାରୁ ସଫଳ ଜୀବନର ମନ୍ତ୍ର ଶିଖିଥିଲି । ସେହି ପୂଜ୍ୟ ସାର୍‌ଙ୍କ ଅବର୍ତ୍ତମାନରେ ମୁଁ ଖୁବ୍ ଦୁଃଖ ଅନୁଭବ କରୁଅଛି । ମୁଁ ଓ ମୋ ପରି ଅନେକ, ଯେଉଁମାନେ ତାଙ୍କର ଛାତ୍ରଥିଲେ, ସମସ୍ତେ ଜଣେ ନିରାଡମ୍ବର ଆଦରଣୀୟ ଗୁରୁଜୀଙ୍କୁ ହରାଇଛନ୍ତି । ସେ ବାସ୍ତବିକ ଥିଲେ –

ଗୁରୁର୍ବ୍ରହ୍ମା, ଗୁରୁର୍ବିଷ୍ଣୁଃ, ଗୁରୁର୍ଦେବୋ ମହେଶ୍ୱରଃ
ଗୁରୁଃସାକ୍ଷାତ୍ ପରଂବ୍ରହ୍ମ, ତସ୍ମୈଶ୍ରୀ ଗୁରବେ ନମଃ

ହେ ଦିବଂଗତ ପରମାତ୍ମା ମୋର ପୂଜ୍ୟ ଗୁରୁଦେବ୍, ଆପଣଙ୍କ ଅମର ଆତ୍ମାର ସଦ୍‌ଗତି ହେଉ । ଏହାହିଁ ପରମ କାରୁଣିକ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାଥନା କରୁଛି । ଯେଉଁଠି ଅଛନ୍ତି ଯେପରି ଅଛନ୍ତି ସେହିଠାରେ ଥାଇ ମତେ ଓ ମୋ ପରି ଆପଣଙ୍କର ସମସ୍ତ ପୁରାତନ ଛାତ୍ରଙ୍କୁ ଆଶୀର୍ବାଦର ଅଭୟ ପ୍ରଦାନ କରନ୍ତୁ । ଶେଷରେ ଆପଣଙ୍କ ଶିକ୍ଷାରୁ ଏତିକି ଶିଖିଛି – ଜୀବନ ଭଳି ମୃତ୍ୟୁ ମଧ୍ୟ ଅସାଧାରଣ ଓ ଅମୂଲ୍ୟ । କାରଣ ଜୀବନର ପୂର୍ଣ୍ଣତା ଭିତରେ ମୃତ୍ୟୁର ଅର୍ଥ ଲୁଚି ରହିଛି ।

କେତେ କାଳ ଅବା ରହଣି
ଗଲେ ଚାଲିଥରେ ଫେରିଛି କିଏ ବା କହେନି ?

ଆପଣଙ୍କର ଶୋକସନ୍ତପ୍ତ ପୁରାତନ ଛାତ୍ର
ନାରାୟଣ ଶତପଥୀ

ଶ୍ରୀଯୁକ୍ତ ନାରାୟଣ ଶତପଥୀ ସ୍ୱର୍ଗତ ମହାପାତ୍ରଙ୍କର ଜଣେ ଅତ୍ୟନ୍ତ ପ୍ରିୟ ଛାତ୍ର ଯେ ମହାପାତ୍ର ମହୋଦୟଙ୍କ ଘରେ ରହି ଅଧ୍ୟୟନ କରି ଜଣେ ସ୍ୱନାମଧନ୍ୟ ଇଂଜିନିୟର ଭାବେ ଅବସରପ୍ରାପ୍ତ । ସେ ବର୍ତ୍ତମାନ ପୁରୀରେ ଅବସ୍ଥାପିତ ।



# ଜଣେ ନିରବ ସାଧକଙ୍କ ଆତ୍ମଲିପି

ଶଶାଙ୍କ ଶେଖର ମିଶ୍ର

ମୋର ଶିକ୍ଷକ ଦିବଂଗତ ନାରାୟଣ ମହାପାତ୍ରଙ୍କ ବିଷୟରେ ସଂକ୍ଷିପ୍ତରେ କିଛି ଅନୁଭୂତିରେ ଆଣିଥିବା କଥା ଲେଖିବାକୁ ଅନୁରୋଧ ଆସେ, ମୁଁ ଖୁସିରେ ଆତ୍ମହରା ହୋଇଗଲି । ଭାବିଲି – ଇଏ ଗୋଟେ କି କଥା ! ଏ ସୁଯୋଗ କ'ଣ ହାତଛଡା କରିବା କଥା ! ବଞ୍ଚିଥିବା ସମୟରେ ସାର୍‌ଙ୍କ ଋଣ ଶୁଝିବାର କୌଣସି ସୁଯୋଗ ନଥିଲା । ବର୍ତ୍ତମାନ ତାଙ୍କ ସୁପୁତ୍ର ଶ୍ରୀକୃଷ୍ଣ ଚନ୍ଦ୍ର ମହାପାତ୍ର (IAS) ତାଙ୍କ ନନାଙ୍କ (ବାପା) ସ୍ୱଲିଖିତ ଆତ୍ମଚରିତର ପୁସ୍ତକୀକରଣ ପାଇଁ ତାଙ୍କର ପ୍ରତ୍ୟକ୍ଷ ଛାତ୍ର କେତେଜଣଙ୍କୁ ସେଦିନ ଅନୁରୋଧ ଜଣାଇ ଥିଲେ ।

କାର୍ଯ୍ୟଟି ଯେତେ ସହଜରେ ହୋଇଯିବ ବୋଲି ଭାବିଥିଲି, ବାସ୍ତବରେ ଲେଖିବା ବେଳେ କାମଟି ସହଜ ସାଧବୋଧ ହେଲାନାହିଁ । ସାର୍‌ଙ୍କ କଥା – ତା' ପୁଣି ସଂକ୍ଷେପରେ– ଏ ତ ଦୁରୂହ ବ୍ୟାପାର ! ସାର୍‌ଙ୍କ କଥା ଯେତେ ଲେଖିଲେ ବି ସରିବ ନାହିଁ । ଲେଖିବା ସମୟରେ ଲାଗୁଛି, କାହାକୁ ଲେଖିବି – କାହାକୁ ବାଦ୍ ଦେବି ? ଏ' ତ ବିନ୍ଦୁରେ ସିନ୍ଧୁ ଦର୍ଶନ କରାଇବା ପରି କାର୍ଯ୍ୟଟିଏ ହେବ ।

ସାର୍‌ଙ୍କର ମୁଁ ଜଣେ ପ୍ରତ୍ୟକ୍ଷ ଛାତ୍ର ଥିଲି । ପ୍ରାୟ ଚାରି ଶିକ୍ଷା ବର୍ଷ ଧରି - ଅଷ୍ଟମରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ତାଙ୍କ ପାଖରୁ ମୁଁ ଶିକ୍ଷା ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଛି । ସେ ମୁଖ୍ୟତଃ ଆମକୁ ଭୂଗୋଳ ପଢାଉଥିଲେ ଏବଂ କେବେ କେବେ ଇଂରାଜୀ ପଢାଉଥିବା ଶିକ୍ଷକଙ୍କ ଅନୁପସ୍ଥିତିରେ ଇଂରାଜୀ କ୍ଲାସ୍ ମଧ୍ୟ ନେଉଥିଲେ । ସାଧାରଣତଃ ହାଇସ୍କୁଲ୍ ମାନଙ୍କରେ ସେ ସମୟରେ ଅଙ୍କ, ଇଂରାଜୀ ଏବଂ ବିଜ୍ଞାନ ପଢାଉଥିବା ଶିକ୍ଷକମାନଙ୍କର କିଛିଟା ଅଲିଖିତ ଆଧିପତ୍ୟ ରହୁଥିଲା । ଇତିହାସ, ଭୂଗୋଳ, ସମାଜ ବିଜ୍ଞାନ, ହିନ୍ଦି, ସଂସ୍କୃତ ଆଦି ବିଷୟଗୁଡିକୁ ସାଧାରଣ ଛାତ୍ରମାନେ ଏତେ ଗୁରୁତ୍ୱ ଦେଉନଥିଲେ । ଫଳତଃ, ସେଗୁଡିକ ପଢାଇବାର ଦାୟିତ୍ୱରେ ଥିବା

ଶିକ୍ଷକମାନେ ମଧ୍ୟ ଛାତ୍ରମାନଙ୍କଠାରୁ ବୋଧହୁଏ ସେଇ ପରିମାଣର ସମ୍ମାନ ଦାବି କରି ପାରୁନଥିଲେ । ସାର୍ କିନ୍ତୁ ଥିଲେ ଏହାର ଏକ ବିରଳ ବ୍ୟତିକ୍ରମ ।

ସେ ଯାହା ହେଉ ମୁଁ ଅଷ୍ଟମ ଶ୍ରେଣୀରେ ସାର୍ ଭୂଗୋଳ ପଢାଇବାର ଶୈଳୀ ଦେଖି ପ୍ରଥମରୁ ହିଁ ଅଭିଭୂତ ହୋଇଯାଇଥିଲି । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ଏପରି ଉଚ୍ଚମାନର ଥିଲା, ଯାହା ଭୂଗୋଳ ପରି ଆପାତତଃ ଏକ ଶୁଷ୍କ ବିଷୟ ମଧ୍ୟ ସାହିତ୍ୟ ପରି ରସଯୁକ୍ତ ହୋଇ ଛାତ୍ରମାନଙ୍କ ମନରେ ଗଭୀର ରେଖାପାତ କରିପାରୁଥିଲା । ଏ କଥା ମୁଁ ପ୍ରଥମ ଦିନ ହିଁ ଅନୁଭବରେ ଆଣି ପାରିଥିଲି ଏବଂ ପରବର୍ତ୍ତି ଭୂଗୋଳ କ୍ଲାସ୍ ପାଇଁ ଆଗ୍ରହର ସହିତ ଅପେକ୍ଷା କରୁଥିଲି । ଏକଥା ସେ ସମୟରେ ତାଙ୍କ ଛାତ୍ର ଥିବା ସମସ୍ତେ ନିଶ୍ଚୟ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ସେତେବେଳେ ତାଙ୍କର, ଏକ ଅଦ୍ଭୁତ ଶିକ୍ଷାଦାନ ପ୍ରଣାଳୀ ଆମମାନଙ୍କୁ ଅଧିକ ଆକର୍ଷିତ କରିଥିଲା । ସେଇଟି ହେଲା – "map reading" । ଖୁବ୍ ଆଶ୍ଚର୍ଯ୍ୟ ଲାଗୁଥିଲା ଯେତେବେଳେ ସେ ଛାତ୍ରମାନଙ୍କ ଦିଗକୁ ଚାହିଁ ପଢାଉଥିବା ଅବସ୍ଥାରେ ଗୋଟିଏ ଛୋଟ ବାଡି (Pointer) ସାହାଯ୍ୟରେ ପଛପଟ କାନ୍ଥରେ ଟଣାଯାଇଥିବା ମାନଚିତ୍ରରୁ ସେ ଭାରତ, ଓଡିଶା ବା ପୃଥିବୀ ମାନଚିତ୍ର ଯାହା ହେଉନା କାହିଁକି - ପାଠ୍ୟକ୍ରମ ସଂମ୍ପର୍କିତ ସ୍ଥାନଗୁଡ଼ିକ ନିର୍ଭୁଲ ଭାବେ ଦର୍ଶାଇ ପାରୁଥିଲେ । କେତେ ଗଭୀର ଅନୁଧ୍ୟାନ ଏବଂ ଅଭ୍ୟାସ ଥିଲେ ଏପରି କରିହେବ – ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡୁଥିଲା । ତାଙ୍କ ବ୍ୟତୀତ ଅନ୍ୟ କୌଣସି ଶିକ୍ଷକଙ୍କ ନିକଟରେ ଏଭଳି Blind Map reading ମୁଁ ଏଯାବତ୍ ଶୁଣିନାହିଁ କି ଦେଖିନାହିଁ ।

ଏ ଗଲା ଶିକ୍ଷାଦାନ ପ୍ରଣାଳୀର କଥା । ସେ ସ୍ୱଭାବରେ ଖୁବ୍ ଗମ୍ଭୀର ପ୍ରକୃତିର ଥିଲେ । କେବେ ବି କୌଣସି ଛାତ୍ରଙ୍କୁ ରାଗିବା ବା ଦଣ୍ଡ ଦେବା ବା ସର୍ବସମ୍ମୁଖରେ କାହାକୁ ଅପମାନଜନକ ମନ୍ତବ୍ୟ ଦେବା ମୁଁ ଦେଖିନାହିଁ ଯାହାକି ଶ୍ରେଣୀ ଗୃହରେ କିଛି ଶିକ୍ଷକ ପିଲାର ଭୁଲ୍ ଦର୍ଶାଇ ଆଘାତ ବ୍ୟଞ୍ଜକ କଥା କହିବାର ପ୍ରଣାଳୀ ଆପଣେଇ ଥାନ୍ତି । ଅବଶ୍ୟ ପଢାଉଥିବା ସମୟରେ କେହି ଛାତ୍ର ଅନ୍ୟମନସ୍କ ରହୁଥିବାର ଲକ୍ଷ୍ୟ କଲେ ବିରକ୍ତି ପ୍ରକାଶ କରିପକାନ୍ତି ।

ସାର୍ ଥିଲେ – ୨୪ x ୭ ଜଣେ ଶିକ୍ଷକ । ଖୁବ୍ ନିରାଡମ୍ବର ବେଶ ପୋଷାକରେ ସେ ସ୍କୁଲ୍‌କୁ ଆସନ୍ତି । ଯେତେବେଳେ ଦେଖିବ, ହାତରେ କୌଣସି ନା କୌଣସି ବହିଟିଏ ଧରିଥିବେ । ଦେଖାହେଲେ କହିବେ – ଶ୍ରେଣୀ ପାଠ ପଢିବାକୁ ବିରକ୍ତ ଲାଗିଲେ କିଛି କିଛି ବାହାର ବହି, ଇଂରାଜୀ ଖବରକାଗଜ ପଢିବା ଅଭ୍ୟାସ ରଖ, ଭବିଷ୍ୟତରେ ପାଠ୍ୟପୁସ୍ତକ ଅପେକ୍ଷା ସେଇ ବାହାର ପୁସ୍ତକ-ଲବ୍ଧ ଜ୍ଞାନ କାମରେ ଆସିବ । ଖୁବ୍ ସତକଥା, ସେତେବେଳେ ସେ କଥାର ମର୍ମ ବୁଝି ହେଉନଥିଲା । ମୁଁ ବ୍ୟକ୍ତିଗତ ଭାବରେ ପ୍ରକାଶ କରିବାକୁ କୁଣ୍ଠିତ ହେବିନି ଯେ ସାର୍‌ଙ୍କର ସେଇ କଥାକୁ କାମରେ ଲଗାଇ ବହୁ ଉପକୃତ ହୋଇଛି ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ସେଇ ପାଠ୍ୟକ୍ରମ ବହିର୍ଭୂତ ପୁସ୍ତକ

ପଠନରେ ବ୍ୟସ୍ତ ରହିଛି । ଏଥିପାଇଁ ମୁଁ ସାର୍‌ଙ୍କ ନିକଟରେ କୃତଜ୍ଞ ।

ତାଙ୍କର ଆଉ ଏକ ସୁଗୁଣ ମୁଁ ସେଇ ଛାତ୍ର ଅବସ୍ଥାରୁ ହିଁ ଲକ୍ଷ୍ୟ କରିପାରିଥିଲି । ସାର୍‌ଙ୍କ ଭାଷଣ ଦେବା ପ୍ରଣାଳୀ । ସାଧାରଣତନ୍ତ୍ର ଦିବସ, ସ୍ୱାଧୀନତା ଦିବସ ବା କେଉଁ ଶିକ୍ଷକଙ୍କର ବଦଳି ବା ଅବସରଜନିତ ଅୟୋଜିତ ସଭା ସମିତିରେ ସେ ଖୁବ୍ ଭାବ ଗମ୍ଭୀର ଭାଷଣ ଦେଇ ଶ୍ରୋତାମଣ୍ଡଳୀକୁ ଖୁବ୍ ପ୍ରଭାବିତ କରିପାରୁଥିଲେ ଏବଂ ନିଜର ସତ୍ୟବାଦୀ ବନ ବିଦ୍ୟାଳୟର ଶିକ୍ଷକ ଜୀବନ ବିଷୟରେ ବହୁ ଅଙ୍ଗେନିଭା କଥାର ଅବତାରଣା କରି ସଭାଟିକୁ ମନ୍ତ୍ରମୁଗ୍ଧ କରି ରଖୁଥିଲେ ।

ଆଗରୁ କହିଛି – ସାର୍ ଜଣେ ୨୪ X ୭ ଶିକ୍ଷକ ଥିଲେ । ଏକଥା ହୁଏତ ଆମ ଗାଁରେ ଥିବା ବା ଅନ୍ୟ ଗାଁରେ ଥିବା ଛାତ୍ରମାନେ ବୋଧହୁଏ ଜାଣିନଥିବେ ଯେ - ସାର୍ ଅବସର ଗ୍ରହଣ କରିବାପରେ ଅନ୍ୟ ଅବସରପ୍ରାପ୍ତ ଶିକ୍ଷକଙ୍କ ପରି, ଟିୟୁସନ କରି, ବିଭିନ୍ନ ବୃତ୍ତିକୁ ଆଦରି ନେଇ ବା ଘରେ ରହି ଆଳସ୍ୟପୂର୍ଣ୍ଣ ଜୀବନ ବିତାଇ ନଥିଲେ । ଆମ ପଡୋଶୀ ଗ୍ରାମ ପ୍ରତାପରାମଚନ୍ଦ୍ରପୁର (ପାଟେଲୀ)ରେ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟର ଆବଶ୍ୟକତା ଅନୁଭବ କରି ସେଠାରେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ନିଜର ସମସ୍ତ ଶାରୀରିକ, ଅର୍ଥନୈତିକ ସମସ୍ୟାକୁ ଖାତିର ନକରି, ବିଭିନ୍ନ ସରକାରୀ ସଂସ୍ଥା ସହ ଯୋଗାଯୋଗ କରି ସେଠାରେ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରତିଷ୍ଠା କରାଇବାରେ ସଫଳ ହୋଇଥିଲେ । ସେ ଜାଣିଥିବା ଅନେକ କୃତୀ, ସଚ୍ଚୋଟ ଅବସରପ୍ରାପ୍ତ ଶିକ୍ଷକଙ୍କୁ ଡାକି ସେ ସ୍କୁଲ୍‌ରେ ରଖାଇ ସ୍ୱଳ୍ପ ବେତନରେ ଶିକ୍ଷାଦାନ କରାଇବାର ବ୍ୟବସ୍ଥା କରାଇଥିଲେ । କହିବା ଅନାବଶ୍ୟକ – ସାର୍‌ଙ୍କ ଅବର୍ତ୍ତମାନରେ ସେ କ୍ଷୁଦ୍ର ଅନୁଷ୍ଠାନଟି ବର୍ତ୍ତମାନ ଏକ ଉଚ୍ଚମାନର ବିଦ୍ୟାଳୟ ରୂପେ ପ୍ରତିଷ୍ଠିତ ହୋଇପାରିଛି । ସ୍କୁଲ୍ ପ୍ରତିଷ୍ଠା ହେବାର ଆଦି କାଳରେ ସାର୍‌ଙ୍କର ଯେଉଁ ମାନସିକ, ସାମାଜିକ ଯନ୍ତ୍ରଣା କଥା ବୋଧହୁଏ ବର୍ତ୍ତମାନ ପିଢିର ଛାତ୍ରମାନେ ହୃଦୟଙ୍ଗମ କରିପାରିବେ ନାହିଁ ।

ଆଗରୁ କହିଛି – ତାଙ୍କ ସହିତ ମୋର କେବଳ ଛାତ୍ର/ ଶିକ୍ଷକ ସମ୍ପର୍କଟି ବଳବତ୍ତର ରହିଥିଲା । ତେଣୁ ତାଙ୍କ ବ୍ୟକ୍ତିଗତ ଜୀବନଶୈଳୀ, ରୁଚି, ଅରୁଚି ତାଙ୍କ ସାମାଜିକ ସମ୍ପୃକ୍ତି ବା ସାମୂହିକ କାର୍ଯ୍ୟ ସମ୍ପାଦନରେ ତାଙ୍କ ସାମର୍ଥ୍ୟ/ ଅସାମର୍ଥ୍ୟ ବିଷୟରେ ମୁଁ ବିଶେଷ କିଛି ଜାଣିବାର ସୁଯୋଗ ପାଇନାହିଁ । କୌଣସି ବ୍ୟକ୍ତିଗତ ବା ପାରିବାରିକ କାରଣରୁ ହେଉ ବା ନିଜର ସ୍ୱଭାବ ସୁଲଭ ଗୁଣ ଯୋଗୁଁ ହେଉ ସାର୍ ସର୍ବଦା ଗମ୍ଭୀର ରହୁଥିଲେ ଏବଂ ସ୍ୱଭାବତଃ ସ୍ୱଳ୍ପଭାଷୀ ଥିଲେ । ଏଇ ନିରବଚ୍ଛିନ୍ନ ଗାମ୍ଭୀର୍ଯ୍ୟ ହିଁ ତାଙ୍କଠାରୁ ଆମକୁ ଯଥେଷ୍ଟ ଦୂରେଇ ରଖୁଥିଲା । ଆମେ ତାଙ୍କର ଏଇ ଗୁଣକୁ ଗୁରୁଜନ ସୁଲଭ ଗାମ୍ଭୀର୍ଯ୍ୟ ବୋଲି ଧରି ନେଇଥିଲୁ ।

ମୋ ନନା (ବାପା) ମଧ୍ୟ ତାଙ୍କର ଜଣେ ମୁଗ୍ଧ ପ୍ରଶଂସକ ଥିଲେ । ତାଙ୍କ ସମୟର ନିର୍ଦ୍ଦିଷ୍ଟ କେତେକ ନୀତିନିଷ୍ଠ ବ୍ୟକ୍ତିବିଶେଷଙ୍କ ବିଷୟରେ

ଆଲୋଚନାର ଅବସରରେ ସେ ବାରମ୍ବାର ସାର୍‌ଙ୍କ ପ୍ରସଙ୍ଗ ଦୋହରାଉ ଥିବାର ମୋର ମନେଅଛି । ମୁଁ ଅନେକ ବାର ତାଙ୍କ ମୁହଁରୁ ସାର୍‌ଙ୍କ ପ୍ରଶଂସା ଶୁଣିଛି ।

ଆଗରୁ କହିଛି – ସଂକ୍ଷିପ୍ତରେ ତାଙ୍କ ଗୁଣାବଳୀ, ବା ମୁଁ ତାଙ୍କୁ ଯେମିତି ଜାଣିଛି, ସବୁକଥା କହିବା ସମ୍ଭବ ହେଉନାହିଁ । ସବୁବେଳେ ମନେହେଉଛି ବହୁତ କିଛି କହିବାକୁ ରହିଗଲା । ଯାହା କହିବାକୁ ଚାହୁଁଥିଲି ଠିକ୍ ସେ କଥା ବା ଠିକ୍ ଯେଉଁ ଢଙ୍ଗରେ କଥାଟି କହିବା କଥା, କହି ହେଲା ନାହିଁ । ବାସ୍ତବିକ ସବୁକଥା ସ୍ୱଳ୍ପ ପରିସରରେ କହିବା ସମ୍ଭବ ନୁହେଁ ।

ଆଜି ତାଙ୍କ ଅମ୍ଚରିତ ଉନ୍ମୋଚନ ଅବସରରେ ମୁଁ ତାଙ୍କ ସୁପୁତ୍ରଙ୍କୁ ଧନ୍ୟବାଦ ନଦେଇ ରହିପାରୁନି । ଏପରି ଏକ ମହତ୍ କାର୍ଯ୍ୟର ପ୍ରୟାସରେ ସେ ନିଜର ପିତୃ ଋଣର କିଛି ଅଂଶ ପରିଶୋଧ କରିପାରିଛନ୍ତି ।

କବିଙ୍କ ଭାଷାରେ –

"ନ ରହେ ଜୀବନ ରହଇ ଜୀବନୀ
ଇତିହାସ ଏଥି ସାକ୍ଷୀ ପୁରାତନୀ"

ଏମିତିରେ ତ ସାର୍ ତାଙ୍କ ଛାତ୍ରମାନଙ୍କ ହୃଦୟରେ ସର୍ବଥା ଜୀବନ୍ତ ଥିଲେ, ଆତ୍ମଚରିତ ପୁସ୍ତକଟି ତାଙ୍କୁ ଅନ୍ୟମାନଙ୍କ ହୃଦୟରେ ଚିରକାଳ ଜୀବନ୍ତ ରଖିବାରେ ସହାୟକ ହେବ ନିଶ୍ଚୟ ।

ବୀରନରସିଂହପୁର, ପୁରୀ
ମୋବାଇଲ୍ ନଂ - ୯୯୩୭୯୨୩୬୦୬



ଶ୍ରୀ ଶଶାଙ୍କ ଶେଖର ମିଶ୍ର, ପ୍ରାକ୍ତନ ଛାତ୍ର ସାହିତ୍ୟାନୁରାଗୀ ଥିଲେ । ତାଙ୍କର ଲେଖା ବହୁ ଲବ୍ଧ ପ୍ରତିଷ୍ଠିତ ଲେଖକମାନଙ୍କର ସାହିତ୍ୟ ସୃଷ୍ଟି ସହ ତୁଳନୀୟ । ଅନୁଭବ, ଅନୁଭୂତି ଓ ଆନ୍ତରିକତାରେ ସମୃଦ୍ଧ ତାଙ୍କର ଗଳ୍ପ ।



ପୂଜ୍ୟ ୰ନାରାୟଣ ସାରଙ୍କ ଆତ୍ମଚରିତ ପ୍ରକାଶନ
ଅବସରରେ ଭକ୍ତି ଅର୍ଘ୍ୟ

# ଅଭୁଲା ସ୍ମୃତିରୁ ଗୋଟିଏ

**ଶକୁନ୍ତଳା ମିଶ୍ର**

ଭାର୍ଗବୀ ହାଇସ୍କୁଲ୍ । ନାମ ଉଚ୍ଚାରଣ ମାତ୍ରେ ପୁଲକିତ ହୋଇଉଠେ ମନ ପ୍ରାଣ । ପୁଣ୍ୟତୋୟା ଭାର୍ଗବୀ ନଦୀକୂଳରେ ଅବସ୍ଥିତ ଏକ ପୁରାତନ ବିଦ୍ୟାଳୟ । ସେହି ସ୍କୁଲ୍‌ରେ ମୋର ଛାତ୍ରୀ ଜୀବନର ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଥିଲା । ସେ ସମୟରେ ସ୍କୁଲ୍‌ର ଖୁବ୍ ସୁନାମ ଥିଲା । ବିଦ୍ୟାଳୟର ଦେବୋପମ, ଛାତ୍ରବତ୍ସଳ ଶିକ୍ଷକମାନଙ୍କର ଅବଦାନ, ଆଦର୍ଶ ଓ ଶିକ୍ଷା ଆମକୁ ଜୀବନରେ ସଫଳ ମଣିଷ କରି ଗଢ଼ି ତୋଳିବାରେ ସହାୟ ହୋଇଥିଲା । ସ୍କୁଲର ସାଙ୍ଗସାଥୀ, ପରିବେଶ, ଉତ୍ସବ, ପୂଜା, ଡ୍ରାମା, ଖେଳ, ସର୍ବୋପରି ଦାମିଆକାଣ୍ଡି ବରଗଛ ମୂଳ ଅପର୍ତ୍ତି ଗୁଡ଼ିଆ ଦୋକାନର ସ୍ମୃତି ଏବେ ହୃଦୟରେ ଚିର ଜାଗରୂକ ହୋଇ ରହିଛି । ଗହୀରି ବିଲରେ ପଶି ପଶି ସ୍କୁଲ୍‌କୁ ଯିବା, କେବେ ମୁଗ ଛୁଇଁ ଖାଇ ଖାଇ ତ କେବେ କଟା ହୋଇ ପଡ଼ିଥିବା ପାଚିଲା ଧାନ ବିଡ଼ାକୁ ଡେଇଁ ଡେଇଁ ଯିବା ଏକ ନିଆରା ଅନୁଭୂତି । ବର୍ଷା ଦିନେ ଲହଡ଼ି ଭାଙ୍ଗୁଥାଏ, ରାସ୍ତା ଦୁଇକଡ଼େ ସବୁଜ ଧାନକ୍ଷେତ । ମଝିରେ ନାଲି ସଡ଼କ । ଶୋଷ କଲେ ଏପଟ ବିଲରୁ ସେପଟ ବିଲକୁ ମୋଟା ସିମେଣ୍ଟପାଇପ୍ ଦେଇ ଯାଉଥିବା ସ୍ୱଚ୍ଛ ପାଣିକୁ ମୁଁ ପରମ ଆନନ୍ଦରେ ପିଇଯାଏ । ନଥାଏ ବିକାର କି କୁଣ୍ଠା ।

ସ୍କୁଲ୍ କଥା ଭାବିଲେ ମନେ ପଡ଼ନ୍ତି ଚିରପୂଜନୀୟ ଶିକ୍ଷକ ମାନେ । ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ, ପୂଜ୍ୟ ନାରାୟଣ ମହାପାତ୍ର, ଯଦୁବାବୁ, କ୍ଷୀରୋଦ ବାବୁ, ଅନନ୍ତ ବାବୁ, କଣ୍ଣ ପଣ୍ଡିତେ, ଭାନୁ ବାବୁ, ବାଇଧର ବାବୁ, ଉମା ବାବୁ, ବୀର ପ୍ରତାପପୁରର ଯଦୁ ମହାରଣା ସାର୍, ଓ ଅନ୍ୟମାନେ । ଯାହା ପାଇଁ ଆଜି ଏ ଲେଖାର ଅବତାରଣା, ସେ ହେଉଛି ୰ନାରାୟଣ ମହାପାତ୍ର । ମୋର ପରମ ପୂଜ୍ୟ ଚିରସ୍ମରଣୀୟ ସାର୍ । ସେ ଷଷ୍ଠ ଶ୍ରେଣୀରେ ଆମର ଶ୍ରେଣୀ ଶିକ୍ଷକ ଥିଲେ । ଉଚ୍ଚ ବିଦ୍ୟାଳୟରେ ଶିକ୍ଷା ଅର୍ଜନର ପ୍ରଥମ ସୋପାନରେ ସେ ଆମକୁ ଖଡ଼ି ଛୁଆଇଁ ଥିଲେ । ଅତି ସ୍ନେହଶୀଳ ମିଷ୍ଟଭାଷୀ ମଣିଷ ଜଣେ । ସେ କେବେ ରାଗିବା ମୁଁ ଦେଖି ନାହିଁ । ମୁଁ ସେତେବେଳେ ବହୁତ ଛୋଟ ଥିଲି । ପାଠରେ ବେଶି ମନ ଦିଏ ନାହିଁ । ଖେଳ ଛୁଟିରେ କେମିତି ଜାମୁ କୋଳି ଗୋଟେଇବାକୁ ଯିବି । ଥେଣ୍ଟପୁରରୁ କାହାଠାରୁ କେମିତି ଲୁଣ ଆଣି କଞ୍ଚା ଆମ୍ବ ଖାଇବି । ପୁଣି ପୂର୍ଣ୍ଣ

ଓ ଗିରୀଶ ସଙ୍ଗେ ନଈକୂଳ ରୁ ମୂଳା ଓପାଡ଼ି ଖାଇବା ଏଇଥିରେ ବେଶି ମାତେ । ତା' ଛଡ଼ା ଖୁଣ୍ଟେଇ ଖେଳ, ଗପ ଓ କବିତା ଲେଖିବା ମୋର ସେହି ପିଲା ଦିନୁ ନିଶା । ସାର୍‌ଙ୍କ ଜୀବନୀରେ ସ୍କୁଲ୍ ବିଷୟରେ ଅନେକ କିଛି ଲେଖିଥିବେ । କାରଣ ତାହା ଥିଲା ତାଙ୍କର କର୍ମକ୍ଷେତ୍ର । ସାର୍‌ଙ୍କ ବିଷୟରେ ଲେଖିବାକୁ ଯାଇ ମୁଁ ବି ସ୍କୁଲ୍ କଥା କିଛି ଲେଖିଗଲି । ପିଲାଦିନ ସ୍ମୃତି ସତରେ ଅପାସୋରା । ତଥାପି ଅନେକ କଥା ଭୁଲି ହୋଇଯାଏ । କିନ୍ତୁ ୰ନାରାୟଣ ସାର୍‌ଙ୍କର ସେ ଗୋଟିଏ କଥା ମୁଁ ଆଦୌ ଭୁଲି ପାରିନାହିଁ । ଏବେବି ସଜଳ ହୋଇ ଉଠେ ସେହି ଦୃଶ୍ୟଟି । ତାଙ୍କର ମନଖୋଲା ଉଚ୍ଛୁଳା ହସ । ଦିନକର କଥା । ମୁଁ ତ ବଡ଼ ଆଲୁରବାଲୁର ଥିଲି । ଦେହମୁଣ୍ଡର ଆଦୌ ଯତ୍ନ ନିଏ ନାହିଁ । ଗହଳ ଚୁଟି ମୋର ଝୁମ୍ପୁର ଝୁମ୍ପୁର ହୋଇ, ମୁହଁ, ଆଖି ଘୋଡ଼ାଇ ପକାଇଥାଏ । ନାରାୟଣ ସାର୍ ମୋତେ ଦେଖି ହସି ହସି କହିଲେ "ଆଲୋ ତୁ କୋଉ ଶୁଖୁଆ ଖାଇଚଣ୍ଡି ?" ମୁଁ ସହଜ ଭାବରେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି "ମୁଁ ଖଇଙ୍ଗା ଶୁଖୁଆ ଖାଇଚଣ୍ଡି ।" ମୋର ମନେ ଅଛି ସାର ମୋ କଥା ଶୁଣି ଖୁବ୍ ହସିଲେ । କିନ୍ତୁ ଉମା ସାର୍‌ଙ୍କୁ ମୁଁ ଡ଼ରେ । ସେ ଅଙ୍କ ସାର୍ ଥିଲେ ବୋଲି । ନାରାୟଣ ସାର୍ ପାଠ ପଢ଼ାଇବାରେ ବିଚକ୍ଷଣ ଥିଲେ । ପିଲାମାନଙ୍କୁ ନିଜର କରିବାରେ ଥିଲେ ପିତୃତୁଲ୍ୟ । ସତ୍ୟବାଦୀ ବନ ବିଦ୍ୟାଳୟର ପଞ୍ଚସଖା ସଂସ୍କୃତିରେ ଉଦ୍‌ବୁଦ୍ଧ ୰ ନାରାୟଣ ସାର୍‌ଙ୍କ ବ୍ୟକ୍ତିତ୍ୱ ସ୍ୱତନ୍ତ୍ର ଥିଲା ଓ ତାର ପ୍ରଭାବ ଛାତ୍ର ଛାତ୍ରୀଙ୍କ ଉପରେ ଗଭୀର ରେଖାପାତ କରିଥିଲା ।

ଦେବତୁଲ୍ୟ ସେହି ନାରାୟଣ ସାର୍‌ଙ୍କ ପୁଅ କାହ୍ନୁ ଆମ ସାଙ୍ଗରେ ପଢୁଥିଲା । ସେ ସବୁବେଳେ କ୍ଲାସ୍‌ରେ ଫାଷ୍ଟ । ମୁଁ ମୋ ପିଲା ବୁଦ୍ଧିରେ ଭାବୁଥିଲି, ସାର୍ ତାକୁ ସବୁବେଳେ ଘରେ ବହୁତ ପଢ଼େଇ ଦେଉଛନ୍ତି । ତେଣୁ ସେ କ୍ଲାସ୍‌ରେ ଫାଷ୍ଟ ହୋଇଯାଉଛି । କିନ୍ତୁ ଛାତ୍ର ଜୀବନର ଶେଷ ପର୍ଯ୍ୟନ୍ତ ସେ ଯେତେବେଳେ ଫାଷ୍ଟ ହୋଇ ଚାଲିଲା ମୁଁ ଜାଣିଲି ଯେ ନାଁ ଏଟା ନିଜର କରାମତି । ସାର୍‌ଙ୍କ ଝିଅ ରମିନାନୀ ସେତେବେଳେ ଦଶମ ଶ୍ରେଣୀରେ ପଢୁଥିଲେ । ସେ ବି ଭଲ ପଢୁଥିଲେ ଏବଂ ପରୀକ୍ଷା ପାଖ ହେଲେ କହୁଥିଲେ "ଅଇଲା ପରୀକ୍ଷା ରାକ୍ଷସୀ, ନେବ ମୋ ପ୍ରାଣ ଶୋଷି" । ସେ କଥାଟି ବି ମୋର ମନେ ଅଛି । ତେବେ ପିଲାମାନେ ଭଲ ପଢ଼ିବା ନିଶ୍ଚୟ ସାର୍‌ଙ୍କ ଶିକ୍ଷା, ଏଥିରେ ଦ୍ୱିମତ ନାହିଁ ।ସାର୍ ଭଲ କାବ୍ୟ କବିତା ଲେଖୁଥିଲେ । ସାହିତ୍ୟ ଶିକ୍ଷକ ବି ଥିଲେ । ଛୋଟ ଥିବାରୁ ଏତେ କଥା ଜାଣି ପାରିନଥିଲି । ପରେ ଜାଣି ନିଜକୁ ଧନ୍ୟ ମନେ କଲି, ଏଭଳି ଶିକ୍ଷକଙ୍କ ଆଦର୍ଶ ଓ ଶିକ୍ଷା ପାଇବାର ସୌଭାଗ୍ୟ ମୁଁ ପାଇଥିଲି ବୋଲି । ସାର୍‌ଙ୍କ ଝିଅ ରମିନାନୀ ଆମ ସ୍କୁଲ୍‌ରୁ ମାଟ୍ରିକ୍ ପାସ୍ କରିଥିବା ପ୍ରଥମ ଛାତ୍ରୀ ।ସେ ଭଲ ଛାତ୍ରୀ ଥିଲେ, ମାତ୍ର ମାଟ୍ରିକ୍ ପାସ୍ କରିଗଲା ପରେ ସେ ବିବାହ କରିଗଲେ । ତାଙ୍କ ବାହାଘର ପାଲିଙ୍କି ଆମ ଗାଁ ବାଟ ଦେଇ ଶାଶୁ ଘରକୁ ଯିବା ଆଜି ବି ମୋ ଆଖି ଆଗରେ ଦିଶିଯାଉଛି । ତଥାପି ନିଜର ମନୋବଳ, ଓ ଅଦମ୍ୟ ଚେଷ୍ଟାରେ ସେ ଏମ୍.ଏ.ଏମ୍.ଇଡ଼ି କରି PHD କରି ଭୁବନେଶ୍ୱର ୪ନମ୍ବର ବାଳିକା ଉଚ୍ଚ ବିଦ୍ୟାଳୟରୁ ପ୍ରଧାନ ଶିକ୍ଷୟିତ୍ରୀ ଭାବେ ଅବସର ଗ୍ରହଣ କରିଥିଲେ । ରମିନାନୀଙ୍କୁ ସାର୍ ତାଙ୍କର କାଳଜୟୀ କବିତା "ଜନ୍ମଭୂମି" ମାଧ୍ୟମରେ ଦେଇଥିବା ନୀତିଶିକ୍ଷାରୁ କିଛି ପଦ ମନେ ପଡ଼େ ।

ଏହା ସମସ୍ତ ନାରୀସମାଜ ପ୍ରତି ଏକ ଅମୂଲ୍ୟ ଶିକ୍ଷା ସମ୍ପଦ ବୋଲି କହିଲେ ଅତିରଂଜିତ ହେବ ନାହିଁ ।

"ତୋ ଦେଶ ଅବଳା ନଥିଲେ ଦୁର୍ବଳା
ବୀର ପ୍ରସବିନୀ ସନ୍ତାନ ବତ୍ସଳା
ଆର୍ଯ୍ୟ ସଂସ୍କୃତିର ନିବିଡ଼ ବନ୍ଧନ
ମଧ୍ୟେ ରହି କଲେ ଜୀବନ ଯାପନ
ମହାର୍ଘ ବସନ ସ୍ୱର୍ଣ୍ଣ ଆଭରଣ
ଆର୍ଯ୍ୟ ଲଳନାର ନୁହଇ ଭୂଷଣ
ଦୟା କ୍ଷମା ପ୍ରୀତି ସେବା ସହିଷ୍ଣୁତା
ଗୁଣେ ହୁଏ ନାରୀ ଜଗତେ ବନ୍ଦିତା ।
ସହନଶୀଳତା ନଆଣେ ବିପଦ
ନାରୀ ଜୀବନର ଅମୂଲ୍ୟ ସଂପଦ ।
ସହି ବସୁନ୍ଧରା ସକଳ କଷଣ
ସର୍ବଂସହା ନାମ କରିଛି ଧାରଣ ।
ପତି ଅଟେ ନାରୀ ମସ୍ତକ ଭୂଷଣ
ପତି ତା'ଈଶ୍ୱର, ପତିତା'ର ଧନ ।
ସକଳ ସୁଗୁଣେ ହୋଇ ବିମଣ୍ଡିତା
ପତିବ୍ରତା ନାରୀ ଜଗତେ ପୂଜିତା,
ଲଳନା ଲଲାମ ଜନକ ନନ୍ଦିନୀ
ମଦ୍ର ରାଜଜେମା ସତୀ ଶିରୋମଣି ।
ରଖି ଯାଇଛନ୍ତି ଅବିନାଶୀ ଯଶ
ପୁରାଣ ଘୋଷଇ ଏହା ଅହର୍ନିଶ
ସେହି ଗୌରବର ଅଧିକାର ଲାଗି
ଶୟନେ ସପନେ ରହିଥିବୁ ଜାଗି ।
ହୃଦ ପଲକରେ ବିବେକ ବର୍ତ୍ତିକା
ଜଳାଇ ଜାଳିବୁ ତମ ବିଭୀଷିକା" (ଜନ୍ମଭୂମି)

ନିଜର କନ୍ୟାପ୍ରତି ଏହି ଉପଦେଶ ସାର୍‌ଙ୍କର କବି ପ୍ରତିଭା ଓ ନିଜ ଜନ୍ମଭୂମି ପ୍ରତି ଅସରନ୍ତି ଆସକ୍ତି ଓ ଆବେଗ ସବୁ ଛାତ୍ର ଛାତ୍ରୀଙ୍କୁ ତାଙ୍କର ମହାନ ଉପଦେଶ ଭାବେ ଚିର ସ୍ମରଣୀୟ ।

ଏବେ ତାଙ୍କର ଚିର ହସ ହସ ମୁହଁଟି ହୃଦୟ ପଟଳରେ ଝଲସି ଉଠେ । ସେ ଏ ଦୁନିଆଁରେ ନଥାଇ ବି ଅଛନ୍ତି, ସହସ୍ର ଛାତ୍ରଙ୍କ ହୃଦୟରେ । ମଣିଷ ଗଢ଼ା କାରଖାନାର ସେଥିଲେ ଜଣେ ମୁଖ୍ୟ କାରିଗର । ହେ ଗୁରୁ! ଆପଣଙ୍କୁ କୋଟି କୋଟି ପ୍ରଣାମ । ଆପଣଙ୍କ ଆଶୀର୍ବାଦ ସଦା ଝରି ପଡୁ ଆମ ଉପରେ ସେହି ଅମର ପୁରରୁ ।

ଜୟ ଜଗନ୍ନାଥ

ଶିବ ଭବନ,
ଦୋଳ ମଣ୍ଡପ ସାହି, ପୁରୀ

•••

ଶ୍ରୀମତୀ ଶକୁନ୍ତଳା ମିଶ୍ର ଜଣେ ବରିଷ୍ଠ ସାହିତ୍ୟିକା ଭାବେ ବିଷୁବ ସମ୍ମାନ ଲାଭ କରିବା ସହିତ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତା ହୋଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବେଶ୍ ସୁପରିଚିତ । ସାହିତ୍ୟ ଓ ସଙ୍ଗୀତ ରଚନା ପିଲାଦିନରୁ ତାଙ୍କର ଏକ ନିଶାରେ ପରିଣତ ହୋଇଥିଲା ଯାହାକି ବର୍ତ୍ତମାନ ତାଙ୍କର ଶିଶୁ ଓ କିଶୋର ମାନଙ୍କ ପାଇଁ ପାଠ୍ୟ ପୁସ୍ତକ ରଚନା କରିବାରେ ନିଜର ଦକ୍ଷତା ପ୍ରତିପାଦନ କରିବାରେ ସହାୟକ ହୋଇପାରିଛି ।



# ପୂଜ୍ୟ ଗୁରୁଜୀ
# ୰ ନାରାୟଣ ମହାପାତ୍ରଙ୍କ ସ୍ମରଣେ

ପ୍ରଭାତୀ ମିଶ୍ର

ହେ ମହାନ,

ଆପଣଙ୍କ ଚରଣତଳେ ପ୍ରଣିପାତ ଜଣାଉଛି । ଯିଏ ଯେଉଁଠି ଯେଉଁ ପଦ ପଦବୀରେ ରହିଥାଆନ୍ତୁନା କାହିଁକି ପିଲାଦିନର କାହାଣୀ ସବୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଛାପା କାଗଜ ପରି ସ୍ମୃତିରେ ଲଟକି ରହିଯାଇଥାଏ । ଚାଟଶାଳିରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟର ଅଧ୍ୟାପନା ଭିତରେ ବିଦ୍ୟାଳୟରେ ପାଠପଢାରେ ବାଟ କଢାଇଥିବା ଶିକ୍ଷକମାନେ ପ୍ରଥମେ ଚାଲିଆସନ୍ତି ଆଖି ଆଗକୁ । ସେମାନଙ୍କର ମୋତେ ଆପଣେଇ ନେବା ଯେ ଏତିକି ଟିକିଏରୁ ଏଡ଼େଟିଏ କରି ଜୀବନର ଚଲାପଥରେ ଆଗେଇ ଯିବାପାଇଁ ବାଟ କଢେଇଛି ଏକଥା ଭୁଲି ପାରିବିନି । ସେଇ ଗୁରୁମାନଙ୍କର ଆଶୀର୍ବାଦ, ଉପଦେଶ, ମାର୍ଗ ଦର୍ଶନରେ ଜଣେ ଶିକ୍ଷୟିତ୍ରୀ ପାଲଟି ଯାଇ ସହସ୍ରାଧିକ ଛାତ୍ରଛାତ୍ରୀଙ୍କୁ ମାର୍ଗଦର୍ଶନରେ ଯତ୍ କିଞ୍ଚିତ ପ୍ରଚେଷ୍ଟା କରିଛି ।

କୈଶୋରର ହସଖୁସିରେ, ଅଧ୍ୟୟନର ପ୍ରତିଯୋଗିତାରେ ପୁଅଝିଅ ଭେଦଭାବର ସଂକୀର୍ଣ୍ଣତାର ଦୂରରେ ରହି ସମୟ କଟି ଯାଉଥିଲା ତତ୍‌କାଳୀନ ବୀରନରସିଂହପୁର ନିକଟସ୍ଥ ଭାର୍ଗବୀ ଉଚ୍ଚବିଦ୍ୟାୟରେ, ମୋ ଗାଁ ବୀରପ୍ରତାପପୁର ଠାରୁ ଅନତୀ ଦୂରରେ । ଯେଉଁ ଆଖିଗୁଡ଼ିକ ଛାତ୍ରଛାତ୍ରୀ ମାନଙ୍କର ପାଠପଢା ସହିତ ବେଶଭୂଷା, ଚାଲିଚଳନ, ଆଚାର ବ୍ୟବହାର ପ୍ରଭୃତିକୁ ଆକଟ କରି ବାଟ କଢାଉଥିଲେ ସେମାନେ ଥିଲେ ବିଦ୍ୟାଳୟର ପ୍ରାକ୍ତନ ପ୍ରଧାନ ଶିକ୍ଷକ ୰ ମଦନ ମୋହନ ଦାସ, ୰ବାଉରୀବନ୍ଧୁ ପାଣିଗ୍ରାହୀ, ୰ ଶିକ୍ଷକ ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ, ୰ଅନନ୍ତ ଦାଶ, ୰ ନୀଳକଣ୍ଠ ମିଶ୍ର, ୰ କ୍ଷୀରୋଦ ଚନ୍ଦ୍ର ମିଶ୍ର, ୰ ବାଇଧର ଦାଶ, ୰ ଯଦୁମଣି ମହାରଣା, ୰ ଉମାକାନ୍ତ ମହାପାତ୍ର ଆଦି ଶୁଭାକାଂକ୍ଷୀ ପିତୃ ପ୍ରତିମ ଶିକ୍ଷକମାନେ । ସେମାନଙ୍କ ମଧ୍ୟରୁ ଗୁରୁନାରାୟଣ ମହାପାତ୍ର ଥିଲେ ଅନ୍ୟତମ । ସାରଙ୍କ ମୁଖ ମଣ୍ଡଳରୁ ପରିପ୍ରକାଶ ହେଉଥିଲା ବ୍ୟକ୍ତିତ୍ୱର ଅମଳିନ ଭାସ୍ୱର । ମଣିଷତ୍ୱ ଯେ ମଣିଷର ମୌଳିକ ପରିଚୟ ତାହା ବେଶ ବୁଝାଯାଉଥିଲା ସାରଙ୍କ ବ୍ୟକ୍ତିତ୍ୱରୁ । ତା ଭିତରେ ଭରି ରହିଥିଲା ଅନାବିଳ ସ୍ନେହ । ଅଗଣିତ ଛାତ୍ରଛାତ୍ରୀଙ୍କୁ ବାନ୍ଧି ରଖିଥିଲେ ସେ ସେଇ ସ୍ନେହ ଡୋରିରେ । ତାଙ୍କର ଜ୍ଞାନ ପ୍ରଦୀପ ଆଗରେ ଛାତ୍ରଛାତ୍ରୀମାନଙ୍କର ମଥା ଆପେ ଆପେ

ନଇଁ ଯାଉଥିଲା । ଶିକ୍ଷାଦାନ, ଶୃଙ୍ଖଳାଜ୍ଞାନ, ନୀତିନିୟମ ଓ ପ୍ରେରଣାଦାୟୀ ଭାଷା ମୋତେ ମନ୍ତ୍ରମୁଗ୍ଧ କରି ନଥାନ୍ତା ବା କିପରି ? ଭାର୍ଗବୀ ବିଦ୍ୟାଳୟ ନିକଟରେ ଦାମିଆ କାଣ୍ଡି ବଟ ବୃକ୍ଷ ଏବେ ବି ବଖାଣେ ସାରଙ୍କର ମହାନତାର ଅସରା କାହାଣୀ । ଏପରି ଶିକ୍ଷକ ଆଜି ସମୟର ବିଭିନ୍ନ ପୁରସ୍କାର ପରିଧି ଭିତରେ ନାହାଁନ୍ତି ସତ କିନ୍ତୁ ଅଗଣିତ ଛାତ୍ରଛାତ୍ରୀଙ୍କ ହୃଦୟର ଅନ୍ତରତମ ପ୍ରଦେଶରୁ ଯେଉଁ ଭକ୍ତି ନୈବେଦ୍ୟ ଏବଂ ପ୍ରଣତି ଅହରହ କ୍ଷରିତ ତାହା ଜୀବନବ୍ୟାପି ସମସ୍ତ ସତ୍ତାକୁ ଆଚ୍ଛାଦିତ କରି ରଖିଥିବ ।

ପୂଜ୍ୟ ନାରାୟଣ ସାରଥିଲେ ପିତୃପ୍ରତିମ, ଅସାଧାରଣ ପ୍ରତିଭା ସମ୍ପନ୍ନ, ସରଳ ଓ ନିଷ୍କପଟ ବିରଳ କର୍ମଯୋଗୀ । ଉଚ୍ଚ ବିଦ୍ୟାଳୟରେ ପ୍ରବେଶ କଲାପରେ ସେହି ପ୍ରଥମେ ଆମର ଶ୍ରେଣୀ ଶିକ୍ଷକ ହିସାବରେ ମୋତେ ଖଡି ଛୁଆଇଁ ଥିଲେ । ପରବର୍ତ୍ତୀ ବର୍ଷ ମାନଙ୍କରେ ସେ ଇଂରାଜୀ, ଭୂଗୋଳ, ସାହିତ୍ୟ ଓ ସାମାଜିକ ଜ୍ଞାନ ଶିକ୍ଷାଦାନ କରିଥିଲେ । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ମୋତେ ଯଥେଷ୍ଟ ପ୍ରଭାବିତ କରିଥିଲା । କେବଳ ଛାତ୍ରୀ ଜୀବନରେ ନୁହେଁ, ମୋର ଶିକ୍ଷୟିତ୍ରୀ ଜୀବନରେ ମଧ୍ୟ । ସତ୍ୟବାଦୀ ହାଇସ୍କୁଲରେ ଦୀର୍ଘଦିନର ଶିକ୍ଷକତା ପରେ ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ତାଙ୍କ ଶିକ୍ଷାଦାନ ପଂଚସଖା ସଂସ୍କୃତିର ପ୍ରଭାବରେ ପ୍ରଭାବିତ ଥିଲା । ସେ ଆମ ସ୍କୁଲର ବୟୋଜ୍ୟେଷ୍ଠ ଶିକ୍ଷକ ଥିଲେ । ସ୍କୁଲର ପ୍ରାୟ ସମସ୍ତ ଶିକ୍ଷକ, ଏପରିକି ପ୍ରଧାନ ଶିକ୍ଷକ ଶ୍ରୀ ଗୋବିନ୍ଦ ପୃଷ୍ଟି ତାଙ୍କର ଛାତ୍ର ଥିଲେ ଓ ପରବର୍ତ୍ତୀ ସମୟରେ ସହକର୍ମୀ ତଥା ପ୍ରଧାନଶିକ୍ଷକ ହୋଇ ପାରିଥିଲେ ।

ସେ ସ୍ୱର୍ଗାଲୋକରେ ସେହିପରି ଜ୍ୟୋତି ହୋଇ ଆଲୋକ ଧାରାରେ ଆଶିଷର ରେଣୁ ସିଞ୍ଚନ କରୁଥାଆନ୍ତୁ । ସେଇ କରୁଣା ରେଣୁରେ ଛାତ୍ରଛାତ୍ରୀଙ୍କ ଜୀବନ ଧନ୍ୟ ହେଉ । ଛାତ୍ରଛାତ୍ରୀଙ୍କ ମାନସ ପଟରେ ଚିର ଅମର ହୋଇ ରହିଥାଆନ୍ତୁ ।

ତାଙ୍କର ଆତ୍ମା ପରମାତ୍ମାରେ ବିଲୀନ ହେଉ ଏହାହିଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।


ଅବସରପ୍ରାପ୍ତ ଶିକ୍ଷୟିତ୍ରୀ<br>
ମୋ-୮୨୬୦୮୫୪୪୪୨<br>
ସର୍ବୋଦୟ ନଗର, ପୁରୀ


●●●

ପ୍ରାକ୍ତନ ଛାତ୍ରୀ ପ୍ରଭାତୀ ମିଶ୍ର ଶିକ୍ଷୟିତ୍ରୀ ଭାବେ କର୍ମମୟ ଜୀବନରୁ ଅବସର ଗ୍ରହଣ କରିଅଛନ୍ତି । ଅଧୁନା ସେ ସର୍ବୋଦୟ ନଗର, ପୁରୀଠାରେ ବାସ କରୁଅଛନ୍ତି ।



# ମନେ ପଡ଼ନ୍ତି ମୋ ସାର

**ଇଂ. ଶ୍ରୀ ଆର୍ତ୍ତତ୍ରାଣ ରଥ**

ଅତ୍ୟନ୍ତ ଆନନ୍ଦର କଥା ବୀରନରସିଂହପୁର ସ୍ଥିତ, ଭାର୍ଗବୀ ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରାକ୍ତନ ପୂଜ୍ୟ ଶିକ୍ଷକ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ ଆତ୍ମଚରିତ ଆତ୍ମପ୍ରକାଶ କରିବାକୁ ଯାଉଛି । ଏହା ଜାଣି ମୁଁ ଗର୍ବ ଅନୁଭବ କରୁଛି । ମୁଁ ୧୯୬୦ ମସିହାରେ ଭାର୍ଗବୀ ହାଇସ୍କୁଲରେ ୮ମ ଶ୍ରେଣୀରେ ନାମ ଲେଖାଇଲି ଓ ସେଠାରୁ ମାଟ୍ରିକ୍ ପାସ୍‌କଲି । ଏହି ୪ ବର୍ଷ ପୂଜ୍ୟ ନାରାୟଣ ସାରଙ୍କ ସଂସ୍ପର୍ଶରେ ଆସିଥିଲି । ସେ ସ୍କୁଲରେ ଇଂରାଜୀ, ସାହିତ୍ୟ ଓ ସାମାଜିକ ପାଠ ଅତି ଉତ୍ତମ ରୂପେ ପଢ଼ାଇଥିଲେ । ଏହି ବିଷୟରେ ତାଙ୍କର ଅଗାଧ ଜ୍ଞାନ ଥିଲା । ତାଙ୍କର ପାଠ ପଢ଼ାଇବା ଶୈଳୀ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ପଢ଼ାଇଲା ବେଳେ ସେ ଶ୍ରେଣୀର ଛାତ୍ରଙ୍କ ସହ ମିଶିଯାଉଥିଲେ ଓ ଛାତ୍ରଙ୍କଠାରୁ ପଢ଼ା ଆଦାୟରେ ଅତ୍ୟନ୍ତ କଠୋର ହେଉଥିଲେ । ଅବସର ସମୟରେ ଛାତ୍ର ମାନଙ୍କୁ ଡାକି ତାଙ୍କର ପାଠ ଜନିତ ସୁବିଧା ଓ ଅସୁବିଧା ବିଷୟରେ ବୁଝୁଥିଲେ । ଏପରିକି ଛାତ୍ରାବାସରେ ଥିବା ଛାତ୍ର ମାନଙ୍କର ସୁବିଧା ଓ ଅସୁବିଧା ପଚାରି ଓ ତାର ସମାଧାନରେ ସାହାଯ୍ୟ କରୁଥିଲେ । ସେଥିପାଇଁ ସେ ଅତ୍ୟନ୍ତ ଛାତ୍ରପ୍ରିୟ ହୋଇଥିଲେ । ତାଙ୍କର ପ୍ରେସିରାଇଟିଂ, ଓ ଇଂରାଜୀ. ବ୍ୟାକରଣ ଓ ଭୂଗୋଳ ଇତ୍ୟାଦିରେ ବହୁତ ଦକ୍ଷତା ଥିଲା ।

ସେ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରିବାକୁ ଭଲପାଉଥିଲେ । ସ୍କୁଲକୁ ଆସିଲାବେଳେ ପ୍ରତ୍ୟହ ଧୋତି ଓ କୁର୍ତ୍ତା ପିନ୍ଧି ଆସୁଥିଲେ । ଗର୍ବ ଓ ଅହଂକାର ତାଙ୍କୁ ସ୍ପର୍ଶ କରି ନଥିଲା । ସେ ଅତ୍ୟନ୍ତ ସ୍ୱଳ୍ପଭାଷୀ ଓ ଶାନ୍ତ ସ୍ୱଭାବର ଥିଲେ । ତାଙ୍କର ବିଦ୍ୟାଦାନରେ ବହୁତ ଛାତ୍ର ଡାକ୍ତର ଇଂଜିନିୟର, ପ୍ରଶାସନିକ ଅଧିକାରୀ ହୋଇଛନ୍ତି । ୧୯୬୪ ମସିହାରେ ସେ ୨୩ଜଣଙ୍କୁ ମାଟ୍ରିକ ପରୀକ୍ଷା ଦେବା ପାଇଁ ଭାର୍ଗବୀ ହାଇସ୍କୁଲରୁ ପଠାଇଥିଲେ । ସେଥିରେ ଜଣେ ଓଡ଼ିଶାର ପ୍ରଥମ ୧୦ଜଣ ଭିତରେ, ୫ଜଣ ପ୍ରଥମ ଶ୍ରେଣୀ, ୯ଜଣ ୨ୟ ଶ୍ରେଣୀ ଓ ୮ ଜଣ ୩ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ପୁତ୍ର କନ୍ୟା ସମସ୍ତେ ଉଚ୍ଚଶିକ୍ଷିତ ହୋଇଛନ୍ତି ।

ଅବସର ସମୟରେ ଗ୍ରାମର ଉନ୍ନତିରେ ସେ ଅଂଶ ଗ୍ରହଣ କରୁଥିଲେ । ତାଙ୍କର ଅମାୟିକ ବ୍ୟବହାର, ଶାନ୍ତ ସ୍ୱଭାବ ହେତୁ ସେ ଗ୍ରାମବାସୀ ଓ ଶିକ୍ଷକ ଛାତ୍ର ମାନଙ୍କର ଅତ୍ୟନ୍ତ ପ୍ରିୟ ଥିଲେ ।

ତାଙ୍କର ଚ଼ରଣରେ ମୋର ଶତଶତ ପ୍ରଣାମ ।

ବୀରନରସିଂହପୁର, ବର୍ତ୍ତମାନର ଠିକଣା – ଭୁବନେଶ୍ୱର

ଶ୍ରୀ ଆର୍ତ୍ତତ୍ରାଣ ରଥ ଏକ ପ୍ରତିଷ୍ଠିତ କମ୍ପାନୀର ଜନୈକ ଅବସରପ୍ରାପ୍ତ ଇଂଜିନିୟର । ବୀରନରସିଂହପୁରର ବାସିନ୍ଦା । ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାପିତ ।



# ସ୍ମୃତି ଚାରଣ

କୃଷ୍ଣଚନ୍ଦ୍ର ରଥ

ଆମର ପୂଜ୍ୟ ଗୁରୁଜୀ ✓ ନାରାୟଣ ମହାପାତ୍ରଙ୍କର ସ୍ମୃତିଚାରଣ କରିବାର ସୁ ଅବସର ଆଜି ମୋତେ ମିଳିଥିବାରୁ ନିଜକୁ ଧନ୍ୟ ମନେ କରୁଛି । ଷାଠିଏ ଦଶକର ମଧ୍ୟ ଭାଗରେ ଆମ ଗାଁ ବୀରନରସିଂହପୁର ସ୍ଥିତ ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀରେ ପଢ଼ିବା ବେଳେ ସାର୍ ଆମକୁ ଇଂରାଜୀ ଓ ଭୂଗୋଳ ପଢ଼ାଉଥିଲେ । ତେବେ ତାଙ୍କ ଭଳି ଜଣେ ସଫଳ ଭୂଗୋଳ ଶିକ୍ଷକ ମୁଁ ମୋ ଦୀର୍ଘଦିନର ଶିକ୍ଷା-ପ୍ରଶାସକ କାର୍ଯ୍ୟ ମଧ୍ୟରେ କ୍ୱଚିତ ଦେଖିଛି । ତାଙ୍କର ଶିକ୍ଷାଦାନ ଶୈଳୀ ଥିଲା ଅନନ୍ୟ ଓ ସୃଜନାତ୍ମକ ।

ସେ ଯଥାର୍ଥରେ ଏକ ତ୍ୟାଗପୂତ ଜୀବନର ଅଧିକାରୀ ଥିଲେ । ସାଧାରଣ ସରଳ ଜୀବନ ଯାପନ କରି ସେ ସର୍ବଦା ଉଚ୍ଚତର ଚିନ୍ତାରେ ନିମଗ୍ନ ରହୁଥିଲେ । ସେ ଥିଲେ ଆଚାରଶୀଳ, ସ୍ଥିତପ୍ରଜ୍ଞ ଓ ସର୍ବଦା ନିଜର କର୍ମ ଓ କର୍ତ୍ତବ୍ୟରେ ଥିଲେ ଅତିଶୟ ନିଷ୍ଠାବାନ । ସର୍ବଦା ନିଜର ଆଚରଣ ଓ ଉଚ୍ଚାରଣରେ ସମନ୍ୱୟ ରକ୍ଷାକରି ଯଥାର୍ଥରେ ଜଣେ ସଫଳ ଆଚାର୍ଯ୍ୟର ଭୂମିକା ସଂପାଦନ କରୁଥିଲେ । ମୋ ଭଳି ଅଗଣିତ ଛାତ୍ରଛାତ୍ରୀ ତାଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ନିଜ ନିଜ କ୍ଷେତ୍ରରେ ଆଜି ପ୍ରତିଷ୍ଠିତ ହୋଇପାରିଛନ୍ତି ।

ମୁଁ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି ।

ଅବସର ପ୍ରାପ୍ତ ଉପ ଶିକ୍ଷା ନିର୍ଦ୍ଦେଶକ
(ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ)
ବୀରନରସିଂହପୁର

•••

ଶ୍ରୀ କୃଷ୍ଣଚନ୍ଦ୍ର ରଥ ଜଣେ ପ୍ରତିଭାବାନ ଛାତ୍ର ହିସାବରେ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ଅତି ପ୍ରିୟ ଥିଲେ । ଓ.ଇ.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ଉପଶିକ୍ଷା ନିର୍ଦ୍ଦେଶକ ଭାବେ ଅବସରପ୍ରାପ୍ତ । ସେ ବର୍ତ୍ତମାନ ପୁରୀରେ ଅବସ୍ଥାପିତ ।



# "ନାନ୍ୟଥା ଗୁରୋର୍ବଚନମ୍"

କ୍ଷେତ୍ରମୋହନ ମିଶ୍ର

ଓଁ ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍ ।
ତଦ୍‌ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ॥

ଗୁରୁଙ୍କର ବଚନ ସତ୍ୟରେ ରୂପାୟିତ ହେଲା । ବାଲ୍ୟଶିକ୍ଷା, ମାଧ୍ୟମିକ ଶିକ୍ଷା ପରେ ମୋର ମହାବିଦ୍ୟାଳୟ ଶିକ୍ଷା ସମାପ୍ତ ହେଲା । କର୍ମସଂସ୍ଥାନ ଅନ୍ୱେଷଣରେ ମୁଁ କଟକ ସହରକୁ ଆସିଲି । ଓଡ଼ିଶା ହାଇକୋର୍ଟର ଆଡ଼ଭୋକେଟ୍ ଜେନେଲାରଙ୍କ ଅଫିସରେ ବୃତ୍ତିନିଯୁକ୍ତ ହେଲି । ଜନୈକ ମସୀଜୀବୀ ଭାବେ ନିଜକୁ ପ୍ରତିଷ୍ଠିତ କରିବାକୁ ମନ ଡାକୁ ନଥାଏ । ମୋର ଏଲ୍ ଏଲବି ଡିଗ୍ରୀ ଥାଏ । କଟକ ମଧୁସୂଦନ 'ଲ' କଲେଜରେ ବିଧିଶିକ୍ଷା ସମାପ୍ତ କରିଥିଲି । ମୋର ସାଙ୍ଗ କେତେ ଜଣ ଓକିଲାତି କଲେଣି । ତାଙ୍କୁ ଦେଖି ପଚାରେ "କିରେ ! ଓକିଲାତି କିପରି ଲାଗୁଛି ?" ସେମାନେ ବି ମୋତେ ଠିକ୍ ସେହିପରି ପଚାରନ୍ତି । ଜାଣିପାରେ ସେମାନଙ୍କ ରୋଜଗାର ସ୍ଥିର ନାହିଁ । କିନ୍ତୁ ମୋର ମାସିକ ଦରମା ସ୍ଥିର ଓ ନିଶ୍ଚିତ । ମନ କାହିଁକି ଆନ୍ଦୋଳିତ ହୁଏ । ବେଳେ ବେଳେ ନିରୋଳାରେ ବସି କେତେ କ'ଣ ଭାବେ, "ମୋର ସାଙ୍ଗମାନେ କେତେ କଣ କଲେଣି, କିଏ ପାଠପଢ଼ି କେତେ ଉଚ୍ଚକୁ ଗଲେଣି । କାହାର ରୋଜଗାର କେତେ, କାହାର କାର୍ ଅଛି ବା କୋଠା ଅଛି" ଇତ୍ୟାଦି ଇତ୍ୟାଦି । ଦିନେ ହଠାତ୍‌ମୋର ମନେ ପଡିଗଲା, ଭାର୍ଗବୀ ହାଇସ୍କୁଲରେ ୭ମ ଶ୍ରେଣୀରେ ପଢ଼ିଲା ବେଳେ ଶିକ୍ଷକ ନାରାୟଣବାବୁ ଏକ ହଲକା ମୁହୂର୍ତ୍ତରେ ଛାତ୍ରଛାତ୍ରୀଙ୍କ କ୍ରିୟା କଳାପକୁ ଲକ୍ଷ୍ୟକରି ତାଙ୍କ ଭବିଷ୍ୟତ ବିଷୟରେ ଟିପ୍‌ପଣୀ ବା ମନ୍ତବ୍ୟ ଦେବାବେଳେ ମୋତେ କହିଥିଲେ "ତୁ ଗୋଟିଏ ଉତ୍ତମ ଓକିଲ ହେବୁ ଓ ଅନ୍ୟାୟ ବିରୁଦ୍ଧରେ ଲଢିବୁ ।" ସେତେବେଳେ ସେ କାହାକୁ କିରାନୀ, କୃଷକ, ପ୍ରଶାସକ ଶିକ୍ଷକ, ବ୍ୟବସାୟୀ, ଅଧ୍ୟାପକ, ବା ମେକାନିକ୍ ପ୍ରଶାସକ ହେବବୋଲି କହୁଥିଲେ । ସାର୍‌ଙ୍କ କଥା ମୋର ମନେ ପଡି ମୋତେ ବାରମ୍ବାର ଅସ୍ଥିର କଲା, ମନ ବିଚଳିତ ହେଲା । ସାର୍ କହିଥିଲେ ମୁଁ ଓକିଲ ହେବି, ତେବେ କିରାନୀ ହେବି କାହିଁକି ? ଶୁଣିଛି ଗୁରୁ ବାକ୍ୟ ଅନ୍ୟଥା ହୁଏନାହିଁ ଓ ତାହାହିଁ ସୁଖ ଓ ଶାନ୍ତି ପ୍ରଦାୟକ । କିଛି ଦିନ ପରେ ସମୟ ଚକ୍ରରେ ମୁଁ ଓକିଲ ହୋଇ କଳାକୋର୍ଟ ଓ କଳା ଆପ୍ରନ୍

ପରିଧାନ କରି ହାଇକୋର୍ଟ ବାରରେ ଯୋଗଦେଲି ଓ ଏବେ ଜଣେ ପ୍ରତିଷ୍ଠିତ ଓକିଲର ମାନ୍ୟତା ପାଇଛି । ସଂସ୍କୃତରେ ଲେଖା ଅଛି :-

"ମହଦ୍‌ଭିଃଲୀଳୟା ପ୍ରୋକ୍ତଂ ଶିଳାଲିଖିତ ମକ୍ଷରମ୍ ।
ଅସଦ୍‌ଭି ଶପଥେନାପି ଜଳଲିଖିତମକ୍ଷରମ୍ ॥"

ଅର୍ଥାତ୍ ମହାନ୍‌ବ୍ୟକ୍ତି ଯାହା ଥରେ କହିଦିଅନ୍ତି ତାହା ପ୍ରସ୍ତର ଉପରେ ଲିଖିତ ଅକ୍ଷର ପରି ଅକ୍ଷୟ, ଅଲିଭା ଅଟେ । ଅସତ୍‌ବ୍ୟକ୍ତି ପ୍ରତିଜ୍ଞା କଲେ କି ତାହା ଜଳଲିଖିତ ଅକ୍ଷର ପରି ମୂଲ୍ୟହୀନ, କ୍ଷଣସ୍ଥାୟୀ ।

ନାରାୟଣ ବାବୁ (ନାରାୟଣ ମହାପାତ୍ର) ଭାର୍ଗବୀ ହାଇସ୍କୁଲର ବରିଷ୍ଠ ଶିକ୍ଷକ ଓ ସହକାରୀ ପ୍ରଧାନ ଶିକ୍ଷକ । ମୋ ଗାଁ ବୀର ପ୍ରତାପପୁର ଭାର୍ଗବୀ ହାଇସ୍କୁଲ ଠାରୁ ମାତ୍ର ଦେଢ଼କିଲୋମିଟର । ଦଶଖଣ୍ଡ ପଞ୍ଚାୟତମଧ୍ୟରେ ଗୋଟିଏ ହାଇସ୍କୁଲ । ୪ର୍ଥ ରୁ ୧୧ଶ ଶ୍ରେଣୀ (ଏକାଦଶ ଶ୍ରେଣୀ) ଯାଏଁ । ଭାର୍ଗବୀ ନଦୀ ତଟରେ ଦାମିଆଁକାଣ୍ଡି ନାମକ ମହା ବଟବୃକ୍ଷର ସୁଶୀତଳ ସ୍ନିଗ୍ଧଛାୟା ଆଢୁଆଳରେ ଲମ୍ବା ଇଂରାଜୀ 'ଏଲ୍' ଟାଇପ୍ ଶ୍ରେଣୀ ଗୃହମାନ, ଚୂନ ଧଉଳ ହୋଇ ଖୁବ୍ ସୁନ୍ଦର ଦିଶେ । ଏକ ସୁଦୃଶ୍ୟ କୋଠାଘରେ ଚାଲେ ପ୍ରଧାନଶିକ୍ଷକଙ୍କ ଅଫିସ । ତାହା ଭିତରେ ଏନ୍.ସି.ସି. ରୁମ୍, ଲାଇବ୍ରେରୀ ଓ କ୍ରୀଡ଼ା ଉପକରଣ ଥାଏ । କୋଠାର କପାଳ ଉପରେ ଗରିମାମୟ ସ୍କୁଲର ନାମ ବଡବଡ ଅକ୍ଷରରେ ଲିଖିତ । ନଦୀ ଓ ବିଦ୍ୟାଳୟକୁ ଦୁଇଭାଗ କରି ନଦୀବନ୍ଧ ଲମ୍ବି ଯାଇଛି କାହିଁ କେତେ ଦୂରକୁ । ଚାରିପଟେ ନଡ଼ିଆବଗିଚା, କେତେଗୋଟି ଆମ୍ବ, ପଣସ ଓ ପୋଲାଙ୍ଗ ଗଛ ଥାଏ । ନଈକୂଳ ପଟେ ଫୁଟବଲ୍ ପଡ଼ିଆ ଏପଟେ ଭଲିବଲକୋର୍ଟ, କବାଡି ପାଲି ସବୁ ଅଛି । ବିଦ୍ୟାଳୟ ପ୍ରାଙ୍ଗଣରେ ଗୋଟିଏ କୂଅ ଓ ବାହାରପଟକୁ ଏକ ସୁନ୍ଦର ପୋଖରୀ । କାଚକେନ୍ଦୁ ପରିପାଣି । ଛାତ୍ରାବାସଟି ସ୍କୁଲ୍‌ଠାରୁ ଦୁଇଶହ ହାତଦୂରରେ । ଲମ୍ବାପାହି ଉଚ୍ଚ ଚାଳଛପର ଘର । ପରିବେଶ ମୋତେ ବହୁତ ଭଲ ଲାଗେ ।

ଗାଁ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷାସମାପ୍ତ କରି ୪ର୍ଥ ଶ୍ରେଣୀରେ ମୁଁ ଭାର୍ଗବୀ ହାଇସ୍କୁଲରେ ନାମ ଲେଖାଇଲି । ମୋ ବଡ଼ଭାଇ ବି ସେଠି ପଢୁଥାନ୍ତି । ଆମ ଗ୍ରାମର ପ୍ରାୟ ୨୫ ଜଣ ଛାତ୍ର ଛାତ୍ରୀ ସେ ବିଦ୍ୟାଳୟକୁ ପ୍ରତିଦିନ ଚାଲିଚାଲି ଯାଆନ୍ତି । କାଁ ଭାଁ ପିଲାଙ୍କର ସାଇକେଲ ଥାଏ । ବୀର ନରସିଂହପୁର, ପ୍ରତାପ ରାମଚନ୍ଦ୍ରପୁର, ବୀର ବଳଭଦ୍ରପୁର ଚନ୍ଦନପୁର, ବୀରକେଶରୀପୁର, ସୁଲଭାଦେଇପୁର, ସିଂହମାପୁର, ମାଳତୀପାଟପୁର, ବୀରହରେକୃଷ୍ଣପୁର, ଭଗବାନପୁର, ଦାମୋଦରପୁର, ଦୋଳଗୋବିନ୍ଦପୁର, ଗଙ୍ଗାନାରାୟଣପୁର, ଉତ୍ତନ ପାଟଣା, ଜାନକାଦେଇପୁର, ଦାଣ୍ଡସାହି, ମାଳୀସାହି, ତିନ୍ତୁଳିଆ, ଅଳସା ପ୍ରତାପ ପୁରୁଷୋତ୍ତମପୁର, କହ୍ନେଇବିଦ୍ୟାଧରପୁର, ବ୍ରାହ୍ମଣ ଆଳନ୍ଦିଆ, ତଳଜଙ୍ଗ ବ୍ରହ୍ମଗିରି ଖଜୁରିଆ, ଶିରୁଳୀ, ନୂଆପଟଣା, ଅଙ୍କିଆ ବିଜୟରାମଚନ୍ଦ୍ରପୁର, ବିଶ୍ୱାନଥପୁର, ବୀରଗୋବିନ୍ଦପୁର, ଚାରିଶ୍ରୀ ଘୋଡାହତା, କୁମ୍ଭାରଡିହ, ଖଜୁରିଆ, ଆରୋଳ ପ୍ରଭୃତି ଗ୍ରାମର ଛାତ୍ର ଛାତ୍ରୀମାନେ ଏ ବିଦ୍ୟାଳୟରେ ଅଧ୍ୟୟନ କରନ୍ତି । ଦୂର ଗ୍ରାମ ମାନଙ୍କର ପିଲାମାନେ ଛାତ୍ରାବାସରେ ରହି ପଢ଼ନ୍ତି । ସ୍କୁଲରେ ପୁଅ ଓ ଝିଅ ଉଭୟ ଏକତ୍ର ପଢ଼ନ୍ତି ମାତ୍ର ମହିଳା ଶିକ୍ଷୟିତ୍ରୀ ନ ଥାନ୍ତି । ଭାର୍ଗବୀ ହାଇସ୍କୁଲ ପୁରୀ ଜିଲ୍ଲାର ଏକ ଅନନ୍ୟ ଜ୍ଞାନପୀଠ ।

ସ୍କୁଲର ନୀତିନିୟମ କଡା, ଠିକ୍ ସମୟରେ ପ୍ରାର୍ଥନା ସଭା । ଉପସ୍ଥାନପରେ ପିରିୟଡ୍ ଆରମ୍ଭ ହୁଏ, ପଢ଼ାପଢ଼ି ଚାଲେ । ୩-୩୦ ପରେ ଖେଳ ପିରିୟଡ୍ । ଆମବେଳେ ପ୍ରଧାନଶିକ୍ଷକ ଥାନ୍ତି ମଦନମୋହନ ଦାସ । ତାଙ୍କ ତଳକୁ ଥାନ୍ତି ନାରାୟଣ ମହାପାତ୍ର, ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ, ସେକେଣ୍ଡ ପଣ୍ଡିତ ନୀଳକଣ୍ଠ ମିଶ୍ର, ଅନନ୍ତଦାଶ, କ୍ଷୀରୋଦଚନ୍ଦ୍ର ମିଶ୍ର, ନଟବର ମହାନ୍ତି, ଯଦୁମଣି ପଟ୍ଟନାୟକ, ଭାସ୍କର ମହାପାତ୍ର (ଭାନୁବାବୁ) ଉମାକାନ୍ତ ମହାପାତ୍ର, ଶାମ୍ବସୁନ୍ଦର ମିଶ୍ର, ବାଇଧର ଦାଶ, କ୍ରୀଡା ଶିକ୍ଷକ ଯଦୁମଣି ମହାରଣା, ଗୌରାଙ୍ଗ ଦାସ, ରାଷ୍ଟ୍ରଭାଷା ପଣ୍ଡିତ ମଧୁସୂଦନ ପ୍ରଧାନ, ଅଫିସ କିରାନୀ ଭାବେ ହରିହର ରଥ, ବିଜୟ କୁମାର ରଥ ଥିବା ବେଳେ ଟ୍ରେଜେରୀ ସରକାର ବଂଶୀଧର ବାରିକ ଅଫିସ ପିଅନ ଡମ୍ବରୁଧର ବାରିକ ଓ ଝାଡୁଦାର ଭାବେ ଶିଖର ନାଏକ କାର୍ଯ୍ୟରତଥାନ୍ତି । ଏମାନେ ମୋ ସ୍ମୃତି ପଟରେ ଏବେ ବି ଜୀବନ୍ତ ।

ଏହି ବିଦ୍ୟାଳୟର ସୁନାମ ଯେଉଁ ଶିକ୍ଷକମାନଙ୍କ ଦ୍ୱାରା ପରିବର୍ଦ୍ଧିତ ହୋଇଥିଲା, ଯେଉଁମାନଙ୍କ ଅକ୍ଲାନ୍ତ ପରିଶ୍ରମ ଆଧାରରେ ଛାତ୍ରମାନେ ବୋର୍ଡ ପରୀକ୍ଷାରେ ସଫଳତାର ସହ ଉତ୍ତୀର୍ଣ୍ଣ ହେଉଥିଲେ, ତାର ଅନ୍ତରାଳରେ ଯେ କେହି ଶିକ୍ଷକଙ୍କ ଅବଦାନ ଥିଲେ ବି ସେମାନଙ୍କ ମଧ୍ୟରେ ଶିକ୍ଷକ ନାରାୟଣ ମହାପାତ୍ରଙ୍କ ଅବଦାନ ସର୍ବଶ୍ରେଷ୍ଠ । ସେ ମଧ୍ୟ ତଳ ଶ୍ରେଣୀ ମାନଙ୍କରେ ଇଂରାଜୀ, ଭୂଗୋଳ ଓ ସାହିତ୍ୟ ପଢ଼ାଇ ହାଇସ୍କୁଲ ଶିକ୍ଷା ପାଇଁ ମୂଳଦୁଆ ପକାଉଥିଲେ । ଦିନେ ସେ ଟେନ୍‌ସ ଚାର୍ଟ ପଡାଉଥାନ୍ତି । ମୁଁ ଟିକିଏ ପଛକୁ ଚାହିଁ ଅନ୍ୟମନସ୍କ ହେଲି, ଏଣେ ତେଣେ ଚାହୁଁଥିଲି । ନାରାୟଣବାବୁ ଖୁବ୍ ରାଗିଯାଇ ମୋତେ କହିଲେ "ସାବଧାନ୍, ଆଉଥରେ ଏପରି କଲେ ଘରକୁ ଯିବି ଓ ନନାଙ୍କୁ କହିବି" । ସେ ମୋତେ ମାରିନାହାଁନ୍ତି । ଆଉଦିନେ ବଳଭଦ୍ରପୁର ଓ ଷୋଡ଼ବା ର ପିଲାମାନେ ନଈ ପାର ହୋଇ ଆସିଲାବେଳେ ନଈରେ ମାଛଦେଖି ରିସେସ୍‌ରେ ମାଛଧରିବାକୁ ଯିବାବୋଲି ଯୋଜନା ପ୍ରସ୍ତୁତ କଲେ । ମୁଁ ତାଙ୍କ ସାଥିରେ ଥାଏ । ନିଜ ନିଜ ସାର୍ଟ ଖୋଲି ସେଥିରେ ମାଛ ଧରିଲୁ । ପ୍ରାୟ କିଲେ ମାଛ । ଏଣେ ରିସେସ୍ ସରି ୫ମ ପିରିୟଡ ଆରମ୍ଭ ହେଲା । ନାରୟଣ ବାବୁଙ୍କ ଭୂଗୋଳ ପିରିୟଡ । ଶ୍ରେଣୀରେ ପିଲାକମ୍ ଦେଖି ଉପସ୍ଥାନ ଖାତା ମଗାଇ ସେ ଶ୍ରେଣୀରେ ନଥିବା ୬ଜଣ ପିଲାଙ୍କୁ ଜାଣିପାରିଲେ । ମନିଟର ପଠାଇ ଆମକୁ ଡାକିନେଲେ ଓ ସେଦିନ ଯେଉଁ ଶାସ୍ତିଦେଲେ ତାହା ଏବେ'ବି' ମନେଅଛି । ମୁଁ ସେତିକିରେ ସାବାଡ୍ । କେହିପିଲା ଶ୍ରେଣୀ ବା ବାହାରେ ଗଣ୍ଡଗୋଳ କଲେ, କିଏ କାହାକୁ ମାରିଲେ, କ୍ଲାସରେ ଦୀର୍ଘଦିନ ଅନୁପସ୍ଥିତ ରହିଲେ ତା'ର କାରଣ ଜାଣିବାକୁ ନାରଣବାବୁ ତା' ଘରେ ପହଞ୍ଚିବା ନିଶ୍ଚିତ । ଶିକ୍ଷକ ସୁଲଭ ସ୍ୱାଭିମାନ ନେଇ ସରଳପରିପାଟୀ ପରିଧାନ କରି ବିନା ଚପଲରେ ସେ ସ୍କୁଲକୁ ଆସନ୍ତି । ତାଙ୍କର ଶୃଙ୍ଖଳିତ ଆଚରଣ ଓ ନୀତିନିୟମ ପିଲାମାନଙ୍କୁ ବେଶ୍ ପ୍ରଭାବିତ କରେ । ସ୍କୁଲରେ ଗରିବ ପିଲାଟିଏ କିପରି ପଢ଼ିପାରିବ, ତାକୁ କିପରି ଫ୍ରିସିପ୍ ଦିଆଯିବ । କାହାଘରର ଆର୍ଥିକ ଅବସ୍ଥା କ'ଣ, ତାହା ତାଙ୍କୁ ଜଣା । ପ୍ରଧାନ ଶିକ୍ଷକଙ୍କର ସେ ମୁଖ୍ୟ ସହଯୋଗୀ, ଜାତୀୟ ପର୍ବପାଳନ, ଗଣେଶପୂଜା, ସରସ୍ୱତୀପୂଜା,

ଗୁରୁ ଦିବସ, ଶିଶୁ ଦିବସ ଶୋକସଭାଠାରୁ ସ୍ୱାଗତ ସଭାରେ ତାଙ୍କର ମୁଖ୍ୟ ଭୂମିକା । କେହି ଛାତ୍ର ଭାର୍ଗବୀ ନଈକୁ ନଯିବ, କାହା ବାଡିରୁ ଫଳ, କୋଳି ନଖାଇବା, କେହି କାହା ସଙ୍ଗେ ଗଣ୍ଡଗୋଳ ନ କରିବାକୁ ବାରମ୍ବାର ତାଗିଦ୍ କରିବା ସହ ସତ୍ୟ, ଧର୍ମ, ନ୍ୟାୟ ପରୋପକାର ବିଷୟକ ଗଳ୍ପମାନ କହି ପିଲାଙ୍କ ଚରିତ୍ର ଗଢୁଥିଲେ । ସେ ମୋର ପୂଜ୍ୟଗୁରୁ, ଏକ କିମ୍ବଦନ୍ତୀ ।

ସେ ଜଣେ ସାରସ୍ୱତ ସାଧକ, କବି ଓ ଲେଖକ । ବହୁ ଉପଦେଶାତ୍ମକ ପୁସ୍ତକ ସେ ସମାଜର ଉପକାର ପାଇଁ ଲେଖିଛନ୍ତି । ତାଙ୍କ ରଚନା "ଗୀତି ରାମାୟଣ" ଏକ ଅମରକୃତି । ତା ଛଡା ବହୁ କବିତା ଓ ଶିକ୍ଷଣୀୟ ଉକ୍ତିର ଲେଖକ ସେ, ଯାହାର ସାହିତ୍ୟିକ ମୂଲ୍ୟ ଅତୁଳନୀୟ ।

ନାରାୟଣ ବାବୁଙ୍କ ପୁଅ କୃଷ୍ଣଚନ୍ଦ୍ର (କାହ୍ନୁ) ମୋର ଧର୍ମରେ ବଉଳ । ଉଭୟ ପରସ୍ପରର ନାଁ ନ ଧରି 'ବଉଳ' ବୋଲି ଡକାଡକି ହେଉ । ତାଙ୍କ ପରିବାର ସହ ମୋର ସମ୍ପର୍କ ନିବିଡ । ବ୍ରତ, ବିଭା, ଭଲମନ୍ଦରେ ଏକାଠି ହେଉ । ନାରାୟଣବାବୁଙ୍କ ଜୀବନୀ ଉପରେ ଏକ ପୁସ୍ତକ ରଚିତ ହେଉଥିବା କଥା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ଏତଦ୍ୱାରା ତାଙ୍କର ଓ ତାଙ୍କ ସାହିତ୍ୟର ଚିର ମୂଲ୍ୟାୟନ ହେବ, ପ୍ରଚାରହେବ, ଯଦ୍ୱାରା ଜନକଲ୍ୟାଣ ହେବା ନିଶ୍ଚିତ । ଏହାର ସାରସ୍ୱତ ମୂଲ୍ୟ କିଏ ବା ଆକଳନ କରିବ ?

ସେହି ପୁସ୍ତକ ପ୍ରକାଶନ ପାଇଁ ମୁଁ ମୋର ଅଭିମତ ଲେଖି ନିଜକୁ ଧନ୍ୟମନେ କରୁଅଛି । ମୋର ବାଲ୍ୟବଂଧୁ କୃଷ୍ଣଚନ୍ଦ୍ର ମହାପାତ୍ର (ଆଇ.ଏ.ଏସ୍) ଦୀର୍ଘଦିନପରେ ହେଲେ ବି ଏ ପୁସ୍ତକ ପ୍ରକାଶନ ପାଇଁ ମନପ୍ରାଣ ଢ଼ାଳି ଦେଇଥିବାରୁ ତାକୁ ମୁଁ ସାଧୁବାଦ ଜ୍ଞାପନ କରୁଛି । ସାର୍‌ଙ୍କ ସ୍ମୃତିର ସୌରଭ ସମସ୍ତଙ୍କୁ ଆମୋଦିତ କରୁ ।

ବରିଷ୍ଠ ଆଇନ୍‌ଜୀବୀ, ଓଡିଶା ହାଇକୋର୍ଟ
କଟକ



ଶ୍ରୀ କ୍ଷେତ୍ର ମୋହନ ମିଶ୍ର, ପ୍ରାକ୍ତନ ଛାତ୍ର ଅଧୁନା ଓଡ଼ିଶା ଉଚ୍ଚ ନ୍ୟାୟାଳୟର ଜଣେ ବରିଷ୍ଠ ଆଇନ୍‌ଜୀବୀ ଭାବେ ସୁପ୍ରତିଷ୍ଠିତ ।



# ସ୍ମୃତି ଓ ବିସ୍ମୃତିରେ ନାରାୟଣ ସାର୍

ବାସନ୍ତୀ ସାହୁ (ଛାତ୍ରୀ)

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସମାଜରେ ତାର ସୃଷ୍ଟି, ସ୍ଥିତି ଓ ବିଲୟ । ସମାଜରେ ବଞ୍ଚିରହିବାର କଳା ସେ ଶିକ୍ଷାରୁ ଲାଭକରେ । ଶିକ୍ଷା ମନୁଷ୍ୟକୁ ପଶୁଠାରୁ ଭିନ୍ନ ରୂପ ଦିଏ । ଶିକ୍ଷା ପ୍ରଭାବରେ ମନୁଷ୍ୟ କେବଳ ଜ୍ଞାନର ଦିଗ୍‌ବଳୟକୁ ପରିଦର୍ଶନ କରେ ନାହିଁ, ବରଂ ସସୀମରୁ ଅସୀମକୁ ଉଡିଯିବା ପାଇଁ ପ୍ରେରଣାର ପକ୍ଷ ପ୍ରାପ୍ତ ହୁଏ । ଅନ୍ଧକାରରୁ ଅଲୋକକୁ, ଦୁଃଖରୁ ସୁଖକୁ ନେଇଯିବା ପାଇଁ ଶିକ୍ଷା ଏକ ବଳିଷ୍ଠ ମାଧ୍ୟମ ହୁଏ । ତାହା ମନୁଷ୍ୟକୁ ସଞ୍ଜତ, ମାର୍ଜିତ, ବିନୟୀ ଓ ନିୟମାନୁବର୍ତ୍ତୀ ହେବା ପାଇଁ ଅଙ୍ଗୁଳି ନିର୍ଦ୍ଦେଶ କରେ ।

ପ୍ରଥମେ ମାନବଶିଶୁ ନିଜ ମା'ଠାରୁ ଶିକ୍ଷାଲାଭ କରିବା ପରେ ପରିବାରରୁ, ପରିବେଶରୁ ଓ ଶେଷରେ ଶିକ୍ଷାନୁଷ୍ଠାନରୁ ଜ୍ଞାନପ୍ରାପ୍ତ ହୁଏ । ଏହି ଶିକ୍ଷାନୁଷ୍ଠାନରେ କର୍ମରତ ଶିକ୍ଷକବର୍ଗ ମୃତ୍‌ପିଣ୍ଡବତ୍ ମାନବଶିଶୁର ଚରିତ୍ର ଗଠନ ପରି ଜ୍ଞାନଦାନ ମାଧ୍ୟମରେ ତାକୁ ଯଥାର୍ଥ ମାନବ ରୂପେ ସମାଜରେ ଦଣ୍ଡାୟମାନ କରାନ୍ତି । ଏହି ମହନୀୟ କର୍ମ ହେତୁ ଶିକ୍ଷକବର୍ଗ ଛାତ୍ରଛାତ୍ରୀମାନଙ୍କର ହୁଅନ୍ତି ପରମ ଆରାଧ୍ୟ । ସେମାନେ ସେହି ଗୁରୁଙ୍କର ପଦବନ୍ଦନା କରିବା ସହ ସେମାନଙ୍କୁ ଆଜୀବନ ମନେ ରଖନ୍ତି । ମୋର ଶିକ୍ଷାରମ୍ଭ ସମୟରେ ଯେଉଁ ଶିକ୍ଷକମାନଙ୍କର ମହନୀୟ ଅବଦାନ ନିହିତ, ଯେଉଁମାନଙ୍କ ଦିଗ୍‌ଦର୍ଶନ ଲାଭ କରି ମୁଁ ଜ୍ଞାନର ପାବଛକୁ ଆରୋହଣ କରିଛି, ଅସତ୍‌ରୁ ସତ୍‌କୁ ଜାଣି ପାରିଛି, ଅଜ୍ଞାନ-ଅନ୍ଧକାରରୁ ଜ୍ଞାନାଲୋକକୁ ଦେଖିପାରିଛି । ସେମାନଙ୍କ ମଧ୍ୟରେ ଆଉ ଯେକୌଣସି ଶିକ୍ଷକଙ୍କର ଅବଦାନ ଥିଲେ ବି ଭାର୍ଗବୀ ହାଇସ୍କୁଲ ବୀର ନରସିଂହପୁରର ବରିଷ୍ଠ ଶିକ୍ଷକ ନାରାୟଣ ମହାପାତ୍ରଙ୍କ ଅବଦାନ ସର୍ବଶ୍ରେଷ୍ଠ ଅଟେ । ତାଙ୍କର ଆଚରଣ ଓ ଉଚ୍ଚାରଣ ମୋ ଜୀବନକୁ ପ୍ରଭାବିତ କରିଛି । ସେ ହିଁ ମୋ ପାଇଁ ଆଦର୍ଶର ପ୍ରତିମୂର୍ତ୍ତି ଓ ଦେବପ୍ରତିମ ମହାଗୁରୁ ।

ଆଜକୁ ପ୍ରାୟ ଷାଠିଏ ବର୍ଷ ତଳେ ମୁଁ ଗ୍ରାମସ୍ଥ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଶିକ୍ଷା ସମାପ୍ତ କଲି । ତତ୍‌କାଳୀନ ସମୟରେ ଖ୍ୟାତିସମ୍ପନ୍ନ "ଭାର୍ଗବୀ ଉଚ୍ଚ ବିଦ୍ୟାଳୟ" ସମଗ୍ର ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନରୁ ଛାତ୍ରଛାତ୍ରୀଙ୍କୁ ଆକର୍ଷଣ କରୁଥାଏ । ଏହାର ପରିବେଶ, ଶିକ୍ଷାଦାନ ଓ ପରୀକ୍ଷାଫଳ ସନ୍ତୋଷଜନକ

ଥିବାରୁ ମୋର ଜ୍ୟେଷ୍ଠଭ୍ରାତା ବିଜୟ କୁମାର ସାହୁ ଓ ଜୟନ୍ତ କୁମାର ସାହୁ ସେହି ବିଦ୍ୟାଳୟରେ ଅଧ୍ୟୟନ କରୁଥାନ୍ତି ।

ମୋର ନାମ ଲେଖା ସେହି "ଭାର୍ଗବୀ ଉଚ୍ଚ ବିଦ୍ୟାଳୟ"ରେ ୪ର୍ଥ ଶ୍ରେଣୀରେହେଲା । ଭାର୍ଗବୀ ନଦୀର ଉତ୍ତର ଦିଗରେ ବୀରନରସିଂହପୁର ଶାସନର ପୂର୍ବ ଦିଗରେ ଏହି ବିଶାଳ ଶିକ୍ଷାନୁଷ୍ଠାନ ଗର୍ବର ସହ ମୁଣ୍ଡଟେକି ସ୍ୱାଧୀନତା ପରବର୍ତ୍ତୀ କାଳରେ ବହୁ ଛାତ୍ରଛାତ୍ରୀଙ୍କର ଭାଗ୍ୟରେ ପରିବର୍ତ୍ତନ ଆଣିଛି । ନାରିକେଳ, ଆମ୍ବ, ପଣସ ବୃକ୍ଷର ସମ୍ଭାର, ବିସ୍ତୃତ କ୍ରୀଡ଼ା ପ୍ରାନ୍ତର, ଛାତ୍ରାବାସର ଜୀବନଚର୍ଯ୍ୟା ଏହାର ସବିଶେଷ ଆକର୍ଷଣ ।

ହାଇସ୍କୁଲରେ ଚତୁର୍ଥ ଶ୍ରେଣୀରୁ ଏକାଦଶ ଶ୍ରେଣୀଯାଏଁ ପୁଅ ଝିଅ ଏକାଠି ପଢ଼ନ୍ତି ।

ଗ୍ରୀଷ୍ମାବକାଶ ପରେ ସ୍କୁଲ ଖୋଲିବ । ନୂଆ ହାଇସ୍କୁଲକୁ ଯିବି ବୋଲି ଆଖିକୁ ନିଦ ନ ଥାଏ । ନୂଆ ବହିଖାତା, ନୂଆ ପେନ୍, ନୂଆ ବ୍ୟାଗ ସବୁ ମୋର ଆସିଗଲା । ମୁଁ ଗୁରୁବାର ଦିନ ଗାଁ ସାଙ୍ଗ ମାନଙ୍କ ସଂଗେ ସ୍କୁଲକୁ ବାହାରିଲି ।

ପ୍ରଥମ ପିରିୟଡ୍‌ରେ ଶ୍ରେଣୀ ଶିକ୍ଷକ ଉପସ୍ଥାନ ଖାତା ଆଣି ରୋଲ୍ କଲ୍ କଲେ । ସେଦିନ ଆମେ ନିଜ ନିଜ ରୋଲ୍ ନଂ ଜାଣିଗଲୁ । ଜଣ ଜଣ ହୋଇ ଠିଆ ହୋଇ ନିଜ ନାମ କହିବାକୁ ସାର୍ କହିଲେ ।

ପ୍ରଥମ ପିରିୟଡ୍‌ରେ ଯେଉଁ ଶିକ୍ଷକ ଆସିଥିଲେ ସେ ଥିଲେ କ୍ଷୀରୋଦ ଚନ୍ଦ୍ର ମିଶ୍ର ଆମ ଶ୍ରେଣୀ ଶିକ୍ଷକ । ତା ପରେ ଦ୍ୱିତୀୟ ପିରିୟଡ୍‌ରେ ଆସିଥିଲେ ଇଂରାଜୀ ଶିକ୍ଷକ ନାରାୟଣ ମହାପାତ୍ର । ସରଳ ପରିପାଟୀ ପରିଧାନ କରିଥାନ୍ତି । ଧୋତି, କାମିଜ୍ ଓ ତା ଉପରେ ପାଛୁଡ଼ା ମାତ୍ର ପାଦରେ ଚପଲ ନ ଥାଏ । ଡେ଼ଙ୍ଗା ଅଥଚ ପତଳା ଚେହେରା । ସେ ରୁଟିନ୍ ଡ଼ାକି ଦେଲେ ସ୍ନେହବୋଳା ଭାଷାରେ କହିଲେ "ପିଲାମାନେ ଶ୍ରେଣୀରେ ପାଟିତୁଣ୍ଡ କରିବ ନାହିଁ, ଧାଡ଼ି ହୋଇ ପ୍ରାର୍ଥନା ସଭାକୁ ଯିବ ଓ ଆସିବ, ପ୍ରତିଦିନ ସ୍କୁଲକୁ ଆସିବ, ବର୍ଷାଋତୁ ଆସୁଛି ସମସ୍ତେ ଛତା ଆଣିବ । ବାଟରେ ଗଲା ଅଇଲା ବେଳେ ମରାମରି ହେବନି ।" ଏପରି ଅନେକ ଉପଦେଶ ଦେଇ ଆମର ଇଂରାଜୀ ଅକ୍ଷର ପରିଚୟ ହୋଇଛି କି ନାହିଁ ପରଖିଲେ । କଳାପଟା ନିକଟକୁ ଡ଼ାକି ଏ,ବି,ସି,ଡ଼ି ଅକ୍ଷର ଲେଖିବାକୁ କହିଲେ, କେତେକ ଲେଖିପାରୁ ନ ଥାନ୍ତି । ହସି ହସି କହିଲେ, କେହି ଡ଼ର ନାହିଁ ନ ଜାଣିଥିଲେ କହିଦିଅ ମୁଁ ବତାଇ ଦେବି । ତା ପରେ ତାଙ୍କର ପ୍ରତିଟି କ୍ଲାସ ଭାରି ଉତ୍ସାହପ୍ରଦ ହେଲା ଓ ଅଳ୍ପ ଦିନରେ ଆମେ ଇଂରାଜୀ ପଢ଼ିବାକୁ ଶିଖିଲୁ । ବହି ନ ଥିବା ପିଲାଙ୍କୁ ଲାଇବ୍ରେରୀରୁ ବହି ଆଣି ଦେଲେ । ପଞ୍ଚମ ଶ୍ରେଣୀରେ ସେ ଭୂଗୋଳ ଶିକ୍ଷକ ଭୂଗୋଳ ପଢ଼ାଇବା ବେଳେ ମାନଚିତ୍ର ଓ ଗ୍ଲୋବ ଆଣନ୍ତି । ଆମେ ତାଟକା ହୋଇ ଗ୍ଲୋବକୁ ଅନାଉ । ଓଡ଼ିଶାର ନଦନଦୀ, କୃଷି, ସଡ଼କପଥ, ସମସ୍ତ ଜିଲ୍ଲାର ଜ୍ଞାନ ଓ ଋତୁ ପର୍ଯ୍ୟାୟ ପ୍ରାଞ୍ଜଳ ଭାବରେ ପଢ଼ାଉଥାନ୍ତି । ଷଷ୍ଠ ଓ ସପ୍ତମ ଶ୍ରେଣୀରେ ସେ ସାହିତ୍ୟ ପଢ଼ାଉଥାନ୍ତି । ଶବ୍ଦର ଅର୍ଥ ପ୍ରତିଶବ୍ଦ, ବିପରୀତ ଶବ୍ଦ, ବର୍ଣ୍ଣାଶୁଦ୍ଧି, ସନ୍ଧି ବୁଝାଇଲା ବେଳେ ପଦ୍ୟକୁ ମୁଖସ୍ଥ କରିବାକୁ ଉପଦେଶ ଦେଇଥାନ୍ତି । ବିଷୟ ପଛପଟେ ଥିବା ଅନୁଶୀଳନୀର ଉତ୍ତର ଖାତାକୁ ସଂଶୋଧନ କରନ୍ତି । ପିଲାଙ୍କ ମୂଳଦୁଆ ପକାଇବାକୁ ତାଙ୍କର ଭାରି ଆଗ୍ରହ । ସେ ଉପରଶ୍ରେଣୀରେ ପଢ଼ାଇବାକୁ ଥାନ୍ତି । ଅଷ୍ଟମ ଶ୍ରେଣୀରେ ନାରଣବାବୁ ଇଂରାଜୀ ପଢ଼ାଉଥାନ୍ତି । ଦିନେ ପଚାରିଲେ, 'ଗୋ' ଭର୍ବର

ପାଷ୍ଟ ଓ ପାଷ୍ଟ ପାର୍ଟିସିପୁଲ୍ କଣ ହେବ । ମୁଁ ଠିଆ ହୋଇ ଗୋ, ୱେଣ୍ଟ, ଗନ୍ ବୋଲି କହିଦେଲି । ସେ ପରି 'ସି' ଭର୍ବର, 'ପ୍ଲେ' ଭର୍ବର, 'ରାଇଟ୍' ଭର୍ବର କଣ ହେବ ବୋଲି ପଚାରିଲେ । ଅବଶ୍ୟ କେତେ ଜଣ କହୁଥିଲେ ହେଲେ ଭୁଲ୍ ହେଲେ ମୁଁ ଠିକ୍‌ଟା କହି ଦେଉଥିଲି । ପୁଣି ପଚାରିଲେ 'ଗୁଡ୍'ର ଡିଗ୍ରୀ ଅଫ୍ କମ୍ପାରିଜନ୍ କ'ଣ ହେବ? ମୁଁ କହିଲି, ଗୁଡ୍, ବେଟର, ବେଷ୍ଟ, ଟଲ୍, ଟଲର୍, ଟଲେଷ୍ଟ, ସେ ପାନଖିଆ ପାଟିରେ ହସିଦେଲେ । ଇଂରାଜୀରେ ମାଇଁ ସ୍କୁଲ୍ ବିଷୟରେ ମୁଁ ରଚନା ଲେଖିଥିଲି ଯେ, ତାକୁ ନେଇ ପ୍ରଧାନ ଶିକ୍ଷକଙ୍କୁ ଦେଖାଇବାରୁ ସେ ମୋତେ ଅଫିସ୍‌କୁ ଡ଼କାଇ ଉତ୍ସାହିତ କଲେ । ଇଂରାଜୀ ଡ଼ିବେଟ୍ କହିବାକୁ ଦିନେ କହିଲେ । ନାରଣ ବାବୁ ଇଂରାଜୀ ବହିର ଗୋଟିଏ ଅନୁଚ୍ଛେଦ ପଢ଼ିବାକୁ କହିବାରୁ ମୁଁ କୌଣସି ସ୍ଥାନରେ ଅଟକି ନ ଯାଇ ପଢ଼ିଦେଲି ସମୁଦାୟ ପାରା । ସେ ଖୁସି ହୋଇ ଚକ୍ ଖଡ଼ିଟା ପୁରସ୍କାର ଦେଲେ । ମୋ ଆଡ଼କୁ ଫିଙ୍ଗିଦେଲେ ଓ ମୁଁ ଗୋଟାଇ ନେଲି ଚକ୍‌ଖଡ଼ି । ଭୂଗୋଳ ପଢ଼ାଇବା ବେଳେ ମୋତେ ଭାରତ ମାନଚିତ୍ର କଳାପଟା ଉପରେ ଅଙ୍କନ କରିବାକୁ କହିବାରୁ ଉତ୍ତର ଦକ୍ଷିଣ ପୂର୍ବ ଦିଗ (ଉ.ଦ.ପୂ.) ଦେଖାଇ ମାନଚିତ୍ର ଆଙ୍କିଲି ମାତ୍ର ବଙ୍ଗୋପସାଗରରେ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ ସହ ସିଂହଳ ଦ୍ୱୀପକୁ ସ୍ଥାନିତ ନ କରିଥିବାରୁ ଗାଳି ଖାଇଲି । ଦିନେ ରିସେସ୍ ପରେ ବିଳମ୍ବରେ ଶ୍ରେଣୀ ଆସିବାରୁ ତାଙ୍କ ହାବୁଡ଼ରେ ପଡ଼ି ନିଲ୍ ଡାଉନ୍ ହେଲୁ ଆମେ କେତେଜଣ । ମୁଁ ସାର୍‌ଙ୍କୁ କ୍ଷମା ମାଗିବାରୁ ସେ ଆମକୁ ଉଠାଇଲେ । ବର୍ଷ ଶେଷରେ ପରୀକ୍ଷାଫଳ ବାହାରିବା ବେଳେ ମୁଁ ନିଶ୍ଚିତ ପ୍ରଥମ ତିନି ଜଣଙ୍କ ମଧ୍ୟରୁ ଜଣେ ହୋଇଥିବି । ହିନ୍ଦୀରେ ପରୀକ୍ଷାମାନ ଦେଇ ପରିଚୟ ପାସ୍ କରି ଯାଇଥିବାରୁ ହିନ୍ଦୀ ଶିକ୍ଷକ ମଧୁ ବାବୁ ମୋ ଉପରେ ମହା ଖୁସୀ । ଦିନେ ନାରଣବାବୁ କହିଲେ, ବାସନ୍ତି ତୁ ମାଟ୍ରିକ ପାସ୍ କରିବା ପୂର୍ବରୁ ଅଧିକ ଯୋଗ୍ୟତା ଅର୍ଜନ କଲୁଣି । ଟିକିଏ ହସି ଦିଅନ୍ତି ।

ଆନନ୍ଦରେ ଗଡ଼ି ଯାଉଥାଏ ମୋର ଛାତ୍ରୀ ଜୀବନର ଦିନ ଗୁଡ଼ିକ । ମାଟ୍ରିକ୍ ପରୀକ୍ଷା ଦେବା ପୂର୍ବରୁ ମୁଁ ଶୁଣିବାକୁ ପାଇଲି ଯେ, ଘରେ ମୋତେ ଆଉ ସ୍କୁଲ୍‌କୁ ଯିବାକୁ ଦେବେନି । ମୋର ବିବାହ ଆୟୋଜନ କରିବେ । ଦିନେ ସତକୁ ସତ ଘରେ କହିଲେ, ଦେଖ୍ ବାସୀ, ଆମର ରକ୍ଷଣଶୀଳ ପରିବାର । ବାପାଙ୍କର ସାମାଜିକ ସମ୍ମାନ ବିଷୟରେ ତୁ ତ ଭଲ ଭାବରେ ଜାଣୁ । ତୋ ପାଠପଢ଼ା ଏତିକିରେ ବନ୍ଦ ହୋଇଗଲା । ତିନି ଗାଁ ଡେଇଁ ସ୍କୁଲ ଯାଆ ନାହିଁ । ଲୋକେ ନାକ ଟେକିବେ । କାଲେ କିଏ କ'ଣ କହିଦେବ, ଦେଖୁନାହୁଁ ଝିଅ ମାନେ ସପ୍ତମ ଅଷ୍ଟମ ହେଲେ ଘରେ ରହି ଯାଉଛନ୍ତି । ଯେତେ ପଢ଼ିଲୁଣି ଯଥେଷ୍ଟ । ସେହି ଜ୍ଞାନ ତୋ ଜୀବନକୁ ନିୟନ୍ତ୍ରଣ କରିବ । ମୁଁ କାନ୍ଦିଲି, ବହୁତ କାନ୍ଦିଲି । କିନ୍ତୁ କିଛି ଫଳ ହେଲା ନାହିଁ । ଚକ୍ ଚକ୍ କରୁଥିବା ମୋ ସନ୍‌ରାଇଜ୍ ଜ୍ୟାମିତି ବାକ୍ସ ଯେମିତି ମୋତେ ଚାହିଁ ଉପହାସ କରୁଛି । ବହି ବସ୍ତାନୀ ମୋତେ ଥଙ୍ଗା କଲାଭଳି ମୋତେ ଚାହିଁଚି । ରକ୍ଷଣଶୀଳ ପରିବାରର ଚାରିକାନ୍ଥ ମଧ୍ୟରେ ଯେପରି ମୁଁ ଅଣନିଶ୍ୱାସୀ ହୋଇଯାଉଛି । ଦଶମ ଶ୍ରେଣୀ ପରେ ସ୍କୁଲକୁ ଆଉ ଯାଇପାରିଲି ନାହିଁ ।

ମୁଁ ସ୍କୁଲକୁ ନ ଯିବାରୁ ଦିନେ ନାରାୟଣ ବାବୁ ସ୍କୁଲ ପିଅନକୁ ସାଙ୍ଗରେ ଧରି ଆମ ଘରେ ପହଞ୍ଚିଲେ । ବାପା ଚୁପ୍ ହୋଇ ବସିଥାନ୍ତି । ସାର୍ ବୁଝାଉଥାନ୍ତି । ମା' କହିଲେ, କ୍ଷମା କରିବେ ସାର୍ । ଆଉ ବାଧ କରନ୍ତୁ ନାହିଁ । ମା'ଙ୍କ ନାସ୍ତିବଚନ ଶୁଣିଲେ ସାର୍ । ଦମ୍ଭରେ କହିଲେ, ବ୍ରଜବାବୁ ଏ ଝିଅ ଦିନେ ସ୍କୁଲ୍‌ର ନାଁ ରଖିଥାନ୍ତା । ଡ଼ାକ୍ତରାଣୀ ଟିଏ ହେବ

ବୋଲି ଆମେ ସବୁ ନିଶ୍ଚିତ ଥିଲୁ । ତା'ର ପ୍ରଖର ବୁଦ୍ଧି, ସ୍ମରଣ ଶକ୍ତି ଓ ଗୁରୁ ଭକ୍ତିରେ ଆମେ ମୁଗ୍ଧ । ଏବେ ତା' ପାଠପଢ଼ାରେ ଡ଼ୋରି ବନ୍ଧା ହୋଇଗଲା ବୋଲି ମୁଁ ଭାବୁନାହିଁ । କିଛି ଦୁଃଖିତ ନୁହେଁ । ଏ ସୁଲକ୍ଷଣୀ କନ୍ୟା, ସୁଗୁଣସମ୍ପନ୍ନା, ଜୀବନ ଏହାର ସୁଖମୟ ହେବ । ଶିକ୍ଷାଗତ ଯୋଗ୍ୟତା ଏହାର ଆବଶ୍ୟକତା ନାହିଁ । ନାରୀ ଜୀବନରେ ଯେଉଁ ଶିକ୍ଷା ନିହାତି ଆବଶ୍ୟକ ସେ ଏହାକୁ ସହଜରେ ଆୟତ୍ତ କରିପାରିବ । ଏ ଝିଅ ନିଶ୍ଚିତରୂପେ କୌଣସି ଏକ ଉଚ୍ଚ ତଥା ଆଦର୍ଶ ପରିବାରର କୁଳବଧୂ ହେବ । ଏ ଲକ୍ଷ୍ମୀପ୍ରତିମା ପତିଗୃହର କୁଳଦୀପିକା ଭାବେ ପ୍ରଭୂତ କଲ୍ୟାଣ ସାଧନ କରିବ । ଧନ ଜନ ଗୋପଲକ୍ଷ୍ମୀ ସେ ଗୃହରେ ଅବଶ୍ୟ ବିରାଜମାନ କରିବ । ଏହା ମୋର ତା'ପାଇଁ ଭବିଷ୍ୟତ ବାଣୀ, ଦେଖିବେ । ଏହା କହି ଯତ୍‌ସାମାନ୍ୟ ଅଭ୍ୟର୍ଥନା ଗ୍ରହଣ କରି ସାର୍ ଦ୍ୱାରଦେଶରୁ ପାହାଚ ତଳକୁ ଓହ୍ଲାଇଗଲେ । ମୁଁ ଅପଲକ ନେତ୍ରରେ ଦୂରରେ ତାଙ୍କ ଶରୀର ଲୁଚି ଯାଉଥିବାର ଦୃଶ୍ୟ ନିରବରେ ଦେଖୁଥାଏ । ଘରେ କହୁଥାନ୍ତି, ଏ ଜଣେ ଆଦର୍ଶ ଗୁଣଗ୍ରାହୀ ଶିକ୍ଷକ ଯେ କି ଜଣେ ଛାତ୍ରୀ ପାଇଁ ଏତେ ପଥଶ୍ରମ କରି ଏଠାକୁ ଆସିଛନ୍ତି । ତାପରେ ସମସ୍ତେ ନୀରବ, ଗ୍ଲାନୀ ପୀଡିତ ।

ସତକୁ ସତ ମୋର ବିବାହ ସମ୍ପନ୍ନ ହେଲା କଟକ ଚାଉଳିଆ ଗଞ୍ଜ ନିବାସୀ ସମଗ୍ର ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ବ୍ୟବସାୟୀ ଗିରିଧାରୀ ସାହୁଙ୍କ ଅନୁଜ ବ୍ରଜବନ୍ଧୁ ସାହୁଙ୍କ ଖାନଦାନରେ । ତାଙ୍କର ଗୁଣବାନ, ରୂପବାନ୍ ସୁପୁତ୍ର କଟକର ଖ୍ୟାତିସମ୍ପନ୍ନ ଯୁବ ବ୍ୟବସାୟୀ ଧନେଶ୍ୱର ସାହୁ (ବୁଲାବାବୁ)ଙ୍କ ସହ ମୋର ପାଣିଗ୍ରହଣ ସମ୍ପନ୍ନ ହେଲା । ଏବେ ମୁଁ ସ୍ୱାମୀଙ୍କ ସ୍ନେହ, ସୋହାଗ ଓ ସାହଚର୍ଯ୍ୟ ଲାଭ କରି ପରମ ଭାଗ୍ୟବତୀ ବୋଲି ନିଜକୁ ମନେ କରୁଛି । ଉଚ୍ଚଶିକ୍ଷିତ ମୋର ପୁତ୍ର ଓ କନ୍ୟାମାନେ । ଏବେ ସୁପ୍ରତିଷ୍ଠିତ ଓ ସତ୍‌ପାତ୍ରରେ ପ୍ରଦତ୍ତା । ଗୁରୁ ନାରାୟଣ ବାବୁଙ୍କର ଭବିଷ୍ୟବାଣୀ ସତ୍ୟରେ ପରିଣତ ହେଲା ବୋଲି ମନେ କରୁଛି । ଏବେ ବି ଭାର୍ଗବୀ ନଦୀ ବହି ଚାଲିଛି । ଦାମିଆକାଣ୍ଡି ବରଗଛ ଏବେ ବି ଦିଗ୍‌ବଳୟ ଉପରେ ମୁଣ୍ଡ ଟେକି ହାତଠାରୁ ଡାକୁଛି । ନଦୀର ସନ୍ତରଣରତ ପକ୍ଷୀଙ୍କ କଳରବ, ସୋଡବାମାଳର ବିହଙ୍ଗର କାକଳି ଏବେ ବି ମୋତେ ଶୁଣାଯାଉଛି, ମୋର ମନକୁ ଆମୋଦିତ କରୁଛି । ଏବେ ବି ମୋର ଇଚ୍ଛା ହୁଏ ସହପାଠୀମାନଙ୍କୁ କହନ୍ତି "ଆସ, ଆମେ ଆଉଥରେ ସ୍କୁଲ ଯିବା" । ଅତୀତକୁ ଫେରିବା ଆଉ କ'ଣ ସମ୍ଭବ ।

୧୯୮୫ ମସିହାରୁ ଗୁରୁଙ୍କ ପରଲୋକ ପ୍ରାପ୍ତି ହେଲାଣି । ତାଙ୍କର ବିନୀତ ପୁତ୍ର କୃଷ୍ଣଚନ୍ଦ୍ର ମୋର ସହପାଠୀ । ଗୁରୁ ଜଣେ ସୁସାହିତ୍ୟିକ, କବି ଓ ଲେଖକ । ତାଙ୍କ ଆତ୍ମଜୀବନୀ ପ୍ରକାଶନ ଅବସରରେ କିଛି ଲେଖିବାକୁ ମୋତେ ସୁଯୋଗ ମିଳିଥିବାରୁ ମୁଁ ନିଜକୁ ସୌଭାଗ୍ୟବତୀ ମନେ କରୁଛି ଓ ପୁସ୍ତକର ନିର୍ବାଧ ପ୍ରକାଶନ କାମନା କରୁଛି ।

ବନ୍ଦେ ଗୁରୁପାଦ କମଳମ୍

ସ୍ୱାମୀ : ଧନେଶ୍ୱର ସାହୁ
ଚାଉଳିଆ ଗଞ୍ଜ, କଟକ

●●●

ଶ୍ରୀମତୀ ବାସନ୍ତୀ ସାହୁ, ପ୍ରାକ୍ତନ ଛାତ୍ରୀ ଜଣେ ଆଦର୍ଶ ଗୃହିଣୀ । କଟକର ଲବ୍ଧପ୍ରତିଷ୍ଠ ବ୍ୟବସାୟୀ ଶ୍ରୀ ଧନେଶ୍ୱର ସାହୁଙ୍କ ସହଧର୍ମିଣୀ ଓ ଚାଉଳିଆଗଞ୍ଜରେ ଅବସ୍ଥାପିତ ।

## ଅଭିମତ (ପରିବାର ଓ ବନ୍ଧୁବର୍ଗ)



# "ନନାଙ୍କ ସ୍ମୃତି"

ଉମାମଣି ମିଶ୍ର

ଦିନ ପରେ ଦିନ, ରାତି ପରେ ରାତି, ମାସ ପରେ ମାସ, ବର୍ଷ ପରେ ବର୍ଷ, ସଂସାରର ଏହି ନିତିଦିନିଆ ଖେଳ ଭିତରେ କେଉଁଠି ଉଙ୍କିମାରେ ସ୍ମୃତି ଟିକିଏ । ସେ ସ୍ମୃତି ହୃଦୟ ଭିତରେ ଲେଖା ହୋଇ ରହିଯାଏ, ସହଜରେ ଲିଭେ ନାହିଁ । ମୋ ନନାଙ୍କ ଜୀବନୀ ଛପା ହେଉଛି । ଜୀବନୀରେ ସେ ସବୁ ଲେଖି ଯାଇଛନ୍ତି ଯାହାକି ମୋ ଆଗରେ ଜୀବନର ବହୁତ କଥା କହିଛନ୍ତି । ସେଥିରୁ ଗୋଟିଏ କଥା ତାଙ୍କର ମନେପଡେ, ଲେଖୁଛି ।

ଦିନେ ପୁରୀ ଷ୍ଟେସନରେ ପଣ୍ଡିତ ଗୋପବନ୍ଧୁ ଦାସ ଦେଖାହେଲେ ଓ କହିଲେ "ନାରଣ ! କ'ଣ ଆଇ.ଏ ପାସ୍ କଲ, ଆଉ ଏଥର କଣ କରିବ" ନନା କହିଲେ "ଚାକିରି ଖୋଜୁଛି" । ଘରେ ଅଭାବ, ଆଉ ପଢିବା ସମ୍ଭବ ନୁହଁ"। ଗୋପବନ୍ଧୁ ଦାସ ସେତେବେଳେ କହିଥିଲେ "ସାକ୍ଷୀ ଗୋପାଳ ସ୍କୁଲ୍‌ରେ ଚାକିରି କରିବକି, "ଏବେ ଆସ, ପିଲାଙ୍କୁ ପାଠ ପଢାଅ"। ସେହିଦିନ ଗୋପବନ୍ଧୁ ଦାସଙ୍କୁ ମୁଣ୍ଡିଆ ମାରି ତାଙ୍କଦ୍ୱାରା ଅନୁପ୍ରାଣିତ ହୋଇ ପରବର୍ତ୍ତୀ ଅବସ୍ଥାରେ ସେ ଶିକ୍ଷକ ବୃତ୍ତି ଅବଲମ୍ବନ କରିଥିଲେ ଓ ସତ୍ୟବାଦୀ ହାଇସ୍କୁଲରେ ଅବସ୍ଥାପିତ ହୋଇଥିଲେ । ଅବଶ୍ୟ ମୁଁ ସେତେବେଳକୁ ପିଲାଥିଲି ଓ ଉତ୍କଳମଣି ଦେହତ୍ୟାଗ କରିସାରିଥିଲେ । କିନ୍ତୁ ତାଙ୍କର ଆଦର୍ଶ ତାଙ୍କୁ ପ୍ରଭୂତ ଭାବରେ ଅନୁପ୍ରାଣିତ କରିଥିଲା ।

ନନା ସାକ୍ଷୀଗୋପାଳ ସ୍କୁଲ୍‌ରେ ଜଏନ୍ କଲେ । ମୁଁ ୩ୟ ଶ୍ରେଣୀରେ ପଢୁଥାଏ । ସେତେବେଳେ ମହାତ୍ମା ଗାନ୍ଧୀଙ୍କର ମୃତ୍ୟୁ ହେଲା । ମୋ ନନା ଜଣେ ଶିକ୍ଷକ ଖାଲି ନଥିଲେ ଜଣେ ବଡ ଦେଶପ୍ରେମୀ ଥିଲେ । ତାଙ୍କ ଜୀବନୀରେ ସବୁ ଲେଖା ହୋଇଛି । ଅଧିକା ଲେଖିବାକୁ ଚାହୁଁ ନାହିଁ । ଏତିକି ଲେଖି ମୋ ଲେଖା ବନ୍ଦ କରୁଛି । ସ୍ୱଳ୍ପ ବେତନଭୋଗୀ ସ୍କୁଲ୍ ମାଷ୍ଟରଙ୍କର ପୁଣ୍ୟବଳରୁ ଆଜି ଆମେ ୪ ରୁ ୪୦ ହୋଇ ତାଙ୍କର ଆଶୀର୍ବାଦ ଭିକ୍ଷା କରୁଛୁ । ଅମର ପୁରରେ ରହି ତାଙ୍କ ଛାତ୍ର, ପୁଅ-ଝିଅ, ନାତି-ନାତୁଣୀଙ୍କୁ ଆଶୀର୍ବାଦ କରନ୍ତୁ ।

(ବଡ ଝିଅ)

•••



# ମୋ ପିତା, ମୋ ଜୀବନ୍ତ ଦେବତା

ଡ. ରମାମଣି ମିଶ୍ର (ଝିଅ)

ମୋ ଦିବଂଗତ ପିତାଙ୍କର ଆତ୍ମଜୀବନୀ ଆତ୍ମପ୍ରକାଶ କରୁଥିବା ଖବର ସାନ ଭାଇଠାରୁ ପାଇ ମୁଁ ଆନନ୍ଦରେ ବିଭୋର ହୋଇଯାଉଛି । ଏହା ତାଙ୍କର ଅମର ଆତ୍ମାକୁ କେତେ ଆନନ୍ଦ ପ୍ରଦାନ କରିବ, ଭାବିଲା ବେଳକୁ ଆଖିରେ ଆନନ୍ଦାଶ୍ରୁ ଭରିଯିବା ସହିତ ପିତାଙ୍କର ଜ୍ଞାନଦୀପ୍ତ ମୁଖମଣ୍ଡଳ ମୋ ଆଖି ଆଗରେ ଭାସି ଉଠୁଛି । ସେହି ଜୀବନ୍ତ ଦେବତାଙ୍କର ଆତ୍ମଚରିତ ଆମ ପାଇଁ 'ଗୀତା ଭାଗବତ' ।

ସାରା ଜୀବନ ସେ ମୋ ଉପରେ, ମୋ ପିଲାଙ୍କ ଉପରେ ଯେଉଁ ସ୍ନେହ, ଶ୍ରଦ୍ଧା ଦେଇ ଆମର ଯତ୍ନ ନେଇଛନ୍ତି, ପ୍ରତିଦାନରେ ମୁଁ କିଛି ବି ଦେଇ ପାରିନାହିଁ । ଆଜି ଭାବୁଛି, ମୁଁ ଶିକ୍ଷୟିତ୍ରୀ ଥିଲି, ସ୍ୱାମୀ ସରକାରୀ କର୍ମଚାରୀ ଥିଲେ, ବାହାରେ ରହୁଥିଲି । ଘରୋଇ ଭାବରେ ଏମ୍.ଏ, ଡକ୍ଟରେଟ୍ କରୁଥିଲି ତାଙ୍କରି ପ୍ରେରଣାରେ । ଉଚ୍ଚଶିକ୍ଷା ପାଇଁ ନିରନ୍ତର ପ୍ରେରଣା ଓ ସଫଳତାର ମନ୍ତ୍ର ମୁଁ ତାଙ୍କଠାରୁ ହିଁ କେବଳ ଲାଭ କରିଛି । ପିଲାମାନେ ଅବହେଳିତ ହେବା ଜାଣି ସେ ୨ଟି ପିଲାଙ୍କୁ ଆଣି ପାଖରେ ରଖିଥିଲେ । ମନେଅଛି, ବୋଉ ମୋର ଝିଅକୁ ଗୀତ ଶିଖାଇ ଦେଇଥିଲା ।

"କୋଇଲି ଲୋ କୋଇଲି, ବୋଉ ମୋର ପାଠ ପଢୁଛି, ମୁଁ ଆଈ ଘରେ ରହିଲି" । ନନା ଚିଠିରେ ମୋ ପାଖକୁ ପିଲାଙ୍କ ବିଷୟ ଲେଖନ୍ତି ବ୍ୟସ୍ତ ନହୋଇ ଲକ୍ଷ୍ୟପୂରଣ ପାଇଁ ଚେଷ୍ଟା କର । ନିୟମିତ ପତ୍ର ଲେଖିବା ତାଙ୍କର କାମ ଥାଏ, ଉତ୍ତରକୁ ଅପେକ୍ଷା କରନ୍ତିନି ।

ଭଲ ଶିକ୍ଷୟିତ୍ରୀ ହେବାପାଇଁ ସବୁବେଳେ ଉପଦେଶ ମୁଁ ତାଙ୍କଠାରୁ ହିଁ ପାଉଥିଲି । ମୋର ଉଚ୍ଚଶିକ୍ଷା ଲାଭର ସଫଳତା ତାଙ୍କର ଆଶୀର୍ବାଦ ଆଉ ପ୍ରଦତ୍ତ ଉତ୍ସାହର ଫଳମାତ୍ର ।

ମୋ ବାପା ଜଣେ ସାଧାରଣ ଶିକ୍ଷକ ନଥିଲେ । ତାଙ୍କର ପ୍ରଦତ୍ତ ଶିକ୍ଷା ଏବଂ ଅନୁଶାସନ ଜୀବନ ସଂଗ୍ରାମରେ ଆଗେଇବାରେ ବହୁଛାତ୍ରଙ୍କୁ ସାହାଯ୍ୟ କରିଛି ଏବଂ ସେମାନଙ୍କୁ ଅସାଧାରଣ ବ୍ୟକ୍ତିତ୍ୱରେ ପରିଣତ କରିଛି । ବାପାଙ୍କର ସୁକୃତ, ସୁନିଷ୍ଠା, ସୁଚିନ୍ତା, ପରୋପକାରିତା, କର୍ତ୍ତବ୍ୟ ପରାୟଣତା, ଛାତ୍ରବତ୍ସଳତା, ସର୍ବୋପରି ଈଶ୍ୱର ଭକ୍ତିର ଫଳ ଆଜି ପରିବାରର ସମସ୍ତେ ଭୋଗ କରୁଛୁ । ନିଜ ଜନ୍ମଭୂମି ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ବହୁତ ଥିଲା । ତାହାସବୁ ତାଙ୍କ 'ଜନ୍ମ ଭୂମି' କବିତାରେ ପ୍ରତିଫଳିତ ହୋଇଛି ।

ଗ୍ରାମବାସୀମାନେ ଥିଲେ ତାଙ୍କର ଅତି ଆପଣାର । କେହି ତାଙ୍କର ଶତ୍ରୁ ନଥିଲେ । ସେ ଥିଲେ ଅଜାତଶତ୍ରୁ ।

ଆମ ଜମି ଚାଷ କରୁଥିବା ଚାଷୀମାନେ ଥିଲେ ତାଙ୍କର ଅତି ନିଜର । ପରିବାରର ଲୋକ । ସେମାନଙ୍କୁ ସ୍ନେହ, ଶ୍ରଦ୍ଧା ଓ ସମୟୋଚିତ ସାହାଯ୍ୟ କରୁଥିଲେ ।

ଏକାଧାରରେ ସେ ଥିଲେ 'ଜ୍ଞାନର ସାଗର' 'ଦୟାର ସାଗର' ଏବଂ ସମସ୍ତଙ୍କର ପରମ ହିତାକାଂକ୍ଷୀ । ଏହା ନିରାଟ ନିଛକ ସତ୍ୟ ।

ସେ ହୋମିଓପାଥି ବହିପଢି ଔଷଧ ବିତରଣ କରନ୍ତି । ବହୁଲୋକ ଔଷଧ ପାଇଁ ତାଙ୍କ ପାଖକୁ ଆସନ୍ତି ଏବଂ ଔଷଧ ଖାଇ ଉପକୃତ ହୋଇଛନ୍ତି । ତାଙ୍କର ସେବାର ସ୍ମୃତି ସ୍ୱରୂପ ସେ ବହିଗୁଡିକୁ ଏବେ ଭାଇ ସାଇତି ରଖିଛି ।

ସେତେବେଳେ ଗ୍ରାମବାସୀଙ୍କର ଆର୍ଥିକ ଅବସ୍ଥାକୁ ଅନୁଧ୍ୟାନ କରି ସେ ଗ୍ରାମରେ ସମବାୟ ସଂସ୍ଥା (Co-operative Society) ଗଠନକରି ତା'ର ପରିଚାଳନା ଦାୟିତ୍ୱ ନିଜେ ନେଇ ଲୋକମାନଙ୍କୁ ଆବଶ୍ୟକ ବେଳେ ଟଙ୍କା ପାଇବାରେ ସାହାଯ୍ୟ କରୁଥିଲେ ।

ବାପାଙ୍କର ଦେହାନ୍ତ ୧୯୮୫ ମସିହାରେ ବ୍ରହ୍ମପୁରରେ ଭାଇର ସରକାରୀ ବାସଭବନରେ ହୋଇଥିଲା । ଭାଇ ଝିଅର ଜନ୍ମୋତ୍ସବରେ ଯୋଗ ଦେବାପାଇଁ ମୁଁ ବ୍ରହ୍ମପୁର ଯାଇଥିଲି, ମୋତେ ସବୁବେଳେ ସେଠାରେ କୁହନ୍ତି ବୋଉକୁ କହିଦେବୁ ମୁଁ ୬/୭ ଦିନ ଭିତରେ ଗ୍ରାମକୁ ଯାଉଛି । ମୁଁ ବ୍ରହ୍ମପୁରରୁ ଭୁବନେଶ୍ୱର ଫେରିବାର ଠିକ୍ ସପ୍ତାହପରେ ତାଙ୍କର ମୃତ୍ୟୁ ହେଲା । ଡାକ୍ତରଖାନା ଯାଇ ନାହାଁନ୍ତି କି ମୃତ୍ୟୁଯନ୍ତ୍ରଣା କିଛି ପାଇନାହାଁନ୍ତି ।

ଭାଇ ତାଙ୍କ ଶବକୁ ନେଇ ଗାଁକୁ ଆସିଲା । ଗ୍ରାମ ଶ୍ମଶାନ ଥିଲା ତାଙ୍କପାଇଁ ଅତି ପବିତ୍ର, ସ୍ୱର୍ଗଦ୍ୱାର ଠାରୁ ବଡ ।

'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ଏହି ମହାମନ୍ତ୍ରରେ ସେ ସାରା ଜୀବନ ଅନୁପ୍ରାଣିତ ଥିଲେ । ତାଙ୍କ ଅଭିପ୍ରାୟ ଜାଣି ଗ୍ରାମ ଶ୍ମଶାନରେ ତାଙ୍କ ଶବଦାହ କରାଗଲା । ତାଙ୍କର ଜୀବନର ଶେଷ ସମୟ ସେ ଜାଣିଥିଲେ । ତାଙ୍କର ମହାନ୍ ଆତ୍ମା ପରମାତ୍ମାଙ୍କ ସହିତ ଲୀନ ହୋଇଗଲା ତାଙ୍କ ପ୍ରିୟ ଗ୍ରାମରେ, ପ୍ରିୟ ଗ୍ରାମବାସୀଙ୍କ ମେଳରେ ।

ଏହିପରି ପିତା ମୋତେ ସବୁ ଜନ୍ମରେ ମିଳନ୍ତୁ । ଏହା ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।

ତାଙ୍କର ଆତ୍ମଚରିତ ପଠନ ଭବିଷ୍ୟତ ବଂଶଧରମାନଙ୍କ ଭିତରେ ଉପଯୁକ୍ତ ମୂଲ୍ୟବୋଧ ସୃଷ୍ଟିକରିବ ଏବଂ ସେମାନଙ୍କୁ ସୁପଥଗାମୀ କରିବ ଏହା ନିଶ୍ଚିତ ।

ସାନଝିଅ
ଅବସରପ୍ରାପ୍ତ ପ୍ରଧାନ ଶିକ୍ଷୟିତ୍ରୀ
Unit-IV ବାଳିକା ଉଚ୍ଚ ବିଦ୍ୟାଳୟ

●●●



# ମୋ ଦୃଷ୍ଟିରେ ମୋ ଶ୍ୱଶୁର

ନୀହାର ପ୍ରଭା ମହାପାତ୍ର (ବୋହୂ)

ଶ୍ୱଶୁରଙ୍କ ରଚିତ 'ଆତ୍ମଚରିତ' ପାଇଁ କିଛିଟା ନିଜସ୍ୱ ଅଭିମତ ଲେଖିବାକୁ ଆରମ୍ଭ କରି ଭାବୁଛି, ସେ ତ କେବଳ ବ୍ୟକ୍ତି ବିଶେଷରେ ସୀମିତ ନୁହଁନ୍ତି ବରଂ ଏକ ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ସମୟର ଜଣେ ଆଦର୍ଶ ଶିକ୍ଷକଭାବେ ସତ୍ୟବାଦୀର ପଞ୍ଚସଖାଙ୍କ ପ୍ରଭାବ ତାଙ୍କ ଜୀବନର ପ୍ରତିଟି କ୍ଷେତ୍ରରେ ପଡିଥିବାର ମୁଁ ମର୍ମେ ମର୍ମେ ଅନୁଭବ କରିଛି । ତାଙ୍କର ପ୍ରତ୍ୟେକଟି ବାକ୍ୟ, କାର୍ଯ୍ୟକଳାପ, ଆଦର୍ଶ ତଥା ମୂଲ୍ୟବୋଧ ସତ୍ୟବାଦୀ ବିଦ୍ୟାଳୟରେ ସେତେବେଳର ଛାତ୍ର ଥିବା 'ମୋ ନନା'ଙ୍କୁ ବହୁତ ଅନୁପ୍ରାଣିତ କରିଥିଲା । ନନା ଜଣେ ଆଦର୍ଶ ଶିକ୍ଷକ ହୋଇଥିବାରୁ ଶ୍ୱଶୁରଙ୍କର ଆଦର୍ଶ ତଥା ମୂଲ୍ୟବୋଧ ତାଙ୍କ ଚିନ୍ତା ଚେତନାକୁ ସର୍ବଦା ଉଜ୍ଜୀବିତ କରି ରଖିଥିଲା ।

ତାଙ୍କର ପରିବାର ପ୍ରତି କର୍ତ୍ତବ୍ୟବୋଧ ଓ ଦାୟିତ୍ୱବୋଧ ପ୍ରତ୍ୟେକଙ୍କୁ ଶୃଙ୍ଖଳିତ ତଥା ଏକତାବଦ୍ଧ କରି ରଖିଥିଲା । ତାଙ୍କର ନିରବ ପ୍ରେରଣା ସମସ୍ତଙ୍କୁ ସୁସଂହତ କରି ଗଢିଥିଲା । ତାଙ୍କ ଦାୟିତ୍ୱବୋଧ, ସମୟାନୁବର୍ତ୍ତିତା, ମିତବ୍ୟୟିତା ଆମ ସମସ୍ତଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ନାତି, ନାତୁଣୀଙ୍କ ପ୍ରତି ତାଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ସେ ସେମାନଙ୍କୁ ଆଦର୍ଶ ତଥା ଶୃଙ୍ଖଳିତ କରି ଗଢି ତୋଳିବାରେ ସତତ ଚେଷ୍ଟିତ ଥିଲେ । ମୋତେ ନାତୁଣୀ ସ୍ଥାନୀୟା ଆସନରେ ରଖିଥିବାରୁ ସ୍ନେହ ପୂର୍ବକ ମୂଲ୍ୟବାନ ଉପଦେଶ ସବୁ ଶୁଣାଉଥିଲେ । ଅନ୍ୟମାନଙ୍କ ପ୍ରତି କର୍ତ୍ତବ୍ୟ ସଂପାଦନ କରିବାରେ ତଥା ପିଲାଙ୍କୁ ଉପଯୁକ୍ତ ଭାବେ ଗଢି ତୋଳିବା ପାଇଁ ସଚେତନ କରାଉଥିଲେ । ମୋ ପାଖରେ କିଛି ବର୍ଷ ରହି ଘର ପରମ୍ପରା, ପର୍ବପର୍ବାଣି ଓ ତାର ବିଧିବିଧାନ ବିଷୟରେ କହି ତାକୁ ସଠିକ୍ ଭାବେ ପାଳନ କରିବା ପାଇଁ ସଚେତନ କରାଉଥିଲେ ।

ମୋର ଜାଣିବାରେ ତାଙ୍କର ସମାଜ ପ୍ରତି ଦାୟିତ୍ୱବୋଧ ମଧ କୌଣସି ପ୍ରକାରେ କମ୍ ନଥିଲା । ଗ୍ରାମରେ କେହି ଅସୁସ୍ଥ ହୋଇପଡିଲେ ସେ ତୁରନ୍ତ homeopathic medicineର ସାହାଯ୍ୟରେ ଉପଶମ କରିବାକୁ ଚେଷ୍ଟା କରୁଥିଲେ । ବିଶେଷକରି

ଅନଗ୍ରସର ଲୋକଙ୍କ ପାଇଁ ସେ ଦେବତାତୁଲ୍ୟ ଥିଲେ, ସେମାନଙ୍କର ଅସମୟ ତଥା ଅସୁସ୍ଥତା ସମୟରେ ଯତ୍‌ପରୋନାସ୍ତି ସାହାଯ୍ୟ କରି ଆତ୍ମତୃପ୍ତି ପାଉଥିଲେ । ଏସବୁ ବ୍ୟତୀତ ସେ ଅନେକ ଅସ୍ୱଚ୍ଛଳ ବର୍ଗର ଛାତ୍ରଙ୍କୁ ନିଜ ଘରେ ରଖି ସେମାନଙ୍କୁ ଉଚ୍ଚଶିକ୍ଷିତ କରାଇବାରେ ସହାୟକ ହୋଇଛନ୍ତି । ଆଜିକାଲି ଯୁଗରେ ଏପରି ମହାନତା ବିରଳ ।

ମୋ ପାଇଁ ସବୁଠାରୁ ମହାନ୍ ହେଲା ଯେତେବେଳେ ନାରୀ ଶିକ୍ଷା ସେପରି ପ୍ରଚଳନ ନଥିଲା, ସେହି ସମୟରେ ସେ ଶାଶୁଙ୍କର ଶିକ୍ଷାଦୀକ୍ଷା ପ୍ରତି ବିଶେଷ ଯତ୍ନବାନ ଥିଲେ । ମହାଭାରତ, ରାମାୟଣ, ପୁରାଣ, ଭାଗବତ ଆଦି ପଢ଼ିବାରେ ଶାଶୁଙ୍କ ଆଗ୍ରହ ସୃଷ୍ଟି କରିପାରିଥିଲେ, ଯଦ୍ୱାରା ତାଙ୍କର ସେ ଉତ୍ତୀର୍ଣ୍ଣ ବୟସରେ ସୁଦ୍ଧା ପଢ଼ାପଢ଼ି ତଥା କିଛି ଲେଖା ଲେଖି କରିବାର ଆଗ୍ରହ ଦେଖି ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇ ଯାଉଥିଲି । ସମୟର ଅପଚୟ ନକରି ପ୍ରତିଟି ମୁହୂର୍ତ୍ତକୁ ଅନେକ ଭଜନ ତଥା ଜଣାଣ ଲେଖିବାରେ ସୁଉପଯୋଗ କରିଥିଲେ । ତାଙ୍କର ଅସୁସ୍ଥତା ସତ୍ତ୍ୱେ ଅନ୍ତିମ ସମୟର ଅନବଦ୍ୟ ସୃଷ୍ଟି 'ଗୀତି ରାମାୟଣ' ଏହାର ଏକ ଜ୍ୱଳନ୍ତ ନିଦର୍ଶନ ।

- ବୋହୂ-ବାବୁଲି

●●●



## IN FOND MEMORY OF A GREAT TEACHER

**Prof. Dr. Goparanjan Misra**

*The purpose of an autobiography is to give us a first- hand account into the life of the person we are reading about, and to give us a better insight into how their experiences have shaped them as a person.*

*An ideal teacher is an asset for the society. Apart from being a role model in the lives of hundreds and thousands of his students, he proves to be so for the society at large. However, not every teacher can be regarded as an ideal teacher. One needs some special qualities to achieve this level:*

- *Passion for teaching*
- *Love for students*
- *Strong command over subject matter*
- *Good communication skills*
- *Fair knowledge of students' psychology*
- *A magnetic personality*
- *Ability to motivate and inspire the students to achieve their goals*

*Sri Narayan Mahapatra from the village Bira Narsinghpur, Puri was one such teacher. Born into an orthodox Brahmin family, Sri Mahapatra had great respect for the tradition but he was just not a blind follower of the old custom. He had an open mind and he advocated progressive ideas. An avid reader all through his life, he was widely-read and his concern for the all-round progress of his students was really laudable. He was particularly concerned for those students who, he felt, were unable to pursue higher studies due to financial constraints. He had many such students at his residence and he groomed them as his own children. Such instances of generous gesture one rarely comes across these days. Many of his students, now well- settled in different parts of the world, remember with great sense of gratitude and love, this teacher's impact on their lives.*

*Not many students do well in the classroom. Some of them, even if they*

know the answers to the questions put by their teachers, keep quiet. General lack of confidence, coupled with nervousness, is the reason in most cases. But a good teacher is intelligent enough to spot this and, in a very subtle way, he handles the situation and helps such students overcome their shortcomings. Sri Narayan Mahapatra belonged to this rare category of teachers. In this context I am reminded of a very amusing incident in the life of the former British prime minister Sir Winston Churchill. And this is regarding his performance in the Entrance Examination to Harrow. Churchill states in his autobiography how he was unable to answer a single question in the Latin paper:

"I wrote my name at the top of the page. I wrote down the number of the question "1". After much reflection I put a bracket round it thus ("1"). But thereafter I could not think of anything connected with it that was either relevant or true. Incidentally there arrived from nowhere in particular a blot and several smudges. I gazed for two whole hours at this sad spectacle: and then merciful ushers collected my piece of foolscap with all the others and carried it up to the Headmaster's table. It was from these slender indications of scholarship that Dr. Weldon drew the conclusion that I was worthy to pass into Harrow". It is very much to his credit. It showed that he was a man capable of looking beneath the surface of things: a man not dependent upon paper manifestations. I have always had the greatest regard for him.

This shows how small things, apparently insignificant, can have profound effect on the mind of a student.

It's but natural that when a teacher of Late Mahapatra's stature writes his autobiography, it will be read with much interest and curiosity. The general readers and especially his students who knew him so well will be eager to read his life- story in details.

I'm sure the book shall enjoy wide readership and while it would remind his students of their school days and their warm association with him, it would encourage the students and teachers in general to remember their rights and duties and thus inspire them to become good citizens of the country.

I never had the opportunity to meet him. But I have heard a lot about him from my sister Mrs Niharprava Mahapatra (daughter- in-law of Late Mahapatra) and some other persons. I wish I had seen this great teacher and spent some time in his company.

Affectionate by nature, his love and concern for others went beyond the

*classroom. If someone fell ill, he rushed forward with his box of homeopathic medicine. For the poor and the destitute he was like a God., kind, loving and compassionate.*

*I learnt later that he had kept to himself much of his sorrows and sufferings that he had experienced in his childhood days and when he was a student of Ravenshaw College. It is only in the last part of his life that he disclosed through the letters he wrote to his son about all the hardships of his early years. It is to the credit of his son that he carefully stored all those letters, compiled them and thought of publishing them in the form of an autobiography. It is an invaluable record of not only of his times and the state of higher education in our State but it says what he thought of the value system that has been in our country for thousands of years. He speaks of the value of time and punctuality (a thing that is usually overlooked), his philosophy of simple living and high thinking with emphasis on frugality, discipline and the need of inculcating a sense of moral values in the young mind.*

***- Gopa***

●●●



# ମୋ ଦୃଷ୍ଟିରେ ମୋର ପିତୃପ୍ରତିମ ମଉସା

ବସନ୍ତପ୍ରଭା ଦେବୀ

ମୋର ପରମ ପୂଜ୍ୟ, ଆରାଧ୍ୟ ଦେବତା ସଦୃଶ ମଉସା, ପ୍ରଥମେ ଆପଣଙ୍କ ପଦାରବିନ୍ଦରେ ସଶ୍ରଦ୍ଧ ପ୍ରଣାମ ଜଣାଇ ଅପାସୋରା ସ୍ମୃତିଗୁଡ଼ିକୁ ପୁନଃ ଜୀବନ୍ତ ରୂପରେଖ ଦେବାକୁ ମାନସ ପଟରେ ପ୍ରତିଭାରତ ହେଉଛି ଅଶ୍ରୁସିକ୍ତ ଭାବାବେଗ । ଅଜାଣତରେ ଝରିପଡୁଛି ଭାବୋଚ୍ଛ୍ୱାସର ଲୋତକ ଧାରା ।

ମନେ ପଡ଼ିଯାଉଛି 'ଭଗବତ୍ ଗୀତା'ରେ ପ୍ରଭୁ ଶ୍ରୀକୃଷ୍ଣଙ୍କର ମୁଖନିଃସୃତ ବାଣୀ :-

"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।"

ମୋର ଭିଣୋଇ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମହାପାତ୍ର ଆପଣଙ୍କ ସ୍ୱରଚିତ 'ଆତ୍ମଚରିତ' ପାଠ କରି ଅଭିମତ ଲେଖିବାକୁ କହିବାରୁ ମୋର ସ୍ମରଣେ ଆସିଥିଲା 'ରାଧାନାଥ ରାୟ'ଙ୍କ ରଚିତ 'ଦରବାର' କାବ୍ୟ । ଆପଣ ଥିଲେ ପୁଣ୍ୟଭୂମି ଉତ୍କଳର ଯୋଗ୍ୟତମ ସନ୍ତାନ, ମୁଁ ସେ ପର୍ଯ୍ୟନ୍ତ ଆପଣଙ୍କ ଜ୍ଞାନାମୃତ ଆହରଣ କରିବାକୁ ଅକ୍ଷମ ଥିଲି । ଗଭୀର ଆଗ୍ରହର ସହ ପାଠ କରି ପ୍ରତୀତ ହେଲା ଅତଳ ସମୁଦ୍ରରୁ ମୁକ୍ତା ସଂଗ୍ରହ କରିବା ମୋ ପାଇଁ ବୃଥା ପ୍ରୟାସ । କିନ୍ତୁ ଦୃଢ଼ ଇଚ୍ଛା କିଛି ମତବ୍ୟକ୍ତ କରିବାକୁ ଆଶା ସଞ୍ଚାର କରିଥିଲା ।

ହେ ପୁଣ୍ୟାତ୍ମା, ଆପଣଙ୍କର ମହତ୍ତ୍ୱପୂର୍ଣ୍ଣ ଆଦର୍ଶ ଗୁଣାବଳୀକୁ ଲେଖନୀ ମାଧ୍ୟମରେ ପରିସ୍ଫୁଟ କରିବା ମୋର ଧୃଷ୍ଟତା ମାତ୍ର । ଆପଣଙ୍କର ତ୍ୟାଗପୂତ ଜୀବନଧାରା ଆମମାନଙ୍କର ପଥ ପ୍ରଦର୍ଶକ । ଦୁର୍ଲଭ ମାନବ ଜୀବନକୁ ଆପଣ ଦୁର୍ଗମ ପଥରେ ହିଁ ନ୍ୟସ୍ତ କରିଥିଲେ । ସ୍ୱର୍ଣ୍ଣପ୍ରସୂ ଉତ୍କଳର ଶୋଭା ମଣ୍ଡନ କରିଥିବା ମହାମନୀଷୀମାନଙ୍କର ମହାନ ଆଦର୍ଶରେ ଅନୁରଣିତ କରି ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ନିଜକୁ ଗଢ଼ି ତୋଳିଥିଲେ । ସତ୍ୟବାଦୀ ଯୁଗର ଆଚାର୍ଯ୍ୟ ହରିହରଙ୍କ ସତ୍ୟ ଓ ସଂକଳ୍ପରକ୍ଷାକୁ ଆପଣ ପୁଣ୍ୟବ୍ରତ କରିଥିଲେ । ଆପଣଙ୍କର ଅମାୟିକ ବ୍ୟବହାର, ପରୋପକାର ଆପଣଙ୍କୁ ସାମାଜିକ ସ୍ତରରେ ପ୍ରତିଷ୍ଠିତ କରିବା ସହ ପାରିବାରିକ କ୍ଷେତ୍ରରେ ଏକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଭାବେ ମର୍ଯ୍ୟାଦା ପ୍ରଦାନ କରିଥିଲା ।

ବୈଦିକ ଯୁଗର ଗୁରୁ ଛାତ୍ରର ମହାନ୍ ସଂପର୍କକୁ ଆପଣ ପୁନର୍ଜୀବିତ କରି ଓଡ଼ିଆ ସଂସ୍କୃତିକୁ ଋଦ୍ଧିମନ୍ତ କରିଥିଲେ । ସେତେବେଳେ ଛାତ୍ରମାନଙ୍କୁ ଉପଯୁକ୍ତ ଶିକ୍ଷାଦାନ କରି ସେମାନଙ୍କୁ ସ୍ୱାବଲମ୍ବୀ କରିବା ଥିଲା ବିଦ୍ୟାଳୟର ମୁଖ୍ୟ ଉଦ୍ଦେଶ୍ୟ । ଏହାର ଜ୍ୱଳନ୍ତ ଉଦାହରଣ ଆପଣଙ୍କର ପ୍ରିୟ ଛାତ୍ର ମୋର

ପିତା ସ୍ୱର୍ଗତ ବିଶ୍ୱନାଥ ନନ୍ଦ ଯିଏ କି ଆପଣଙ୍କଠାରୁ ବିଦ୍ୟାରତ୍ନ ଲାଭ କରି ଏବଂ ସଦ୍‌ଗୁଣର ଅଧିକାରୀ ହୋଇ ସୁପ୍ରତିଷ୍ଠିତ ହୋଇପାରିଥିଲେ । ଧନର ସଦୁପଯୋଗ କରି ପ୍ରକୃତ ଅନାହାର କ୍ଲିଷ୍ଟ ଲୋକଙ୍କୁ ଦାନ କଲେ ମହତ୍‌କାର୍ଯ୍ୟ ସାଧିତ ହେବା ଆପଣଙ୍କର ମାନବ ସମାଜ ପ୍ରତି ସନ୍ଦେଶ ଥିଲା । ଆମେ ଈଶ୍ୱରଙ୍କ ଶ୍ରେଷ୍ଠ ସନ୍ତାନ - ଏଣୁ ସମାଜରୁ ଜାତିଭେଦ ପ୍ରଥା ଆଦି କୁସଂସ୍କାର ଦୂର କରି 'ପରୋପକାର' ଧର୍ମ ପାଳନ କରିବାକୁ ଆପଣ ସତତ ଚେଷ୍ଟିତ ଥିଲେ । ଆପଣଙ୍କର ଜୀବନାଦର୍ଶ ଥିଲା ସୁସଂଜତ ଜୀବନଯାପନ ଦ୍ୱାରା ମନୁଷ୍ୟ କିଛି କିଛି ଅର୍ଥ ସଞ୍ଚୟ କଲେ ଋଣ ଦାଉରୁ ନିଜକୁ ରକ୍ଷା କରିପାରିବ । ସ୍ୱାସ୍ଥ୍ୟ ପ୍ରତି ସଚେତନ ହେବା ସହ ସର୍ବଦା ସୁଷମ ଖାଦ୍ୟ ଗ୍ରହଣ କଲେ ଶାରୀରିକ ତଥା ମାନସିକ ବିକାଶ ସମ୍ଭବ ହେବ ଯଦ୍ୱାରା ଛାତ୍ରର ଧୀଶକ୍ତି ବୃଦ୍ଧି ହୁଏ ବୋଲି ଆପଣଙ୍କର ସୁଚିନ୍ତିତ ପରାମର୍ଶ ।

ହେ ମହାନୁଭବ, ଈଶ୍ୱରଙ୍କ ବୈଚିତ୍ର୍ୟମୟ ସଂସାରରେ ସମୟ କ୍ଷଣଭଙ୍ଗୁର, ମୃତ୍ୟୁ ଅବଶ୍ୟମ୍ଭାବୀ । ଏଣୁ ମାୟା ମୋହ ତ୍ୟାଗ କରି ସତ୍‌କର୍ମ କଲେ ବାର୍ଦ୍ଧକ୍ୟ ଜନିତ ଯନ୍ତ୍ରଣା ହ୍ରାସ ପାଇଥାଏ ବୋଲି ଆପଣଙ୍କ ସନ୍ଦେଶ ପ୍ରେରଣାଦାୟୀ ଅଟେ । ସେତେବେଳେ ନାରୀଶିକ୍ଷାର ପ୍ରାଧାନ୍ୟ ଅଧିକ ନଥିଲେ ମଧ୍ୟ ଆପଣ ମାଉସୀଙ୍କୁ ସୁଶିକ୍ଷା ଦେଇଥିଲେ ।

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।" ଜନନୀ ଓ ଜନ୍ମଭୂମି, ଏ ଉଭୟଙ୍କର ଉପକାର କରିବା ପାଇଁ ଆପଣଙ୍କର ଦର୍ଶନ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏକ ଦିଗବାରିଣୀ ।

ହେ ଧର୍ମପ୍ରାଣ, ଆପଣ ଥିଲେ ବାସ୍ତବବାଦୀ, ନିଜ ପୁତ୍ରକନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରିଥିବାରୁ ସେମାନେ ଆଜି ସମାଜରେ ସୁପ୍ରତିଷ୍ଠିତ । ଆମେ ମଧ୍ୟ ଆପଣ ଏବଂ ମାଉସୀଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ଅନୁଭବ କରିପାରିଥିଲୁ ଆପଣ ଉଭୟ ସମାଜ ତଥା ପରିବାର ପାଇଁ ସମର୍ପିତ । ଆମେ ଅନେକ ବର୍ଷ ମାଉସୀଙ୍କ ସହ ଏକତ୍ର ବାସ କରିଥିଲୁ । ତାଙ୍କର ମଧ୍ୟ ପ୍ରତ୍ୟେକ କାର୍ଯ୍ୟଶୈଳୀ ଓ ଭାବଧାରା ଆମ ପାଇଁ ସ୍ମରଣୀୟ । ମନେପଡ଼େ ଏକ ଦିନର କଥା ମୁଁ ସେତେବେଳେ ଆଇ.ଆର୍.ସି. ଭିଲେଜ୍ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଥିଲି । ମୁଁ ବିଦ୍ୟାଳୟରୁ ଫେରିଲେ ମାଉସୀ ବୋଉକୁ ତାଗିଦ୍ କରୁଥିଲେ, "ଆଲୋ ଶଶୀ ! ଝିଅ କେତେ ପାଠ ପଢ଼େଇଆସିଛି । ଭୋକ ହେଉଥିବ, ତାକୁ ଆଗ ଗଣ୍ଡେ କ'ଣ ଖାଇବାକୁ ଦେ, ସେ ଟିକିଏ ବିଶ୍ରାମ ନେବ ।" ସେହି ଅନାବିଳ ବାତ୍ସଲ୍ୟ ସ୍ନେହ, କେବଳ ମୋ ପ୍ରତି କାହିଁକି, ସମଗ୍ର ସମାଜ ପ୍ରତି ତାଙ୍କର ସ୍ନେହ ଥିଲା ନିବିଡ଼ ବନ୍ଧନ ସ୍ୱରୂପ । ସମୟର କରାଳ ସ୍ରୋତରେ ମଧ୍ୟ ଅତୀତ ବିଲୁପ୍ତ ହୋଇନାହିଁ । ଆପଣଙ୍କର ଅବର୍ତ୍ତମାନରେ ଏହିସବୁ ସ୍ମୃତିଚାରଣ କରି ଜୀବନପଥର ପଥିକ ମୁଁ ସ୍ମୃତି ରୋମନ୍ଥନ କରି ଅଶ୍ରୁମୋଚନ କରୁଛି ।

ଶେଷରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ଆପଣଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ବିନୀତ ପ୍ରାର୍ଥନା କରି ଆପଣଙ୍କର ମହନୀୟ ଉପଦେଶର ଅନୁପାଳନ କରିବା ନିମନ୍ତେ ବଦ୍ଧପରିକର ।

'ଧୁନୁ'

ଟେଲିଫୋନ୍ : ୯୩୩୭୬୧୫୨୪୩

●●●



# ଅଜା ଓ ଆଈଙ୍କ ବିନା ମୋର ପିଲାଦିନ ହିଁ ନଥିଲା

ତାରାମଣି ମିଶ୍ର

ବସୁଦେବ ଓ ଦେବକୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ମଧ୍ୟ କୃଷ୍ଣଙ୍କର ବାଲ୍ୟଲୀଳା ନନ୍ଦ ଓ ଯଶୋଦାଙ୍କୁ ନେଇହିଁ ଜଣାଶୁଣା । ସେହିପରି ମୋ ପିଲାଦିନ ମୋ "ଅଜା ଓ ଆଈ"ଙ୍କୁ ନେଇ ଅନ୍ୟ ପକ୍ଷରେ "ଅଜା ଓ ଆଈଙ୍କ" ବିନା ମୋର ପିଲାଦିନ ହିଁ ନଥିଲା । "ଅଜା" ମୋର ପିଲାଦିନର ଶିକ୍ଷକ, ଅଭିଭାବକ ଓ ପଥ ପ୍ରଦର୍ଶକ । ତାଙ୍କରି ଆଦର୍ଶରେ ମତେ ପଢିବା ପାଇଁ ସେ ଆପ୍ରାଣ ଚେଷ୍ଟା କରି ଆସିଛନ୍ତି । ଦୁର୍ବଳ ଶରୀର, ମନ କିନ୍ତୁ ଶକ୍ତ ଓ କୋମଳ । ପାଠ ପଢାଇବା ସମୟରେ ନାତୁଣୀ ନଭାବି ଛାତ୍ରୀଟିଏ ଭାବରେ ପଢାଇ ଚାଲନ୍ତି । ରାଗିବା ସମୟରେ ଆଈ ଆସି ପ୍ରତିରୋଧ କଲେ ତାକୁ ଗାଳି ଦିଅନ୍ତି ।

ଅଜାଥିଲେ ମୋ ପିଲାଦିନର ଡାକ୍ତର । ଦେହ ଖରାପ ହେଲେ 'ରବିନ ସନ' ବାର୍ଲି ରାନ୍ଧି ଲେମ୍ବୁ ଚଟାଇ ପିଆଇ ଦିଅନ୍ତି । ଅବଶ୍ୟ ଅଜା ବାହାରକୁ ଚାଲିଗଲେ ଆଈ ଲୁଚାଇ କରି ସଜପଖାଳ ଓ ଆଳୁ ଚକଟି ଖୁଆଇଦିଏ । ବର୍ଷାଦିନେ ପାଦ ପାଣି ଖାଇ ବାଲିକନ୍ଦା ହେଲେ ଅଜା ମୋ ଗୋଡରେ Blue colour ର କ'ଣ Medicine ଲଗାଇ ଦିଅନ୍ତି ଯାହାର ନାଆଁ ମୋର ମନେ ନାହିଁ । ଖରାଦିନ ହେଲେ ଅଜା ରାତିରେ ମିଶିରି ଖଣ୍ଡେ ପାଣିରେ ବତୁରାଇ ଦେଇଥାନ୍ତି । ସକାଳୁ କନା ଖଣ୍ଡିକରେ ଛାଣି ଲେମ୍ବୁ ଚିପୁଡି ପିଇବାକୁ ଦିଅନ୍ତି, ପେଟ ଗରମ ହେବନାହିଁ ବୋଲି । ଶୀତଦିନେ ଖୁଦ ଚାଉଳରେ ବଡାଭାତ ରାନ୍ଧି ଦିଅନ୍ତି । ଅମୃତ ପରି ସ୍ୱାଦୁ ଲାଗେ ସେ ବଡାଭାତ କି'ଏ ଏବେ ଜାଣିପାରିବ ତା'ର ମୂଲ୍ୟ ।

ଅଜା ରାଗୀ ନଥିଲେ କିନ୍ତୁ ଗମ୍ଭୀର ଥିଲେ । ମୁଁ ତେଣୁ ତାଙ୍କୁ ଡରୁଥିଲି । ଭାର୍ଗବୀ ହାଇସ୍କୁଲ ଡ୍ରାମାରେ ମୁଁ ଯେତେବେଳେ ନାରଦ ପାର୍ଟ କରି Stage କୁ ବାହାରିଲି ତାଙ୍କ ମନଖୋଲା ହସ ଦେଖି ନିଜକୁ ଧନ୍ୟ ମନେ କରିଥିଲି । ମୋର ୫th ଓ ୭th Class ରେ Scholarship ମିଳିବା ପରେ ଅଜା ଏତେ ଖୁସି ହୋଇଯାଇଥିଲେ ଯେ ଲାଗୁଥିଲା ସତେ ଯେମିତି ମୁଁ ନୁହେଁ ସିଏ Scholarship ପାଇଛନ୍ତି । ମୋ ନାଆଁରେ Passbookଟିଏ ଖୋଲି Post Office ରେ ମୋ ଟଙ୍କା ରଖି ଦେଇଥିଲେ । ଅଷ୍ଟମ ଶ୍ରେଣୀପରେ ମୁଁ ଚାଲି ଆସିଲି ନନା ବୋଉଙ୍କ ପାଖକୁ ଭୁବନେଶ୍ୱର । ଫୋନ ନଥିଲା ସେତେବେଳେ । ପ୍ରତି ସପ୍ତାହରେ Post card ଦୁଇଖଣ୍ଡ ଆସୁଥିଲା ମୋ

ନାଆଁରେ ଅଜାଙ୍କ ପାଖରୁ । ତାଙ୍କ ଚିଠିରେ ଉତ୍ତର ଦେବାରେ ଯଦି ଡେରି ହୋଇଯାଉଥିଲା ତେବେ ତାଙ୍କ ଲିଖିତ Post card ସହିତ ଆଉ ଗୋଟିଏ Blank Post card ଆସୁଥିଲା ମୋ ପାଖକୁ ଚିଠିର ଉତ୍ତର ଲେଖିବା ପାଇଁ । କିଏ ଏବେ ବିଶ୍ୱାସ କରିବ କେତେ ଆନ୍ତରିକତା ଥିଲା ସେ ଅପେକ୍ଷାରେ । ସବୁ ବର୍ଷ annual examination ପୂର୍ବଦିନ ଗୋଟିଏ ଲଫାପା ଆସୁଥିଲା ଅଜାଙ୍କ ପାଖରୁ, ଯାହା ଭିତରେ ଥିଲା ନୀଳକଣ୍ଠଙ୍କର ବେଲପତ୍ର ଗୋଟିଏ । ଦୁଇ ଧାଡିରେ ଲେଖାଥାଏ କୌଣସି ପ୍ରଶ୍ନର ଉତ୍ତର ଦେବାକୁ ଛାଡିବୁ ନାହିଁ । ନ ଆସୁଥିଲେ ନନାଙ୍କ ନାଆଁ ପଛେ ଲେଖି ଦେବୁ କିନ୍ତୁ ପ୍ରଶ୍ନ ଛାଡିକରି ଆସିବୁ ନାହିଁ । କିଏ ଏବେ ତୁଳନା କରିପାରିବ ତାଙ୍କ ମନର ଆବେଗକୁ ।

'ଅଜା ଓ ଆଈ' ଦୁହିଁଙ୍କର ଭଲପାଇବା ଥିଲା ନିଆରା । ଆଜିକାଲି ଯୁଗରେ ସ୍ୱାମୀ ଓ ସ୍ତ୍ରୀ ଦୁହେଁ ଚାକିରି କଲେ ଘରର ସବୁ କାମ ମିଳିମିଶି କରୁଛନ୍ତି । ଅଜା କିନ୍ତୁ ଥିଲେ ସେ ଯୁଗର ଏକ ବ୍ୟତିକ୍ରମ । ଆଈ ସକାଳୁ ଦାଣ୍ଡ ବାଡି ଓଳାଇବା ସମୟରେ ଅଜା ଘର ଓଳାଇ ଦିଅନ୍ତି । ସନ୍ଧ୍ୟାରେ ଲ୍ୟାମ୍ପ ଓ ଲଣ୍ଠନ କାଚ ପୋଛି କିରୋସିନି ପୁରାଇ ସଜାଡି ଦିଅନ୍ତି, ବଳିତା ଗୁଡିକରେ ତେଲ ବୁଡେଇ ରଖି ଦିଅନ୍ତି, ଯାହାକୁ ନେଇ ମୁଁ ସବୁ ଏରୁଣ୍ଡି ବନ୍ଧରେ ଦୀପ ଜାଳିଦିଏ । ସବୁଦିନ ସକାଳ ଚାହା ତିଆରି କରିବା କାମ ଥିଲା ଅଜାଙ୍କର । ତେଜପତ୍ର, ଶୁଣ୍ଠି, ଗୋଲମରିଚ, ଚା, ଚିନି ଓ ଦୁଧ ସହିତ ଟିକିଏ ଲୁଣ ଦେଇ ସିଏ ଯେଉଁ ଚାହା ତିଆରି କରୁଥିଲେ, ଆଜିକାଲି 'କରୋନା' ମହାମାରୀ ସମୟରେ କାଢା ତା'ପାଖରେ କିଛି ନୁହେଁ । ଅଜା ଯାହା କିଛି କବିତା ବା 'ଗୀତି ରାମାୟଣ' ଲେଖୁଥିଲେ ପ୍ରଥମେ ଆଈକୁ ବସାଇ ସ୍ୱର କରି ତାହା ଗାଉଥିଲେ । ଆଈର 'ଭଲ ହୋଇଛି' କହିବା ବୋଧେ ଥିଲା ତାଙ୍କ ପ୍ରଥମ ପ୍ରଶଂସା ପତ୍ର । କାଉଁରିଆ କାଠି ପରି ନଇଁ ନପଡି ହାତରେ ବ୍ୟାଗ୍‌ଟିଏ ଧରି ସିଧା ସିଧା ଚାଲୁଥିବା ସେହି ରୂପଟିକୁ କେବେ ଭୁଲିପାରିବିନି । ଦାଣ୍ଡ ପିଣ୍ଡାରେ କାନ୍ଥକୁ ଆଉଜି ଆଣ୍ଠୁ ଯୋଡିକ ଏକାଠି କରି ବସିବାର ଓ ଗୁଣୁ ଗୁଣୁ ହୋଇ ଗୀତ ଗାଇବାର ସେ ଦୃଶ୍ୟ ମୋ ମନରୁ କେବେ ଲିଭି ପାରିବନି । ଆଜି ତୁମ ପାଣ୍ଡୁଲିପି ତୁମେ ଲେଖି ଯାଇଛ । ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚିମୂଷା ବାଲି ଗଣ୍ଡିଏ ଝାଡି ଦେଲା ପରି ମୁଁ ତାଙ୍କୁ ଯେପରି ଦେଖିଛି ତାହା ଲେଖି ସେହି ଚିର ନମସ୍ୟ ବ୍ୟକ୍ତିଟି ପାଖରେ ମୁଣ୍ଡ ନୁଆଁଉଛି ।

ବଡ ନାତୁଣୀ
ଭୁବନେଶ୍ୱର





# ମୋର ଅତିପ୍ରିୟ ଅଜା

ଚିନ୍ତାମଣି ମିଶ୍ର

ଆଜି ନିଜେ ଘରର ଛୋଟ ପିଲାମାନଙ୍କ ଠାରୁ ମାମୁ ଅଜା ଡାକ ଶୁଣି ସାରିଲିଣି । ମୋ ଅଜାଙ୍କୁ ମନେ ପକାଇ କିଛି ଲେଖୁଛି, ଅଜା ତୁମ ବିଷୟରେ । ଲେଖିବା ଆରମ୍ଭ କରିବା ପୂର୍ବରୁ ଜାଣୁଛି ଅଜା ! ତୁମେ ମୋ ପାଖରେ ଅଛ । ଏପରିକି କଲମ ମୁନରେ ରହି ସବୁ ଦେଖିପାରୁଛ । ତୁମେ ଜୀବିତ ଥିଲାବେଳେ ମୁଁ ପିଲାଦିନେ କିଛିବର୍ଷ ତୁମ ପାଖରେ ଘରେ ରହି ଗାଁ ବିଦ୍ୟାଳୟରେ ପଢ଼ିଛି । ସେତେବେଳେ ତୁମେ ଅନେକଥର ଗୋଟିଏ କଥା ବାରମ୍ବାର ଘୋଷି ହୁଅ । ଆଜି ମରିଯିବି, ଆଜି ମରିଯିବିରେ, ଯା ରେ, ଯା, ଫୋପଡା ଓ ଆଟିକା ଦୋକାନରୁ ନେଇ ଆସି ଘରେ ରଖିଦେ । ଏହି କଥାକୁ ଶୁଣି ଶୁଣି ଆଜି ବୁଝିପାରୁଛି ଯିଏ ବଞ୍ଚି ବାରମ୍ବାର ମରିଯାଇ ପାରେ, ସିଏତ ମୃତ୍ୟୁଞ୍ଜୟ । ତେଣୁ ମୋତେ ଶୁଭୁଛି, ଆଜିବି ତୁମେ ପାଖରେ ରହି ଘୋଷି ହେଉଛ ଆରେ ଚିନ୍ତାମଣି ! ମୁଁ ଆଜିବି ଜୀବିତ, ଆଜିବି ଜୀବିତ, ତୋ ପାଖରେ, ତୋ ପାଖରେ ।

ପିଲାଦିନେ ତୁମ ପାଖରେ ଥିବାବେଳେ ଯେତେବେଳେ ଇଂରେଜ ସରକାରଙ୍କ ସମୟରେ ତୁମର ଜୋତା ଓ ଉଲେନ୍ ମୋଜାକୁ ଆଇ ଆଉ ସାଇତି ନରଖି ମୋତେ ଦେଲା ଓ କହିଲା "ପିନ୍ଧି, ଅଜାଙ୍କୁ ମୁଣ୍ଡିଆ ମାରେ ।" ସେତେବେଳେ ତୁମେ ହସିଦେଲ ମୋତେ ଦେଖି । ବଡ ଟିକିଏ ହେଉଥିଲେ ବି କହିଲ "ଠିକ୍ ହେଉଛି ।" ଏହାକୁ ତୁମେ ଧୋତି ସହିତ ଶୀତଦିନରେ ପିନ୍ଧିଛ । ଆଉ କହିଥିଲ "ତୁ ଏହାକୁ ରଖିଥା ଯେତେବେଳେ ନୂଆ ଜୋତା ପିନ୍ଧିବୁ ଅଜାଙ୍କୁ ମନେ ପକାଇବୁ ।" ତୁମ ଘରେ ଗୋଟେ ଦଉଡିବନ୍ଧା ଦୋଳିରେ ଝୁଲିବା ଆଜି ବି ମନେ ପଡୁଛି । ଅସରନ୍ତି ସ୍ନେହ ସରାଗର ଦିନ ତୁମ ଘରେ ମୋତେ ମିଳିଥିଲା । ନୂଆ ଜୋତା ଆଣି ପିନ୍ଧିଲାବେଳେ ତୁମେ ମନେ ପଡିଲ କିନ୍ତୁ କ'ଣ କରିବି ତୁମ ପରି ଧୋତି ସହ କେବେବି ପିନ୍ଧିନି । କାରଣ ସେ ଧୋତି ପିନ୍ଧି ରାସ୍ତାକୁ ଆସିବା ଯୁଗ ସରି ଗୋଟିଏ ପରିବର୍ତ୍ତନ ଆସି ସାରିଛି । ଏହି ନୂତନତା ଓ ପରିବର୍ତ୍ତନକୁ ତୁମ ପରି ବ୍ୟକ୍ତିବିଶେଷ ମାନଙ୍କୁ ଅଛପା ଓ ଅଜଣା ନଥିବ ବୋଧହୁଏ । ତୁମକୁ ଚିହ୍ନିବା ଆଗରୁ ତୁମେ ଆମକୁ ଭଲ ଭାବରେ ଜାଣିପାରୁଥିଲ ସାଧନା ଓ ତପର ବଳରେ ଆମର ଆଗାମୀ ଭବିଷ୍ୟତକୁ ପରଖି ପରଖି ଅନୁଶାସନ ଶୁଣାଇ ଶୁଣାଇ ।

ଉଦାହରଣଟିଏ ଦେଉଛି ମୋତେ ଦିନେ ପରଖିବାର ବିଷୟରେ । ବାଣୀବିହାର ଛାତ୍ର ଥିବାବେଳେ ତୁମେ ଦିନେ କଟକ ଆସି ଘରେ ପହଞ୍ଚିଲ । ମୁଁ ଓ ଜେଜେ ବାପା ଗୋଟିଏ ବଖରାରେ ଏକାଠି ରହୁଥିଲୁ । ଦୁଇ ସମ୍ବନ୍ଧୀ ଏକାଠି ରହିଲ । ତୁମେ ମୋ ବିଛଣାକୁ ନିଜର କରିଲ । ବାପାଙ୍କର ଯତ୍ନ ନେଉଥିବୁ ବୋଲି ପରାମର୍ଶ ଦେଉଥିଲ । ଗୋଟିଏ ଦିନପରେ ମୋତେ କହିଲ ଆରେ! ରାତିରେ ମନ ହେଉଛି ଚିନି ଖାଇବାକୁ । ମୁଁ ଚିନି ଡବା ଆଣି ଦେଇଥିଲି । ତାପରେ କିଛି ସମୟପରେ ଗୋଟେ ଛୁଞ୍ଚିରେ ସୂତା ଲଗେଇ ରିଲ୍ ସହ ଦେବାକୁ ଆଦେଶ ଦେଲ । ମୁଁ ଆଣି ଦେଇଥିଲି । ତା' ପରଦିନ ସୂତା, ଛୁଞ୍ଚି ଓ ଚିନି ଡବା ମୋତେ ଫେରାଇ ତୁମେ ଗାଁ କୁ ଯାଇଥିଲ । ଗୋଟେ ସପ୍ତାହ ପରେ ଜାଣିଲି ହଜାର ହଜାର ପିମ୍ପୁଡି ମୋ ଶେଯ ଭିତରେ ରହି ମୋତେ କାମୁଡୁଛନ୍ତି । ଯେତେବେଳେ ଗାଁରେ ତୁମକୁ ପଚାରିଲି କାହିଁକି ଶେଯ ଭିତରେ ଚିନି ପୂରାଇ ସିଲେଇ କରିଥିଲ ତୁମେ ହସି କହିଥିଲ, "ଆରେ ! ତୋ ଜେଜେବାପା ଋଷିତୁଲ୍ୟ ମଣିଷ । ସେ ପଟା ଖଟରେ ମସିଣାଟିଏ ପକାଇ ଶୋଉଛନ୍ତି । ଆଉ ତୋର ସେହି ଶେଯ ଗଦି ମୋର ପସନ୍ଦ ହେଲାନି । ତେଣୁ କଷ୍ଟ ହେଲେ ଜାଣିବୁ ଓ ଅନ୍ୟର କଷ୍ଟ ଦୂର କରିବାକୁ ମନ ନିଶ୍ଚୟ କରିବୁ । ଜେଜେ ବାପାଙ୍କର ସାଧନାର ରୂପରେଖକୁ ଅନୁଭବ କରି ଶିକ୍ଷା ଅଧ୍ୟୟନ ସହିତ ତାଙ୍କ ଅବସ୍ଥା ପ୍ରତି ଗୁରୁତ୍ୱ ଦେବୁ ।"

ତୁମ ପସନ୍ଦ ଓ ଉପଦେଶକୁ ବାରମ୍ବାର ହାତଯୋଡି ନମସ୍କାର କରୁଛି । ଶୀତଳ ଷଷ୍ଠୀ ବାସି ବାଣପର୍ବ ସରିବା ବେଳେ ପ୍ରତିବର୍ଷ ତୁମକୁ ନୀଳକଣ୍ଠଙ୍କ ଶଗଡି ନିକଟରେ ଖୁବ୍ ସକାଳେ ବାଣଯାତ୍ରା ଚାଲିଥିବା ସମୟରେ ଠିଆ ହୋଇଥିବା ଦେଖିଲେ ବହୁତ ଖୁସି ଲାଗେ । ଥର ଥର ହାତରେ ଝରେ କଲମ ଓ କାଳିଘଡି ଧରି ଭଗବତ ଚେତନାର ପ୍ରସାର ଲେଖିବା ଓ ଭଜନ ପରେ ଭଜନ ଲେଖି ଚାଲିବା କେବେ ବି ଭୁଲି ହେବନାହିଁ । ତୁମେ କାଲିଥିଲ ଆଉ ଆଜି ନାହଁ, ଏପରି ଯୁକ୍ତିକୁ ମୁଁ ଓ କେହି ଚିହ୍ନା ଜଣା ବିଶ୍ୱାସ କରିବେ ନାହିଁ । ଆଈ ପରା ତୁମର ଶେଷ ଯାତ୍ରାରେ ଯେତେବେଳେ ମୋତେ କହିଲା ଦୀପଟିଏ ଧରି ଅଜାଙ୍କ ଶବଯାତ୍ରା ସହିତ ଟିକିଏ ରାସ୍ତାରେ ଚାଲି ଚାଲି ଯାଆରେ ବୋଲି ମୁଁ ଯାଇଥିଲି, ମନେ ମନେ ଗାଇ ଗାଇ 'ଏଇତ ବୃନ୍ଦାବନ' - ଯାହା ତୁମର ଘୋଷା ମୋତେ ଜଣାଥିଲା । ଏବେ ବି ତୁମେ ମୋ ମନ ବୃନ୍ଦାବନରେ ରହିଛ ଓ ମୋର ଜୀବ ଥିବା ଯାଏ ରହିଥିବ । ତୁମକୁ କୋଟି ପ୍ରଣାମ ।

**ବଡନାତି**

ଭୁବନେଶ୍ୱର





# ଅଜା

କୁଳମଣି ମିଶ୍ର, ଓ.ଏ.ଏସ୍

ଗୋଟିଏ ଗାଁରେ ବାପା ଓ ଅଜାଙ୍କ ଘର ଥିଲେ ବି ଗାଁର ଘର କହିଲେ ପିଲାବେଳେ ବୁଝୁଥିଲୁ ଅଜାଙ୍କ ଘର ଓ ଏବେ ଭାବୁଚୁ ମାମୁଙ୍କ ଘର । ବୀରନରସିଂହପୁର ଗାଁରେ ଅଜାଙ୍କର ସେହି ନଡା ଛପର ଘରୁ ମିଳୁଥିବା ଅସୀମ ଆନନ୍ଦ, ପରମତୃପ୍ତି ଆଗରେ ଭବନେଶ୍ୱରର ମୋଜାଇକ୍ ଘର, ଚାକିରି ସମୟରେ ମିଳିଥିବା ସରକାରୀ ବଙ୍ଗଳାର ସ୍ୱାଚ୍ଛନ୍ଦ, ତାର କାଣିଚାଏ ବି ହେବନି । ଖରା ଛୁଟିରେ ନନା ବୋଉଙ୍କ ସାଙ୍ଗେ ଗାଁକୁ ଯିବାବେଳେ, ଅଜା ଘରର ୨୦ ହାତ ପୂର୍ବରୁ ରିକ୍ସାରୁ ଡେଇଁ ପଡି ଦୌଡି ଦୌଡି ଘର ଭିତରକୁ ପଶିଯିବାବେଳେ ଦେହ ସାରା ଯେଉଁ ଅସୀମ ଖୁସିର ଲହରୀ ଖେଳିଯାଉଥିଲା, ତାହା କେବଳ ଅନୁଭବୀ ହିଁ ବୁଝିପାରିବ ।

ଅଜାଙ୍କ ଅମ୍ଳାନ ସ୍ମୃତି ଯେତେବେଳେ ମନକୁ ଆସେ, ଆଖି ଆଗରେ ନାଚି ଉଠେ ଏକ ଅଦ୍ୱିତୀୟ ବ୍ୟକ୍ତିତ୍ୱ, ଗୁଣୁଗୁଣୁ ହୋଇ ଘର ବାରଣ୍ଡାରେ ବସି ଯିଏ ଅବିରତ ଲେଖି ଚାଲିଥାନ୍ତି ଅସରନ୍ତି କବିତା । ଅନାୟାସରେ ପୌରାଣିକ ବିଷୟ ବସ୍ତୁକୁ ସେ ଯେମିତି କବିତାରେ ରୂପାନ୍ତରିତ କରିପାରୁଥିଲେ, ବେଳେବେଳେ ସେ ସବୁ ଅବିଶ୍ୱସନୀୟ ମନେ ହୁଏ । ତାଙ୍କଦ୍ୱାରା ରଚିତ "ଗୀତି - ରାମାୟଣ", ଲେଖନୀ ଶୈଳୀ ଓ ମର୍ମରେ ଥିଲା ଅତ୍ୟନ୍ତ ଉଚ୍ଚକୋଟୀର । ଠିକ ଭାବରେ ଚିହ୍ନି ପାରିଥିଲେ ତାଙ୍କ ବିରଳ ପ୍ରତିଭାକୁ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାଶ । ସେଥିପାଇଁ ସାକ୍ଷୀଗୋପାଳ ଉଚ୍ଚ ବିଦ୍ୟାଳୟରେ ଅଜା ଥିଲେ ଉତ୍କଳମଣିଙ୍କ ଆଦର୍ଶର ଜଣେ ଚଳନ୍ତି ପ୍ରତିମା ।

ଭାର୍ଗବୀ ହାଇସ୍କୁଲ୍‌ରେ ଶିକ୍ଷକତା କରିବା ସମୟରେ ଅତି ସୁଚାରୁ ରୂପେ ନିଜ କର୍ତ୍ତବ୍ୟକୁ ଅଜା ନିଭାଇ ପାରିଥିଲେ । କୌଣସି ବାଛ ବିଚାର ନକରି ପ୍ରତିଟି ଛାତ୍ରଙ୍କୁ ମଣିଷ କରିବାପାଇଁ ସେ କରୁଥିଲେ ଅକ୍ଳାନ୍ତ ପରିଶ୍ରମ । ତାଙ୍କ କର୍ତ୍ତବ୍ୟ ପରାୟଣତା ପ୍ରତ୍ୟେକ ଶିକ୍ଷକଙ୍କ ପାଇଁ ଥିଲା ଆଦର୍ଶ । କିଞ୍ଚିତ୍ ମାତ୍ରାରେ ତାଙ୍କ ପ୍ରତିଭାକୁ ସାଉଣ୍ଟି ଆଣିପାରିଥିଲା ମାଉସୀ । ଶିକ୍ଷକତା ସମୟରେ ଅଜାଙ୍କର କର୍ତ୍ତବ୍ୟ ନିଷ୍ଠାକୁ ଅନୁସରଣ କରିବାପାଇଁ ସେ ଚେଷ୍ଟା କରିଥିଲା ।

ଅଜା କେବଳ ନଥିଲେ ଜଣେ ପ୍ରତିଭାବାନ ବ୍ୟକ୍ତି । ସେ ଥିଲେ ହୃଦୟବାନ ଓ ଅତ୍ୟନ୍ତ ସ୍ନେହୀ ।

ଶୀତ ରାତିରେ ଅଜାଘରେ ଶୋଇଥିବା ବେଳେ ସକାଳୁ ଉଠି ଦେଖେ ମତେ କେହି କନ୍ଥା ଘୋଡାଇ ଦେଇଛନ୍ତି । ଆଈଠାରୁ ଜାଣିଥାଏ କି ରାତିରେ ଅଜା ଆସି ଥଣ୍ଡା ପ୍ରକୋପ କମ୍ କରିବା ପାଇଁ ତାଙ୍କ କନ୍ଥାକୁ ମତେ ଘୋଡାଇ ଦେଇଥିଲେ ।

ଆଜି ଅଜାଙ୍କର ସେହି ଘର ଆହୁରି ସରସ ସୁନ୍ଦର ହୋଇ ଉଠିଛି । ଫନି ବାତ୍ୟାରେ ଘରର ଅନେକ କ୍ଷୟକ୍ଷତି ହେବାପରେ ନୂଆକରି ମାମୁ ଘରକୁ ତୋଳି ଦେଇଥିଲେ । ଘରର ପୁରୁଣା ରୂପରେଖକୁ ଅକ୍ଷତ ରଖିବା ପାଇଁ ସେ କରିଛନ୍ତି ଯଥେଷ୍ଟ ପ୍ରୟାସ, କାରଣ ସେ ଜାଣିଛନ୍ତି ଘରର ପ୍ରତିଟି ଇଞ୍ଚରେ ଭରି ରହିଛି ପରିବାରର ସମସ୍ତଙ୍କର ଅନେକ ଅଭୁଲା ସ୍ମୃତି । ସେହି ସିନ୍ଦୁକ, ସେହି ଖଟ ସେମିତି ଅଛି ସେମିତି ଅଛି ଆମ୍ଭମାନଙ୍କର ଷଠୀଘର କିନ୍ତୁ ନାହାନ୍ତି ସେହି ମଣିଷ, ନାହାନ୍ତି ଅଜା ଓ  ଆଈ ।

ଗୋଟିଏ କଥା ମନେପଡୁଛି । ଅଜା ଗାଁ ଛାଡ଼ି ଆସିବାକୁ ମୋଟେ ରାଜିନଥିଲେ । ଆଈ ଓ ବଡ଼ମାମୁଙ୍କର ସ୍ୱାସ୍ଥ୍ୟାବସ୍ଥା ଓ ମାନସିକ ଅବସ୍ଥା ଯୋଗୁ ଅଜାଙ୍କୁ ଗାଁରେ ରଖିବା ଅସମ୍ଭବ ଥିଲା । ସେ ଦାୟିତ୍ୱ ପଡିଲା ମୋ ଉପରେ । ବୋଉ କଥାରେ ଗାଁକୁ ଅଜାଙ୍କୁ ଭୁଲାଭୁଲି କରି ଭୁବନେଶ୍ୱର ଆଣି ମାମୁଙ୍କ ପାଖେ ଛାଡିଦେଇ ମୁଁ ଦିଲ୍ଲୀ ଚାଲିଯାଇଥିଲି । କିନ୍ତୁ ଦିଲ୍ଲୀରେ ଖବରପାଇ ଗାଁକୁ ଫେରିଲି ସତ କିନ୍ତୁ ଆଉ ଅଜାଙ୍କୁ ଦେଖିପାରିଲିନି । ମାମୁଙ୍କ ଠାରୁ ଶୁଣିଲି ଯେ ସେ ପ୍ରତିଦିନ ଗାଁକୁ ଯିବାକୁ ବ୍ୟସ୍ତ ହେଉଥିଲେ । ମୁଁ ନିଜକୁ ଦୋଷୀ ବୋଲି ଭାବିଲି ଯେହେତୁ ଅଜାଙ୍କୁ ମୁଁ ଦୁଇ/ତିନି ଦିନ ପରେ ଗାଁରେ ଛାଡିଦେବି ବୋଲି କହିଥିଲି । ଆଜି ପର୍ଯ୍ୟନ୍ତ ଅଜା ମୋର ମାନସପଟରେ ରହିଛନ୍ତି ।

ଝିଅ ଓ.ଜେ.ଏସ୍. ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଗାଁର ପ୍ରଥମ ମହିଳା ଜଜ୍ ହୋଇପାରି ଥିବାରୁ ଖୁବ ମନେ ପଡିଥିଲେ ଅଜା ଓ ଆଈ । ମୋର ପରବର୍ତ୍ତୀ ପିଢି ଭିତରୁ କେହି ଜଣେ ଜଜ୍ ହୁଅନ୍ତୁ, ଏହା ଥିଲା ସେମାନଙ୍କର ଅଭିଳାଷ । ଆଜି ଅଜାଙ୍କର ସେହି ଅଶେଷ କରୁଣା ଓ ଆଶୀର୍ବାଦକୁ ଭିକ୍ଷା କରୁଛି ।

- ନାତି ଝୁଲୁ





# ମୋ ଅଜାଙ୍କ ସ୍ମୃତିରେ ପଦେ

ଇଂ ରାମଚନ୍ଦ୍ର ମିଶ୍ର, ଭା.ପ୍ର.ସେ.

ମୋ ଅଜାଙ୍କ ଆତ୍ମଜୀବନୀ ପ୍ରକାଶ ପାଇବାକୁ ଯାଉଛି ଖବର ବୋଉଠାରୁ ପାଇଲି । ବହୁତ ଖୁସୀ ଲାଗୁଛି । ଭାବୁଛି ଅଜା ଆମପାଖକୁ ଆସୁଛନ୍ତି କି ! ତାଙ୍କର ଜୀବନୀ ଆମପାଇଁ ବହୁତ ମୂଲ୍ୟବାନ ।

ଆମେ ପିଲାଦିନେ ବ୍ରହ୍ମପୁର, ଭଞ୍ଜନଗରରେ ଥିବା ସମୟରେ ଗ୍ରୀଷ୍ମଛୁଟିକୁ ଅପେକ୍ଷା କରିଥାଉ । ତାର ମୁଖ୍ୟକାରଣ ହେଲା ଲମ୍ବାଛୁଟି ଅଜାଘରେ । ଅଜା, ଆଈଙ୍କ ପାଖରେ କଟିବ । ଯିବାଦିନ ହୋଇଗଲେ ଆମେ ବାହାରିପଡୁ ରେଲ୍‌ଗାଡ଼ିରେ ନୋହିଲେ ବସ୍‌ରେ । ଚନ୍ଦନପୁର ହୋଇଗଲେ, ସେ ବଜାର ଗହଳି ରାସ୍ତାକୁ ପାର ହୋଇ କିପରି ଅଜାଙ୍କ ଗାଁ ବୀରନରସିଂହପୁରରେ ପହଞ୍ଚିବୁ ମନଛଟପଟ ହୁଏ । ନନା ମିଠା ଦୋକାନକୁ ଡାକିଲେ ମନା କରିଦେଉ । ତାଙ୍କୁ ମଧ୍ୟ ଚା ଖାଇବାକୁ ଦେଉନି । କିପରି ଶୀଘ୍ର ଯାଇ ଅଜାଘରେ ପହଞ୍ଚିବୁ । ଏବେ ମଧ୍ୟ ମୁଁ ଚନ୍ଦନପୁର ଦେଇ ପୁରୀ ଗଲେ ସେହି ପିଲାଦିନର ଉତ୍ସୁକତା ମନେପଡ଼ି ଦୁଃଖ ଲାଗେ ।

ଆମ ଯିବା ସମୟ ହୋଇଗଲେ ପିଣ୍ଡାରେ ଡ଼େଇଁ ଆଈ ପାଖକୁ ଦୌଡ଼ିଯାଉ । ଆଈ ଆମକୁ କୁଣ୍ଢାଇ ପକାଇ ଆରେ ମିତ, 'ଆ ସଙ୍ଗାତ ଗୀତ' ଗାଇ ଗାଇ ଘରକୁ ନେଇଯାଏ । ଅଜା ଆମକୁ ଦେଖି ହସି ଦିଅନ୍ତି । ଅଜାଙ୍କ ହସ ଏକ ଭିନ୍ନ ପ୍ରକାରର । ମନେ ପଡ଼ିଗଲେ ବହୁତ ଖୁସୀ ଲାଗେ । ତାଙ୍କ ନୀରବତା ଭିତରେ ଯେଉଁ ପ୍ରସନ୍ନତା ଫୁଟିଉଠେ, ତାହା ମୁଁ ଅନ୍ୟ କାହା ପାଖରେ ଦେଖୁନି । ସେହି ହସ ଟିକକରୁ ଆମ ଉପସ୍ଥିତିରେ ତାଙ୍କର ଆନନ୍ଦ ବେଶ୍ ବାରି ହୁଏ । ଆଈର ଗୀତ, ଅଜାଙ୍କ ହସ କିଏ ଭୁଲିପାରିବ ।

ଅଜାଙ୍କର ଖୋଲା ମେଲା ଘର ମୋତେ ବହୁତ ଭଲ ଲାଗେ । ତାଙ୍କ ଚଉତରା କାନ୍ଥରେ ମହାତ୍ମା ଗାନ୍ଧୀ, ଜବାହାର ଲାଲ୍ ନେହେରୁ, ଲାଲ୍‌ବାହାଦୁର ଶାସ୍ତ୍ରୀ, ଉତ୍କଳମଣି ଗୋପବନ୍ଧୁ ଦାସ ଇତ୍ୟାଦି ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ଫଟୋ ସବୁ ମରାହୋଇଥାଏ । ଆଈର ରାମାୟଣ ଓ ଅନ୍ୟାନ୍ୟ ବହି ଟେବୁଲ୍ ଉପରେ ଥାଏ । ଏହି ସବୁଥିରୁ ଆମେ ଅଜାଙ୍କର ଦେଶପ୍ରୀତି ଆଉ ଆଈର ପୋଥି ପ୍ରୀତି ବେଶ୍ ବୁଝିପାରୁ । ଅଜା ସେ ଫଟୋ ଆମକୁ ଦେଖାଇ ତାଙ୍କ ବିଷୟରେ ବହୁତ କଥା କୁହନ୍ତି ଏବଂ

ପିଲାବେଳରୁ ସେମାନଙ୍କର ଆଦର୍ଶରେ ନିଜକୁ ଅନୁପ୍ରାଣିତ ହେବା ପାଇଁ ବୁଝାଇ ଦିଅନ୍ତି । ଅଜା ଆଈ ଆମର ଭିନ୍ନ ପ୍ରକାରର ଲୋକ ଥିଲେ । ଆଈର ସମସ୍ତେ ନିଜର ତା ପାଖରେ ପରଆପଣା କିଛି ନଥିଲା । ତାଙ୍କ ଘରେ କାମ କରିବାକୁ ଯେଉଁ ଲୋକମାନେ ଆସନ୍ତି, ସେମାନେ ତାଙ୍କର ଅତି ନିଜର ଏବଂ ଘର ଲୋକ ପରି ଚଳନ୍ତି । କିଏ ଅଜାଙ୍କ କାମ କରେ କିଏ ଆଈର କାମରେ କିନ୍ତୁ ଘରଲୋକ ପରି ଲାଗନ୍ତି । ଆମେ ମଧ୍ୟ ସେମାନଙ୍କୁ କମଳାଆଈ, କାହାକୁ ମାଉସୀ, କାହାକୁ ଭାଇନା ଏପରିଡାକୁ । ଆମକୁ ମଧ୍ୟ ସେମାନେ ନିଜର ଭାବି ଆମକଥା ବେଶ୍ ଭଲ ବୁଝନ୍ତି । ଅଜା ଘରେ ତାଙ୍କୁ କିଛି ବାରଣ ନଥାଏ । ମୁଁ ଏପରି ଚଳଣି ମୋ ଅଜାଘର ଛଡ଼ା ଅନ୍ୟ କେଉଁଠାରେ ଦେଖିନି ।

ଅଜା ଆମ ପାଇଁ ବ୍ରହ୍ମପୁର, ଲୋକ ଯୋଗାଡ଼ କରି ପଠାଇଥିଲେ । ସେ 'ମା' ଆମ ଘରେ ଅନେକବର୍ଷ ଥିଲେ କିଛି ଅସୁବିଧା ହୁଏନି । ତାର କାରଣ ଆମ ଅଜା, ଆଈ ସମସ୍ତଙ୍କୁ ନିଜର ମନେ କରିଥାଆନ୍ତି । ସମସ୍ତଙ୍କ ସୁବିଧା, ଅସୁବିଧା ବୁଝନ୍ତି । କାହାକୁ ସାହାଯ୍ୟ କରିବାକୁ ପଛାନ୍ତିନି ତେଣୁ ତାର ସୁଫଳ ଆମେ ପାଇଲୁ । ବୋଉର ଚାକିରୀରେ ଆମର ଅସୁବିଧା ହୋଇ ନଥିଲା । ଆଜି କାଲି ଆଈଅଜାଙ୍କ ପାଇଁ ଏହା ସମ୍ଭବପର ନୁହେଁ ।

ଅଜା କେବେ କେବେ ବାଡ଼ି ବଗିଚା ଗଲେ ମୁଁ ତାଙ୍କ ସାଙ୍ଗରେ ଯାଏ । ଘରେ ଥିଲାବେଳେ ସେ ନିଜେ ଲେଖାପଢ଼ାରେ ବ୍ୟସ୍ତ ରୁହନ୍ତି । ଆମକୁ ପାଠ ବିଷୟ, ଆମର ପରୀକ୍ଷା ଫଳାଫଳ ବିଷୟ ପଚାରି ବୁଝନ୍ତି । ସାହିତ୍ୟ ବହିରେ ଥିବା ଦେଶାତ୍ମବୋଧକ ଗୀତ ମୁଖସ୍ଥ କରିବା ପାଇଁ କୁହନ୍ତି । ଏହା ପିଲାଙ୍କ ମନରେ ଦେଶାତ୍ମାବୋଧ ସୃଷ୍ଟି କରିବା । ଭଲ ପାଠ ପଢ଼ିବା ଯେପରି ଦରକାର,ଭଲ ଚରିତ୍ରର ପିଲା ହେବା ସେପରି ଦରକାର । ତେଣୁ ଖରାପ ପିଲାଙ୍କ ସହିତ ନ ମିଶି, ସମୟର ମୂଲ୍ୟ ପିଲାଦିନରୁ ବୁଝି, ଛାତ୍ର ଜୀବନରେ ଶୃଙ୍ଖଳା ଏବଂ ନିୟମ ମାନି ଚଳିବା ପାଇଁ ବୁଝାନ୍ତି ।

ଅଜାଙ୍କ ଗାଁରେ ଶୀତଳଷଷ୍ଠୀ ଗୋଟିଏ ବଡପର୍ବ । ଦିଅଁ ବାହାରନ୍ତି, ବାଣ ମରାହୁଏ, ସେ ଆନନ୍ଦ ଆମେ ଭୁଲି ପାରିବୁନି । ଅଜାଙ୍କ ଘର ପାଖରେ ବାଣ ତିଆରି ହୁଏ, ଭିକାରୀ ମଉସା ରାମିନା ବୋଲି ପାଖକୁ ଡାକନ୍ତି ମୁଁ ଯାଇ ସେଠାରେ ବାଣ ତିଆରି ଦେଖେ । ବେଳେବେଳେ ବାଣବାଡ଼ିଆ କାମରେ କିଛି କିଛି ସାହାଯ୍ୟ କରେ । ଅଜା କୁହନ୍ତି ନୀଳକଣ୍ଠଙ୍କ ପାଇଁ କାମ କଲେ ତାର ସୁଫଳ ପାଇବୁ । ତାଙ୍କ ଆଶୀର୍ବାଦ ତୋତେ ମିଳିବ । ସେ କଥା ଏବେ ମୋ କାନକୁ ଶୁଭିଯାଉଛି । ଆମ ଅଜା, ଆଈ, ଦୁଇଜଣ ଅତ୍ୟନ୍ତ ଧର୍ମପ୍ରାଣ ବ୍ୟକ୍ତିଥିଲେ । ମୁଁ ଜାଣିଛି ଅଜା ଜଣେ ଆଦର୍ଶ ଶିକ୍ଷକ ଥିଲେ । ବୋଉ କହେ ପଣ୍ଡିତ ଗୋପବନ୍ଧୁ ଏବଂ ପଞ୍ଚସଖାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ, ପାଠ ପଢ଼ା ସରିବା ପରେ ଶିକ୍ଷକତା କରିବା ପାଇଁ ଆଗେଇ ଆସିଥିଲେ । ସତ୍ୟବାଦୀର ବନ ବିଦ୍ୟାଳୟ ଥିଲା ଏକ 'ମଣିଷ ତିଆରି କାରଖାନା' । ଦେଶ ସ୍ୱାଧୀନତା ପାଇବା ପରେ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବାପରେ ପରେ ଦେଶ ପାଇଁ 'ମାନବ ସମ୍ବଳ' ଅତ୍ୟାବଶ୍ୟକ ଥିଲା । ସେଥିପାଇଁ ଉପଯୁକ୍ତ ଶିକ୍ଷକମାନଙ୍କୁ ଖୋଜା ହେଉଥିଲା । ଅଜାଙ୍କୁ ଶିକ୍ଷକ ହେବା ପାଇଁ ପଣ୍ଡିତ ଗୋପବନ୍ଧୁ ଦାସ କହିଥିଲେ ଏବଂ ପାଠପଢ଼ା ସରିବା ପରେ ଅଜା ଅନ୍ୟ କୌଣସି ଚାକିରି ପ୍ରତି ମନ

ନଦେଇ ଶିକ୍ଷକତା କରିବା ପାଇଁ ଠିକ୍ କଲେ ଏବଂ ଦୀର୍ଘ ୫ ଦଶନ୍ଧି ଧରି ଶିକ୍ଷକତା କରିଥିଲେ । ସତ୍ୟବାଦୀ, ଭାର୍ଗବୀ ହାଇସ୍କୁଲରେ ବହୁବର୍ଷ ଶିକ୍ଷକତା କରିଥିଲେ । ଅନ୍ୟ କେତେ ଯାଗାରେ, ଯଥା ଟାଙ୍ଗୀ, ଶାସନ ଦାମୋଦର ପୁର, ପୁରୀ ଗଦାଧର ହାଇସ୍କୁଲରେ ଅଳ୍ପ ବର୍ଷ କାଟିଥିଲେ । ମୁଖ୍ୟ କର୍ମଭୂମି ଥିଲା ସତ୍ୟବାଦୀ ଏବଂ ଗାଁ ଭାର୍ଗବୀ ଉଚ୍ଚ ବିଦ୍ୟାଳୟ । ମୁଁ ଜାଣିଛି ଅଜାଙ୍କ ପାଇଁ ବିଦ୍ୟାଳୟ ଥିଲା ଏକ ମଣିଷ ତିଆରି କାରଖାନା । ସେ ପାଠ ପଢ଼ା ସହ ପିଲାମାନଙ୍କର ସର୍ବାଙ୍ଗୀନ ଉନ୍ନତି ପ୍ରତି ଦୃଷ୍ଟି ଦେଉଥିଲେ । ଛାତ୍ରମାନଙ୍କର ଶାରୀରିକ, ମାନସିକ, ସାଂସ୍କୃତିକ ଆଧାତ୍ମିକ ଓ ଚାରିତ୍ରିକ ବିକାଶ କରିବା ପାଇଁ ନିରନ୍ତର ଚେଷ୍ଟିତ ଥିଲେ ଏବଂ ଜୀବନରେ ବହୁ ସୁଛାତ୍ର ଗଠନ କରି ଦେଶ ମାତୃକାକୁ ଉପହାର ଦେଇଥିଲେ । ଛାତ୍ରମାନଙ୍କ ସହିତ ସମ୍ପର୍କ ବିଦ୍ୟାଳୟରେ ସୀମିତ ନଥିଲା । ସେ ତାଙ୍କ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ତାଙ୍କ ପ୍ରାଣପ୍ରିୟ ଛାତ୍ରମାନଙ୍କ ସହିତ ସଂପର୍କ ରଖି ତାଙ୍କୁ ନିରନ୍ତର ସୁପ୍ରେରଣା ଦେଉଥିଲେ ଏବଂ ତାଙ୍କ ସୁଖ୍ୟାତିରେ ଗର୍ବ ଅନୁଭବ କରୁଥିଲେ । ଆମେ (ୟୁନିଟ୍ - ୯) ୯ ନମ୍ବରରେ ଥିବା ସମୟରେ ଅଜା ଆମ ଘରକୁ ଆସନ୍ତି, ତାଙ୍କ ଦୁର୍ବଳତା ଏବଂ ଶାରୀରିକ ଅବସ୍ଥାକୁ ଭୁଲି ତାଙ୍କ ପ୍ରିୟଛାତ୍ର 'ନିଧି ନାୟକ'ଙ୍କୁ ଦେଖା କରିବା ପାଇଁ ମୋତେ ବ୍ୟସ୍ତ କରିଦିଅନ୍ତି । ମୁଁ ତାଙ୍କୁ ନେଇ ବୋର୍ଡ ଅଫିସ ଯେଉଁଠାରେ ନିଧି ମାମୁଁ କାମ କରନ୍ତି ସେଠାକୁ ନେଇଯାଏ । ସେ ଦୁଇଜଣଙ୍କର ମିଳନ ସମୟର ଅନୁଭୂତି ମନେ ପକାଇ ଭାବୁଛି ଆଜି ଏହା ଅତ୍ୟନ୍ତ ବିରଳ । ମୋ ଅଜାଙ୍କର ଛାତ୍ର ବତ୍ସଳତାକୁ ମନେ ପକାଇ ମୁଁ ଗର୍ବ ଅନୁଭବ କରୁଛି ।

ମୁଁ ଭାବୁଛି ଯେଉଁ ବ୍ୟକ୍ତିମାନଙ୍କର ଜ୍ଞାନଗରିମା, ଉତ୍ସର୍ଗ, ପ୍ରକୃତ ସେବା, ସଚ୍ଚୋଟତା, କର୍ମପ୍ରବଣତା, ବଳିଷ୍ଠ ବ୍ୟକ୍ତିତ୍ୱ, ଦେଶ ପ୍ରେମ ଭାବ ପାଇଁ ଆଜି 'ଉତ୍କଳ ଜନନୀ' ଅଗ୍ରଗଣ୍ୟା, ଗର୍ବୀତା, ତଥା ଉଲ୍ଲସିତା ହୋଇଛନ୍ତି ସେହିମାନଙ୍କ ଭିତରେ ମୋ ଅଜାଙ୍କର ଅନେକ ଛାତ୍ର ଅଛନ୍ତି । ଏହା ନିଶ୍ଚିତ । ଆଜି ମୋ ଛାତି ଗର୍ବରେ ଫୁଲି ଉଠୁଛି ।

ପରିଶେଷରେ ପ୍ରଭୁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଛି ମୋ ଅଜା, ଆଈ ବଡ଼ମାମୁଁ ସ୍ୱର୍ଗପୁରରେ ଥାଇ ଆମକୁ ଆଶୀର୍ବାଦ କରନ୍ତୁ ଏବଂ ଆମ ଜୀବନଯାତ୍ରା ପାଇଁ ସର୍ବଦା ସତ୍‌ପଥ ଦେଖାଉଥାନ୍ତୁ ।

ତାଙ୍କ 'ଜୀବନୀ' ପଠନ ଆମ ଜୀବନକୁ ପବିତ୍ର କରିବ ଏବଂ ମହାମନ୍ତ୍ର ଶିକ୍ଷା ଦେବ । ଏହା ଧ୍ରୁବ ସତ୍ୟ ।

- ନାତି

●●●



# ମୋ ଅଜା, ଆଈ ଓ ମୁଁ

ଇନ୍ଦିରା ମିଶ୍ର

ଅଜାଙ୍କୁ ମୁଁ ପିଲାବେଳେ ଏକ ଭିନ୍ନ ରୂପରେ ଦେଖେ ମାନେ ମୁଁ ତାଙ୍କୁ ଖୁବ୍ ଆଦର୍ଶ ଶିକ୍ଷକ ଭାବରେ ଭାବେ ଯିଏ କି ପୁରୀ ଏବଂ ସତ୍ୟବାଦୀ ସ୍କୁଲରେ ଏକ ଆଦର୍ଶବାନ ଶିକ୍ଷକର କୀର୍ତ୍ତି ସମ୍ମାନ ହାସଲ କରିଥିଲେ । ସେତେବେଳେ ସେ ନାରୀ ଶିକ୍ଷାକୁ ବହୁତ ପ୍ରାଧାନ୍ୟ ଦେଉଥିଲେ ଯାହାର ଜ୍ୱଳନ୍ତ ନିଦର୍ଶନ ହେଲା ମୋ ନିଜ ମାଉସୀ ଏବଂ ମୋର ବଡ଼ ଭଉଣୀ, ଯେଉଁମାନଙ୍କୁ ଖୁବ୍ ପଢ଼ିବା ଲାଗି ପ୍ରୋତ୍ସାହନ ଦେଇଥିଲେ । ନାନୀ ଦଶମ ବୋର୍ଡ ପରୀକ୍ଷା ସେଇ ଗାଁରୁ ହିଁ ପଢ଼ି ଏତେ ଭଲ କରିଥିଲେ । ଅଜାଙ୍କ ତତ୍ତ୍ୱାବଧାନରେ ହିଁ ଏହା ସମ୍ଭବ ହୋଇପାରିଥିଲା । ତାର ମୂଳଦୁଆ ଗଢ଼ି ଥିଲେ ଅଜା ।

ମାଉସୀର ପଢ଼ିବା ଏବଂ ଉଚ୍ଚ ଶିକ୍ଷା ପାଇବା ସବୁ ପଛରେ ଅଜାଙ୍କର ତ୍ୟାଗ ରହିଛି । ମୁଁ ଅଜାଙ୍କୁ ବହୁତ ଡରେ, କାରଣ ହେଲା ସେ ମୋତେ ପାଠ ପଢ଼ା ବିଷୟରେ ପଚାରନ୍ତି, ରଚନା ଲେଖିବାକୁ କହନ୍ତି ତା ପରେ ବହୁ ବୁଝାନ୍ତି । କୁହନ୍ତି ସାନ ବୋଲି ନନାବୋଉ ବହୁତ ଗେହ୍ଲା କରି ଦେଇଛନ୍ତି, କିଛି ପାଠ ପଢୁନୁ । ତାପରେ ମୁଁ ତାଙ୍କଠୁ ଲୁଚି ଲୁଚି ରହେ । କିନ୍ତୁ ଜଣେ ଜ୍ଞାନୀ, ଗୁଣି ବିଦ୍ୱାନ ଭାବରେ ତାଙ୍କର ଗାଁରେ ବହୁତ ସମ୍ମାନ ଥିଲା । ମୋତେ ସେଥିପାଇଁ ବହୁତ ଭଲ ଲାଗେ । ଆଉ ମୁଁ ଯେତେବେଳେ ଶୁଣେ କି ଅଜା ଖୁବ୍ କମ୍ ବେତନରେ, ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ପଞ୍ଚସଖାଙ୍କ ଦ୍ୱାରା ପରିଚାଳିତ ସତ୍ୟବାଦୀ ସ୍କୁଲ୍‌ରେ ଶିକ୍ଷକତା କରୁଥିଲେ ମୋତେ ବହୁତ ଗର୍ବ ଅନୁଭବ ହୁଏ ତାଙ୍କ ନାତୁଣୀ ବୋଲି । ସେ ଗୀତି ରାମାୟଣ ଲେଖୁଥିଲା ବେଳେ ମୋ ମନରେ ଜିଜ୍ଞାସା ଉଠୁଥିଲା କି ସେ କେମିତି ଗୀତରେ ଛାନ୍ଦରେ ରାମାୟଣ ପୂରା ଲେଖି ପାରୁଛନ୍ତି, ଗୋପୀନାଥଙ୍କର ଆଶୀର୍ବାଦ ନିଶ୍ଚୟ ଥିବ ।

ସେହି ଦିନରୁ ସେ ଜଗନ୍ନାଥଙ୍କର ଅନୁକମ୍ପା, କୃପା ପାଇଛନ୍ତି ବୋଲି ହୃଦବୋଧ ହୋଇଥିଲା । ସେ ବଞ୍ଚିଥିବା ବେଳେ ମୁଁ ତାଙ୍କର ଗୀତ ସବୁ କେବେ ପଢୁନଥିଲି କି ଗାଉ ନଥିଲି । ତାଙ୍କ ଦେହାନ୍ତ ପରେ ହିଁ ମୁଁ ସେ ଗୀତ ଯେତେବେଳେ କ୍ୟାସେଟ୍‌ରେ

ରେକର୍ଡିଂରେ ଶୁଣେ ଆତ୍ମବିଭୋର, ଆତ୍ମ ବିସ୍ମୃତ ହୋଇଯାଏ କି ମୋର ଅଜା କେତେ ସୁନ୍ଦର ଲେଖିଛନ୍ତି; ପୁଣି ମୁଁ ଗର୍ବ ଅନୁଭବ କରେ ତାଙ୍କ ଲାଗି । ମୋ ପ୍ରତି ତାଙ୍କର ସର୍ବ ଶ୍ରେଷ୍ଠ ଅବଦାନ ହେଲା ସେ ମୋର ଜନ୍ମ ବୃତ୍ତାନ୍ତର ରଚୟିତା । କେବଳ ମୋର ନୁହେଁ ସମସ୍ତ ନାତି ନାତୁଣୀଙ୍କ ଜନ୍ମ ସମୟରେ ସେ ଦାୟିତ୍ୱ ନେଇଥିଲେ । ସେଇଟା ଆମମାନଙ୍କ ଲାଗି ଶ୍ରେଷ୍ଠ ଅବଦାନ । ଗାଁରୁ ରିକ୍ସାରେ ନେଇ ପୁରୀ ହସ୍ପିଟାଲ୍‌ରେ ମୋର ଜନ୍ମ ହୋଇଥିଲା । ଜନ୍ମ ପରେ ସମସ୍ତ ତତ୍ତ୍ୱାବଧାନ କରିଥିଲେ ସେ ନିଜେ । ଶାରୀରିକ ଚିକିତ୍ସା ଉପରେ ବି ତାଙ୍କର ଅସୀମ ଜ୍ଞାନ ଥିଲା । ଖାଇବା ପିଇବାର ଔଷଧ ସବୁ ବୁଝନ୍ତି ।

ଏ ତ ହେଲା ଅଜାଙ୍କ କଥା, କିନ୍ତୁ ମୁଁ ଆଈକୁ ସବୁବେଳେ ମମତା ଓ କରୁଣାର ମୂର୍ତ୍ତିମନ୍ତ ଦେବୀ ରୂପରେ ଦେଖି ଆସିଛି । ସେ ହିଁ ଥିଲା ସମସ୍ତଙ୍କର ପ୍ରେରଣା, ମମତା ସ୍ନେହମୟୀ ଛବି । ସେ କେମିତି ଗୋଟେ ଯାଦୁମନ୍ତ୍ରରେ ସମସ୍ତଙ୍କୁ ବାନ୍ଧି ରଖିଥିଲା । ତାର ହସ ହସ ସ୍ନେହବୋଳା ମୁହଁ, କଥାରେ ମନ୍ତ୍ରମୁଗ୍ଧ କରିପାରିବାର ମୋହନ ଶକ୍ତି ଥିଲା ଯେମିତି । ସବୁ ନାତି ନାତୁଣୀ ତାର ସ୍ନେହ ଡୋରିରେ ବାନ୍ଧି ହୋଇଯାଉଥିଲୁ । ଶୀତଳ ଷଷ୍ଠୀରେ ଆମେ ଗାଁକୁ ଯାଉ । ଦିଅଁ ବାହାଘର ଓ ଶିବ ପାର୍ବତୀଙ୍କୁ ଦେଖିବାକୁ । ହେଲେ ଆଈ ହିଁ ଥାଏ ମୁଖ୍ୟ ଆକର୍ଷଣ । ଆଈକୁ ଦେଖିଦେଲେ ସତେ ଯେମିତି ସ୍ୱର୍ଗ ସୁଖ ବରଷି ଯାଏ ଆମ ଉପରେ । ତାର ସେ ଡାକ "କୁନି ଲୋ କୁନି" ଭିତରେ କି ମନ୍ତ୍ର ଥାଏ କେଜାଣି ?

ମୋତେ ଲାଗେ ଗାଁରେ ମୋ ମାମୁଙ୍କ ଘର ସବୁଠୁ ସୁନ୍ଦର, ଲକ୍ଷ୍ମୀଙ୍କ ନିବାସ ଯେମିତି । ରଙ୍ଗ ଦିଆ ପକ୍କାଘରଟି ସତରେ ଭାରି ସୁନ୍ଦର । ଆଈ ବି ସେ ଘରକୁ ସଫାସୁତୁରା କରି, ଅଗଣାକୁ ଗୋବରରେ ଲିପି, ଫୁଲଗଛ ଲଗେଇ ଖୁବ ସୁନ୍ଦର କରି ସଜେଇଥାଏ । ନାଲି ଲୁଗାକୁ ତା ଓଢ଼ଣା ପକା ଦେଖିଲେ ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀପରି ।

ତାପରେ ପଛପଛେ ଖଞ୍ଜାଶାଳ, ରୋଷଘର, ବାଡିଆଡେ ନଡିଆ ଗଛ ଆଉ ପୋଖରୀ । ସବୁଆଡେ ପରିଷ୍କାର କରି ରଖିଥାଏ ଆଈ । ମୋ ବୋଉର ମାଟିହାଣ୍ଡିରେ ଚୁଲି ତିଆରି କରିବା ବୋଧେ ଆଈର ଅବଦାନ । ଢିଙ୍କି କୁଟାଇ ଧାନରୁ ଚାଉଳ କାଢ଼ିବା ଆଈକୁ ଜଣାଥାଏ । କେତେ ସ୍ତ୍ରୀ ଲୋକ ମିଶି କୁଟନ୍ତି କଳା କୌଶଳରେ ।

ଆଈର ହାତରନ୍ଧା ବି ବେଶ ଚମତ୍କାର । ମୁଖ୍ୟ ରୋଷେଇ କାମ କମଳା ଆଈ ହିଁ କରେ । ତେବେ ସବୁ ତଦାରଖ କରିବାରେ ଆଈ ଅବହେଳା କରେନି । ଆଈଘର ଖାନା ଅମୃତ ପରି ସୁଆଦିଆ । ଚୂନାମାଛ ବେସର, ହଳଦୀପାଣି, ଫୁଲବଡି, ଡାଲମା, ଭାତ, ପଖାଳ, ଦହି, ଆଚାର, ଆମ୍ବସଡା ସବୁ ଖଞ୍ଜିରଖି ଯୋଗାଇ ଦେବାରେ ଆଈ ନିପୁଣା । ଭୋଗରାଗ ପାଇଁ ଚୁଡାଘଷା, ଡାଲମା, ଖିରି, ଲଡୁ, କାକରା ପିଠା ପୁରି ଆଦି ବିଶେଷ ଯତ୍ନରେ ତିଆରି କରେ ।

ଘରକୁ ଯେତେ କୁଣିଆ ଆସିଲେ ବି ଆଈ ସମସ୍ତଙ୍କର ଚର୍ଚ୍ଚା କରିବାରେ କାର୍ପଣ୍ୟ କରେନି ।

ସମସ୍ତଙ୍କୁ ନ ଖୋଇ ସେ କେବେ ଛାଡେନି । କେଶୀଭାଇନା, ବିଜୟ, ମାମୁଁ ଅଜା, ମାଇଁ, ଆଇ ଏମିତିକି ଗାଁର ଯେତେ ଲୋକ ସୁବିଧା ପାଇଲେ ବୁଲି ଆସନ୍ତି ଆଇର ଚର୍ଚ୍ଚା ପାଇଁ । ଆଇ ପାଖେ ରହିବାର ସୁଯୋଗ କିଛି ଦିନ ଆମ ଭାଗ୍ୟରେ ପଡେ କିନ୍ତୁ ସେତିକି ପାଇଁ ଆମେ ବ୍ୟାକୁଳ । ଫେରିବା ବେଳେ ଆଇକୁ ଦାଣ୍ଡ ପିଣ୍ଡାରେ ଚାହିଁ ରହିବାର ଦେଖି ଆଖିରୁ ଲୁହ ସ୍ୱତଃ ଝରିଆସେ । ବାଷ୍ପାକୁଳ ଅବସ୍ଥା ରୋକିବା ସମ୍ଭବ ହୁଏନି । କାନ୍ଦି କାନ୍ଦି ଫେରିବାକୁ ହୁଏ । ଆଇକୁ ଛାଡି ଆସିବାର ଅନ୍ତର ବେଦନା କେବଳ ଏଇ କୋମଳ ମନ ହିଁ ଜାଣେ ।

ଶଗଡରେ ସମସ୍ତେ ବସି ଆସୁ । ଶଗଡ ବଳଦ ତ ଏବେ ସ୍ୱପ୍ନ । ହଁ, ସ୍ୱପ୍ନ ପରି ଉଭେଇ ଯାଇଛି ସେ ଦିନ, ଛାଡି ଯାଇଛି କିଛି ଅଲିଭା ସ୍ମୃତି । ସେତେବେଳେ ଯଦି ଏମିତି ସ୍ମାର୍ଟ ଫୋନ୍ ଥାଆନ୍ତା ଆଇକୁ ନିତି ଦେଖି ହେଉଥାନ୍ତା । ତା ସ୍ନେହବୋଳା କଥା ଟିକେ କାନ ଶୁଣୁଥାନ୍ତା । ଏତେ ଉତ୍କଣ୍ଠା ଓ ଉଦ୍‌ବିଗ୍ନତା ଭିତରେ ଦିନ ଗଣୁ ନଥାନ୍ତୁ କେବେ ପୁଣି ଆଇ ପାଖକୁ ଯିବୁ ବୋଲି । ଆଜି ଗାଡି ଅଛି, ଫୋନ୍ ଅଛି କିନ୍ତୁ ନାହିଁ ଆଇ, ନାହାନ୍ତି ଅଜା । ସେ ଦିନ ଗୁଡାକ ସବୁ ହଜିଯାଇଛନ୍ତି । ସ୍ମୃତି ହୋଇ ରହିଯାଇଛନ୍ତି ।

ଇତି

**ନାତୁଣୀ ଇତି**

**ବେଙ୍ଗାଲୁରୁ**





# ମୋ ସ୍ମୃତିରେ 'ମୋ ଅଜା'

ମମତା ମିଶ୍ର

ମୋ ଅଜା, ଆଈ ମୋ ପାଇଁ ଚିର ସ୍ମରଣୀୟ, ଚିର ନମସ୍ୟ । ମୁଁ ତାଙ୍କୁ କେବେ ଭୁଲିପାରିବିନି । ତାଙ୍କ ଗ୍ରାମ ବୀରନରସିଂହପୁର । ଆମ ସବୁ ଭାଇ, ଭଉଣୀଙ୍କର ସବୁଠାରୁ ପ୍ରିୟ ସ୍ଥାନ ।

ସ୍ନେହ ଆଦର ଯାହା ଆମ ପାଇଁ ପିଲାବେଳେ ଦରକାର ଥିଲା ଆମେ ତାଙ୍କଠାରୁ ହିଁ ପାଇଛୁ । ବୋଉ ଥିଲା ଶିକ୍ଷୟିତ୍ରୀ, ବାପା ଥିଲେ ଜେଲ୍ ଅଫିସର । ତେଣୁ ଆମ ପାଇଁ ସମୟ ଦେବା ତାଙ୍କ ପାଇଁ ସମ୍ଭବ ନଥିଲା ।

ପ୍ରତିବର୍ଷ ଗ୍ରୀଷ୍ମ ଛୁଟି ହେଲେ ବୋଉକୁ ମାସେ ଛୁଟି ମିଳେ, ଆମର ସ୍କୁଲ୍ ସବୁ ବନ୍ଦ ହୋଇଯାଏ । ଆମେ ଚାଲିଯାଉ ଅଜାଙ୍କ ଗାଁକୁ । ସେହି ଗ୍ରାମରେ ଆମର ମାଉସୀଘର, ଅଜାଙ୍କ ଘରର ଖୁବ୍ ପାଖରେ । ମାଉସୀର ପିଲାମାନେ ଏବଂ ଆମେ ଚାରି ଭାଇ ଭଉଣୀ ଏକାଠି ହୋଇ ଅଜାଘରେ କି ମଜା କରୁ ମନେ ପଡୁଛି । ସେ ଦିନ ଆଉ ଆସିବନି ।

ଅଜା ଆଈଙ୍କର ପରିଣତ ବୟସ ହେଲେ ମଧ୍ୟ ସେ ଆମ ଖୁସିରେ ଖୁସି ହୋଇ ଆମ ପାଇଁ ବିଭିନ୍ନ ପ୍ରକାର ଜିନିଷ ଯୋଗାଡରେ ଲାଗିପଡନ୍ତି, ଯାହା ସହରରେ ମିଳେ ନାହିଁ । ଅଜା ପ୍ରତିଦିନ ସକାଳୁ ଗୁଆ ବାଡ଼ି ବୁଲିବାକୁ ଯାଆନ୍ତି । ଆମ ପାଇଁ ବିଭିନ୍ନ ପ୍ରକାର କୋଳି, ତାଳସଜ, ପିଜୁଳି, ପଇଡ ଇତ୍ୟାଦି ଆଣନ୍ତି । ତାଙ୍କ ସହିତ ଆମେ ଗାଁ ମନ୍ଦିର, ବାଡି ବଗିଚା, ବୁଲିବାକୁ ଯାଉ ।

ଅଜା ବିଭିନ୍ନ ପ୍ରକାର ବଡ ମାଛ, ଛୋଟ ମାଛ ଗ୍ରାମ ପୋଖରୀ, ଗାଡ଼ିଆରୁ ଯୋଗାଡ କରନ୍ତି । ଆଈ ବଢ଼ିଆ କରି ସେସବୁ ରାନ୍ଧି ଆମକୁ ଖାଇବାକୁ ଦିଏ । ଆଈଘର ପଖାଳ ଆମେ କେବେ କେଉଁଠି ଆଉ ପାଇବୁନି । ପଖାଳ ସଙ୍ଗେ ଖାଇବାକୁ ଆଈ ରଖିଥାଏ ବିଭିନ୍ନ ପ୍ରକାର ଶୁଖୁଆ, ବଡି, ଆଚାର । ଆମେ ଯିବା ଆଗରୁ ସବୁ ପ୍ରସ୍ତୁତ ହୋଇ ରହିଥାଏ । ଅଜା, ଆଈ ଆମ ଖୁସିରେ ଖୁସି ହୁଅନ୍ତି, କେବେ ବିରକ୍ତି ପ୍ରକାଶ କରନ୍ତି ନାହିଁ ।

ଆଈ ତାକୁ ସାହାଯ୍ୟ କରିବା ପାଇଁ ଲୋକ ଯୋଗାଡ କରି ଆମ ପାଇଁ ବିଭିନ୍ନ ପ୍ରକାର ଛଣା ପିଠା କରି ରଖିଥାଏ, କହେ, "ଏହିଠାରୁ ନେଇ ଖାଇବ, ମୋତେ ପଚାରିବା ଦରକାର ନାହିଁ । ଏହି ସବୁ ତୁମପାଇଁ ରହିଛି" ।

ରଜ ପର୍ବ ଖରାଛୁଟିରେ ପଡେ । ଅଜା ଲୋକ ଲଗାଇ ନଡିଆ ଗଛରେ ଦୋଳି ବାନ୍ଧି ଦିଅନ୍ତି । ଆଈ କହେ, "ପିଠା ଖାଅ ଦୋଳି ଖେଳ"।

ଆଈ ରଜଦୋଳି ଗୀତ ଗାଇ, ମଝିରେ ମଝିରେ ଦୋଳି ଝୁଲାଇ ଦିଏ, ଆମକୁ ଦୋଳି ଗୀତ ଶିଖାଇ ଦିଏ ।

"ବନସ୍ତେ ଡାକିଲା ଗଜ,
ବରଷକେ ଥରେ ଆସିଛି ରଜ,
ଘେନି ନୂଆ ସଜ ବାଜ" ।
ସବୁ ମନେ ପଡି ଯାଉଛି ।

ଆଈ ଆମକୁ ଅଳତା ପିନ୍ଧାଇ ସଜ କରିଦିଏ । ଅଜା ତାସ୍ ଆଣି ଦିଅନ୍ତି । ଆଈ କଉଡି, ଆଉ ଦଉଡି ଡିଆଁ ଯୋଗାଡ କରି ଆମକୁ ଦିଏ କହେ, "ପରୀକ୍ଷା ଦେଇ ଆସିଛ ମନ ଖୁସି କର"।

ରଜ ବେଳର ପୋଡ ପିଠା ମନେ ପଡି ଯାଉଛି । ଆଈ ତିଆରି ପୋଡ ପିଠାର ସ୍ୱାଦ ଏବେ ମିଳୁଥିବା ପୋଡ ପିଠାରେ ମିଳିବନି ।

ଆମ ଅଜା ଥିଲେ ଜଣେ କୃତୀ ଶିକ୍ଷକ । ସମସ୍ତେ କୁହନ୍ତି ସେ ଜ୍ଞାନର ଭଣ୍ଡାର, ଶିକ୍ଷକମାନଙ୍କର ମଉଡମଣି । ଇଂରାଜୀ, ସାହିତ୍ୟ, ଭୂଗୋଳରେ ତାଙ୍କର ଗଭୀର ଜ୍ଞାନ ଥିଲା । ବହୁ ଦୁର୍ବଳ ଛାତ୍ରମାନଙ୍କୁ ଅଳ୍ପ ସମୟ ଭିତରେ ବାଟକୁ ନେଇ ଆସନ୍ତି ।

ମୁଁ ବହୁତ ଲୋକଙ୍କ ମୁଖରୁ ଶୁଣିଛି ସେଥିଲେ ଅତ୍ୟନ୍ତ ଛାତ୍ରବତ୍ସଳ । ପିଲାମାନଙ୍କର ମେଧା ଶକ୍ତି ଜାଣି ତାଙ୍କୁ ଭବିଷ୍ୟତର ବାଟ ଦେଖାଇଛନ୍ତି ଏବଂ ସେମାନେ ସେ କ୍ଷେତ୍ରରେ ଦକ୍ଷତାର ସହିତ କାର୍ଯ୍ୟ କରି ପ୍ରଶଂସିତ ହୋଇଛନ୍ତି । ମୋତେ ବାର୍ଷିକ ପରୀକ୍ଷା ନମ୍ବର ପଚାରନ୍ତି । ମୋ ନମ୍ବର ଶୁଣି ଖୁସି ହୋଇ ଅଧିକ ଭଲ କରିବା ପାଇଁ ପ୍ରେରଣା ଦିଅନ୍ତି ।

ମୁଁ ଦିନେ ତାଙ୍କ ପାଖରେ ଗୋଟିଏ ଅଭିଯୋଗ କରିଥିଲି । କହିଲି ଅଜା ! ବୋଉ, ନନା ଭୁବନେଶ୍ୱରରେ ଚାକିରି କରୁଛନ୍ତି କିନ୍ତୁ ଆମ କାହାରିକୁ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢାଇଲେ ନାହିଁ । ଅଜା ସଙ୍ଗେ ସଙ୍ଗେ କହିଲେ,

"ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ତେବେ ନିଜ ମାତୃଭାଷା"

ଆଈ ଆମର କମ୍ ଜ୍ଞାନୀ ନଥିଲା । ମୋ କଥା ଶୁଣି ଖପା ହୋଇ କହିଲା,

'ମାତୃଭୂମି, ମାତୃଭାଷାର ମମତା,
ଯା ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା,
ଅଜ୍ଞାନୀ ରହିବେ କାହିଁ' ।

ମୁଁ ଚୁପ୍ ! ଦୁଇଜଣଙ୍କ ମତରେ ମାତୃଭାଷା ମାଧ୍ୟମରେ ଶିକ୍ଷା ହିଁ ପ୍ରକୃତ ଶିକ୍ଷା । ଅଜା କହିଲେ ଭଲ ପଢିବା ପାଇଁ ନିଜର ନିଷ୍ଠା ଓ ଉଦ୍ୟମ ଦରକାର । ମୁଁ କହୁଛି କେତେ ଗୁଡିଏ ନିୟମ ଶୁଣ, ସେଗୁଡିକୁ ମନେରଖି ପାଳିଲେ ନିଶ୍ଚୟ ଭଲ କରିବୁ । ବାହାର ଚାକଚକ୍ୟରେ ବିଚଳିତ ହୁଅନା । ପ୍ରଥମଟି ହେଲା, ନିଜେ ପଢିବା ପାଇଁ ସମୟ ଠିକ୍ କର । ଖାଲି ସ୍କୁଲ୍‌ରେ ଆଉ ଟିଉସନ୍ ସାର୍‌ଙ୍କ ପାଖେ ପଢିଲେ ପାଠ ହେଇଯିବନି । ନିଜେ ପଢିବା ଦରକାର । ପ୍ରତିଦିନ ଭୋର ୪ଟାରୁ ଉଠି ନିଜେ ପଢା ଆରମ୍ଭ କରିବୁ । ସେତେବେଳେ ପରିବେଶ ଶାନ୍ତ ଓ ମନ ମଧ୍ୟ ଶାନ୍ତ, ପ୍ରଫୁଲ୍ଲ ଥାଏ । ମନରେ ଏକାଗ୍ରତା ଆସେ । ପଢା ପାଇଁ ଏହା ପ୍ରକୃଷ୍ଟ ସମୟ ।

ବୋଉ କହିଲା ଅଜା, ସତ୍ୟବାଦୀ ହାଇସ୍କୁଲ୍‌ରେ ଶିକ୍ଷକ ଥିବା ସମୟରେ ଛାତ୍ରାବାସ ପରିଦର୍ଶକ ଥିଲେ । ପ୍ରତିଦିନ ଭୋର ୪ଟାରୁ ଉଠି ଛାତ୍ରାବାସ ଯାଇ ପିଲାମାନଙ୍କ ଝରକା ପାଖରେ ବାରଣ୍ଡାରେ ଠିଆ ହୋଇ କାନ ଦେଇ ଶୁଣୁଥିଲେ । ପିଲାମାନେ ଉଠି ପାଠ ପଢୁଛନ୍ତି ନା ନାହିଁ ଜାଣିବା ପାଇଁ । ବିଦ୍ୟାଳୟ ପାଖରେ ରହୁଥିଲେ । ପିଣ୍ଡାରେ ଠିଆ ହେଲେ ଛାତ୍ରାବାସ ଦେଖାଯାଏ । "ଦ୍ୱିତୀୟ ନିୟମଟି ହେଲା ନିୟମିତ ପଠନ ସହିତ, ଲିଖନ ଅଭ୍ୟାସ । ପ୍ରତ୍ୟେକ ଦିନ ଇଂରାଜୀ ଏବଂ ସଂସ୍କୃତରେ ୫ଟି ବାକ୍ୟ ଅନୁବାଦ (translation) କରିବୁ ।

"ତୃତୀୟ ନିୟମଟି ହେଲା ପାଠକୁ ଭଲ ଭାବରେ ବୁଝିବା ଦରକାର, ମୁଖସ୍ଥ କରି ଲେଖିବନି । ଲେଖାରେ ନିଜର ମୌଳିକତା ଥିବା ନିହାତି ଆବଶ୍ୟକ । ଛାତ୍ର ଜୀବନକୁ ଶୃଙ୍ଖଳିତ କରିବୁ । ମାତୃଭାଷା ମାଧ୍ୟମରେ ଶିକ୍ଷା ପାଇ ତୋର କିଛି କ୍ଷତି ହୋଇନାହିଁ । ତୁ ଭଲ କରିବୁ"। ପ୍ରକୃତରେ ତାଙ୍କ ଉପଦେଶ ମାନିଥିବାରୁ ତା'ର ସୁଫଳ ମୁଁ ପାଇଛି । ଆଜି ଯେଉଁ ଅବସ୍ଥାରେ ଅଛି ତାଙ୍କ ଦୁର୍ଲଭ ପ୍ରେରଣାର ଫଳ ବୋଲି ଭାବୁଛି ।

ସେମାନେ ସବୁ ସମୟରେ ମୋର ଅଜା, ଆଈ ହୋଇ ଆସନ୍ତୁ- ଏହାହିଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି ।

ତାଙ୍କର ଆତ୍ମ ଚରିତ ଯାହା ମାମୁଙ୍କ ଚେଷ୍ଟା ଏବଂ ଭଗବାନଙ୍କର କୃପାରୁ ପ୍ରକାଶିତ ହେବାକୁ ଯାଉଛି, ତାହା ପରିବାରର ସମସ୍ତଙ୍କ ପାଇଁ ସବୁ ସମୟରେ ଏକ ଉପାଦେୟ ପୁସ୍ତକ ହୋଇ ରହିବ ।

ଆମ ପାଇଁ 'ଗୀତା', 'ଭାଗବତ' କହିଲେ ଅତ୍ୟୁକ୍ତି ହେବ ନାହିଁ ।

ନାତୁଣୀ, B.M., SBI

●●●



## A Tribute to my Grandfather...

Mamali Mohapatra

*"I wish I were born 5 years earlier", this was my first thought when I read some of my grandfather's writings for the first time 33 years after his demise. How lucky my elder brothers must have been who got to spend time with him. Most of the time we do not recognize the magnanimity of a person until we look back in retrospection; such was the stature of my grandfather. A humble high school teacher who dedicated his life to his job, never wished for any rewards or needed appreciation but went out of his way to support his students. He was not a teacher but a father to his students, probably hundreds of them. When I visit my village, I hear stories about his relationship with his students. He could never say no to help not just his students but anyone in need. He had a benevolence of manner suited to the philanthropy of his mind. A true altruistic I must say.*

*My grandfather got his son (my father) married to one of his most admired students' daughters (my mother). I can never thank him enough for giving me the best parents on earth. The amazing part of this story is, my grandfather actually remembered his student without being in touch with him for more than 25 years, wrote a letter to him, received a "yes with gratitude" from his student (my maternal grandfather) within few days. This is so utopian for someone like me belonging to a world where the value of words is losing its vitality.*

*My mother being the only source of information for me, I got to know he wanted to name me "Manorama". Somehow, I never got that name but if I were old enough then maybe I would have fondly accepted it. She would tell me, how my grandfather was a visionary. Being a Brahmin, part of a privileged elite in Hinduism's ancient caste hierarchy, he believed in an inclusive and equitable society. During the famous "Sittalasashthi", a popular festival among Odias, my grandfather would invite everyone forgetting the caste barriers. He*

*would challenge the rigid hierarchical social orders in his subtle ways.*

*A hardcore patriot and a nationalist, his love for his land reflected in his poems. Such an example is "Janmabhumi", where he has expressed his strong emotions towards "Biranarasingpur", our village. Beautifully he has narrated the importance of traditions and how they represent a critical piece of our culture. They form the structure and foundation of our families and our society. They remind us that we are part of a history that defines our past, shapes who we are today, and who we are likely to become.*

*As I sit down penning my thoughts today, I sincerely admire my father's dedication and love which has given my grandfather's manuscript "Atmacharita" a life of its own in the form of this book. This book on my family's history will always be a source of knowledge, guiding principle, and idealism, something that will keep me attached to my roots. I can only admire in awe that there was a time and there were people who once walked the same path as we walk today but with such different tenets. I wish I could emulate a tiny fraction of his personality!!*

***Yours lovingly Manorama***

***U.S.A.***

●●●



# ପିଉସାଙ୍କ ପାଇଁ ପଦଟିଏ

ଡକ୍ଟର ଭୀମସେନ କର

୧୯୮୫ ମସିହାରେ ମୁଁ ଦିଲ୍ଲୀ ସ୍ଥିତ ଜବାହାରଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟ (J.N.U)ର ପୂର୍ବାଞ୍ଚଳ ହଷ୍ଟେଲରେ ରହୁଥାଏ । ହଠାତ୍ ଦିନେ ଡାଇନିଙ୍ଗ ହଲରେ ଖାଇବାକୁ ଯିବାବେଳେ ଗରମ ଖାଦ୍ୟ ମୋ ହାତରୁ ଖସିଗଲା ଓ ମୋ ଉପରେ ପଡ଼ିଗଲା, ପରେ ସେ ଖାଦ୍ୟକୁ ଧୋଇଦେଇ ମୁଁ ଆଉଗୋଟେ ଥାଳିରେ ଖାଇଲି ସତ, କିନ୍ତୁ ଜାଣିପାରିଲିନି କାହିଁକି ଏପରି ହେଲା । ତା'ର ପନ୍ଦର ଦିନପରେ ନନା ମତେ ଚିଠିଦେଇ ଜଣାଇଲେ, ସେହିଦିନ ମୋ ପିଉସାଙ୍କର ଦେହାନ୍ତ ହୋଇଯାଇଛି । ବହୁତ କାନ୍ଦିଲି । ପିଲାଦିନର ଅନେକ ସ୍ମୃତି ଉଜ୍ଜୀବିତ ହେଲା କିନ୍ତୁ ମୋର କିଛି କରିବାର ନଥିଲା । ସେହିପରି ମୋ ପିଉସାଙ୍କୁ ମୁଁ କେବେ ହସିବାର ଦେଖିନଥିଲି । ମୋର B.A. Result ଶୁଣି ବୋଧହୁଏ ସେ ପ୍ରଥମଥର ହସିଥିଲେ ଏବଂ ମତେ ଆଶୀର୍ବାଦ କରିଥିଲେ ଯେ ମୁଁ ଜୀବନ ଯୁଦ୍ଧରେ ହୁଏତ ପାର ହୋଇଯିବି ।

ପରବର୍ତ୍ତୀ ସମୟରେ ଯେତେବେଳେ J.N.U. ରେ ମୋର Admission ହେଲା ସେତେବେଳେ କହିଲେ "ଆରେ ଭୀମ! ମୋ ଘରର ସମସ୍ତ ରେକର୍ଡ ଭାଙ୍ଗିଦେଲୁ, ଭଗବାନ ତୋତେ ସାହା ହୁଅନ୍ତୁ ।" ତାଙ୍କ ଅବର୍ତ୍ତମାନରେ ତାଙ୍କ ଛବି ମନେ ପଡୁଛି । ଇଚ୍ଛା ହେଉଛି ତାଙ୍କୁ ଆଉଥରେ ଦେଖିବାପାଇଁ ।

ଅଧ୍ୟକ୍ଷ, ପିପିଲି କଲେଜ

●●●



# ବାପାଙ୍କ ସହିତ କିଛି ବର୍ଷ

ଶ୍ରୀ ଭୁବନେଶ୍ୱର ଷଡଙ୍ଗୀ

ମୁଁ ଭୁବନେଶ୍ୱର ଷଡଙ୍ଗୀ (ଲେଙ୍କୁ) ବୀରନରସିଂହପୁର ଗ୍ରାମର ଗୋଟିଏ ଗରିବ କୃଷକ ପରିବାରରେ ଜନ୍ମ ଗ୍ରହଣ କରିଥିଲି । ପିଲାବେଳୁ ବୋଉ ମରିଯାଇଥିଲା, କାଳର କରାଳ ଚକ୍ରରେ ମୋ ପରିବାରର ଅବସ୍ଥା ଦିନକୁ ଦିନ ଭାରି ଖରାପ ହେବାକୁ ଲାଗିଲା । ପିଲାମାନଙ୍କୁ ଖାଇବାକୁ ଦେବାକୁ ମଧ୍ୟ ମୋ ପାଖରେ ସମ୍ବଳ ନଥାଏ । ୧୯୮୧ ମସିହା ନଭେମ୍ବର ମାସ ଶୀତଦିନ । ଦିନେ ସନ୍ଧ୍ୟା ସମୟରେ ଆମର ଗ୍ରାମର ଗୋପୀନାଥ ରଥ (ଜମ୍ବେଇ) ମଉସା ଆସି ଆମ ଘରେ ପହଞ୍ଚିଲେ ଓ କହିଲେ 'ନାରଣ ମଉସା ଓ ମାଉସୀ ମୋତେ ପଠାଇଛନ୍ତି । ତୁମେ ତାଙ୍କ ଘରକୁ ଚାଲ ।" ତାଙ୍କ ସାଥିରେ ଗଲି, ଦେଖିଲି, ବାପା, ମାଆ, ରାଜୁ ଭାଇନା ଓ ନିଶା ମା' ସମସ୍ତେ ବସିଛନ୍ତି । ମୋତେ ଦେଖି ମାଆ କହିଲେ, ଲେଙ୍କୁ! ତୁ ଆଜିଠାରୁ ଆମଘରେ ରହିବୁ । ମୁଁ କିଛି ବୁଝି ପାରିଲି ନାହିଁ । ମାଆ କହିଲେ, "ତୁ ମନା କରନାହିଁ । ତୋ ପିଲାଙ୍କ କଥା ଆମେ ବୁଝିବୁ"। ନିଶା ମା' ମଧ୍ୟ ତାଙ୍କ କଥାକୁ ସମର୍ଥନ କରି କହିଲେ, "ଆରେ ! ତୋ ପିଲାମାନେ ହଇରାଣ ହେଉଛନ୍ତି, ବଞ୍ଚିଯିବେ"। ସାର୍ ମଧ ମୋର ଶିକ୍ଷକ ଥିଲେ । ମୋତେ ମଧ୍ୟ ଭାବିବାକୁ ପଡିଲା, ଘରେ ୫ଜଣ କୁଟୁମ୍ବ, କିପରି ସେମାନଙ୍କୁ ଚଳେଇବି, ରାଜିହେଲି । ପଚାରିଲି, "ମା ! ମୋର କାମ କଣ" ? ମା କହିଲେ, ଆରେ ! ବାପାଙ୍କର ସବୁ କାମ ତୋର । ବାପା ଯାହା କହିବେ ତାହା କରିବୁ, ତାଙ୍କୁ ନେଇ ସବୁଆଡେ ବୁଲିବାକୁ ଯିବୁ । ପ୍ରତ୍ୟେକ ଦିନ ସକାଳ ୫ଟା ବାଜିଲେ ଧଳା ଧୋତି, ପଞ୍ଜାବି, ଚଦର ପିନ୍ଧି ବଙ୍କୁଲି ବାଡିଧରି କବାଟ ଠକ୍ ଠକ୍ କରି ବାପା ଡାକିବେ, ଲେଙ୍କୁ ଲେଙ୍କୁ ! ପାଙ୍କଳ ଯିବା ପରା ଆସୁନୁ । ତାଙ୍କ ସାଥିରେ ପାଙ୍କଳ ଯିବି ଓ ଫେରିଲା ବେଳକୁ ପାଣିଗିରି ଘର ଦେଇ ଫେରିବୁ । ପୁଣି ୩ଟା ୪ଟା ବାଜିଲେ ପାଙ୍କଳ, ଅଙ୍କିଆ, କରଡି ଯିବୁ । ଏହା ଭିତରେ ୧୫ରୁ ୨୦ଟି ପୋଷ୍ଟକାର୍ଡ ମଧ୍ୟ ପ୍ରତିଦିନ ଆଣିବାକୁ ପଡେ । ହେଲେ, ସେହି ଲେଙ୍କୁ ଲେଙ୍କୁ ଲେଙ୍କୁ ଡାକ ଭିତରେ ଥାଏ ସ୍ନେହ, ଆଦର ଓ ଭଲ ପାଇବା । ତାଙ୍କର ସେହି ପୁରୁଣା ଶିକ୍ଷକଙ୍କ ବେଶ ମୋ' ଆଖି ଆଗରେ ନାଚି ଉଠୁଛି । ତାଙ୍କପାଇଁ ମୋର ପରିବାର ଆଜି ନରସିଂହପୁରରେ ବଞ୍ଚି ରହିଛନ୍ତି । ତାଙ୍କର ଆଶୀର୍ବାଦ ବଳରେ ମୋର ପିଲାମାନେ ଆଜି ମଣିଷ ହୋଇଛନ୍ତି । ଯେଉଁଦିନ

ଘରକୁ ଆସିଥିବି, ଦାଣ୍ଡ ଦୁଆରେ ଠକ୍ ଠକ୍ କରି ଡାକ ମାରିବେ, ଆସୁନ୍ତୁ, କ'ଣ କରୁଛୁ, ବେଳ ହେଲାଣି, ଯିବାପରା । ମାଆ ସବୁବେଳେ ମୋତେ ପୁଅ ପରି ଦେଖନ୍ତି, କୁହନ୍ତି ଲେଙ୍କୁ ! ବାପା ଯାହା କହିବେ କିଛି ଭାବିବୁନି । ମୁଁ ଅଛି, ତୋର ଯାହା ଦରକାର ମୁଁ କରିବି । ବାପାଙ୍କ କଥା ସବୁବେଳେ ଶୁଣିବାକୁ ପଡେ । ଦିନେ ରାଗିକି କହିଲେ, "ଲେଙ୍କୁ ! ତୁ ତୋ ଘରକୁ ଯାଆ, ଆଉ ଆମ ଘରେ ରହିବୁନି ।" ମୁଁ ମଧ୍ୟ ଚାଲିଗଲି । ୧୫ ମିନିଟ ଭିତରେ ହଠାତ୍ ଆମ ଘରେ ପହଞ୍ଚି କହିଲେ "ତୁ କଣ ରାଗିଲୁ କି ! ଆସ ମାଆ ଡାକୁଛନ୍ତି, ଯଦି ନଯିବୁ ମୁଁ ତୋ ଦୁଆରେ ବସିଲି, ଆଉ ଯିବିନି"। ମୁଁ ଗଲି, ମୋତେ କହିଲେ, ଲେଙ୍କୁ ! ଏ କାଗଜଟାରେ ଲେଖିଦେଇଛି, ତୋ ନାଁରେ କିଛି ଜମି କରିଦେଲି, ତୁ ଆଉ ରାଗିବୁନି – ଏହିପରି ଚାଲିଥାଏ । ହଠାତ୍ ଦିନେ କହିଲେ, ଆରେ ! ମୋର ତ ସାନ ପୁଅ ଦୂରରେ ଅଛି । ମୋର ମରିବା ପୂର୍ବରୁ ମୁଁ ସବୁକିଛି କିଣା କିଣି କରିଥିବି, ଚାଲ ଆଳନ୍ଦିଆରୁ ହାଣ୍ଡି ଆଟିକା ଓ ପଥ ଶ୍ରାଦ୍ଧ ଜିନିଷ ଆଣି ରଖିବା । ଯାହା କହିବେ ତାହା ସଙ୍ଗେସଙ୍ଗେ ହେବ । ମୁଁ ମନା କଲି, ବାପା ! ଏପରି କାହିଁକି କହୁଛ । ତୁମେ ପରା ଭାଇନାଙ୍କ ପାଖକୁ ଯିବ, ଆସିଲେ କିଣିବା । ତାଙ୍କ କଥା ରହିଲା, ସବୁ କିଣାହେଲା । ମୋ ଉପରେ ତାଙ୍କର ପ୍ରବଳ ବିଶ୍ୱାସ ଥାଏ । ଦେହ ଖରାପ ହେବାକୁ ଲାଗିଲା । ଭାଇନା ଜାଣିଲା ପରି କହିଲେ, "ନନା ମୋ ପାଖକୁ ଯିବେ"। ବାପା ଯିବା କଥା ଜାଣିବା ପରେ ମୋତେ କହିଲେ ଲେଙ୍କୁ ! ମୁଁ ଯିବି ଭାରି । ତୁ ମାଆ, ରାଜୁଭାଇନା, ଜମିବାଡି ସବୁ ଠିକ୍ ଠିକ୍ ବୁଝିବୁ, ତାଙ୍କୁ ଛାଡି କୁଆଡେ ଯିବୁନି । ତାଙ୍କ କଥାକୁ ମାନି ମାଆଙ୍କ ପାଖରେ ଥାଏ । ସେ ବ୍ରହ୍ମପୁର ଚାଲିଗଲେ ।

୧୯୮୫ ମସିହା ଶ୍ରାବଣ ମାସ ଗହ୍ମାପୂର୍ଣ୍ଣିମା ଦିନ, ହଠାତ୍ ଖବର ଆସିଲା ବାପା ଚାଲିଗଲେ । ଶୁଣିଲା ପରେ ମୋର ମନୋବଳ ହଠାତ୍ ଭାଙ୍ଗିପଡିଲା । ହେଲେ ଗାଁକୁ ଆସିବାପରେ ସବୁକାମ ଠିକ୍ ଠାକ ହେଲା । ତାଙ୍କ ପରି ଉଦାର, ପରୋପକାରୀ, ବିଶ୍ୱାସୀ ମଣିଷ ସମାଜରେ ମିଳିବା ବିରଳ । ଆଜି ପର୍ଯ୍ୟନ୍ତ ମୁଁ ତାଙ୍କର ଘରେ ରହୁଛି ଏବଂ ତାଙ୍କପରି ସବୁ କାମ ସୁଚାରୁ ରୂପେ ଚାଲିଛି । ତାଙ୍କପରି ତାଙ୍କ ପୁଅ ମଧ୍ୟ ମୋ ପିଲାମାନଙ୍କୁ ଆଶୀର୍ବାଦ କରି ମଣିଷ କରି ଗଢି ତୋଳିଛନ୍ତି । ମଲା ପର୍ଯ୍ୟନ୍ତ ତାଙ୍କର ଋଣ ଶୁଝିବା ମୋ ପକ୍ଷେ କଷ୍ଟକର । ସେ ଯେଉଁଠି ଥାଆନ୍ତୁ ଭଗବାନ ତାଙ୍କୁ ଭଲରେ ରଖି ଥାଆନ୍ତୁ । ତାଙ୍କର ଶୁଭ ଦୃଷ୍ଟି ମୋ ପରିବାର ଉପରେ ପଡିଥାଉ । ଏହାହିଁ ମୋର ଶେଷ କଥା ।

ଲେଙ୍କୁ
ବୀରନରସିଂହପୁର

●●●



# ମୋ ଦଦେଇଙ୍କ ସ୍ମୃତିରେ

ମନୋରମା ଦେବୀ

କାଲିଠାରୁ ମୋର ପୂଜ୍ୟ ଦଦେଇଙ୍କର ଆତ୍ମଚରିତ ଉନ୍ମୋଚନ ହେଉଥିବା ଜାଣି ମୁଁ ଅତିଶୟ ଆନନ୍ଦିତ । ଦୀର୍ଘ ଷାଠିଏ ବର୍ଷ ତଳକୁ ମୋତେ ଚାଲିଯିବାକୁ ପଡ଼ିଲା । ଅତୀତର ହଜିଲା ସ୍ମୃତି ରୋମନ୍ଥନରେ ମୁଁ ଆଜି ରୋମାଞ୍ଚିତ । ମୋତେ ଦିଶାଯାଉଛି ପୁରୀ ଆସିଲେ ମନୋରମା ବୋଲି ଡାକି ମୋ ଘରକୁ ଚାଲି ଆସୁଛନ୍ତି ଦଦେଇ । ଉମାନାନୀ ଓ ରମା ତାଙ୍କ ଦୁଇ ଝିଅଙ୍କ ଠାରୁ ମୁଁ ତାଙ୍କ ନିକଟରେ କିଛି କମ୍ ନଥିଲି । ଦଦେଇ ବା ଦେଠେଇ କିଏ ପୁରୀ ଆସିଲେ ମୋର ଘରକୁ ମୋତେ ଆଉ ପିଲାମାନଙ୍କୁ ଦେଖିବାକୁ ସେ ନିଶ୍ଚୟ ଆସିବେ । ଗୋଟିଏ ବର୍ଷ ତାଙ୍କର ବଦଳି ଯୋଗୁ ସେ ପୁରୀରେ ଅବସ୍ଥାନ କରିଥିଲେ । ସେତେବେଳର ସମ୍ପର୍କ ଆଜି ପର୍ଯ୍ୟନ୍ତ ମନରେ ଅଭୁଲା ହୋଇ ରହିଛି । ମୋ ନନାଙ୍କ ଅବର୍ତ୍ତମାନରେ ଦଦେଇଙ୍କ ଠାରୁ ସେହି ପିତୃ ସ୍ନେହ, ମମତା ଓ ଭଲପାଇବା ମୋର ସ୍ମୃତିରେ ଚିର ଜୀବନ୍ତ ହୋଇ ରହିଛି ଓ ରହିଥିବ ।

ମୋର ଶାରୀରିକ ଅସୁସ୍ଥତା ଯୋଗୁ ମୁଁ ବିଶେଷ ଲେଖିପାରୁନାହିଁ, ଯଦିଓ ମୋର ଇଚ୍ଛା ଷାଠିଏ ବର୍ଷ ତଳର ପ୍ରତ୍ୟେକ ଘଟଣା ଗୋଟି ଗୋଟି କରି ଲେଖିଯିବାକୁ । ମୋ ପିଲାମାନେ ଆଜି ମଣିଷ ହେବାରେ ତାଙ୍କର ପିତୃପ୍ରତିମ ଆଶୀର୍ବାଦ ଓ ଦେଠେଇଙ୍କର ସ୍ନେହଶ୍ରଦ୍ଧା ଆଜୀବନ ଭୁଲିପାରିବିନି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ତାଙ୍କର ଆତ୍ମା ପରମାତ୍ମାରେ ବିଲିନ ହେଉ ଓ ସେ ଚିର ଶାନ୍ତିରେ ରହି ଆମ୍ଭମାନଙ୍କୁ ଆଶୀର୍ବାଦ କରୁଥାନ୍ତୁ ।

ସ୍ନେହଧୀନ

**ମନୋରମା**

(ପୁରୀ)

●●●



# ଆଈ ଆଉ ମୋ ପିଲାଦିନ

ତାରାମଣି ମିଶ୍ର

ଆଈ ! ଏ ଡ଼ାକଟାରେ ଗୋଟାଏ ଭିନ୍ନ ସ୍ୱାଦ ଥିଲା ମୋ ପାଇଁ । ମୋ ବୋଉ ଅପେକ୍ଷା ତା ସହିତ ମୋର ଆତ୍ମୀୟତା ଟା ବେଶି ଥିଲା । ପିଲା ଦିନର ଯେତେ ଅଳି ଅର୍ଦ୍ଦଳି ମନେ ପକାଇଲେ ଆଈର ମୁହଁଟା ହିଁ ଦିଶିଯାଏ । **ତା ବିନା ମୋର ପିଲାଦିନ ହିଁ ନଥିଲା କହିଲେ ଭୁଲ୍ ହେବ ନାହିଁ ।** ପିଲା ଦିନରୁ ନନା ବୋଉ ମୋତେ ଅଜା ଆଈଙ୍କ ପାଖରେ ଛାଡ଼ି ଦେଇଥିଲେ ପାଠ ପଢ଼ିବା ପାଇଁ । ମୁଁ କିନ୍ତୁ କେବେ ଅଜା ଘର ବୋଲି ସେ ଘରକୁ କହିବା ମୋର ମନେ ନାହିଁ । ସେଇଟା ଆମର ଆଈ ଘର । ମୁଁ ଥିଲି ସେ ଘରର ସର୍ବେ ସର୍ବା । ଆଈ କହେ ମୁଁ ତା'ର "ହାତ ବାରେସି ଆଉ ଅଜାଙ୍କ ତୁଣ୍ଡ" । ସକାଳୁ ଉଠିବା ବେଳୁ ରାତିରେ ଶୋଇବା ଯାଏ ମୁଁ ତା ପାଖେ ପାଖେ ବୁଲୁଥାଏ ଆଉ ଅଜା ମୋତେ ଡ଼ାକି ଚାଲିଥାନ୍ତି ସବୁ କାମରେ ।

ମୁଁ ତା' ଲାଗି ଗୋଟିଏ କଣ୍ଢେଇ ବୋଧେ ଥିଲି । ଭଲ କରି ତେଲ ଲଗାଇ ଟାଣି ଟୁଣି ଦୁଇଟା ଲମ୍ବା ବେଣି ପକାଇ ନାଲି ରିବନ୍‌ରେ ଫୁଲଟିଏ ବାନ୍ଧି ଦିଏ ସକାଳୁ କେବେ କଦଳୀ ବେଣୀ କେବେ ଡ଼ବଲ୍ ବେଣୀ ପକାଇ ମୋ ବାଳକୁ ସଜାଏ । ଗାଁ କୁ ଫେରିବାଲା ଆସିଲେ ତା ପାଖରୁ ଗୋଲ ପାଉଡ଼ର ଡ଼ବା, ଗୋଟିଏ ପପ୍ କିଣି ଦେଇଥାଏ । ମୋ ମୁହଁରେ ପପ୍‌ରେ ପାଉଡ଼ର୍ ଲଗାଇ ଗାଲରେ ଅଙ୍କ କରି ସିନ୍ଦୂର ଲଗାଇ ଦିଏ ଓ ପପ୍‌ରେ ଘଷି ଦେଇ କହେ, ଲାଲ୍‌ଗାଲ ହେଲେ ଭଲ ଦିଶିବୁ । ସବୁ ରବିବାର ଦିନ କାଠୁଏ ହଳଦୀ ବାଟି ତେଲ ମିଶାଇ ଦେହସାରା ଲଗାଇ ଦିଏ । ଦୁଇଘଣ୍ଟା ପରେ ହଳଦୀ ଶୁଖିଲେ ଆସ୍ତେ କରି ତେଲ ଲଗାଇ ହଳଦୀ ଛଡ଼ାଇ ଦିଏ । ଟିକିଏ ବଡ଼ ହେଲାପରେ ମୁଁ କହେ, ମୋ ସାଙ୍ଗମାନେ ହସୁଛନ୍ତି, ମୁଁ ଆଉ ହଳଦୀ ଲଗାଇବିନି । ସେ ମତେ ବୁଝାଇ କରିକହେ "ସେମାନଙ୍କୁ କେହି ହଳଦୀ ଲଗାଇ ଚିକ୍କଣ କରୁ ନାହାଁନ୍ତି ତେଣୁ ସେମାନେ ତତେ ସହି ପାରୁନାହାଁନ୍ତି ।" ଏବେ ଭାବୁଛି ମୋ ପିଲାମାନେ ପାର୍ଲର ଯାଇ ଯେତେ ଚିକ୍କଣ ନୁହଁନ୍ତି, ମୋ skin ଏବେ ବି ତାଙ୍କ ଠାରୁ ଭଲ ଅଛି । ଆଈ ଘରେ ଯେତେ କାନ୍ଥ ଥିଲା ତା'ର ସବୁ levelରେ ଗୋଟିଏ ଗୋଟିଏ ଦର୍ପଣ ସେ ସିମେଣ୍ଟ ଦେଇ ଲଗାଇ ଦେଇଥିଲା । କେଉଁଠାରେ ବସିଲେ ମୋ ମୁହଁ ଦିଶିବ, କେଉଁଠାରେ ଆଣ୍ଠେଇଲେ ଆଉ କେଉଁଠାରେ ଠିଆ

ହେଲେ । କୌଣସି ରାଣୀ ମହଲ ସେ ଦେଖି ନଥିଲା, କିନ୍ତୁ ଏପରି ସାଜସଜ୍ଜା ସେ କେଉଁଠାରୁ ପାଇଥିଲା କେଜାଣି ।

ସକାଳ ଜଳଖିଆରେ ବ୍ରେଡ୍, ଅଣ୍ଡା ନଥିଲା । ମୋ ଅଣ୍ଟିରେ ମୁଢ଼ି ରଖି ପଛରେ ଗଣ୍ଡିଟିଏ ପକାଇ ଦେଉଥିଲା । ମୁଁ ମୁଢ଼ି ଖାଇ ତା' ପଛେ ପଛେ ବୁଲୁଥିଲି । ସ୍କୁଲ୍‌ରୁ ଫେରିଲେ କଂସାରେ ପଖାଳ ଆଳୁ ବାଇଗଣ ପୋଡ଼ା ଲୁଣପାଣି ଅଧିକାଂଶ ଦିନର ଖାଦ୍ୟ ଥିଲା । କିନ୍ତୁ ତା ସହିତ ଆଈର ଗପ ପେଡ଼ି ଥିଲା । ସବୁଦିନ ରାତିରେ ସେ ଗୋଟେ ଅଧ୍ୟାୟ ରାମାୟଣ କିମ୍ବା ମହାଭାରତ ପଢୁଥିଲା । ସେହି ଗପଟି ପରଦିନ ପଖାଳ ଖୁଆଇଲା ବେଳେ କହୁଥିଲା । ସବୁଦିନ ଦୁଇଟି ବେଲାରେ ସେ ଭାତ ଆଣେ । କହେ ଗୋଟିଏ ତୋ'ର, ଆଉ ଗୋଟିଏ ମୋର । ଗପ କହି କହି ସେ ଭାତ ଖୁଆଇ ଚାଲିଥାଏ । ଗପ ସରିଲା ବେଳକୁ ଦୁଇଟି ଯାକ ବେଲାର ଭାତ ସରି ଯାଇଥାଏ । କିନ୍ତୁ ଗୋଟିଏ ଗୁଣ୍ଡା ସେ ଖାଇ ନଥାଏ । ଏବେ ଭାବିଲେ ହସ ଲାଗେ କେମିତି ଗପ ଶୁଣିବାରେ ଭୋଳ ହୋଇ ମୁଁ କିଛି ଜାଣି ପାରୁନଥିଲି । ଆଈ ଘର ସବୁ ଅଗଣା ବାରଣ୍ଡା ଯେତେବେଳେ ସିମେଣ୍ଟ କରାହୁଏ ପ୍ରାୟ ସବୁ ଜାଗାରେ ମୋର ହାତ ଥୋଇ ସେ ଛାପଟିଏ ରଖି ଦିଏ । ତା ପରେ ମତେ ଓ ଚିନ୍ତାକୁ ଠିଆ କରାଇ ପାଦ ଚିହ୍ନ ମାନ ରଖି ଦେଇଥାଏ । ମଝି ଘର କାନ୍ଥରେ ସିମେଣ୍ଟରେ ଆମ ସବୁ ଭାଇ ଭଉଣୀଙ୍କର କଉଡ଼ି ଲଗାଇ ସିମେଣ୍ଟରେ ସଠୀ ଘର ମାନ ସେ କରି ରଖିଥିଲା । ଏବେ ବି ଅଛି ।

ମୁଁ ତା'ଲାଗି କ'ଣଥିଲି ସେ ଜାଣେ, ସେ କିନ୍ତୁ ମୋ ପାଇଁ ଢାଲଟିଏ ହୋଇ ରହିଥିଲା । କାଶି ଦଦେଇଙ୍କ ପାଖକୁ ଟିଉସନ୍ ହେବାକୁ ଗଲାବେଳେ ସେ ଯାଇ ଅନେକ ସମୟରେ ନଡ଼ିଆ ଗଛ ପଛରେ ଅପେକ୍ଷା କରିଥାଏ । କାଶି ଦଦେଇ ଗଣିତରେ ବହୁତ ଭଲ ମାଷ୍ଟର ଥିଲେ । ତାଙ୍କ ପାଖରେ ପଢିଲେ ପ୍ରଥମରୁ ସେ ଯେଉଁ ଫ୍ରେମଟି ଗଢି ଦେଇଥାନ୍ତି ଆଜିର 'କମନ୍ କ୍ଲାସ କହ କିମ୍ବା କେଉଁ ବି କୋଚିଙ୍ଗ ସେଣ୍ଟର କହ, ସେପରି ମୂଳଦୁଆ ପକାଇ ପାରିବନି । ତାଙ୍କ ହାତରେ ବେତଟିଏ ଥାଏ ଭୁଲ କଲେ ସେ କିଛି ନଭାବି ମାଡ଼ ମାରନ୍ତି । ଯଦି କେବେ ମତେ ମାରିବାକୁ ତାଙ୍କର ବେତ ଉଠେ ନଡ଼ିଆ ଗଛ ପାଖରୁ ଆଈର ସ୍ୱର ଶୁଭେ "ମିଶ୍ରେ ତା'ର ବାପ ମାଆ ଆମ ପାଖରେ ଛାଡ଼ି ଯାଇଛନ୍ତି, ତାକୁ ମାରନ୍ତୁନି ବୁଝାଇ କହିଦିଅ" ଦଦେଇଙ୍କ ବେତ ମୋ ହାତରେ ନବାଜି ରହିଯାଏ । ଅଜାଙ୍କ ପାଖରେ ପାଠ ପଢିଲା ବେଳେ ସେ ଯଦି କେବେ ମତେ ରାଗିକରି ଗାଳି ଦିଅନ୍ତି ଆଈ ଧାଇଁ ଆସି କହେ "ହଁ ବହୁତ ହୋଇଗଲା ବୁଢାଟେ ହେଲଣି କାହିଁକି ରାଗୁଛ ତା ଉପରେ, ବୁଝାଇ କରି କହୁନ । ସେତିକି ଥାଉ, ଆଉ ପଢିବା ଦରକାର ନାହିଁ ।" ଅଜା ବିରକ୍ତ ହୋଇ କହନ୍ତି "ଆଲୋ ମୂର୍ଖ ତୁ କୁଆଡେ ଜାଣିବୁ ପାଠର ମହିମା । ବନ୍ଧ୍ୟା କି ଜାଣେ ପ୍ରସବ ବେଦନା" ଅଜାଙ୍କୁ ମୁଁ ବହୁତ ଡରେ ଓ ଭକ୍ତିକରେ କିନ୍ତୁ ତାଙ୍କର ଏହି ଆକ୍ଷେପ ଆଈ ଲାଗି ମତେ ଭଲ ଲାଗେନି । ଆଈ ଯଦି ପାଠର ମହିମା ଜାଣିନି ତେବେ କିଏ ଆଉ ଜାଣିଛି । ଆଈ ବାହା ହୋଇଥିଲା ୬ ବର୍ଷ ବୟସରେ । ଗରିବ ଘରେ ୪ ପୁଅରେ ଗୋଟିଏ ଝିଅ ଥିଲା ସେ ତା ବାପା ବୋଉଙ୍କର । ଅଭାବ ଲାଗି ବଡ଼ ପୁଅଟିକୁ ନିଜର କରି ରଖି ୩ ପୁଅ ଓ ଝିଅଟିକୁ ବନ୍ଧୁ ବାନ୍ଧବରେ ପୋଷ୍ୟ କରି ଦେଇଥିଲେ ତା ନନା ବୋଉ । ଆଈ ଯାଇଥିଲା ତା'ର ପିଉସୀର ଝିଅ ହୋଇ । ଅଜାଙ୍କର ବୋଉ

ନଥିଲେ ପିଲାଦିନରୁ । ତେଣୁ ୬ବର୍ଷ ବୟସରେ ବାହାହୋଇ ଆଈ ଓ ତା'ର ପାଳିତ ବୋଉ ଚାଲି ଆସିଥିଲେ ଅଜାଙ୍କ ଘରକୁ । ତେଣୁ ଆଈର ପାଠ ପଢିବାକୁ ସୁଯୋଗ ନଥିଲା କମଳ ଲୋଚନ ଶ୍ରୀହରୀ ଗୀତଟି ସେ ଗାଇଗାଇ ମୁଖସ୍ଥ କରି ଦେଇଥିଲା । ତା ପରେ ସେହି ଚଟି ବହିଟି ଆଣି ସେ 'କ' 'ଖ' 'ଗ' 'ଘ' ଅକ୍ଷର ମାନଙ୍କୁ ଚିହ୍ନିଥିଲା । ସେହି ଅକ୍ଷର ଶିଖାରୁ ସେ ମହାଭାରତ, ରାମାୟଣ, ଭାଗବତ ପରି ବହି ମାନଙ୍କୁ ପଢି ପାରିଥିଲା । ଯେଉଁ ଅଜା ତାକୁ ମୂର୍ଖ କହୁଥିଲେ ସେ ଯେତେବେଳେ "ଗୀତି ରାମାୟଣ" ଓ ଅନ୍ୟ ବହି ସବୁ ଲେଖିଲେ ଆଗ ଆଈକୁ ଶୁଣାନ୍ତି । କିଛି ଭୁଲ୍ ଥିଲେ ଆଈ ତାକୁ ଠିକ୍ କରେ ତା ଲାଗି ଅଜା ଥିଲେ ସବୁଠାରୁ ବିଦ୍ୱାନ୍ ବ୍ୟକ୍ତି ସବୁବେଳେ କହୁଥାଏ "ବ୍ରହ୍ମା ବିଳି ବିଳେଇଲେ ବେଦ ନାରାୟଣ ମହାପାତ୍ରେ ଯାହା କହିଲେ ସେ ବେଦର ଗାର" । ଅଦ୍‌ଭୁତ ତା'ର ଭଲ ପାଇବା । ମତେ ଯେତିକି ଭଲପାଏ ଚିନ୍ତାକୁ ମଧ୍ୟ ସେତିକି ଭଲପାଏ । କିନ୍ତୁ ସବୁବର୍ଷ କୁମାର ପୂର୍ଣ୍ଣମୀରେ ଆମ ଦୁହିଁଙ୍କୁ ସମସ୍ତେ ସମାନ ପଇସା ଦେଲାବେଳେ ବାପା ଚିନ୍ତାକୁ ଟଙ୍କାଟିଏ ଦେଇ ମତେ ଆଠଅଣା ଦିଅନ୍ତି, କାହିଁକି ନା ସେ ବଡ଼ନାତି । ଆଈ ତେଣୁ ମତେ ଅଧିକ ଆଠଅଣା ଦେଇ ଚିନ୍ତାର ପଇସା ସାଙ୍ଗରେ ମୋର ପଇସା ସମାନ କରାଇ ଦିଏ । କେତେ ଉଚ୍ଚ ସେ ଭାବନା ତା'ର ।

କେତେ ସୁନ୍ଦର ବିନ୍ଧାଣିଟିଏ ଥିଲା ଆଈ । ଅକ୍ଷୟ ତୃତୀୟାରେ ଘଡ଼ି ପତୁଳି ପୂଜା ହୁଏ , ଆମେ ଘର ଘର ଯାଇ ଘଡ଼ି ପତୁଳି ଆଣୁ । ସେହି ପତୁଳିରେ କଣା କରି ମୋ ଲାଗି ସେର ତିଆରି କରେ ମୁଁ ଖେଳିବା ପାଇଁ, ଦୀପାବଳୀରେ ମହମବତି ବହୁତ କମ୍ ଲାଗେ । ମହମବତି ଜଳି ସାରିବା ପରେ ଶେଷରେ ଯେଉଁ ମହମ ତଳେ ରହିଯାଏ ତାକୁ ଆଣି ଆଈ ତରଳାଇ ଦିଏ । ମାଟିର ଛାଞ୍ଚରେ ପିତ୍ତଳ କଣ୍ଢେଇକୁ ଦାବି କରି କାଢ଼ି ଆଣି ତା ଉପରେ ତରଳ ମହମ ଢ଼ାଳି କଣ୍ଢେଇ ଗଢ଼େ ମୋ ଲାଗି । ମହମରେ ଅଳତା କିମ୍ବା କାଳି ମିଶା ବିଭିନ୍ନ ରଙ୍ଗର କଣ୍ଢେଇ ଗଢ଼ିଦିଏ । ମୁଁ ଥିଲି ତା'ର treasurer, ତା'ର ପଇସା, ସୁନାର ସବୁ ହିସାବ ମୋ ପାଖରେ । ତା'ର ସିନ୍ଦୁକରେ ପଶି କେଉଁଠି କଣ ରଖିବା କଥା ମୁଁ ଜାଣୁଥିଲି । ଗାଁ ଚଳଣିର ସମ୍ପୂର୍ଣ୍ଣ ଢ଼ାଞ୍ଚାରେ ସେ ମତେ ପକାଇ ଦେଇଥିଲା, ଯାହା ଅନ୍ୟ ଭାଇ ଭଉଣୀ କେହି ଜାଣି ପାରି ନାହାଁନ୍ତି । ଭଲ ପଢ଼ିବା ପାଇଁ 9th classରୁ ମତେ ନନା ତାଙ୍କ ପାଖକୁ ନେଇ ଆସିଲେ । ଛୁଟିରେ ଗାଁକୁ ଗଲେ ମତେ ପୁଣି ସ୍ୱର୍ଗ ସୁଖ ପାଇଲା ପରି ଲାଗେ । କ୍ରମେ ଗାଁର ଆକର୍ଷଣ କମିଗଲା । ଆଈ ମଧ ମାମୁଙ୍କ ପାଖକୁ ଚାଲି ଆସିଲା । ତା ଘରେ ମୋ ପାଦ ଚିହ୍ନ, ହାତ ଛାପ ସବୁ ରହିଗଲା । ତା ଭଲ ପାଇବା ବଦଳରେ ମୋର କିଛି ଦବାର ଥିଲା ବୋଲି ମୁଁ କେବେ ଭାବି ନଥିଲି । ପ୍ରଥମ ଅଷ୍ଟମୀରେ ରାଧା ରାଣୀ ମୋର ଚାଲି ଯିବା ପରେ ଅନେକ ଥର ଭାବିଛି ମୁଁ ତା ପାଖରେ ଋଣି ହୋଇ ରହିଗଲି ବୋଲି । କିନ୍ତୁ ଆଜି ମୁଁ ନିଜେ ଆଈ ହୋଇ ସାରିବା ପରେ ଜାଣୁଛି ମୋର ସେ ଧାରଣା ଗୋଟାଏ ଭୁଲ୍ ଥିଲା । ଆଜି ମୁଁ ତ ମୋ ନାତୁଣୀ ପାଖରୁ କିଛି ଚାହୁଁନି କେବଳ ତା' ହସ ଓ ଆଈ ଡ଼ାକ । ବୋଧ ହୁଏ ମୋ ଆଈ ସେଇୟା ହିଁ ଚାହୁଁଥିଲା ଓ କେବଳ ଦେଉଥିଲା । କାର୍ତ୍ତିକ ମାସରେ

ଚଉରା ମୂଳେ ଜପ ମୁରୁଜ କରି କଉଡ଼ି ଖେଳୁଥିଲା ଗୀତଗାଇ ଗାଇ ।

"ଶୁଦ୍ଧ ସୁବର୍ଣ୍ଣର ମଣ୍ଡପ ଚନ୍ଦନ କାଠେ କୋଠି
ରାଇ ସଙ୍ଗେ ଜୁଆ ଖେଳନ୍ତି
କୃଷ୍ଣ ଶ୍ରୀ ହସ୍ତେ କଉଡ଼ି ମୁଠି"

"ଏକ ମୁଠି ଜୁଆ ଖେଳନ୍ତି କୃଷ୍ଣ
ହୋଇଲେ ବନ୍ଧା, ହସି କଥା କୁହ
ବାନ୍ଧବୀ କଙ୍କଣ ରହିଲା ବନ୍ଧା
ହସି କଥା କୁହ ବାନ୍ଧବୀ
ବଇଁଶୀ ରହିଲା ବନ୍ଧା"

ଇତ୍ୟାଦି ଇତ୍ୟାଦି ସବୁ ବନ୍ଧା ପକାଇ କୃଷ୍ଣ ଶେଷରେ କହନ୍ତି "ହସି କଥା କୁହ ବାନ୍ଧବୀ ଆପଣେ ରହିଲୁ ବନ୍ଧା" । ଏହିପରି ଆଈ କେବେ ମୋ ପାଖରେ ବନ୍ଧା ରହୁଥିଲା ତ କେବେ ମୁଁ ତା ପାଖରେ ବନ୍ଧା ରହୁଥିଲି । ଏବେ କାର୍ତ୍ତିକ ମାସ ରେ ତା'ର ଅବର୍ତ୍ତମାନରେ ସେହି ଗୀତ ଗାଇ ମୁଁ ଆଈ ପାଖରେ ବନ୍ଧା ପଡ଼େ ନିଜେ ନିଜେ । ନିଜର ସମସ୍ତ ଆଶିଷ ଆମ ଉପରେ ଢ଼ାଳି ଦେଇ ତା ମନ ବୋଧେ ସନ୍ତୁଷ୍ଟ ହେଉନଥିଲା । ତେଣୁ ଦ୍ୱିତୀୟା ଓଷା ଶେଷ ଦିନ ମୋ ମୁଣ୍ଡରେ ଓ ଚିନ୍ତା ମୁଣ୍ଡରେ ମୁଆଁ ବେତାରେ ରଖିଦିଏ । ସମସ୍ତେ ମୁଆଁ ନେଇ ଆଶୀର୍ବାଦ କରି ଯାଆନ୍ତି, ସବୁରି ଯିବା ରାସ୍ତାରେ ଗାମୁଛାଟିଏ ପକାଇ ଦେଇଥାଏ । ସେହି ଗାମୁଛା ଉପରେ ପାଦ ରଖି ସମସ୍ତେ ପାଦ ଧୂଳି ଦେଇ ଚାଲି ଯାଆନ୍ତି । ଶେଷରେ ସେ ଗାମୁଛାର ପାଦ ଧୂଳି ଆଣି ଆମ ମୁଣ୍ଡରେ ଢ଼ାଳି ଦିଏ । କି ଅଦ୍‌ଭୁତ ପ୍ରେମ ତା'ର ଏବେ ମୁଁ ଭାବୁଛି । ଜାଣିନି ଏପରି ଅନାବିଳ ସ୍ନେହ ଓ ମମତା ମୁଁ କାହାକୁ ଦେଇ ପାରିବି କି ନାହିଁ । କିନ୍ତୁ ଯାହା ପାଇଛି ତା କେବେ ଭୁଲି ପାରିବିନି ।

**ବଡ଼ ନାତୁଣୀ**
ବି.ଜେ.ବି ନଗର, ଭୁବନେଶ୍ୱର

●●●



# ମନେ ପଡନ୍ତି ମୋ ପିଉସା

ଶ୍ରୀ ବିରେନ୍ ଶଙ୍କର ତ୍ରିପାଠୀ

"ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ ।" ଏହି ପୃଥିବୀରେ ଦେବୀ ଓ ଦେବତାମାନେ ଅବତାର ଗ୍ରହଣ କରି ଶେଷରେ ମୃତ୍ୟୁବରଣ କରିଛନ୍ତି; ଭଗବାନ ଶ୍ରୀକୃଷ୍ଣ, ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର, ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ସୀତା, ସାବିତ୍ରୀ, ଦ୍ରୌପଦୀ ମଧ୍ୟ ଏଥିରୁ ବ୍ୟତିକ୍ରମ ହୋଇନାହାନ୍ତି ।

ଜନ୍ମଥିଲେ ମୃତ୍ୟୁ ସୁନିଶ୍ଚିତ – ଏହା ଧ୍ରୁବସତ୍ୟ, କିନ୍ତୁ ଯେଉଁ ମଣିଷ ତା'ର ଜୀବଦ୍ଦଶାରେ କିଛି ସୁକର୍ମ କରିଥାଏ, ତା'ର ସେହି କର୍ମ ପାଇଁ ସେ ଅମର ହୋଇ ରହେ । ଏ ଦୁନିଆରେ ସେଭଳି ମଣିଷ ବହୁତ କମ୍ । ଦୁର୍ଲଭ ମଣିଷ ବିଭିନ୍ନ କ୍ଷେତ୍ରରେ ତା'ର କୃତିତ୍ୱ ପାଇଁ ଯଶ ଅର୍ଜନ କରିଥାଏ । ସେହିଭଳି ଶିକ୍ଷା, ସାହିତ୍ୟ, ସମାଜସେବା କ୍ଷେତ୍ରରେ ଯଶ ଅର୍ଜନ କରିଥିବା ଅନନ୍ୟ ବ୍ୟକ୍ତିତ୍ୱ ହେଉଛନ୍ତି ମୋ ପିଉସା- ୰ନାରାୟଣ ମହାପାତ୍ର ।

ସେ ପୁରୀ ଜିଲ୍ଲା ଅନ୍ତର୍ଗତ ବୀରନରସିଂହପୁର ଶାସନ ଏକ ପ୍ରତିଷ୍ଠିତ ଗାଁରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମୋ ପିଉସୀଙ୍କ ସହ ବାଲ୍ୟ ବିବାହ ହୋଇଥିଲା ବୋଲି ଆମେ ଶୁଣିଛୁ । ମୋର ନିବିଡତା ହୋଇଥିଲା ସେ ଭାର୍ଗବୀ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରିବା ସମୟରେ । ମୁଁ ମାଆ ସହିତ ପ୍ରାୟ ତାଙ୍କ ଘରକୁ ଯାଉଥାଏ । ତାଙ୍କ ଶିକ୍ଷକତା ସମୟରେ ସେ ଛାତ୍ର – ଶିକ୍ଷକଙ୍କ ମଧ୍ୟରେ ଏକ ନିବିଡ଼ ସଂପର୍କ ସୃଷ୍ଟି କରିପାରିଥିଲେ । ବିନା ପାରିଶ୍ରମିକରେ ଶିକ୍ଷାଦାନ କରି ଅନେକ ମେଧାବୀ ଛାତ୍ର ଛାତ୍ରୀ ସୃଷ୍ଟି କରିପାରିଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଆଜି ନିଜ ନିଜ କର୍ମକ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇପାରିଛନ୍ତି । କେବଳ ଶିକ୍ଷାଦାନ ନୁହେଁ, ଖେଳକୁଦ ଓ ବିଦ୍ୟାଳୟର ସାଂସ୍କୃତିକ ସମାରୋହରେ ମଧ୍ୟ ସେ ନିଜକୁ ନିୟୋଜିତ କରି ବିଦ୍ୟାଳୟର ଗରିମାକୁ ଅକ୍ଷୁଣ୍ଣ ରଖିପାରିଥିଲେ ।

ମହାମହିମ ଶିକ୍ଷକ ତଥା ମୋ ପ୍ରିୟ ପିଉସା ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କ ସୁପୁତ୍ର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମହାପାତ୍ର (କାହ୍ନୁ ଭାଇନା) ଥିଲେ ଖୋର୍ଦ୍ଧା ଜିଲ୍ଲାର ପୂର୍ବତନ ଜିଲ୍ଲାପାଳ ଓ ଓଡ଼ିଶା ଲୋକସେବା

ଆୟୋଗର ପୂର୍ବତନ ସଦସ୍ୟ । ତାଙ୍କ ବଡ଼ ଜ୍ୱାଇଁ ସ୍ୱର୍ଗତ ପୁରୁଷୋତ୍ତମ ମିଶ୍ର ଥିଲେ ବାଣିଜ୍ୟକର ଟ୍ରିବୁନାଲର ସଦସ୍ୟ ଓ ସାନଜୋଇଁ ଥିଲେ ଜେଲ୍ ବିଭାଗର ସୁପରିଣ୍ଟେଡେଣ୍ଟ ।

ମୋର ପିଉସାଙ୍କ ସହିତ ନିବିଡ଼ ସଂପର୍କ ଥିଲା ଏବଂ ତାଙ୍କର ଅନେକ ଉପଦେଶ ମୁଁ ଆଜି ମଧ୍ୟ ଭୁଲିପାରିନାହିଁ । ସେ ଦେଇଥିବା ସୁପରାମର୍ଶକୁ ପାଥେୟ କରି ଏବଂ ତାଙ୍କ ମାର୍ଗଦର୍ଶନ ମୋ ପାଇଁ ଆଜି ମଧ୍ୟ ଅବିସ୍ମରଣୀୟ । ସେ ଯେଉଁଠି ବି ଥାଆନ୍ତୁ, ତାଙ୍କର ଆଶୀର୍ବାଦ ସଦାସର୍ବଦା ଥାଉ ।

ଓଁ ଶାନ୍ତି

**ସ୍ନେହାଧୀନ ଟୁଟା**

●●●



# 'ମୋ ବୋଉ'

ଡ. ରମାମଣୀ ମହାପାତ୍ର

"ସ୍ନେହ କରୁଣା, ଭକ୍ତି ପବିତ୍ର ରସ,
କରୁଥିଲା ତା ପ୍ରାଣ ସଦାସରସ,
ନୋହିଲେ କାହୁଁ ତାର ଚିନ୍ତନେ ମନ
ପବିତ୍ର ପ୍ରେମରସେ ହୁଏ ମଗନ"॥

ମୋ ବୋଉର ଜୀବନ ଥିଲା ସ୍ନେହ, କରୁଣା, ଭକ୍ତି, ସେବା ତଥା ମାନବିକ ମୂଲ୍ୟବୋଧର ଏକ ପବିତ୍ର ପ୍ରବାହ। ଦିବଂଗତା ସେହି ମହୀୟସୀ ମା'ର ସୁଗୁଣର ସ୍ମୃତି ତୀର୍ଥରେ କିଛି ସମୟ କଟାଇ ମୋର ସାଂସାରିକ ଦୁଃଖ ଯନ୍ତ୍ରଣାରୁ ଟିକିଏ ମୁକ୍ତି ପାଇବି। ଭାଇ କହିଲା, ନାନୀ ! ତୁ ବୋଉ ବିଷୟରେ ଲେଖି ମୋ ପାଖକୁ ପଠା। ତା'ର ଅନୁରୋଧରେ ହାତରେ କଲମ ଧରିଛି, ଯାହା ସ୍ମୃତି ପଟକୁ ଆସୁଛି ଲେଖିବା ପାଇଁ ମନ କରିଛି।

ଥରେ ବୋଉକୁ ଭୁବନେଶ୍ୱର ଆଣିବା ପାଇଁ ଗାଁକୁ ଯାଇଥିଲି। ରିକ୍ସାରେ ମା, ଝିଅ ଆସୁଥିଲୁ। ପଛରୁ ୨/୩ ଜଣ ସ୍ତ୍ରୀ ଲୋକ, ହେ "ମା ! ରହ, ରହ କୁଆଡ଼େ ନେଇ ଯାଉଛୁ" କହି ଦୌଡ଼ି ଦୌଡ଼ି ଆସୁଥାନ୍ତି। ମୁଁ ଦଣ୍ଡା ମୁଣ୍ଡରେ ରିକ୍ସା ରଖିଲି, ଭାବିଲି ଏମାନେ ତ ଗାଁକୁ ପରିବା, ଶୁଖୁଆ ଆଦି ବିକିବା ପାଇଁ ଆସନ୍ତି, କିଛି ପଇସା ବୋଧେ ବୋଉ ଉପରେ ରହି ଯାଇଥିବ। ବୋଉକୁ କହିଲି, "ଦେଖିଲୁ ଏମାନେ କିଏ" ? ଏହା ଭିତରେ ସେମାନେ ଆସି ପହଞ୍ଚିଗଲେ କହିଲେ, "ତୁ ମା' କୁ ନେଇ ପଳଉଛୁ, ଆମ ପେଟ କିଏ ଚିହ୍ନିବ ? ଆମେ ବିକା କିଣା ସାରି ଫେରିଲା ବେଳକୁ ଆମକୁ ପଖାଳ ଭାତ କିଏ ଖାଇବାକୁ ଦେବ। ଆମ ଭୋକିଲା ପେଟ କିଏ ଚିହ୍ନିବ, ଚାହିଁଥିବ ଆମ ଫେରିବା ବାଟକୁ। ମା' ବୋଲି ଗୋଟେ ଡ଼ାକ ଛାଡ଼ିଲେ ବାଡିକବାଟ ଖୋଲି ଦେଇ, ପଖାଳ କଂସା ଧରି ଆସିବ। ଆମକୁ ଖୁଆଇ ନ ଛାଡ଼ିଲା ଯାଏ ଖରାବେଳେ ଶୋଇବନି ସେ।" ମୁଁ ତାଙ୍କୁ ବୁଝାଇ, ସୁଝାଇ ବିଦାୟ କରି କହିଲି "କିଛିଦିନ ରହି ଚାଲି ଆସିବ, ବ୍ୟସ୍ତ ହୁଅନି"। **ମୋର ମନେପଡ଼େ ଆମର ଭାତ ହାଣ୍ଡି ଭୋକିଲାଙ୍କ ପାଇଁ ମହାପ୍ରସାଦ।** ମୋ ବୋଉ ମା

ଲକ୍ଷ୍ମୀ ସଦୃଶା, ଖାଇ ବସିଥିଲେ 'ମା' ଡ଼ାକ ଶୁଣି ଚଟକିନା ଉଠି ହାଣ୍ଡିରୁ ପଖାଳ ତୋରାଣି ନେଇ ଦିଏ ସେମାନଙ୍କୁ । କାହାକୁ ଅଖିଆ ଛାଡ଼ିବନି ସେ ।

ତା'ର "ବସୁଧୈବ କୁଟୁମ୍ବକମ୍" । ତା'ର ସମସ୍ତେ ନିଜର । ସାଇ, ପଡ଼ିଶା, ଗାଁ, ବାହାର ଗାଁର ଲୋକ ହୁଅନ୍ତୁ ପଛକେ ସମସ୍ତେ ତାର ନିଜର । ସେ କାହାକୁ ପର ବୋଲି ଭାବେନି । କରଡ଼ି, ଅଙ୍କିଆରେ ଆମର ଚାଷ ଜମି, ଆମ ଜମି ଚାଷ କରୁଥିବା ପ୍ରଜାମାନେ ତାର ପୁଅଠାରୁ ବଳକା । ମୃତ୍ୟୁ ବେଳକୁ ସେମାନଙ୍କୁ ଦେଖି କି ଖୁସି ହୋଇଗଲା ସେ । ସେମାନେ ତାଙ୍କୁ ଦେଖିବାକୁ ଆସିଥିଲେ । ମୁଁ କହିଲି, ବୋଉଲୋ ! ତୋ କୁନିଆଁ, ଧନିଆଁ ଆସିଲେଣି, ମୁଁ ଯାଉଛି, କହିଲା, "ହଉ ଯା ଭାରି ରାମକୁ ଧରି ଆସିବୁ" । ସେହି ରାତି ଚାଲିଗଲା । ମୃତ୍ୟୁର ଯନ୍ତ୍ରଣା ତାକୁ ମିଳିନି, ପ୍ରିୟ ଲୋକଙ୍କୁ ଦେଖି ଆଖିବୁଜି ଦେଲା । ଆଉ ଲେଖିବିନି ସେ ବିଷୟରେ ।

ଜାଗର ଯାତ୍ରା ଦିନ, ଆର ଖଣ୍ଡିର କିଛି ସ୍ତ୍ରୀ ଲୋକ ଆମ ପଟେ ପ୍ରଭୁ ଶ୍ରୀ ଲୋକନାଥଙ୍କୁ ଦର୍ଶନ କରିବା ପାଇଁ ଆସନ୍ତି । ମନେ ଅଛି ମୋର । ଫେରିବା ବେଳକୁ ସେମାନେ ବୋଉକୁ ଦେଖିବାକୁ ଆମ ଘରକୁ ନିଶ୍ଚୟ ଆସିବେ । ବାଡ଼ି କବାଟ ଖୋଲା ଥାଏ । ସେମାନେ ଆସନ୍ତି, ବୋଉ ତାଙ୍କୁ କୁଣ୍ଢାଇ ପକାଏ, ଆଲୋ ! ମୋ ରଘୁ ସ୍ତ୍ରୀ, ରଘୁ କିପରି ଅଛି, କାହାକୁ ତାଙ୍କ ପିଲାଙ୍କ ବିଷୟ, ଦେହ ବିଷୟ ପଚାରି ଆନନ୍ଦ ପାଇବ । ମୁଁ ପଚାରେ ତୋର ସେମାନଙ୍କ ସହିତ ଏତେ ବନ୍ଧୁତା କିପରି ହେଲା, କହିବ, "ସେମାନେ କିଏ କି ? ମୋ ଗାଁର ଭଉଣୀ ମାନେ, ମୋତେ ଦେଖା ନ କରି ଯିବେ କି ?"

ମୋର ବଡ଼ ସାଙ୍ଗ ଗୋଲାପ, ଆର ଖଣ୍ଡିରେ ବିବାହ କରିଛି । ମୁଁ ସ୍କୁଲରୁ ଫେରିବାବେଳେ ତାକୁ ଦେଖିବାକୁ ରବି ଭାଇନାଙ୍କ ଘରକୁ ଯାଏ, କଥା ହୋଇ କିଛି ସମୟ କଟାଇ ଫେରେ । ଥରେ, ତାଙ୍କ ଦିବଂଗତ ଶ୍ୱଶୁର, ଆମ ଗାଁର ଜଣେ ଅତି ଭଦ୍ର ଲୋକ, ମୋତେ ଅଟକାଇ ବୋଉ ବିଷୟରେ କହିଲେ । ତୋ ବୋଉ ଧର୍ମପରାୟଣା, ଦୟାଳୁ, ଅତି ସ୍ନେହୀ ଲୋକ । ତାଙ୍କ ପରି ଭଦ୍ର ମହିଳା ଆମ ଗାଁରେ ବିରଳ । ମୁଁ ଆସି ବୋଉକୁ କହିଲି । ବୋଉ କହିଲା, "ଯିଏ, ଭଲଲୋକ ଲୋ ମା' ତା ପାଖରେ ସମସ୍ତେ ଭଲ" । ଏବେ ଭାବୁଛି ଏ ଉତ୍ତର କ'ଣ ସମସ୍ତେ ଦେବେ ? କହିଲା "ତୋ ଗୋଲାପ ଭଲ ଅଛି ତ" ?

ମୋ ବଡ଼ ନଣନ୍ଦଙ୍କ ସ୍ୱାମୀ, ପୁନାନାନୀଙ୍କ ବର କହନ୍ତି, ତୁମ ଗାଁ କୁ ଗଲେ "ଭାଉଜ ! ତୁମ ବୋଉ କେତେ ସ୍ନେହ ଆଦର କରନ୍ତି ।" ତାଙ୍କୁ କହେ, "ତୁମେ ମୋ ଜୋଇଁଙ୍କର ଜୋଇଁ, ମୋର ବଡ଼ ଜୋଇଁ । ଶୀତଳଷଷ୍ଠୀ ଦିନ ତାଙ୍କ ବନ୍ଧୁ ଘରକୁ ଆସିଥା'ନ୍ତି, ବୋଉ କହିବ ମୋ ଘରେ ପ୍ରସାଦ ପାଇବ କହି ତାଙ୍କୁ ଖୁଆଇ ଛାଡ଼ିବ । କି ଖୁସି, ମୋ ନଣନ୍ଦ, ନଣନ୍ଦେଇ, ଭଣଜା, ଭାଣିଜୀଙ୍କୁ ଦେଖିଲେ । ବ୍ରତଘରପାଇଁ କାଳିଆ କେରା ବାହାରିଛି, ଶଗଡ଼ ଆସିଛି ଭଣଜା ହରି ନେବାପାଇଁ ଆସିଥାନ୍ତି । ବୋଉ ହଳଦି ବାଟିବାରେ ଲାଗିଲା । ମୁଁ କହିଲି, "କ'ଣ

କରିବୁ ହଳଦି ବଟା ?" କହିଲା, ମୋ ହରି ଲଗାଇବ । ଚନ୍ଦନ ପାଟ ଦେବି, ଶୁଖୁଆ ଖୁଆଇ ଛାଡ଼ିବି, ଏଇଟା ତାର ମାମୁ ଘର ।

ମୁଁ ଭୁବନେଶ୍ୱରରେ M.Ed କଲାବେଳେ ମୋ ନାନୀର ବଡ଼ ନଣନ୍ଦ ଦିବଂଗତ ପରମ ପୂଜ୍ୟା ବେଙ୍ଗ ନାନୀ, ବାଣୀ ବିହାରରେ ରୁହନ୍ତି, ମୁଁ ତାଙ୍କ ଘରକୁ ପ୍ରଫେସର୍ ଡ଼କ୍ଟର ଗଣେଶ୍ୱର ମିଶ୍ରଙ୍କ ପାଖକୁ ଶିକ୍ଷା ଦର୍ଶନ ବୁଝିବାକୁ ଯାଏ । ବେଙ୍ଗ ନାନୀ କହିବେ "ରମା ! ତୁ ଖାଇ କରି ଯିବୁ, ମୋ ଘରୁ ନଖାଇ ଯିବୁନି ।" ମୁଁ କହେ "ନାନୀ ଘରେ ଖାଇବି ନାନୀ କହିଛି ।" ସେ କହିବେ, "ତୁ ମୋ ଭାଉଜର ଭଉଣୀ ବୋଲି ମୁଁ ଭାବୁନି, ତୁ ମୋ ମାଉସୀଙ୍କ ଝିଅ । ତୋ ବୋଉ ମୋତେ, ମୋ ପିଲାମାନଙ୍କୁ କେତେ ସ୍ନେହ, ଆଦର କରନ୍ତି, ତାଙ୍କ ପାଇଁ ଗାଁ ଆମକୁ ଭଲ ଲାଗେ" । ମୁଁ ଦଶ ପ୍ରକାର ରନ୍ଧା ଖାଇ ତାଙ୍କ ଘରୁ ଫେରେ ।

ସେ ତାଙ୍କ ସ୍ୱାମୀ ଲଣ୍ଡନ ଗଲାବର୍ଷ, ଆମ ଗାଁରେ ଗୋଟିଏ ବର୍ଷ ପିଲାମାନଙ୍କୁ ଧରି ରହିଥିଲେ । ବୋଉ ତାଙ୍କ ପିଲାମାନଙ୍କୁ ଗାନ୍ଧି, ପଟେଲ୍, ନେହେରୁ ବୋଲି କହି ସ୍ନେହ ଆଦର କରିବା ମୋର ମନେ ଅଛି ।

ଭଞ୍ଜନଗରରୁ ଗାଁକୁ ଆସି କିଛି ଦିନ ରହିଯାଏ । ଯେମିତି ଗାଁରୁ ଯିବି ମୋତେ ଦେଖିକି ନାନୀର ସାନ ନଣନ୍ଦେଇ ସ୍ୱର୍ଗତ ଲିଙ୍ଗରାଜ ମହାପାତ୍ରେ ଯେ'କି ସେତେବେଳେ ଭଞ୍ଜନଗରରେ ଇଞ୍ଜିନିୟର ଥାଆନ୍ତି ଆମ ଘରକୁ କେବେ କେବେ ଆସନ୍ତି । ଦେଖିଲେ ପଚାରିବେ "ଗାଁ ରୁ ଫେରିଲୁ, ବୋଉ ଭଲ ଅଛନ୍ତି"। ତାଙ୍କ ଦେହ ଭଲ ଅଛି ତ । ନନାଙ୍କର ପ୍ରିୟ ଛାତ୍ର, ଆମ ଗାଁର ଲୋକ ସେ । ଆମ ବୋଉ କଥା, ତା ପରେ ନନାଙ୍କ କଥା । ଗୁଣ ଚିହ୍ନେ ଗୁଣିଆ । ମୋ ବୋଉ ସମସ୍ତଙ୍କର ବୋଉ । ଏକା ଆମର ନୁହେଁ, ଏହା ନିରାଟ ସତ୍ୟ ।

ମୋ ଭାଇର ଶ୍ୱଶୁର ସ୍ୱର୍ଗତ ବିଶ୍ୱନାଥ ନନ୍ଦ, ମୋ ବୋଉର ପାଦସ୍ପର୍ଶ କରନ୍ତି । ଗୁରୁ ପତ୍ନୀ ପୁଣି ଝିଅର ଶାଶୁ, ଅଟଳ ଭକ୍ତି ତାଙ୍କର ବୋଉ ପାଖରେ । ମୋ ବୋଉ ତାଙ୍କୁ ଦେଖିଲେ କେତେ ଖୁସି ହୁଏ କହେ, "ମୋ ସାନ ଭାଇ ସେ । ସମୁଦୀ କ'ଣ" । ତାଙ୍କ ପରିବାରର ସମସ୍ତଙ୍କ ପ୍ରତି ତା'ର ସ୍ନେହ ବହୁତ ଥିଲା, ମୁଁ ଅନୁଭବରେ ଆଣିଛି । ଶେଷ ଜୀବନ ସେହିମାନଙ୍କ ପାଖରେ କଟିଗଲା, ଅତି ଖୁସିରେ । ସାନ ପୁଅଠାରୁ ସେ କିଛି ଆଶା କରେନି, କହେ ସେ ବଞ୍ଚି ରହୁ, ମୋର କ'ଣ କରିବ ।

ତାର ସେବା ମନୋବୃତ୍ତି କେତେ ଥିଲା, ମୁଁ ଭାବି ପାରୁନି । ମୋ ଜେଜେବାପା ୮୫ ବର୍ଷରୁ ଅଧିକ ସମୟ ବଞ୍ଚିଥିଲେ । ସେ ସବୁବେଳେ ବୋଉକୁ ରାଧାଲୋ, ରାଧାଲୋ ଡ଼ାକ ଛାଡୁଥାନ୍ତି । ମୁଁ କହେ ଆମକୁ ଡ଼ାକୁନ, ରାଧା, ରାଧା କାହିଁକି ହେଉଛ, ସେ ରୋଷେଇ ଘରେ ଅଛି । ରୋଷେଇ କରୁଛି, ସେ କ'ଣ କରିବ ମୋତେ, କୁହ । ସେ ରାଗି ମୋତେ ଠେଙ୍ଗା ଦେଖେଇବେ । ବୋଉ ଧାଇଁ ଆସି, ମୋତେ ଗାଳି କରି ସେଠାରୁ ନେଇଯିବ ।

ଆମ ଆଗଦୁଆରେ ମାଗାମା ବୋଲି ଜଣେ ବୁଢ଼ୀଥାଆନ୍ତି । ସେ ଏକାକୀ ରୁହନ୍ତି, ପାଖରେ କେହି

ନଥାନ୍ତି ତାଙ୍କର । ସେ ନିରାଶ୍ରୟ ନିଶ୍ଚୟ । ପ୍ରତିଦିନ ସନ୍ଧ୍ୟାରେ ସେ ତାଙ୍କ ପାହାଚ୍ ଓହ୍ଲାଇ ଆମ ପାହାଚ୍ ଉଠି ଆମ ଘରକୁ ଆସନ୍ତି । ବୋଉକୁ ରାଧାଲୋ ରାଧାଲୋ ବୋଲି କହି ଆମ ଘର ବାରଣ୍ଡାରେ ବସନ୍ତି । ବୋଉ ତାଙ୍କୁ ଦେଖି ଖୁସି ହୋଇ ତେଲଗିନା ଧରି ଚାଲି ଆସେ । ତାଙ୍କ ଗୋଡ଼ହାତରେ ତେଲ ମାଲିସ୍ କରିଦିଏ ଘଷା ଆଉଁଶା କରିଦିଏ, ମୋତେ କହେ ମା'କୁ ନେଇ ତାଙ୍କ ଘରେ ଛାଡିଦେ । ଛାଡ଼ି ଆସିବା ଯାଏସେ ପିଣ୍ଡାରେ ଠିଆ ହୋଇଥାଏ,ମୋତେ ସୁନାଝିଅ କହି ଗେଲ କରିଦିଏ ।

ଆଉ ଜଣେ ବୁଢ଼ୀ ଦୁଃଖୀ ନାନୀଙ୍କ ମା', ଆମ ଘରକୁ ତାଙ୍କ ଘର ଲାଗିଛି । ସେ ସଂଧ୍ୟା ବେଳେ ଆସିଲେ ବୋଉ ତାଙ୍କୁ ଘଷା ଆଉଁଶା କରେ । ମୁଁ ବିରକ୍ତ ହୁଏ, କହେ ତାଙ୍କର ଝିଅ ଅଛି, ନାତୁଣୀ ବୋହୂ ଅଛି, ତୁ କାହିଁକି କରୁଛୁ । ମୋତେ କହେ ତୋର କ' ଣ ଅସୁବିଧା ହେଉଛି ଚୁପ୍‌କର ।

ନନା କୁହନ୍ତି ସେ ଆଚାର୍ଯ୍ୟ ହରିହର ଦାସଙ୍କ ଗାଁର ଝିଅ ପରା । ସେ ସବୁ କାମ ନକଲେ ତାଙ୍କୁ ଭଲ ଲାଗିବନି । ତୁ ଚୁପ୍‌ଚାପ୍ ରହ । ରାଗେନା, ବୋଉଠୁ ଶିକ୍ଷାନେ ।

ଗାଁ ରେ କାହା ଝିଅର ପ୍ରସବ ବେଦନା ଶୁଣିଲେ, ଘର ଛାଡ଼ି ଦୌଡ଼ିବ ତାଙ୍କ ଘରକୁ । ତାକୁ ପ୍ରସବ କରାଇବାରେ ସାହାଯ୍ୟ କରିବ । ତାକୁ ନର୍ସ କାମ ବୋଧେ ଜଣାଥିଲା ।

ସବୁକାମ ତାକୁ ଜଣା । ଘର କାମରେ ନିପୁଣା ଥିଲାସେ । ମାର୍ଗଶିର ମାସରେ ତା ଚିତା ପକାଇବା କଥା ମନେ ପଡୁଛି । ଚଷମା ପିନ୍ଧି ଘର ମାନଙ୍କରେ, ବାଡ଼ି ଦୁଆରେ, ଦାଣ୍ଡ ଦୁଆରେ ଯେଉଳି ପଦ୍ମ ସେ ଝୋଟିରେ ଲେଖେ ଏବେ ଆଉ ଦେଖିବାକୁ ମିଳିବନି । କଳାତ୍ମକ ଶିକ୍ଷା ଲାଭ କରିଥିବା ଲୋକ ସେଭଳି ସୁନ୍ଦର ପଦ୍ମ ଲେଖିବାକୁ କଷ୍ଟ ହେବ । ଦାଣ୍ଡ ଦୁଆର, ବାଡ଼ି ଦୁଆର କାର୍ତ୍ତିକ ମାସରେ ତୁଳସୀ ମୂଳେ ପ୍ରଭୁ ଶ୍ରୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ଏତେ ସୁନ୍ଦରଭାବେ ମୁରୁଜରେ ଲେଖେ ମୁ ଭାବି ପାରୁନି ।

ତା ବଡ଼ି' ଆଚାର, ପିଠା, ପଣା ସବୁ ମନେପଡୁଛି । ତାକୁ ମିସ୍ତ୍ରୀ କାମ, ବଢ଼େଇକାମ ସବୁ ଜଣା । ଘରକାମ ବେଳେ ମିସ୍ତ୍ରୀ ବଢ଼େଇଙ୍କ ସାଙ୍ଗରେ ମିଶିଯାଏ । ସମୟ ମିଳିଲେ ପଇତା କାଟିବ ଆମର ପଇତା କିଣା ହୁଏନି ।

ରାମାୟଣ, ଭାଗବତ, ମହାଭାରତ ସବୁ ବହି ତା' ପାଖରେ ଥାଏ । ଦଶଟାରେ ଆମେ ସ୍କୁଲ୍‌କୁ ଗଲାପରେ ସେ ବସି ପଢ଼ିବ । ଆମେ ଆସିବା ବେଳ ହେଲେ ଉଠିଯାଇ ଆଳୁଭାଜି ଗରମ ଗରମ ଆଳୁଭଜା ପାଖାଳ ଖାଇବାକୁ ବାଢ଼ି ଦେବ । ମୁଁ କହେ ଭଜା ଏତେ ଗରମ କିପରି ଅଛି, କହେ ତୁମେ ଦଣ୍ଡା ମୁଣ୍ଡରେ ହେଲେ ମୁଁ ଜାଣିପାରୁଛି , ବହି ପଢ଼ା ରଖି ଯାଇ ଭଜା କରୁଛି, ତେଣୁ ଗରମ ଅଛି । ମୁଁ କହେ ଏତେବେଳଯାଏ ପଢୁଛୁ ଆମକୁ ସ୍କୁଲ୍‌ରେ ବିରକ୍ତ ଲାଗୁଛି, ତୁ କିପରି ପଢୁଛୁ ଏତେ ସମୟ ।

ଗାଁ ରେ ସମସ୍ତଙ୍କୁ ରାମାୟଣ, ମହାଭାରତ, ପଢ଼ିବାକୁ ଦେବ । ସରିଗଲେ ଜଣକ ଘରୁ ଆଣି ଅନ୍ୟ

ଜଣକ ଘରେ ଦେବ । କେତେଥର ମୁଁ ଦିଆ ନିଆ କରିଛି । ଛାନ୍ଦ, ଚଉତିଶା ତା'ର ମୁଖସ୍ଥ । ସବୁବେଳେ ମଙ୍ଗଳାଙ୍କ ସ୍ତୁତି ଗାଉଥିବ, ମୁଖସ୍ଥ ପରା ।

ଭୁବନେଶ୍ୱରରେ ଥରେ ସେ ମୋ ପାଖରେ ଥିବା ସମୟରେ କେତେ ଗୁଡ଼ିଏ ପିଲା ମୋ ପାଖକୁ ସଂସ୍କୃତ ପଢ଼ିବାକୁ ଆସିଥିଲେ । ପରିକ୍ଷିତଙ୍କ ବ୍ରହ୍ମଶାପ ବୁଝାଉଥିଲି । ବୋଉକୁ କହିଲି ବୋଉ ପରିକ୍ଷିତଙ୍କ ବ୍ରହ୍ମଶାପ ବିଷୟରେ କହିଲୁ ବୋଉ ତ ବୁଝାଇଲା ପରିକ୍ଷିତ କିଏ, ତାଙ୍କୁ କେଉଁ ମହର୍ଷି କାହିଁକି ଶାପ ଦେଇଥିଲେ । ସେ ବ୍ରହ୍ମର୍ଷିଙ୍କ ବିଷୟରେ କେତେ କ'ଣ ସବୁ କହିଲା ମୋତେ ଜଣା ନଥିଲା । ପିଲାମାନେ କହିଲେ, "ମାଡ଼ାମ୍ ଆଈ କେତେ କଥା କହୁଛନ୍ତି । ସ୍କୁଲ୍‌ରେ ଖାଲି ଆକ୍ଷରିକ ଅର୍ଥ ବୁଝାଇ ଦେଉଛନ୍ତ" । ମୁଁ କହିଲି ଦଶଟାରୁ ଚାରିଟା ପ୍ରତିଦିନ ସେ ଭାଗବତ, ରାମାୟଣ ଗୀତା ପାଠ କରେ । ସେ ସବୁ ଜାଣିଚି, ଆମକୁ ଜଣା ନାହିଁ ।

ନିଜ ପାଇଁ ତାର କିଛି ଅଭିଳାଷ ନଥାଏ । ଭଲ ଜିନିଷ ଟିଏ ଦେଲେ ସେ ଅନ୍ୟକୁ ଦେଇ ଖୁସି ହେବ । ଶାଲ୍‌ଟିଏ ଘୋଡ଼ି ହେବା ପାଇଁ ଦେଲେ, କାହାର ଶାଲ ନଥିବ, ଶୀତରେ କଷ୍ଟ ପାଇବା ଦେଖିଲେ ତାକୁ ନେଇ ଦେଇଦେବ । ଆମେ ପ୍ରତିବାଦ କଲେ କହିବ ମୁଁ ଘରେ ରହୁଛି, ମୋର ଚଳିଯିବ, ବ୍ୟସ୍ତ ହୁଅନା ।

ମୁଁ ମହିଳା କଲେଜ, ପୁରୀରେ ପାଠ ପଢ଼ୁଥିଲି । କାର୍ତ୍ତିକ ମାସରେ ପୁରୀ ଆସିଥିଲା । ବସ୍‌ଷ୍ଟାଣ୍ଡରୁ କଲେଜକୁ ଆଣିଲି, ମୋ ରୁମ୍ ସବୁ ପିଲାଙ୍କୁ ଦେଖି ଯେଉଁ ଖୁସି ହେଲା, ସମସ୍ତଙ୍କୁ ଡ଼ାକିଲା "ଆସ ମୋ ସଙ୍ଗେ ମନ୍ଦିର ।" ନମିତା, ସରୋଜିନୀ, ମୁଁ ଆଉ କେତେଜଣ ମନ୍ଦିର ତା' ସଙ୍ଗେ ଗଲୁ । ଅଭଡ଼ା ସମସ୍ତଙ୍କୁ ଖୁଆଇ ଖୁସିରେ ଛାଡ଼ିଲା ।

କ'ଣ ଲେଖିବି ତା କଥା ଲେଖିଲେ ସରିବନି । ଦିବଂଗତା ଜନନୀର ବ୍ୟକ୍ତିତ୍ୱ, ଦୟାର୍ଦ୍ର ହୃଦୟର ସ୍ମୃତି ମନ୍ଥନ କରିପାରୁନି । ଦୁଃଖୀ ପାଇଁ ସେ କରୁଣାର ପୁଣ୍ୟ ପ୍ରବାହ, ପ୍ରସାଦ ଭଳି ପବିତ୍ର ।

ମଣିଷ ପଣିଆରେ ଛଳ ଛଳ ହୃଦୟ ତା'ର ମୋ ଆଖିକୁ ଛଳ ଛଳ କରି ଦେଉଛି । ଆଉ ଲେଖି ପାରୁନି ।

ସ୍ନେହାଧୀନା ଝିଅ

●●●

# ଆତ୍ମଲିପି

| | ପିତା | ମାତା |
|---|---|---|
| ନାମ | ନାରାୟଣ ମହାପାତ୍ର | ରାଧାମଣି ଦେବୀ |
| ଜନ୍ମସ୍ଥାନ | ବୀରନରସିଂହପୁର | ଶ୍ରୀରାମଚନ୍ଦ୍ରପୁର |
| ପିତା | ଗଣେଶ୍ୱର ମହାପାତ୍ର | ରାମଚନ୍ଦ୍ର ତ୍ରିପାଠୀ / ଅନନ୍ତ ତ୍ରିପାଠୀ |
| ମାତା | ଚମ୍ପା ଦେବୀ | ଅନ୍ନପୂର୍ଣ୍ଣା ଦେବୀ |
| ଜନ୍ମ ତାରିଖ | ୧୯୦୬ ବୈଶାଖ ଶୁକ୍ଳ ସପ୍ତମୀ | ୧୯୧୧ ମସିହା |
| ଜିଲ୍ଲା | ପୁରୀ | ପୁରୀ |
| ରାଜ୍ୟ | ଓଡିଶା | ଓଡିଶା |
| ଦେଶ | ଭାରତ | ଭାରତ |
| ତିରୋଧାନ | ୧୯୮୫ ମସିହା ରାକ୍ଷୀପୂର୍ଣ୍ଣିମା | ୧୯୯୧ |
| ଗୋତ୍ର | ବତ୍ସ୍ୟସ | ଗୌତମ |

## ଦିବଂଗତ ସମ୍ବନ୍ଧି



ଂ ବିଶ୍ୱନାଥ ନନ୍ଦ



ଂ ଗଦାଧର ମିଶ୍ର

## ଦିବଂଗତ ବାଲ୍ୟବନ୍ଧୁଗଣ



ଂ ଡ. ସଦାଶିବ ମିଶ୍ର



ଂ ଦୟାନିଧି ମିଶ୍ର



ଂ ନୀଳକଣ୍ଠ ମହାପାତ୍ର



ଂ ଉଦୟନାଥ ମିଶ୍ର



ଂ ନୀଳକଣ୍ଠ ମିଶ୍ର

ବହୁ ଚେଷ୍ଟା ସତ୍ତ୍ୱେ ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କର ଫଟୋ ନପାଇବାରୁ ଆମେ ଦୁଃଖିତ

## ଦିବଂଗତ ଛାତ୍ର


ପ୍ରଫେସର ଡ. ଗଣେଶ୍ୱର ମିଶ୍ର


ପ୍ରଫେସର ଡ. ଶଙ୍କର ପ୍ରସାଦ ମିଶ୍ର


ଶଚିଦାନନ୍ଦ ରଥ, ଭା.ପ୍ର.ସେ


ଚକ୍ରଧର ମହାପାତ୍ର


ଭାସ୍କର ମହାପାତ୍ର


ବ୍ରଜସୁନ୍ଦର ମହାପାତ୍ର


ଇଂ ଲିଙ୍ଗରାଜ ମହାପାତ୍ର


ଉମାକାନ୍ତ ମହାପାତ୍ର


ରମାନାଥ ମିଶ୍ର, ଓ.ଏଫ୍.ଏସ୍


ଶ୍ୟାମସୁନ୍ଦର ମିଶ୍ର

ଅନ୍ୟାନ୍ୟ ଦିବଂଗତ ବିଶିଷ୍ଟ ଛାତ୍ରମାନଙ୍କର ଫଟୋ ବହୁଚେଷ୍ଟା ସତ୍ତ୍ୱେ ନମିଳିପାରିବାରୁ ଆମେ ଦୁଃଖିତ ।

## ଆତ୍ମଚରିତ

# ଗ୍ରାମ ଓ ବଂଶର ଇତିବୃତ୍ତ




କାହ୍ନୁ ,

ଆଜି ଜୀବନ ସନ୍ଧ୍ୟାରେ ତୋତେ ଆମ ଗ୍ରାମର ତଥା ବଂଶର ଇତିବୃତ୍ତର ସଂକ୍ଷେପ ଆଭାସ ଦେବି, ସେ ବିଶ୍ୱାସ ମୋର ନଥିଲା । ଆଜିକାଲି ପାଶ୍ଚାତ୍ୟ ଶିକ୍ଷାଭିମାନୀ ଯୁବକମାନେ ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କର ପିତାମହ ଓ ପ୍ରପିତାମହଙ୍କର ନାମ ମନେରଖି ଅଛନ୍ତି କିନ୍ତୁ ନିଜର ପିତାମହଙ୍କର ନାମ ମନେ ରଖି ନାହାନ୍ତି । ବଂଶର ବିବରଣୀ ଜାଣିବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ । ବଂଶର ବିବରଣୀ ଜାଣିଲେ ଲୋକ ପୂର୍ବ ପୁରୁଷଙ୍କର ପଦାଙ୍କ ଅନୁସରଣ କରିଥାଏ । କୁଳର ସମ୍ମାନ ରକ୍ଷା କରିବା ପ୍ରତ୍ୟେକ ସୁପୁତ୍ରର କର୍ତ୍ତବ୍ୟ । ପୁତ୍ର ଅସାଧୁ କର୍ମ କଲେ ବଂଶର ମର୍ଯ୍ୟାଦାରେ ବାଧା ଆସେ । କେବଳ ବଂଶ ବୃଦ୍ଧି ପାଇଁ ସନ୍ତାନ ଜନ୍ମ ହୁଅନ୍ତି ନାହିଁ କିନ୍ତୁ କୁଳର ସମ୍ମାନ ବୃଦ୍ଧି ପ୍ରତ୍ୟେକ ସନ୍ତାନର କର୍ତ୍ତବ୍ୟ ତେଣୁ କୌଣସି ବ୍ୟକ୍ତି ଉଚ୍ଚପଦବୀ ଲାଭ କଲେ ସମ୍ବାଦପତ୍ରରେ ତାଙ୍କର ପିତାଙ୍କର ନାମ ଉଲ୍ଲେଖ କରାଯାଏ । ତା' ଫଳରେ ପିତା ମାତାଙ୍କ ପ୍ରାଣରେ ଆନନ୍ଦ ଜାତ ହୁଏ । ସେମାନେ ନିଜକୁ ଭାଗ୍ୟବାନ ମନେ କରନ୍ତି । ପିତା ପୁତ୍ର ଠାରୁ କୌଣସି ପାରିତୋଷିକ ପାଇବା ପାଇଁ ତାକୁ ଶିକ୍ଷା ଦିଏ ନାହିଁ, କେବଳ ପୁତ୍ରର ପ୍ରଶଂସାରେ ସେ ଜୀବନକୁ ଚରିତାର୍ଥ କରେ ।

**ଉଦାହରଣ :**

ମୋର ମନେ ଅଛି । ୧୯୩୪ ମସିହାର ଘଟଣା । ମୁଁ C.T. ସ୍କୁଲ୍‌ରେ ପଢୁଥାଏ । କଲେଜରେ

ମୋର ଜଣେ ସହାଧ୍ୟାୟୀ । ତାଙ୍କର ନାମ ସଂଗ୍ରାମ କେଶରୀ ରାଏ, ଜାତିରେ ଓଡିଆ, ଖଣ୍ଡାୟତ । ତାଙ୍କର ପିତା କ୍ଷେତ୍ର ମୋହନ ରାଏ, କଟକ ମେଡିକାଲ୍ ସ୍କୁଲ୍‌ରେ ଡାକ୍ତର ଥାଆନ୍ତି । ଆଗେ ସତ୍ୟବାଦୀରେ ଡାକ୍ତର ଥିଲେ । ସଂଗ୍ରାମ କେଶରୀ ତାଙ୍କର ଏକମାତ୍ର ପୁତ୍ର । ରେଭେନ୍ସା କଲେଜରୁ I.Sc. ପାସ୍ କରି ସୈନ୍ୟ ବିଭାଗରେ ଯୋଗଦେଲେ । ପରେ ୬ ବର୍ଷ ବିଲାତରେ ଟ୍ରେନିଂ ପାଇ ସୈନ୍ୟ ବିଭାଗର ଜଣେ ଉଚ୍ଚକର୍ମଚାରୀ ହେଲେ । ଭାରତକୁ ଆସି କଟକକୁ ମାତ୍ର ୩ ଦିନ ସକାଶେ ଆସିଥିଲେ । ତାଙ୍କର ଜ୍ୟେଷ୍ଠା ଭଗିନୀ ଶ୍ରୀମତୀ ବୀଣାଦେବୀ ପାଟନା ମେଡିକାଲ କଲେଜରୁ M.B.B.S. ପାସ୍ କରି କଟକ ଆସିଥାନ୍ତି । ସେ ବର୍ତ୍ତମାନ ଜୀବିତା । ସେ ଓଡିଶାର ପ୍ରଥମ ମହିଳା M.B.B.S. । ସଂଗ୍ରାମ କେଶରୀ ମଧ ପ୍ରଥମ କମାଣ୍ଡର ଜେନେରାଲ୍ । ଉଭୟଙ୍କର ସମ୍ବର୍ଦ୍ଧନା ପାଇଁ ଶ୍ରୀ ରାମଚନ୍ଦ୍ର ଭବନରେ ସଭା ହେଲା । ଭାଇ ଭଉଣୀଙ୍କର ଯୁଗଳ ଫଟୋ ଦୁଇଅଣାରେ ବିକ୍ରି ହେଲା । ରାମଚନ୍ଦ୍ର ଭବନ ଜନାକୀର୍ଣ୍ଣ ହେଲା । ପିତାମାତା ପୁତ୍ରକନ୍ୟାଙ୍କ ସହିତ ବସିଲେ । ଡ଼କ୍ଟର ରାଧାନାଥ ରଥ ଓ ତାଙ୍କର ପୂର୍ବତନ ଶିକ୍ଷକ ମାନେ ସଭାରେ ଭାଷଣ ଦେଲେ । ପିତା ମାତା ଓ ପୁତ୍ର କନ୍ୟାଙ୍କୁ ପୁଷ୍ପ ମାଳାରେ ଭୂଷିତ କରାଗଲା । ସଂଗ୍ରାମ କେଶରୀ ନାମ ସାର୍ଥକ ହେଲା । ସେ ଓଡିଆରେ କହିପାରିନଥିଲେ । ସେ ୨ ଦିନ କିଲା ମଇଦାନରେ ଗୋଟିଏ ଘରେ ରହିଥିଲେ । ସେ ମୋର ଘନିଷ୍ଠ ବନ୍ଧୁ ଥିବାରୁ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ମୋତେ ୫ ମିନିଟ ସମୟ ମିଳିଥିଲା । ଧନ୍ୟ ସେ ପିତାମାତା । ଅଳ୍ପବୟସରେ ସଂଗ୍ରାମ କେଶରୀ ପ୍ରାଣତ୍ୟାଗ କଲେ ।

ପ୍ରମାତାମହ ଓ ବୃଦ୍ଧ ପ୍ରମାତା ମହଙ୍କ ନାମ ନ କହିପାରିବାରୁ ତୁମେ ଜଗନ୍ନାଥ ଦେବ ଓ ବଳଭଦ୍ର ଦେବ ଉଚ୍ଚାରଣ କରି ପିଣ୍ଡ ଓ ତର୍ପଣ କରିପାର ।

ବଂଶାବଳୀର ଚିତ୍ର ମୁଁ ଅନ୍ୟ ଏକ ସ୍ଥାନରେ ଦେଇଛି । ସେଥିରୁ ତୁ ପିତାମହ, ପ୍ରପିତାମହ, ପିତାମହୀ ଓ ପ୍ରପିତାମହୀଙ୍କର ନାମ ଜାଣିପାରିବୁ ।

"ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ, ସମବେତା ଯୁଯୁତ୍ସବଃ ।
ମାମକାଃ ପାଣ୍ଡବାଶ୍ଚୈବ, କିମକୁର୍ବତ ସଞ୍ଜୟ ॥"
(ପ୍ରଥମୋଽଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୧)

କୁରୁକ୍ଷେତ୍ର ତ ଧର୍ମକ୍ଷେତ୍ର । ଉଭୟେ ହୋଇଲେ ଏକତ୍ର ॥
ଧର୍ମରେ ବାଦ ହିଂସା ନାହିଁ । ତେଣୁ ସନ୍ଦେହ ମୋର ହୋଇ ॥
ଯୁଦ୍ଧରେ ହେଲେ କି ବିରତ । କି ଅବା ଧର୍ମଯୁଦ୍ଧେ ଚିତ୍ତ ॥
ଦେଇ ଯୁଦ୍ଧରେ ସ୍ୱର୍ଗ ଇଚ୍ଛି । କହ ସଞ୍ଜୟ ତେଣୁ ପୁଚ୍ଛି ॥



## ପିତାମହ :

ତୋର ପିତାମହଙ୍କର ନାମ ଗଣେଶ୍ୱର ମହାପାତ୍ର । ସେ ତାଙ୍କ ପିତା କାଶୀନାଥ ମହାପାତ୍ରଙ୍କର ଏକମାତ୍ର ପୁତ୍ର ଥିଲେ । ତାଙ୍କର ଦୁଇଟି ଭଗିନୀ ଥିଲେ । ସେ କନିଷ୍ଠ ଥିଲେ । ଜ୍ୟେଷ୍ଠାଭଗିନୀ ବୀରପ୍ରତାପପୁରରେ ବିବାହ କରିଥିଲେ । ତାଙ୍କର ସ୍ୱାମୀ ଯାତ୍ରୀ ବ୍ୟବସାୟରେ ବିପୁଳ ଅର୍ଥ ସଂଗ୍ରହ କରିଥିଲେ । ଅନ୍ୟ ଭଗିନୀ ବୀର ଗୋବନ୍ଦପୁରରେ ବିବାହ କରି ବାଳଶ୍ରୀ ବିଧବା ହୋଇଥିଲେ । ତାଙ୍କର ଗ୍ରାମରେ କିଛି ଭୂସମ୍ପତ୍ତି ଥିଲା । ସେହି ଜମିର ଆୟରେ ସେ ଚଳିଯାଉଥିଲେ । ଜ୍ୟେଷ୍ଠା ଭଗିନୀ ସରସ୍ୱତୀ ଦେବୀ ଏକମାତ୍ର ପୁତ୍ର ସନ୍ତାନ ଜନ୍ମ କରି ମୃତ୍ୟୁ ବରଣ କରିବାରୁ ତୋର ପିତାମହ ଭିଣୋଇ ଘରେ ରହି ତାଙ୍କର ଜମିବାଡ଼ିର ତତ୍ତ୍ୱ ନେଉଥିଲେ ଓ ସମୟ ସମୟରେ ତାଙ୍କ ସହିତ ବିଦେଶ ଯାତ୍ରା କରୁଥିଲେ । ତୋର ପିତାମହଙ୍କର ମାତୁଳାଳୟ ଦାଣ୍ଡମୁକୁନ୍ଦପୁର ନିକଟସ୍ଥ ନୂଆ ଶାସନ ଗ୍ରାମରେ ଅବସ୍ଥିତ ଥିଲା । ପିତାମହଙ୍କର ଭୂସମ୍ପତ୍ତି ନଥିବାରୁ ତାଙ୍କର ବିଧବା ମାତା କେତେବେଳେ ପିତ୍ରାଳୟରେ ଓ କେତେବେଳେ ଗ୍ରାମରେ ଅବସ୍ଥାନ କରୁଥିଲେ । ଗ୍ରାମରେ ମାତ୍ର ଏକ ବଖରା ଅର୍ଥାତ୍ ୬ହାତ ତୋଳା ଘର ଥିଲା । ପରେ ପିତାମହଙ୍କର ଭିଣୋଇ ଦ୍ୱିତୀୟ ବିବାହ କରିବାରୁ ସେ ତାଙ୍କ ଗୃହ ଛାଡ଼ି ଘରେ ରହିଲେ । ମାତ୍ର ଟ୨/-ରେ ମାତା ପୁତ୍ରଙ୍କର ମାସିକ ଖର୍ଚ୍ଚ ଚଳିଯାଉଥିଲା । ଧାନ ଟଙ୍କାରେ ୨୦ ଗୌଣୀ ଥିଲା । ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ପଦାର୍ଥର ମୂଲ୍ୟ ଅତିକମ୍ ଥିଲା । ସେତେବେଳେ କଟକୀ ସେର ୧୦୫ ତୋଳା ଥିଲା । ପରେ ତୋର ପିତାମହ ଆସାମ ଯାଇ ସେଠାରେ ସିଲ୍‌ହଟ୍ ଜିଲ୍ଲାରେ ଯାତ୍ରୀ ବ୍ୟବସାୟ ଆରମ୍ଭ କଲେ । ତିରିଶବର୍ଷ ବୟସରେ ସେ ବିବାହ କରିଥିଲେ । ତାଙ୍କର ଶ୍ୱଶୁରାଳୟ ବିଶ୍ୱନାଥପୁରରେ ଥିଲା । ତାଙ୍କର ଶ୍ୱଶୁର



"ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ, ବ୍ୟୂଢ଼ଂ ଦୁର୍ଯ୍ୟୋଧନସ୍ତଦା ।
ଆଚାର୍ଯ୍ୟମୁପସଂଗମ୍ୟ, ରାଜା ବଚନମବ୍ରବୀତ ॥"

"ପଶ୍ୟୈତାଂ ପାଣ୍ଡୁପୁତ୍ରାଣା, ମାଚାର୍ଯ୍ୟ ମହତୀଂ ଚମୂଂ ।
ବ୍ୟୂଢ଼ାଂ ଦ୍ରୁପଦପୁତ୍ରେଣ, ତବ ଶିଷ୍ୟେଣ ଧୀମତା ॥"

(ପ୍ରଥମୋଦ୍ଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୨ଓ୩)

ତୋ ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନ ।
ଦେଖିଣ ପାଣ୍ଡବଙ୍କ ସୈନ୍ୟ ॥
ଅଭେଦ୍ୟ ଦୁର୍ଗ ସଜ୍ଜା ଚାହିଁ ।
ଦ୍ରୋଣଙ୍କୁ ବିନୟେ କହଇ ॥
ଭୋ ଗୁରୁ ଦରଶନ କର ।
ପାଣ୍ଡବଙ୍କର ସୈନ୍ୟ ବୀର ॥
ତୁମ୍ଭର ପ୍ରିୟ ଶିଷ୍ୟ ପାର୍ଥ ।
ସଙ୍ଗତେ ଦ୍ରୁପଦର ପୁତ୍ର ॥
ନେଇଣ ବ୍ୟୂହ ରଚିଛଇଁ ।
ନ ଭେଦି ପାରିବେ ଯେ କେହି ॥

ଗୋପାଳମିଶ୍ରେ ଧନୀ ଥିଲେ । ତଥାପି ସେ ତାଙ୍କର କନ୍ୟାକୁ ତୋର ନିର୍ଦ୍ଧନ ପିତାମହଙ୍କ ସହିତ ବିବାହ ଦେଇଥିଲେ । ତାଙ୍କର ଜ୍ୟେଷ୍ଠା କନ୍ୟା ବଳପୁରର ବିଶିଷ୍ଟ ଧନୀ ପରିବାରରେ ବିବାହ କରିଥିଲେ । ମୁଁ ମୋର ମଉସାଙ୍କୁ ଦେଖିଅଛି । ତୋର ପିତାମହ ଦରିଦ୍ର ଥିବାରୁ ସେ ତାଙ୍କୁ ଭଲ ଚକ୍ଷୁରେ ଦେଖୁନଥିଲେ । ମାତାମହଙ୍କର ପ୍ରଥମ କନ୍ୟା ପରଲୋକଗତା ହେବାପରେ ସେ ଦ୍ୱିତୀୟ ଦାରା ଗ୍ରହଣ କଲେ । ମୋର ମାଉସୀର ଏକମାତ୍ର ପୁତ୍ର ରାମଚନ୍ଦ୍ର ମହାପାତ୍ର ଆମ ଘରକୁ ଆସିଅଛନ୍ତି । ତାଙ୍କର ପୁତ୍ର ବର୍ତ୍ତମାନ ଜୀବିତ ।

ତୋର ପିତାମହୀ ଚମ୍ପାଦେବୀ ଜଣେ ଶିକ୍ଷିତା ରମଣୀ ଥିଲେ । ପିତାମହ ଯାତ୍ରୀ ବ୍ୟବସାୟରେ ବିପୁଳ ଅର୍ଥ ଅର୍ଜନ କରିଥିଲେ ହେଁ ସେ ସବୁ ଦେବକାର୍ଯ୍ୟରେ ବ୍ୟୟ କରୁଥିଲେ । ସେ ତାଙ୍କର ଜୀବନ କାଳ ମଧ୍ୟରେ ଦୁଇ ଏକର ଭୂସମ୍ପତ୍ତି ଖରିଦ୍ କରିଥିଲେ । ତନ୍ମଧ୍ୟରୁ ୫ ମାଣ ଜମି କରଡି ମୌଜାରେ ଥିଲା । ସେ ଜମି ମୁଁ ବିକ୍ରୟ କରି ଅଛି । କରଡ଼ିର ରାଧୁଦାସ ମୋର ପିତାଙ୍କର ଜଣେ ସଚ୍ଚୋଟ ପ୍ରଜା ଥିଲା । ତା'ର ବର୍ତ୍ତମାନ ପୁତ୍ର କୀର୍ତ୍ତନ ଦାସ, ଘନ ଓ ଇଶରା ଜୀବିତ ଅଛନ୍ତି । ସେମାନଙ୍କର ପିତା ତୋର ପିତାମହଙ୍କର ବିଶ୍ୱସ୍ତ ପ୍ରଜା ଥିବାରୁ ମୁଁ ଆଜି ପର୍ଯ୍ୟନ୍ତ ସେମାନଙ୍କୁ ଜମିଚାଷ କରିବାକୁ ଦେଇ ଆସୁଅଛି ।

ତୋର ପିତାମହ ଇଚ୍ଛା କରିଥିଲେ ତାଙ୍କର ଜୀବିତାବସ୍ଥାରେ ଅଧିକ ପରିମାଣରେ ଭୂସମ୍ପତ୍ତି କ୍ରୟ କରିପାରିଥାଆନ୍ତେ । ସେତେବେଳେ ଜମି ସୁଲଭ ଓ ଶସ୍ତା ଥିଲା । ଜମି ଏକର ଟ୧୦୦/- ରେ ମିଳୁଥିଲା । କିନ୍ତୁ ପିତାମହ ତାଙ୍କର ଅର୍ଜିତ ଧନ ଦେବ କାର୍ଯ୍ୟରେ ଖର୍ଚ୍ଚ କରୁଥିବାରୁ ଓ ନିଜେ ଭଲ ଖାଦ୍ୟ ଖାଉଥିବାରୁ ଟଙ୍କା ସଞ୍ଚୟ କରିପାରୁନଥିଲେ । ବର୍ଷ ମଧ୍ୟରେ ତାଙ୍କୁ ୨, ୩ ଥର ବିଦେଶ ଯିବାକୁ ପଡୁଥିଲା । ୩୦ ବର୍ଷ ବୟସରୁ ୬୫ ବର୍ଷ ବୟସ



"ଅତ୍ର ଶୁରା ମହେଷ୍ୱାସା, ଭୀମାର୍ଜୁନସମା ଯୁଧି ।
ଯୁଯୁଧାନୋବିରାଟଶ୍ଚ, ଦ୍ରୁପଦଶ୍ଚ ମହାରଥଃ ॥"
"ଧୃଷ୍ଟକେତୁଶ୍ଚେକିତାନଃ, କାଶୀରାଜଶ୍ଚ ବୀର୍ଯ୍ୟବାନ୍ ।
ପୁରୁଜିତ୍ କୁନ୍ତିଭୋଜଶ୍ଚ, ଶୈବ୍ୟଶ୍ଚ ନରପୁଙ୍ଗବଃ ॥"

(ପ୍ରଥମୋଽଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୪ଓ୫)

ଦେଖ ହେ ଗୁରୁ ଯେ ତୋହର ।
ସମସ୍ତେ ମହା ଧନୁର୍ଦ୍ଧର ॥
ଭୀମ ଅର୍ଜୁନ ସମ ବୀର ।
ଯୁଯୁଧାନ ବିରାଟେଶ୍ୱର ॥
ପୁଣି ହିଁ ଦ୍ରୁପଦ ରାଜନ ।
ଯୁଦ୍ଧରେ ଅସୀମ ବିକ୍ରମ ॥
ଧୃଷ୍ଟକେତୁ ଯେ ଚେକିତାନ ।
ଆବର କାଶୀର ରାଜନ ॥
ପୁରୁଜିତ ଯେ କୁନ୍ତିଭୋଜ ।
ଶୈବ୍ୟାଦି ସର୍ବେ ମହାବୀର୍ଯ୍ୟ ॥

ପର୍ଯ୍ୟନ୍ତ ଦୀର୍ଘ ୩୦ ବର୍ଷ ଧରି ସେ ଯାତ୍ରୀ ବ୍ୟବସାୟ କରିଥିଲେ । ବାସଗୃହର ସଂସ୍କାର କରିଥିଲେ । ମୋର ଉପନୟନ ଓ ବିବାହରେ ଅଧିକ ପରିମିତ ଅର୍ଥ ଖର୍ଚ୍ଚ କରିଥିଲେ । ମୋ ଦେଖିବାରେ ସେ ଘରେ ୧୦ଟି ହୋମ ଯଥା ବିଧି କରିଅଛନ୍ତି ।

୬୫ ବର୍ଷ ବୟସ ପରେ ତାଙ୍କର ବିଦେଶ ଯାତ୍ରା ବନ୍ଦ ହେଲା । ସେତେବେଳକୁ ମୁଁ ସି.ଟି ଟ୍ରେନିଙ୍ଗ୍ ପାସ୍ କରି ଚାକିରି କରୁଥିଲି । ତାଙ୍କୁ ପ୍ରବର୍ତ୍ତାଇ ଆଉ ଆସାମ ଯିବାକୁ ବାରଣ କରିବାରୁ ସେ ଘରେ ରହିଲେ ।

ତାଙ୍କର ଗୁଣର ବିଶେଷତ୍ୱ ଥିଲା ସେ ବଡ ଧର୍ମ ବିଶ୍ୱାସୀ ଓ ନିଷ୍ଠାପର ଥିଲେ । ପ୍ରତି ଏକାଦଶୀରେ ପଦବ୍ରଜରେ ପୁରୀ ଯାଇ ଜଗନ୍ନାଥ ଦର୍ଶନ କରୁଥିଲେ । ୧୪ ବର୍ଷକାଳ ଭୁବନେଶ୍ୱର ପଦବ୍ରଜରେ ଯାଇ ଲିଙ୍ଗରାଜ ଦର୍ଶନ କରିଥିଲେ । ତା'ଫଳରେ ତୋର ଭାଇନା ଜନ୍ମ ଲାଭ କଲା । ସେ ୬ଲକ୍ଷ ଗାୟତ୍ରୀ ଏକାଦିକ୍ରମେ ୬ ବର୍ଷ କାଳ କରି ହବିଷ୍ୟ କରିଥିଲେ । ମୋ ଜୀବନ କାଳ ମଧ୍ୟରେ ଆମ ଗ୍ରାମର କେହି ୬ଲକ୍ଷ ଗାୟତ୍ରୀ କରିବା ମୁଁ ଦେଖି ନାହିଁ । ପ୍ରତିବର୍ଷ ଗାୟତ୍ରୀ ଜପ ଶେଷରେ ୧୦ ଜଣ ବ୍ରାହ୍ମଣଙ୍କୁ ପ୍ରସାଦ ସେବା କରାଇ ଦକ୍ଷିଣା ଦେଇ ବିଦାୟ ଦେଉଥିଲେ । ସତ୍ୟବାଦୀରେ ଥିବା ସମୟରେ ଗୋପଳଜୀଙ୍କଠାରେ ଏକ ଲକ୍ଷ ଗୋପାଳ ମନ୍ତ୍ର ଜପ କରିବା ପରେ ତୁ ଜନ୍ମ ଗ୍ରହଣ କଲୁ । ଜନ୍ମର ଏକବିଂଶ ଦିବସରେ ସତ୍ୟନାରାୟଣ ପୂଜା କରି ତୋର ନାମ କୃଷ୍ଣ ଦେଇଥିଲେ । ଗ୍ରାମରେ ଥିବା ସମୟରେ ପ୍ରତ୍ୟହ ପ୍ରାତଃ ସ୍ନାନ କରି ତର୍ପଣ ସାରି ମହାଦେବଙ୍କୁ ଅଭିଷେକ କରୁଥିଲେ । ପ୍ରତିଦିନ ରାତ୍ରିରେ ଗୋମୁଖୀରେ ପଞ୍ଚ ଦେବତାଙ୍କର ମନ୍ତ୍ରପାଠ କରୁଥିଲେ । ମୋର ଦୀର୍ଘ ଜୀବନ କାମନା କରି ୧ ଲକ୍ଷ ତ୍ରିଶାଖା ବେଲ ପତ୍ର, ୧ଲକ୍ଷ ଶମିପତ୍ର ଓ ୧ ଲକ୍ଷ ଗଇସ ଫୁଲ ମହାଦେବଙ୍କୁ ଲାଗିକରିଥିଲେ ।



"ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ, କୃପଶ୍ଚ ସମିତିଞ୍ଜୟଃ ।
ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ, ସୌମଦତ୍ତିର୍ଜୟଦ୍ରଥଃ ॥"
"ଅନ୍ୟେ ଚ ବହବଃ ଶୂରା, ମଦର୍ଥେ ତ୍ୟକ୍ତଜୀବିତାଃ ।
ନାନାଶସ୍ତ୍ରପ୍ରହରଣାଃ, ସର୍ବେ ଯୁଦ୍ଧବିଶାରଦାଃ ॥"

(ପ୍ରଥମୋଦ୍ଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୮ଓ୯)

ଆପଣ ଭୀଷ୍ମ ମହାରଥ ।
କର୍ଣ୍ଣ ବିକର୍ଣ୍ଣ ସୋମଦତ୍ତ ॥
ଜୟଦ୍ରଥ ଯେ ଅଶ୍ୱତ୍ଥାମା ।
କୃପାଦି ଅସୀମ ବିକ୍ରମା ॥
ପୁଣି ଅନେକ ନୃପବର ।
ପ୍ରାଣର ମାୟା କରି ଦୂର ॥
ଯୁଦ୍ଧ ନିପୁଣ ବୀରମାନେ ।
ଅଛନ୍ତି ମଙ୍ଗଳ କାରଣେ ॥
ମହାରଥୀରେ ଗଣ୍ୟ ସର୍ବ ।
ଶଙ୍କା କରଇ ସୁରଦେବ ॥

ଗଙ୍ଗା, ଗୋଦାବରୀ ସ୍ନାନ କରି ଗୟା ଶ୍ରାଦ୍ଧ କରିଥିଲେ । ୮୪ ବର୍ଷ ବୟସରେ ଏକଲକ୍ଷ ପୂର୍ଣ୍ଣ ଚନ୍ଦ୍ର ଦର୍ଶନ କରି ୧୯୫୫ ମସିହା ଡ଼ିସେମ୍ବର ମାସରେ ଇହଲୀଳା ସମ୍ବରଣ କଲେ ।

## ବଂଶ ପରିଚୟ

ପ୍ରତ୍ୟେକଲୋକ ତାହାର ବଂଶାବଳୀର ବିଶଦ ବିବରଣୀ ଜାଣିବା ଉଚିତ୍ । ସେମାନଙ୍କର ପଦାଙ୍କ ଅନୁସରଣ କରିବା ମଧ୍ୟ ବିଧେୟ । ସମୁନ୍ନତ ବଂଶର ଦାୟାଦ ମାନେ ସମୁନ୍ନତ ହୁଅନ୍ତି । ଆମବଂଶର ଗୋତ୍ର ବତ୍ସ୍ୟସ କିନ୍ତୁ ବଂଶର ଲୋକମାନେ ବୈଦିକ, ସାମନ୍ତ ନଥିଲେ । ଗ୍ରାମର ପ୍ରତିଷ୍ଠା ପରେ ଆମ ବଂଶର ପୂର୍ବପୁରୁଷ ମାନେ କେଉଁ ଗ୍ରାମରୁ ଆସି କେବେ ଗ୍ରାମରେ ବସତି ସ୍ଥାପନ କରି ରହିଥିଲେ ତାହା ମୋର ଅଜ୍ଞାତ । ତେବେ ମୋର ଜନ୍ମ କାଳରେ ଆମ ମହାପାତ୍ର ବଂଶର ପ୍ରାୟ ୪ ଘର ଥିଲା । ବର୍ତ୍ତମାନ କେବଳ ଆମରି ଘର ଏକମାତ୍ର ରହିଅଛି । ପୁରୀରେ ଜଣେ ମାତ୍ର ବିଧବା ହରଚଣ୍ଡୀ ସାହିରେ ଅଛି । ସେ ପୋଷ୍ୟପୁତ୍ର ଗ୍ରହଣ କରିନାହାନ୍ତି । ତାର ସ୍ୱାମୀ ମୃତ । ତାର ୨ଟି କନ୍ୟା ଜୀବିତ ଅଛନ୍ତି । ସେହି ଏକମାତ୍ର ବ୍ୟକ୍ତି ଆମର ୧୦ଦିନିଆ କୁଟୁମ୍ବ । ଅଦ୍ୟାବଧି ଅଶୌଚରେ ନୂଆହାଣ୍ଡି କରାଯାଉଅଛି । ବିଧବାର ମୃତ୍ୟୁପରେ ଆଉ ସେ ସମ୍ପର୍କ ରହିବ ନାହିଁ । ତାର ଜ୍ୟେଷ୍ଠା କନ୍ୟା ମନୋରମା, ସେ ପୋଷ୍ୟପୁତ୍ର ଏପର୍ଯ୍ୟନ୍ତ କରିନାହିଁ । ମୁଁ ତାଙ୍କ ସକାଶେ କିଛି ଭୂସମ୍ପତ୍ତି ଖର୍ଦ୍ଦ କରିଅଛି । ବର୍ତ୍ତମାନ ସେ ସେହି ଜମିର ଆୟ ନେଉଅଛି । ଆମ ପୂର୍ବବଂଶୀୟ ଲୋକମାନଙ୍କର ଭୂସମ୍ପତ୍ତି ଥିଲା । କିନ୍ତୁ ପରେ ଋଣଗ୍ରସ୍ତ ହେବାରୁ କେବଳ ଘରଡିହ ରହିଲା । ଦରିଦ୍ର ହେବାରୁ ଆମବଂଶର ସମସ୍ତ ଲୋକ ଯାତ୍ରୀ ବ୍ୟବସାୟ ଆରମ୍ଭ କଲେ । ସେହି ବ୍ୟବସାୟରେ ଅର୍ଥ ଉପାର୍ଜନ କରି ଜୀବିକା ନିର୍ବାହ କଲେ ।

●●●



"ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ, ମହତି ସ୍ୟନ୍ଦନେ ସ୍ଥିତୌ ।
ମାଧବଃ ପାଣ୍ଡବଶ୍ଚୈବ, ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ ॥
ପାଞ୍ଚଜନ୍ୟଂ ହୃଷୀକେଶୋ, ଦେବଦତ୍ତଂ ଧନଞ୍ଜୟଃ ।
ପୌଣ୍ଡ୍ରଂଦଧ୍ମୌ ମହାଶଙ୍ଖ, ଭୀମକର୍ମା ବୃକୋଦରଃ ॥
ଅନନ୍ତ ବିଜୟଂ ରାଜା, କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ ।
ନକୁଳଃ ସହଦେବଶ୍ଚ, ସୁଘୋଷମଣିପୁଷ୍ପକୌ ॥

(ପ୍ରଥମୋଽଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୧୪, ୧୫ ଓ ୧୬))

ତାପରେ ନନ୍ଦିଘୋଷ ରଥେ । ଶୁକ୍ଳାଶ୍ୱ ଯୋଡ଼ିଣ ଦ୍ୱରିତେ ॥
ବସି ଶ୍ରୀକୃଷ୍ଣ ଅରଜୁନ । ଶଙ୍ଖକୁ ବାଇଲେ ଗାଢ଼େଣ ॥
ଶ୍ରୀକୃଷ୍ଣ ଧରି ପାଞ୍ଚଜନ୍ୟ । ଦେବଦତ୍ତ ପାର୍ଥ ଧରିଣ ॥
ପୌଣ୍ଡ୍ରକ ଶଙ୍ଖ ଭୀମବୀର । ଅନନ୍ତ ଧରି ଯୁଧିଷ୍ଠିର ॥
ସହଦେବ ସୁଘୋଷ ଶଂଖ । ନକୁଳଙ୍କ ମଣିପୁଷ୍ପକ ॥

# ବଂଶାବଳୀ



ପିତା, ପିତାମହ, ପ୍ରପିତାମହ (ଗୋତ୍ର – ବତ୍ସ୍ୟସ)
ଶ୍ରୀ ନରସିଂହ ମହାପାତ୍ର
ରାମଚନ୍ଦ୍ର ମହାପାତ୍ର (ପୁତ୍ର) (ବୃଦ୍ଧ ପ୍ରପିତାମହ)
ବନମାଳୀ ମହାପାତ୍ର
ରଘୁନାଥ ମହାପାତ୍ର
କାଶୀନାଥ ମହାପାତ୍ର (ପ୍ରପିତାମହ)
ଶ୍ରୀ ଗଣେଶ୍ୱର ମହାପାତ୍ର (ପିତାମହ)
ଶ୍ରୀ ନାରାୟଣ ମହାପାତ୍ର (ପିତା)
ଶ୍ରୀ ଲିଙ୍ଗରାଜ ମହାପାତ୍ର (ପୁତ୍ର)
ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର (ପୁତ୍ର)
ଉମାମଣି (କନ୍ୟା)
ରମାମଣି (କନ୍ୟା)
ମାତା, ପିତାମହୀ ଓ ପ୍ରପିତାମହୀ
ଲକ୍ଷ୍ମୀଦେବୀ (ବୃଦ୍ଧା ପ୍ରପିତାମହୀ)
ଗୌରୀଦେବୀ (ପ୍ରପିତାମହୀ)
ଚମ୍ପାଦେବୀ (ପିତାମହୀ)
ଶ୍ରୀମତୀ ରାଧାମଣୀ ଦେବୀ (ମାତା)
ଅନନ୍ତ ତ୍ରିପାଠୀ (ମାତାମହ)
ଅନ୍ନପୂର୍ଣ୍ଣା ଦେବୀ (ମାତାମହୀ)

# ବନ୍ଧୁବର୍ଗ

**ନିକଟ ସମ୍ପର୍କୀୟ –** ୧. ତୋର ଦୁଇନାନୀ, ଓ ଭାଣେଜୀ ।

୨. ଦୀନୁ ମାମୁଙ୍କୁ ମିଶାଇ ତୋର ୪ ମାମୁ ।

**ଦୂର ସମ୍ପର୍କୀୟ** - ପୁରୀରେ ଖୁଡ଼ୀଘର, ମନୋରମା । ଗ୍ରାମରେ ଶାମ୍ଭ, ଗୋବିନ୍ଦ, ଭାଗୀରଥି ଓ ଭିକାରୀ । ବ୍ରତ ବିବାହରେ ନିଧି ଓ ନାରଣଙ୍କୁ ନିମନ୍ତ୍ରଣ କରିବୁ ।

ଡ଼. ଗଣେଶ୍ୱର ମିଶ୍ରଙ୍କ ପରିବାର ସହିତ ସମ୍ପର୍କ ରଖିଥିବୁ । ପାରିଲେ ମାମୁଝିଅ ଭଉଣୀମାନଙ୍କୁ ଡ଼ାକିପାରୁ । ଦୂର ସମ୍ପର୍କୀୟ ବନ୍ଧୁମାନଙ୍କ ପାଖକୁ ବେଭାର ବନ୍ଦାଣ ପାଇଁ ଟଙ୍କା ପଠାଇ ପାରୁ ।

୩. ତାରା - ଶ୍ରୀ ଦୁର୍ଗାମାଧବ ମିଶ୍ର, ନୀଳା ଓ ଇତିଘର, କତି,ମାମୀ ଘର ।

୪. ଶ୍ୱଶୁର, ମଉସା ଶ୍ୱଶୁର, ମାମୁ ଶ୍ୱଶୁର, ସଢ଼ୁ ।

୧. ଗ୍ରାମରେ

ଶ୍ରୀ ଚକ୍ରଧର ମହାପାତ୍ର<br>
ଶ୍ରୀ ଲିଙ୍ଗରାଜ ମହାପାତ୍ର<br>
ଶ୍ରୀ ବ୍ରଜସୁନ୍ଦର ମହାପାତ୍ର<br>
ଶ୍ରୀ ଲିଙ୍ଗରାଜ ଦାଶ<br>
ନୀଳକଣ୍ଠ ମହାପାତ୍ର (ପୁରୀ )<br>
ଶ୍ରୀ ଜଗନ୍ନାଥ ମିଶ୍ର<br>
ଶ୍ରୀ ଭିକାରୀ ମିଶ୍ର<br>
ଶ୍ରୀ ଦିନକର କର<br>
ଶ୍ରୀ ଗୋପାଳ ଚନ୍ଦ୍ର ରଥ<br>
ଶ୍ରୀ ଭାଗୀରଥି ହୋତା<br>
ଶ୍ରୀକୁଳମଣି ମହାପାତ୍ର

୨. ଭଞ୍ଜପୁର- ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାଶ<br>
୩. କାଳିଆ କେରା - ଶ୍ରୀ ଜନାର୍ଦ୍ଦନ ରଥ<br>
୪. ଦଶପଲ୍ଲା- ଗୀତା<br>
୫. ଗୋପାଳ ମାମୁ ର ୨ ଝିଅ<br>
୬. ଶ୍ରୀ ନିଧି ନାଏକ<br>
୭. ଶ୍ରୀ ନାରାୟଣ ଶତପଥୀ<br>
୮. ପୁରୀରେ ଖୁଡି, ମନୋରମା ।

ମୋ ପରେ ଏମାନଙ୍କ ମଧ୍ୟରେ କେତେ ଜଣ ନ ଥାଇ ପାରନ୍ତି ।

ଏହା ବ୍ୟତୀତ ଆମର ପଡୋଶୀ, ଲେଙ୍କୁଘର ଓ ତୋର ବାଲ୍ୟବନ୍ଧୁ ପରି ଘରକୁ ବନ୍ଧୁ ଭାବେ ବିବେଚନା କରି ସମସ୍ତ ଶୁଭକାର୍ଯ୍ୟରେ ଡାକିବୁ । ପରିର ନନା ବିଶ୍ୱନାଥ ମହାପାତ୍ର ମତେ ନାରଣ ଭାଇନା ବୋଲି ଡାକି ବହୁ ସମ୍ମାନ ଦିଅନ୍ତି । ତାଙ୍କର ପ୍ରଥମ କନ୍ୟା ରମାନାନୀର ବାଲ୍ୟବନ୍ଧୁ ଥିଲା । ସେ ଆମ ଗ୍ରାମର ଦୟାନିଧି ମିଶ୍ର ଯେକି ମୋର ଉପର ଶ୍ରେଣୀରେ ଅଧ୍ୟୟନ କରୁଥିଲେ ତାଙ୍କର ଶଳା ଓ ଜଣେ ଅତ୍ୟନ୍ତ ଶାନ୍ତ, ସରଳ ଓ ମିଷ୍ଟଭାଷୀ ଲୋକଥିଲେ ।

●●●

# ପିତାଙ୍କର ଆତ୍ମକାହାଣୀ

ପିତା ଧର୍ମ ପିତା ସ୍ୱର୍ଗଃ ପିତାହି ପରମଂ ତପଃ
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ ।

'ଚିର ହାହାମୟ ଏ ଛାର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ
ଚିରଦିନ ଦୁଃଖ ପ୍ରହାରେ ଜର୍ଜର
ପଙ୍କ ଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର'
(ରାଧାନାଥ)

କାହ୍ନୁ,

ମୋର ଅନ୍ତିମ ସମୟରେ ମୋର ଦୁଃଖପୂର୍ଣ୍ଣ ଜୀବନ କାହାଣୀ ଶୁଣାଇବାକୁ ପୂର୍ବରୁ ମନସ୍ଥ କରିଥିଲି । ମୋର ଅନ୍ତିମକାଳ ଆସନ୍ନ । ମୃତ୍ୟୁର ସମୟ କେହି କହିପାରନ୍ତି ନାହିଁ । ତେବେ ଯେଉଁମାନଙ୍କର ସ୍ୱାସ୍ଥ୍ୟ ବିଜ୍ଞାନ ସମ୍ବନ୍ଧରେ କିଞ୍ଚିତ୍ ଜ୍ଞାନ ଅଛି ସେମାନେ ସେମାନଙ୍କର ମୃତ୍ୟୁକାଳ ଆସନ୍ନ ଜାଣି ସଂଯତ ଜୀବନଯାପନ କରନ୍ତି । କଳିଯୁଗରେ ପାପୀ ଚିରାୟୁଃ । ଗୋଟିଏ ଶତାବ୍ଦୀର ପ୍ରାୟ ୩ ଭାଗ କଟିଗଲା । ପିତାଙ୍କର ଏକମାତ୍ର ପୁତ୍ର ହୋଇଥିବାରୁ ସେ ମୋର ଦୀର୍ଘଜୀବନ କାମନା କରି ନିଷ୍ଠାପର ଭାବରେ ବହୁ ଧର୍ମକାର୍ଯ୍ୟ କରିଥିବା ଫଳରେ ମୁଁ ଏ ପର୍ଯ୍ୟନ୍ତ ପ୍ରାଣଧାରଣ କରି ରହିଛି । ମୋର ଜୀବନ କାହାଣୀ ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ । ମୁଁ କିପରି ଭାବରେ ଜୀବନ ଗଠନ କରିଛି ତାହା ଶୁଣାଇବାକୁ ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେ କରୁଛି ।



"ସୀଦନ୍ତି ମମ ଗାତ୍ରାଣି, ମୁଖଂ ଚ ପରିଶୁଷ୍ୟତି ।
ବେପଥୁଶ୍ଚ ଶରୀରେ ମେ, ରୋମହର୍ଷଶ୍ଚ ଜାୟତେ ॥"
"ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍, ତ୍ୱକ୍ ଚୈବ ପରିଦହ୍ୟତେ ।
ନ ଚ ଶକ୍ନୋମ୍ୟବସ୍ଥାତୁଂ, ଭ୍ରମତୀବ ଚ ମେ ମନଃ ॥"
(ପ୍ରଥମୋଽଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୨୯ ଓ ୩୦)

ଏ ସର୍ବେ ମୋ ବନ୍ଧୁ ଅଟନ୍ତି ।
ଯୁଦ୍ଧ ଆଶାରେ ଆସିଛନ୍ତି ॥
ତାହାଙ୍କୁ ଦେଖି ଅଙ୍ଗ ମୋର ।
କମ୍ପିତ ଶିଥିଳ ଆବର ॥
ମୁହଁ ଶୁଖଇ ଦେହ ଥରେ ।
ରୋମ ଉଦ୍‌ଗମ ଶରୀରରେ ॥
ମୋ ହାତୁ ଗାଣ୍ଡିବ ଖସଇ ।
ଦେହର ଚର୍ମ ଲୋଳ ହୋଇ ॥
ମୋହର ଚିତ୍ତ ସ୍ଥିର ନୋହି ।
ମନ ମୋ ସର୍ବଦା ଭ୍ରମଇ ॥

## ଜନ୍ମ :

ମୋର ଜନ୍ମ ୧୩୧୩ ସାଲ ମେଷ (ବୈଶାଖ) ୧୩ ଦିନ । ସେ ସମୟରେ ଘଣ୍ଟାର ପ୍ରଚଳନ ନଥିଲା । ସ୍ତ୍ରୀ ମାନେ ଘରେ ସନ୍ତାନ ପ୍ରସବ କରୁଥିଲେ । ଦିବା ଭାଗରେ ଆକାଶରେ ସୂର୍ଯ୍ୟଙ୍କର ଅବସ୍ଥାନ ଓ ରାତ୍ରିରେ ଚନ୍ଦ୍ର ଓ ନକ୍ଷତ୍ରର ଅବସ୍ଥିତି ଦେଖି ଲଗ୍ନ ନିରୂପଣ କରାଯାଉଥିଲା । ତେଣୁ ଅଧିକାଂଶ ଜନ୍ମ ଜାତକ ଠିକ୍‌ଭାବରେ କରାଯାଇପାରୁ ନଥିଲା । ଆକାଶ ମେଘାଚ୍ଛନ୍ନ ଥିଲେ ଜନ୍ମ ଜାତକ ସଠିକ୍ ଭାବରେ ତିଆରି କରିବା କଷ୍ଟକର ହେଉଥିଲା । ମୋର ରାଶି କର୍କଟ ଓ ନକ୍ଷତ୍ର ପୁଷ୍ୟା । ଚନ୍ଦ୍ରଙ୍କର ଗୃହ କର୍କଟ ସ୍ଥାନରେ । ଶୁଭଚନ୍ଦ୍ର ନିଜ ଗୃହରେ ଥିଲେ ଲୋକ ଦୀର୍ଘଜୀବୀ ହୁଏ । ଗ୍ରହମାନଙ୍କ ମଧ୍ୟରେ କେବଳ ବୃହସ୍ପତି ଓ ଶୁକ୍ର ଶୁଭଗ୍ରହ ଅଟନ୍ତି । ଏହି ଦୁଇ ଶୁଭ ଗ୍ରହ ମୋର ଜାତକରେ ଏକାଦଶରେ ଥିବାରୁ ଶୁଭଫଳ ପ୍ରଦାନ କରିଅଛନ୍ତି । ଶନି, ରାହୁ ଓ କେତୁ ନୀଚ ସ୍ଥାନରେ ଥିବାରୁ ମୋର ବାଲ୍ୟକାଳରୁ ଶାରୀରିକ ଦୁର୍ବଳତା ରହିଅଛି ।

## ବାଲ୍ୟକାଳ :

ମୋର ଜନ୍ମ ସମୟକୁ ପିତାଙ୍କର ବୟସ ୩୨ ବର୍ଷ । ମୋ ଜନ୍ମପୂର୍ବରୁ ଗୋଟିଏ କନ୍ୟା ଜାତ ହୋଇଥିଲା । ଜନ୍ମର ଅଳ୍ପ ଦିନ ପରେ ତାର ମୃତ୍ୟୁ ହୋଇଥିଲା । ମୋର ଜନ୍ମ ସମୟରେ ଆସାମ ଯାଇ ପିତାମହ ଯାତ୍ରୀ ବ୍ୟବସାୟ କରୁଥିଲେ । ତେଣୁ ମୋର ଲାଳନ ପାଳନ ଭାର ମାତା ଓ ପିତାମହୀଙ୍କ ଉପରେ ନ୍ୟସ୍ତ ଥିଲା । ସେ ସମୟରେ ଗର୍ଭଜାତ ଶିଶୁ ମାନେ କିଛି ଦିନ ମାତୃ କ୍ଷୀର ପାନ କରିବା ପରେ ଦାନ୍ତ ଉଠିବା ପୂର୍ବରୁ ସେମାନଙ୍କୁ ଚାଉଳ ଖଳି ଦିଆଯାଉଥିଲା । ଧନୀ ଘରର ପିଲାମାନେ ଗୋଦୁଗ୍ଧ ପାନ କରୁଥିଲେ । ଆଧୁନିକ ବୈଜ୍ଞାନିକ ପ୍ରଣାଳୀରେ ପ୍ରସ୍ତୁତ ଶିଶୁ ଖାଦ୍ୟ ଦୁର୍ଲଭ ଥିଲା । ତେଣୁ ଅଧିକ



"ନିମିତ୍ତାନି ଚ ପଶ୍ୟାମି, ବିପରୀତାନି କେଶବ ।
ନ ଚ ଶ୍ରେୟୋଦ୍ଧନୁପଶ୍ୟାମି, ହତ୍ୱା ସ୍ୱଜନମାହବେ ॥"
"ନ କାଂକ୍ଷେ ବିଜୟଂ କୃଷ୍ଣ, ନ ଚ ରାଜ୍ୟଂ ସୁଖାନି ଚ ।
କିଂ ନୋ ରାଜ୍ୟେନ ଗୋବିନ୍ଦ,
କି ଭୋଗୈର୍ଜୀବିତେନ ବା ॥"
(ପ୍ରଥମୋଦ୍ଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୩୧ ଓ ୩୨)

ଯେତେ ବିପରୀତ ଲକ୍ଷଣ ।
ସକଳ ଦେଖେ ମୋ ନୟନ ॥
ନାଶି ବନ୍ଧୁ ଆତ୍ମୀୟଗଣ ।
କି ଯଶ ଲଭିବି ମୁଁ ପୁଣ ॥
ହେ କୃଷ୍ଣ ଏପରି ଯୁଦ୍ଧରେ ।
ପୁଣି ହିଁ ରାଜ୍ୟର ସୁଖରେ ॥
ନାହିଁ ମୋହର ପ୍ରୟୋଜନ ।
ନାଶିଣ ନିଜ ନିଜ ଧର୍ମ ॥
ଏ ପ୍ରାଣ ସାମ୍ରାଜ୍ୟ ସୁଖରେ ।
ଧରି ରହିବି କି ହେତୁରେ ॥

ସଂଖ୍ୟାରେ ଶିଶୁ ମୃତ୍ୟୁ ଦେଖାଯାଉଥିଲା । ବାଲ୍ୟ ବିବାହ ପ୍ରଥା ସମାଜରେ ପ୍ରଚଳିତ ହେବାରୁ ସ୍ତ୍ରୀ ମାନେ ଅଧିକ ସଂଖ୍ୟାରେ ଶିଶୁ ପ୍ରସବ କରୁଥିଲେ । ଏପରିକି ଗୋଟିଏ ପରିବାରରେ ୧୦,୧୨ ଶିଶୁ ପ୍ରସବ ହେଉଥିଲେ ଓ ଅକାଳ ମୃତ୍ୟୁ ବରଣ କରୁଥିଲେ । ମୋର ଜନ୍ମ ପରେ ମୋର ମାତା ଆଉ ସନ୍ତାନ ଜନ୍ମ କରିନଥିଲେ । ପିତା ବିଦେଶରେ ଥାଇ ମଧ ମୋ ସକାଶେ ଗାଈ କ୍ଷୀର ବ୍ୟବସ୍ଥା କରିଥିଲେ । ତାପରେ ଖଳି ଓ ପରେ ଅନ୍ନ ପ୍ରାଶନ ହେଲା । ନିୟମିତ ଭାବରେ ଘନ ଆଉଟା ଦୁଗ୍ଧ ଖାଇବା ଫଳରେ ମୋର କୃମି ରୋଗ ଦେଖାଗଲା । ସେ ସମୟରେ ଦୁଗ୍ଧରେ ପାଣି ମିଶାଇ ଶିଶୁମାନଙ୍କୁ ଦିଆଯାଉ ନଥିଲା । ପାଣିମିଶା ଦୁଗ୍ଧ ଖାଇଲେ କଫ, ସର୍ଦ୍ଦିହେବ ଭ୍ରାନ୍ତ ଧାରଣା ଲୋକମାନଙ୍କର ଥିଲା । ବାରମ୍ବାର କୃମିରୋଗରେ ଆକ୍ରାନ୍ତ ହେବାରୁ ମୋର ପିତାମହୀ ପ୍ରତି ୭ ଦିନରେ ସତ୍ୟବାଦୀ ଡାକ୍ତରଖାନାରୁ ସାଣ୍ଟୋନିନ୍ ଆଣି ମୋତେ ଦେଉଥିଲେ । ସାଣ୍ଟୋନିନ୍ କୃମି ନାଶକ ହେଲେ ମଧ ଶରୀର ପକ୍ଷରେ କ୍ଷତି କାରକ । ଆଜିକାଲି କୃମି ନାଶକ ସାଣ୍ଟୋନିନ୍ ଦିଆଯାଉନାହିଁ ।

**ବାଲ୍ୟଶିକ୍ଷା :**

ମୋର ଜନ୍ମ ସମୟରେ ଅର୍ଥାତ ୧୯୦୬ ମସିହାରେ ଆମ ଗ୍ରାମରେ ଗୋଟିଏ ମଧ ଭର୍ଣ୍ଣାକୁଲାର ସ୍କୁଲ ଥିଲା । କିନ୍ତୁ ଚାଟଶାଳିର ପାଠପଢ଼ା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ମାଟିବଂଶ ଅବଧାନ ବୋଲି ଗୋଟିଏ ସଂପ୍ରଦାୟ ଚାଟଶାଳିରେ ନିଯୁକ୍ତ ହୋଇ ଶିଶୁମାନଙ୍କୁ ଶିକ୍ଷା ଦେଉଥିଲେ । ସେମାନେ ଅଭିଭାବକଙ୍କ ଘରେ ପାଳିକରି ଖାଉଥିଲେ କିମ୍ଵା ଛଞ୍ଚା ନେଉଥିଲେ । ଗଣିତ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ପିଲାମାନେ ବଳିତା ଖଡ଼ିରେ ବର୍ଣ୍ଣ ଶିକ୍ଷାକରି ତତ୍‌ପରେ ପର କଲମରେ ଲେଖୁଥିଲେ । ନିବ୍ ଲାଗିଥିବା କଲମ ସେତେବେଳେ ପ୍ରାୟ ନଥିଲା । ଦଲିଲ ପ୍ରଭୃତି ସେହି ପର କଲମରେ



"ଏତାନ୍ନ ହନ୍ତୁମିଛାମି,
ଘ୍ନତୋଽପି ମଧୁସୂଦନ ।
ଅପିତ୍ରୈଲୋକ୍ୟରାଜ୍ୟସ୍ୟ,
ହେତୋଃ କିଂନୁମହୀକୃତେ ॥
"ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ,
କାପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ ।
ପାପମେବାଶ୍ରେୟେଦସ୍ମାନ୍,
ହତ୍ୱୈତାନାତତାୟିନଃ ॥"
(ପ୍ରଥମୋଽଧ୍ୟାୟଃ - ସୈନ୍ୟ ଦର୍ଶନ ଯୋଗଃ - ଶ୍ଳୋକ-୩୫ ଓ ୩୬)

ଶୁଣନ୍ତୁ ହେ ମଧୁସୂଦନ ।
ଏମାନେ ମୋତେ ବିନାଶିଣ ॥
ଏହି ଯେ ପୃଥିବୀ ସାମାନ୍ୟ ।
ଏହା କେ କରଇ ଗଣନ ॥
ଯେବେ ତ୍ରୈଲୋକ୍ୟ ମିଳେ ଆସି ।
ନ ଇଛେ ଏହାଙ୍କୁ ବିନାଶି ॥
କୌରବଗଣ କଲେ ନାଶ ।
କରିବ ମୋତେ ପାପ ସ୍ପର୍ଶ ॥
ହୁଅନ୍ତୁ ସେହି ଆତତାୟୀ ।
ଯାଙ୍କ ବିନାଶେ ପୁଣ୍ୟ ନାହିଁ ॥

ଲେଖା ଯାଉଥିଲା । ପଣିକିଆ, କଡାଗଣ୍ଡା, କାନ୍ତ କୋଇଲି ଓ କେଶବ କୋଇଲି ଚାଟଶାଳି ଶିକ୍ଷାର ପ୍ରଧାନ ପାଠ୍ୟଥିଲା । ଲୋକମାନଙ୍କର ଧାରଣା ଥିଲା ଯେଉଁ ବାଳକ ଚାହାଳିରେ ପାଠପଢ଼ିଛି ସେ କେବେହେଲେ ଗଣିତରେ ଦୁର୍ବଳ ହେବ ନାହିଁ । ତାହା ମଧ୍ୟ ମୁଁ ଅନୁଭବରେ ଜାଣିଛି । ମାଟିବଂଶ ଅବଧାନ ମାନେ ବି ନିଷ୍ଠୁର ଭାବରେ ଦଣ୍ଡ ଦେଉଥିଲେ । ତଥାପି ଅଭିଭାବକ ମାନେ ନୀରବ ରହୁଥିଲେ । ମାଡ଼ ଭୟରେ ଅନେକ ପିଲା ଚାହାଳିକୁ ନଯିବା ଫଳରେ ନିରକ୍ଷର ରହୁଥିଲେ । ତୋର ପିତାମହ କେବଳ ମୋ ସକାଶେ ଜଣେ ଅବଧାନ ଆମଘରେ ରଖି ତାଙ୍କୁ ଦୁଇବେଳା ଖାଇବାକୁ ଦେଇ ବାର୍ଷିକ ଟ୨୦/- ଦେଉଥିଲେ ।

ଚାଟଶାଳି ପାଠ ଶେଷକରି ଗ୍ରାମର ମଧ୍ୟ ଭର୍ଣ୍ଣାକ୍ୟୁଲର ସ୍କୁଲରେ ଅଧ୍ୟୟନକଲି । ମଧ୍ୟ ଭର୍ଣ୍ଣାକ୍ୟୁଲର ବିଦ୍ୟାଳୟରେ ଇଂରାଜୀ ଶିକ୍ଷାର ପ୍ରଚଳନ ନଥିଲା । ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ହେଡ଼ପଣ୍ଡିତ କୁହାଯାଉଥିଲା । ୬ଷ୍ଠ ଶ୍ରେଣୀ ଆରମ୍ଭରେ ବୀରପ୍ରତାପପୁର ଗ୍ରାମରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ କୃପାସିନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରଚେଷ୍ଟାରେ ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠିତ ହେବାରୁ ମୋତେ ସେହି ସ୍କୁଲରେ ଅଧ୍ୟୟନ କରିବାକୁ ପଡ଼ିଲା । ଆମ ଗ୍ରାମରେ ଆଉ କେତେକ ବାଳକ ସେଠାରେ ଅଧ୍ୟୟନ କଲେ । ଇତି ମଧ୍ୟରେ ଆମ୍ଭ ଗ୍ରାମର ଭଣ୍ଡାରି ହେତାରେ ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠିତ ହୋଇ ସେଠାରେ ସ୍ୱର୍ଗତ ଗଙ୍ଗାଧର ମହାପାତ୍ର ଶିକ୍ଷକତାକରି ଇଂରାଜୀ ଶିକ୍ଷା ଦେଲେ । ଗ୍ରାମର ମଧ୍ୟ ଭର୍ଣ୍ଣାକ୍ୟୁଲର ସ୍କୁଲ ଉଠିଯାଇଥାଏ । ଆମ୍ଭଗ୍ରାମର ଛାତ୍ରମାନେ ବୀର ପ୍ରତାପପୁର ନଯିବା ଫଳରେ ସେ ସ୍କୁଲର ଅବସ୍ଥା ଖରାପ ହେଲା । ଏହାର ସମାଧାନ କରିବା ପାଇଁ ଇନ୍‌ସପେକ୍ଟର ଆସି ଉଭୟ ଗ୍ରାମ ଦେଖି ମଧ୍ୟ ସ୍କୁଲରେ



"ମା କ୍ଲୈବ୍ୟଂ ଗଚ୍ଛ କୌନ୍ତେୟ,
ନୈତତ୍ତ୍ୱୟ୍ୟୁପପଦ୍ୟତେ ।
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ,
ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ॥"

**ଅର୍ଜ୍ଜୁନ ଉବାଚ**

"କଥଂ ଭୀଷ୍ମମହଂ ସଂଖ୍ୟେ,
ଦ୍ରୋଣଂ ଚ ମଧୁସୂଦନ ।
ଇଷୁଭିଃ ପ୍ରତିଯୋତ୍ସ୍ୟାମି,
ପୂଜାର୍ହାବରିସୂଦନ ॥"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୩ ଓ ୪)

ହେ ଶତ୍ରୁଜୟୀ ପାର୍ଥ ବୀର ।
ନ ହୁଅ ଏଥିରେ କାତର ॥
ତୁମ୍ଭର ପରି ବୀରଠାରେ ।
ନ ଶୋଭେ ଏହା କେତେବେଳେ ॥
ଦୁର୍ବଳତା ନିକୃଷ୍ଟ ଚିତ୍ତ ।
ହୃଦରୁ କର ଦୂରୀଭୂତ ॥
ହୃଦୁ ଛାଡ଼ିଣ ଏହି ଭାବ ।
ସମରେ ସଜ ହୁଅ ତବ ॥

**ଅର୍ଜ୍ଜୁନ ଉବାଚ**

ପୂଜ୍ୟ ମୋ ଭୀଷ୍ମ ଦ୍ରୋଣ ଦୁଇ ।
କେମନ୍ତେ ମୁହିଁ ଯୁଝିବଇଁ ॥
ତାଙ୍କ ଶରକୁ ପ୍ରତିଶର ।
କିପରି କରିବି ପ୍ରହାର ॥
ତାଙ୍କ ଶରୀରେ ଶସ୍ତ୍ରାଘାତ ।
କିପରି କରିବି ଅଚ୍ୟୁତ ॥

ମାଇନର ସ୍କୁଲ ପ୍ରତିଷ୍ଠା କରିବା ପାଇଁ ଆଦେଶ ଦେଇଗଲେ । ସେତେବେଳେ ଇନସ୍‌ପେକ୍ଟରଙ୍କୁ ଡ଼ିଭିଜନାଲ ଇନସ୍‌ପେକ୍ଟର କୁହାଯାଉଥିଲା । ସେ ସାହେବଥିଲେ । ସାଧାରଣତଃ ଇନସ୍‌ପେକ୍ଟର ମାନେ ଗୋରା ସାହେବ ଥିଲେ । ଡ଼ିଉକ୍ ସାହେବ ଇନସ୍‌ପେକ୍ଟର ଥିଲେ । ବୀର ହରେକୃଷ୍ଣପୁରର ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର କନିଷ୍ଠ ଭ୍ରାତା କୃଷ୍ଣଚନ୍ଦ୍ର ରଥ ସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ତାଙ୍କର ଉପାଧି Head Master ଥିଲା । ସ୍କୁଲରେ ୪ର୍ଥ ଶ୍ରେଣୀଠାରୁ ୭ମ ଶ୍ରେଣୀପର୍ଯ୍ୟନ୍ତ ଶିକ୍ଷା ଦିଆ ଯାଉଥିଲା । ୭ମ ଶ୍ରେଣୀ ପରେ ଛାତ୍ରମାନେ ମାଇନର ପାସ୍ କରୁଥିଲେ ।



"ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ, ପ୍ରଜ୍ଞାବାଦାଂଶ୍ଚ ଭାଷସେ ।
ଗତାସୂନଗତାସୂଂଶ୍ଚ, ନାନୁଶୋଚନ୍ତି ପଣ୍ଡିତାଃ ॥"
"ନ ତ୍ୱେବାହଂ ଜାତୁ ନାସଂ, ନ ତ୍ୱଂ ନେମେ ଜନାଧିପାଃ ।
ନ ଚୈବ ନ ଭବିଷ୍ୟାମଃ, ସର୍ବେ ବୟମତଃପରଂ ॥"

(ଦ୍ୱିତୀୟୋଦ୍ଧ୍ୟାୟଃ – ସାଂଖ୍ୟଯୋଗଃ - ଶ୍ଳୋକ-୧୧ ଓ ୧୨)

ଅଶୋଚନୀୟ ଯେ ଅଟଇ ।
ଶୋଚନା କିମ୍ପା ତାର ପାଇଁ ॥
ପଣ୍ଡିତ ପରି କହୁ ବାଣୀ ।
ବୃଥାରେ ଶୋକ କରୁ ପୁଣି ।
ଜ୍ଞାନୀ, ଜୀବିତ ମୃତ ପାଇଁ ।
କେବେହେଁ ଶୋକ କରେ ନାହିଁ ॥
ନଥିଲୁ ତୁମ୍ଭେ ଆମ୍ଭେ ଦୁଇ ।
ଏ ରାଜା ନଥିଲେ ତ କେହି ॥
ଯାପରେ ନ ଥିବେ ଯେ କେହି ।
ଏ କଥା ମନେ ଭାବ ନାହିଁ ॥
ଏହା ତୁ ନ ଭାବ ଅର୍ଜୁନ ।
ଏ ତୋର ମୋହର କାରଣ ॥



"ଦେହିନୋଽସ୍ମିନ୍ ଯଥା ଦେହେ,
କୌମାରଂ ଯୌବନ ଜରା ।
ତଥା ଦେହାନ୍ତରପ୍ରାପ୍ତି,
ର୍ଧୀରସ୍ତତ୍ର ନ ମୁହ୍ୟତି ॥"

(ଦ୍ୱିତୀୟୋଦ୍ଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୧୩)

ଏ ଦେହ ନାଶେ ଆତ୍ମା ନାଶ ।
ଏହା ତୁ ନ ଭାବ ନରେଶ ॥
ଶରୀରଧାରୀରେ କୌମାର ।
ଯୌବନ ଜରା ଯେ ପ୍ରକାର ॥
ଜଣାଯାଏ ଯେ ଦେହ ଥିଲେ ।
ଦେହାନ୍ତେ ଆତ୍ମା ଥାଏ ଭଲେ ॥
ବିନାଶ ହୋଇଲେ ଏ ଦେହ ।
ଆତ୍ମାର ପାର୍ଥ ନାହିଁ କ୍ଷୟ ॥
ଘଟ ବିନାଶେ ଘଟାକାଶ ।
ଯେପରି ନ ହୁଏ ବିନାଶ ॥
ସଦା ଅସ୍ତିତ୍ୱ ତାର ଥାଇ ।
ତେଣୁ ଜ୍ଞାନୀ ଯେ ନ ଚିନ୍ତଇ ॥

## ବିବାହ, ଗାର୍ହସ୍ଥ୍ୟ ଜୀବନ :

ଓଡ଼ିଶାର ଦୀର୍ଘ ୫୦ ବର୍ଷର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ସଂକ୍ଷିପ୍ତ ବିବରଣୀ ଦେବାପରେ ମୋର ଛାତ୍ର ଜୀବନ, କର୍ମମୟ ଜୀବନର ସଂକ୍ଷିପ୍ତ ବିବରଣୀ, ତୋତେ ଶୁଣାଇବାକୁ ପ୍ରୟାସୀ ହେଲି ।

ଗ୍ରାମର ବିଶ୍ୱନାଥ ମି.ଇ.ସ୍କୁଲରେ ୬ଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ମୋର ମାତୃ ବିୟୋଗ ଘଟିଲା । ସେତେବେଳକୁ ମୋର ବୟସ ୧୩ବର୍ଷ । ତତ୍ ପୂର୍ବରୁ ମୋର ଉପନୟନ ଶେଷ ହୋଇଥିଲା । ମାତାଙ୍କ ମୃତ୍ୟୁ ଦିବସ ଦିନ ପିତା ବିଦେଶରୁ ଫେରିଥାଆନ୍ତି । ମାତା ଜ୍ୱରାକ୍ରାନ୍ତ ହୋଇ ଅଳ୍ପ କେତେ ଦିନ ପରେ ଇହଧାମ ତ୍ୟାଗକଲେ । ସେତେବେଳେ ଆମର ଏ ଅଞ୍ଚଳରେ ଡାକ୍ତରି ଚିକିତ୍ସା ନଥିଲା । କେତେଜଣ ତଥାକଥିତ କବିରାଜ ଗୃହମାନଙ୍କୁ ଯାଇ ରୋଗୀଙ୍କୁ ଔଷଧ ଦେଉଥିଲେ । ସେମାନେ ନାଡ଼ି ଦେଖି ଜ୍ୱରର ନାମକରଣ କରୁଥିଲେ । ମୋର ମନେଅଛି ମୋର ମାତା ଚୈତ୍ର ଶୁକ୍ଳପକ୍ଷ ପ୍ରତିପଦା ତିଥିରେ ରାତ୍ର ଆଠ ଘଟିକା ସମୟରେ ପ୍ରାଣତ୍ୟାଗ କଲେ । ଶ୍ମଶାନକୁ ଯାଇ ମୋତେ ମୁଖାଗ୍ନି ଦେବାକୁ ପଡ଼ିଲା । ପିତାମହୀ ମଧ୍ୟ ବେମାର ଥିଲେ । ମାତାଙ୍କ ମୃତ୍ୟୁର ୪ଦିନପରେ ସେ ମଧ୍ୟ ପ୍ରାଣତ୍ୟାଗ କଲେ । ପୁତ୍ର ବଧୂର ମୃତ୍ୟୁ ସମ୍ବାଦ ତାଙ୍କୁ ଶୁଣାଇ ଦିଆଯାଇ ନଥିଲା । ପରେ ଜଣେ ରମଣୀଙ୍କ ମୁଖରୁ ବଧୂର ମୃତ୍ୟୁ ସମ୍ବାଦ ଶୁଣି ତତ୍କ୍ଷଣାତ୍ ପ୍ରାଣ ତ୍ୟାଗକଲେ । ଉଭୟ ପିତା ପୁତ୍ର ନିଆଁହୁଳା ଧରି ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ କରିବାକୁ ଯାଇଥିଲୁ । ସେ କରୁଣ ଚିତ୍ର ବର୍ତ୍ତମାନ ସୁଦ୍ଧା ମୋର ହୃଦୟ ପଟରେ ଅଙ୍କିତ ହୋଇ ରହିଅଛି । ଉଭୟଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ଶେଷହେଲା । ସେତେବେଳେ ପିତାଙ୍କର ବୟସ ୪୫ । ଗ୍ରାମର କେତେକ ବ୍ୟକ୍ତି ପୁନର୍ବିବାହ କରିବାକୁ ତାଙ୍କୁ ଉପଦେଶ ଦେଲେ । ସେ ସମୟରେ ୬୦ବର୍ଷ ବୟସରେ ଲୋକ ଅପ୍ରାପ୍ତ ବୟସ୍କା ବାଳିକା ବିବାହ କରୁଥିଲେ । କେବଳ ମୋର ଭାବୀ ଜୀବନ ଦୁଃଖମୟ ହେବ ଜାଣି ସେ ପୁନର୍ବିବାହ କରିବାକୁ ଇଚ୍ଛା ନକରି ତାଙ୍କର ଜ୍ୟେଷ୍ଠା ବିଧବା ଭଗିନୀଙ୍କୁ ବୀରଗୋବିନ୍ଦପୁରରୁ ଅଣାଇ ଘରେ ରଖିଲେ । ସେ ନିଃସନ୍ତାନା ଥିଲେ । ସେ ମୋର ଲାଳନ ପାଳନର ଦାୟିତ୍ୱ ବହନ କଲେ ଓ ପିତା ବିଦେଶ ଗମନ କଲେ ।

ମୋର ପିଉସୀ ମାତ୍ର ଏକବର୍ଷ ରହି ଆମଘରେ ରହିବାକୁ ଅନିଚ୍ଛା ପ୍ରକାଶ କରିବାରୁ ପିତା ବାଧହୋଇ ମୋତେ ବିବାହ ଦେବାକୁ ସ୍ଥିର କରି କନ୍ୟା ଅନ୍ୱେଷଣରେ ଲାଗିଲେ । ତାଙ୍କର ଏକମାତ୍ର ଇଚ୍ଛାଥିଲା ଜଣେ ବିଧବା ରମଣୀ ହୋଇଥିବ ଓ ତା'ର ଏକମାତ୍ର କନ୍ୟାଥିବ, ଭୂସମ୍ପତ୍ତି କିଛି ନଥିବ ଓ ସେ କନ୍ୟାକୁ ନେଇ ଆମ ଗୃହରେ ରହି ମୋର ଓ ତାଙ୍କ କନ୍ୟାର ଯତ୍ନ ନେବେ । ଏପରି ପାତ୍ରୀ ଅନ୍ୱେଷଣ କରିବାକୁ ଲାଗିଲେ । ଏପରି ଲୋକ ପାଇବା କଷ୍ଟକର ହେଲା । ସେପରି ସୁଯୋଗ ନ ମିଳିଲେ ପିତା ମୋତେ ସଙ୍ଗରେ ନେଇ ଆସାମ ଯିବାକୁ ଦୃଢ଼ ସଙ୍କଳ୍ପ ହେଲେ । ଦୈବାତ୍ ଶ୍ରୀ ରାମଚନ୍ଦ୍ର ପୁରରେ ସେହିପରି ଜଣେ ବିଧବା ରମଣୀ ଥିବାର ଜାଣି ତାହାଙ୍କୁ କହିବାରୁ ସେ ତାଙ୍କର ପାଳିତା କନ୍ୟାକୁ ବିବାହ ଦେବାପାଇଁ ସମ୍ମତି ପ୍ରଦାନ କଲେ । ସେ ବାଳଶ୍ରୀ ବିଧବା ଥିଲେ । ଭୂସମ୍ପତ୍ତି କିଛି ନଥିଲା । ଜଣେ ପୋଷ୍ୟ ପୁତ୍ର ଗ୍ରହଣ କରି ତାଙ୍କୁ ବିବାହ ଦେଇଥିଲେ । ତୋର

ମାତାମହୀଙ୍କର ପିତ୍ରାଳୟ ପ୍ରତାପ ପୁରୁଷୋତ୍ତମପୁର । ତାଙ୍କର ଜ୍ୟେଷ୍ଠଭ୍ରାତା ଅବସ୍ଥାପନ୍ନ ଲୋକଥିଲେ । ସେ ତୋର ଦୀନୁମାମୁର ପିତାମହ । ମୋର ବିବାହ ସମୟକୁ ସେ ପରଲୋକଗତ ହୋଇଥିଲେ । ସେ ନିଃସନ୍ତାନ ଥିବାରୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ଦୀନୁମାମୁ ତାଙ୍କର ପୁତ୍ର । ତୋର ମାତାଙ୍କର ମାତାମହୀ ଜୀବିତ ଥିଲେ । ତାଙ୍କର ଏକମାତ୍ର କନ୍ୟା ପାର୍ବତୀ ଦେବୀ ଶ୍ରୀରାମଚନ୍ଦ୍ରପୁର ଶ୍ରୀରାମଚନ୍ଦ୍ର ତ୍ରିପାଠୀଙ୍କୁ ବିବାହ କରିଥିଲେ । ତାଙ୍କର ୪ଗୋଟି ପୁତ୍ର ଓ ଏକମାତ୍ର କନ୍ୟାଥିଲେ । ତୋର ମାତାମହୀ ତାଙ୍କଠାରୁ କନ୍ୟା ଆଣି ବାଲ୍ୟକାଳରୁ ପାଳି ମୋତେ ସମ୍ପ୍ରଦାନ କଲେ । ମୋର ୧୪ ବର୍ଷ ବୟସ ସମୟରେ ବିବାହ ହେଲା । ସେତେବେଳକୁ ତାର ବୟସ ୯ବର୍ଷଥିଲା ।

ବିବାହ ପରେ ତୋର ମାତାମହୀ ଆମଘରେ ରହିଲେ । ତାଙ୍କର ପୋଷ୍ୟପୁତ୍ର ଓ ପୁତ୍ରବଧୂ ଗ୍ରାମରେ ରହିଲେ । ମାତାମହୀଙ୍କ ଜୀବିତାବସ୍ଥାରେ ତାଙ୍କର ପୁତ୍ର ଓ ବଧୂ ପ୍ରାଣତ୍ୟାଗ କଲେ । ସେ ବଂଶ ଲୋପହେଲା । ତୋର ମାତାମହଙ୍କର ନାମ ଅନନ୍ତ ତ୍ରିପାଠୀ ଓ ମାତମହୀଙ୍କର ନାମ ଅନ୍ନପୂର୍ଣ୍ଣା ଦେବୀଥିଲା । ମୋର ବିବାହ ସମୟରେ ତୋର ପ୍ରକୃତ ମାତାମହ ରାମଚନ୍ଦ୍ର ତ୍ରିପାଠୀ ଓ ତାଙ୍କର ପତ୍ନୀ ଜୀବିତ ଥିଲେ ।

ମାଇନର ପାସ୍ କରିବା ପରେ ତୋର ପିତାମହ ମୋତେ ଗ୍ରାମର ପ୍ରାଇମେରୀ ସ୍କୁଲରେ ୨ୟ ଶିକ୍ଷକ ଭାବରେ ରଖାଇ ବିଦେଶ ଯାତ୍ରାକଲେ । କିନ୍ତୁ ସେଠାରେ ରହିଥିଲେ ମୁଁ ଟ୬/- ପାଇଥାନ୍ତି । ସେଠାରେ କିନ୍ତୁ ଅଳ୍ପକିଛି ଦିନ ଶିକ୍ଷକତା କରିଥିଲି । ମୁଁ ୧୯୨୨ ମସିହାରେ ଅର୍ଥାତ୍ ୧୬ ବର୍ଷ ବୟସରେ ମାଇନର ପାସ୍ କରିଥିଲି । ବର୍ତ୍ତମାନ ପୁରୀର କଲେକ୍ଟର ଶ୍ରୀ ସଚ୍ଚିଦାନନ୍ଦ ରଥଙ୍କର ପିତା କାଶୀନାଥ ରଥ ଦିନେ ଗ୍ରାମକୁ ଆସି ମୋତେ ଦେଖିଲେ । ମୁଁ ତାଙ୍କର ଅପରିଚିତ ଥିଲି । ସେ ମୋତେ ପଚାରି ମୋର ଉଚ୍ଚଶିକ୍ଷା ପାଇବା ଇଚ୍ଛା ଜାଣିପାରି ମୋତେ ସଙ୍ଗରେ ନେଇ ପୁରୀ ଗଲେ । ତାଙ୍କର ତତ୍କାଳୀନ ବୟସ ୨୨ ବର୍ଷଥିଲା । ସେ ଆମ ଗାଁ ଜଗନ୍ନାଥ ରାଜଗୁରୁଙ୍କର କନ୍ୟାଙ୍କୁ ବିବାହ କରିଥିଲେ । ବର୍ତ୍ତମାନ ତାଙ୍କର ବିଧବା ପତ୍ନୀ ଅଛନ୍ତି । ତାଙ୍କର ଦଦେଇପୁଅ ଭାଇ ଆମଗ୍ରାମର ସ୍ୱର୍ଗତ ପଣ୍ଡିତ ଜଗନ୍ନାଥ ରଥ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକତା କରୁଥିଲେ । ସେ କଟକ ନର୍ମାଲ ଟ୍ରେନିଂ ସ୍କୁଲ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକ ହେଲେ । ପରେ ଘରୋଇ ଭାବରେ କାବ୍ୟ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କାବ୍ୟତୀର୍ଥ ହେଲେ । ଚନ୍ଦ୍ରମୋହନ ମହାରଣା ନର୍ମାଲ ଟ୍ରେନିଂ ସ୍କୁଲରେ ତାଙ୍କର ଶିକ୍ଷକଥିଲେ । ସେତେବେଳେ କାବ୍ୟକଣ୍ଠ ସଦାଶିବମିଶ୍ର ଜିଲ୍ଲା ସ୍କୁଲ୍‌ର ହେଡ୍ ପଣ୍ଡିତ ଥିଲେ ଓ କାଳି ପ୍ରସନ୍ନ ଗାଙ୍ଗୁଲି ପୁରୀଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥାଇ ମାସିକ ଟ୫୦୦/- ବେତନ ପାଉଥିଲେ ।

କାଶୀନାଥ ରଥ ପୁରୀରେ ଗୋଟିଏ ଲୁଗା ଦୋକାନରେ ମାସିକ ଟ୨୫/- ବେତନ ନେଇ ଲୁଗା ବିକ୍ରୟ କରୁଥିଲେ । ସେ ତାଙ୍କ ଭାଇନାଙ୍କୁ ମୋର ପରିଚୟ ଦେଇ ମୋର ନାମ ୮ମ ଶ୍ରେଣୀରେ ଲେଖାଇ ଦେଲେ । ତୋର ପିତାମହ ଗ୍ରାମରେ ନଥିଲେ । ମୁଁ କାହାକୁ କିଛି ନକହି ସେ ଘର ଖର୍ଚ୍ଚ ପାଇଁ ଦେଇ ଯାଇଥିବା ଟ୨୦/- ରୁ ଟ୧୦/- ନେଇ ଚାଲି ଯାଇଥିଲି । ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇ ଗ୍ରାମକୁ ଆସି ମୋର ନାମ ଲେଖା ବିଷୟ

ଘରେ ପ୍ରକାଶ କଲି । ହେରାଗୋହିରୀ ସାହିରେ ତୋର ପ୍ରକୃତ ମାତାମହୀଙ୍କର ମାଉସୀ ଘର ଥିଲା । ତୋର ମାତାମହୀ ଯେ କି ଆମ ଘରେ ଥିଲେ ସେ ପୁରୀ ଯାଇ ମୋର ଖାଇବା ପିଇବାର ବ୍ୟବସ୍ଥା ତାଙ୍କ ଘରେ କରାଇ ଦେଲେ ଓ ମୁଁ ବ୍ରାହ୍ମଣ ସମିତି ଛାତ୍ରାବାସରେ ରହି ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲି । ପରେ ତୋର ପିତାମହ ମୋ ଚିଠି ପାଇ ବିଦେଶରୁ ମୋର ପଢ଼ା ଖର୍ଚ୍ଚ ସକାଶେ ପ୍ରତିମାସରେ ଟ୧୦/- ପଠାଇଲେ । ମୋର ପାନ ଭୋଜନ ସକାଶେ ପ୍ରତି ମାସରେ ଘରୁ ୧୨ ସେର ଚାଉଳ ଓ ଟ୨/-ତାଙ୍କ ଘରକୁ ଦିଆଯାଉଥିଲା । ବ୍ରାହ୍ମଣ ସମିତିରେ ଛାତ୍ରାବାସରେ ଭଡା ନଥିଲା । ପଣ୍ଡିତ ଜଗନ୍ନାଥ ରଥ ଛାତ୍ରାବାସର ପରିଚାଳକ ଥିଲେ । ଛାତ୍ରାବାସରେ ୨୦ଜଣ ଛାତ୍ର ରହିଥିଲେ । ପୁରୀ ଜିଲ୍ଲା ସ୍କୁଲରେ ୧୯୨୨ ମସିହାରେ ୩୦୦ଜଣ ଛାତ୍ର ଅଧ୍ୟୟନ କରୁଥିଲେ । ୪ର୍ଥ ଶ୍ରେଣୀରୁ ଆରମ୍ଭ କରି ୧୧ ଦଶ ଶ୍ରେଣୀ ପର୍ଯ୍ୟନ୍ତ class ଥିଲା । ୮ମ ଶ୍ରେଣୀ ଠାରୁ ୧୧ଦଶ ଶ୍ରେଣୀ ପର୍ଯ୍ୟନ୍ତ section ରହିଥିଲା । ସ୍କୁଲ୍‌ର ଶିକ୍ଷକ ସଂଖ୍ୟା ୨୦ ଥିଲା । ମୁଁ ୮ମ ଶ୍ରେଣୀ (A)section ରେ ନାମ ଲେଖାଇ ପଢ଼ିଲି । ସେତେବେଳେ ମଫସଲ ଅଞ୍ଚଳରୁ ଯାଉଥିବା ପିଲା ମାନଙ୍କର ସାଧାରଣ ଜ୍ଞାନର ଅଭାବ ରହିଥିଲା । ବଙ୍ଗାଳୀ ଛାତ୍ର ମାନେ ଅଧିକ ସଂଖ୍ୟାରେ ପଢୁଥିଲେ । ସ୍କୁଲ୍‌ରେ ଜଣେ ହେଲେ ଛାତ୍ରୀ ନଥିଲେ । ପୁରୀରେ ମଧ୍ୟ ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ନଥିଲା । କେବଳ ବାଳିକା ମାନଙ୍କ ସକାଶେ ମାର୍କଣ୍ଡେଶ୍ୱର ସାହିରେ ଗୋଟିଏ ମାଇନର ସ୍କୁଲ୍ ଥିଲା ପୁରୀରେ ହରଚଣ୍ଡୀ ସାହି ମାଇନର ସ୍କୁଲ୍ ଏକମାତ୍ର ବାଳକ ସ୍କୁଲ୍ ଥିଲା । ତାହା ବର୍ତ୍ତମାନ ଗଦାଧର ହାଇସ୍କୁଲ୍ ନାମରେ ନାମିତ । ପୁରୀରେ ଏକମାତ୍ର ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲ୍ ଥିଲା । ମାଇନର ପାସ୍ କରି ସେଠାରେ ଏକବର୍ଷ ଅଧ୍ୟୟନ କରିବା ପରେ ଉତ୍ତୀର୍ଣ୍ଣ ଛାତ୍ରମାନେ ପ୍ରାଇମେରୀ ସ୍କୁଲ୍‌ରେ ମାସିକ ଟ୧୨/- ବେତନରେ ହେଡ୍ ପଣ୍ଡିତ ହୋଇ କାର୍ଯ୍ୟ କରୁଥିଲେ । ପୁରୀ ଜିଲ୍ଲା ସ୍କୁଲ୍‌ରେ ସେତେବେଳେ ବହୁ ମେଧାବୀ ଛାତ୍ର ଥିଲେ । ୪ ଜଣ ଏମ୍.ଏ ପାସ୍ ଶିକ୍ଷକ ଥିଲେ । କଟକ ରେଭେନ୍ସା କଲିଜିଏଟ୍ ସ୍କୁଲ୍ ର ସେପରି ସୁନାମ ନଥିଲା । ଏକାଦିକ୍ରମେ ୪ବର୍ଷ କାଳ ପୁରୀ ଜିଲ୍ଲା ସ୍କୁଲ୍ ଓଡ଼ିଶାକୁ ମିଳୁଥିବା ଏକମାତ୍ର Competitive Scholarship ଟ୨୦/- ପାଇ ଓଡ଼ିଶାର ଅନ୍ୟାନ୍ୟ ହାଇସ୍କୁଲ୍ ମଧ୍ୟରେ ବିଶେଷ ସୁନାମ ଅର୍ଜନ କରିଥିଲା ।

ମୋର ମନେ ଅଛି ମୁଁ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ପ୍ରଥମ ବାର୍ଷିକ ପରୀକ୍ଷାରେ କେବଳ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ପାସ୍ କରି ଅନ୍ୟାନ୍ୟ ବିଷୟରେ ଫେଲ୍ ହୋଇଥିଲି । ମୋର ଜଣେ ସହାଧ୍ୟାୟୀ ଶ୍ରୀ ଗୋପାଳ ରଥ ବ୍ରାହ୍ମଣ ସମିତିରେ ଥାଇ ଜିଲ୍ଲା ସ୍କୁଲ୍‌ରେ ପଢୁଥାନ୍ତି । ତାଙ୍କର ଗଣିତ ଶାସ୍ତ୍ରରେ ଭଲ ଜ୍ଞାନ ଥିଲା । କିନ୍ତୁ ବାଲ୍ୟକାଳରୁ ମୋର ଗଣିତ ପ୍ରତି ବିତୃଷ୍ଣା ଆସିଥିଲା । ଗୋପାଳ ରଥ ସାହିତ୍ୟରେ ଦୁର୍ବଳ ଥିଲେ । ଆମେ ୨ଜଣ ଗୋଟିଏ ବେଞ୍ଚରେ ଏକତ୍ର ବସୁ । ଶିକ୍ଷକମାନଙ୍କର ଆମ ଦୁଇଜଣଙ୍କ ପ୍ରତି ଅତି ତୁଚ୍ଛ ଧାରଣା ଥିଲା । କିନ୍ତୁ କଠୋର ପରିଶ୍ରମ ଫଳରେ ଆମେ ଦୁଇଜଣ ମେଧା ସହିତ ବାର୍ଷିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲୁ । ପ୍ରଧାନ ଶିକ୍ଷକ ଆସି ଉତ୍ତୀର୍ଣ୍ଣ ଘୋଷଣା କରିଯାଇଥିଲେ । ସେ ଆସିବା ପୂର୍ବରୁ ଆମର ଶ୍ରେଣୀ ଶିକ୍ଷକ ପଦ୍ମଚରଣ ପଟ୍ଟନାୟକ ଏମ୍.ଏ. ଆସ୍ତ

ଦୁଇଜଣଙ୍କୁ ଡ଼ାକି ଆମର ଭୂୟସୀ ପ୍ରଶଂସା କରିଥିଲେ । ଆମ ଶ୍ରେଣୀର ଶ୍ରୀ ରତ୍ନାକର ଷଡ଼ଙ୍ଗୀ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ସେ ବର୍ତ୍ତମାନ ଜୀବିତ । ସେ କେଉଁଠାରେ ଅବସ୍ଥାନ କରୁଛନ୍ତି କହିପାରିବି ନାହିଁ । ସେ ପୁରୀ ଜିଲ୍ଲା ସ୍କୁଲ୍‌ରୁ ପ୍ରଥମ ଶ୍ରେଣୀରେ ପାସ୍ କରି ପ୍ରତିଯୋଗିତାମୂଳକ ବୃତ୍ତି (Competitive Scholarship) ପାଇ ରେଭେନ୍ସା କଲେଜରେ ଅଧ୍ୟୟନ କଲେ । ରେଭେନ୍ସା କଲେଜରୁ B.A. ପାସ୍ କରି ପାଟନା କଲେଜରେ mathematicsରେ 1st class ରେ 1st ହୋଇ ଡ଼େପୁଟି ମାଜିଷ୍ଟ୍ରେଟ୍ ହେଲେ ଓ ପରେ ଓଡ଼ିଶାର ମୁଖ୍ୟ ସଚିବ ପଦରେ (Chief Secretary post) କିଛିଦିନ ରହି ବିଦାୟ ନେଲେ । ସେ ନିମାପଡ଼ାର ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ଓ ଗରିବ ଥିଲେ । ସେ ମୋର ଜନୈକ ଘନିଷ୍ଠ ବନ୍ଧୁଥିଲେ ।

ଅଷ୍ଟମ ଶ୍ରେଣୀରୁ meritରେ ପାସ୍ କରି ଓ ଉତ୍ତୀର୍ଣ୍ଣ ଛାତ୍ର ମାନଙ୍କ ମଧ୍ୟରେ ଅଷ୍ଟମ ସ୍ଥାନ ଲାଭ କରିବାରୁ ୯ମ ଶ୍ରେଣୀରେ ମୋର ପୂରା ଫ୍ରିସିପ୍ ରହିଲା ଓ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ମୋତେ ସ୍କୁଲ୍ ଦରମାରୁ ଅବ୍ୟାହତି ମିଳିଥିଲା । ଗଣିତରେ ଦୁର୍ବଳ ଥିଲେ ମଧ୍ୟ ଜ୍ୟାମିତି ଓ ବୀଜଗଣିତ (Geometry and Algebra)ରେ ମୋର ସନ୍ତୋଷଜନକ ନମ୍ବର ରହୁଥିଲା । ଅନ୍ୟାନ୍ୟ ବିଷୟରେ ଶତକରା ୬୦ ନମ୍ବର ରଖୁଥିଲି ।

ଯେଉଁ ବନ୍ଧୁଙ୍କ ଘରେ ମୋର ଖାଦ୍ୟପେୟର ବ୍ୟବସ୍ଥା କରାଯାଇଥିଲା ତାଙ୍କର ପ୍ରକୃତ ବାସସ୍ଥାନ ଆମରି ଗ୍ରାମରେ ଥିଲା । ତାଙ୍କର ସମସ୍ତ ସମ୍ପତ୍ତି ଓ ଘରଡ଼ିହ ଗଦେଇ ମଉସା ଖରିଦ କରି ନେଇଛନ୍ତି । ସେ ପୌରୋହିତ୍ୟ କର୍ମକରି ଜୀବିକାର୍ଜନ କରୁଥିଲେ । ପ୍ରତିଦିନ ପୁରୋହିତ କର୍ମ କରୁଥିବାରୁ ମାସ ମଧ୍ୟରେ ଅଧିକାଂଶ ଦିନ ମହାପ୍ରସାଦ ଭୋଜନକୁ ତାଙ୍କୁ ନିମନ୍ତ୍ରଣ କରାଯାଉଥିଲା । କେବଳ ମୋ ପାଇଁ ରାତ୍ରରେ ଭାତ ରାନ୍ଧିବାକୁ ପଡ଼ିବ ଏହି ଆଶାରେ ସେ ମୋତେ ସନ୍ଧ୍ୟା ସମୟରେ ମହାପ୍ରସାଦ ସେବନ ପାଇଁ ସାଙ୍ଗରେ ନେଉଥିଲେ । ତେଣୁ ଅପରାହ୍ନରେ ମୁଁ ଜଳଖିଆ ଖାଉ ନଥିଲି ଓ ରାତ୍ରରେ ମଧ୍ୟ ଅନ୍ନ ଭୋଜନ ପାଇଁ ତାଙ୍କ ଘରକୁ ଯାଉନଥିଲି । କ୍ରମାଗତ ଭାବରେ ଏହିପରି ଅଭଡ଼ା ଖାଇବା ଫଳରେ ମୋର thread worm ହେଲା ଓ ରାତ୍ରରେ ଅଧ୍ୟୟନ କରିପାରୁନଥିଲି । ମୋର ବାଲ୍ୟକାଳରୁ Thread worm ଥିଲା ଓ ସେହି ରୋଗରେ ଆକ୍ରାନ୍ତ ହୋଇ ବାରମ୍ବାର Santonine ବିଷାକ୍ତ ଔଷଧ ଖାଇବା ଫଳରେ ବିଶେଷ ଦୁର୍ବଳ ହୋଇପଡ଼ିଲି । ୩ବର୍ଷ ପର୍ଯ୍ୟନ୍ତ ସେହି ବନ୍ଧୁଙ୍କ ଘରେ ପାନ ଭୋଜନ କରି ଶେଷ ବର୍ଷ ତୋର ପିତାମହ ବ୍ରାହ୍ମଣ ସମିତିରେ ମୋର ଖାଦ୍ୟପେୟ ବ୍ୟବସ୍ଥା କରିଥିଲେ । ସେତେବେଳେ ୧୦ମ ଶ୍ରେଣୀରେ optional subject ନେବାକୁ ପଡୁଥିଲା । ମୁଁ Sanskrit optional ନେଇଥିଲି । ମୋର ୧୦ମ ଶ୍ରେଣୀ ବେଳକୁ କେବଳ ପୁରୀ ଜିଲ୍ଲା ସ୍କୁଲ୍‌ରେ ବିଜ୍ଞାନ ଶିକ୍ଷାର ପ୍ରଚଳନ ହେଲା । କିନ୍ତୁ ତାହା ବାଧ୍ୟତାମୂଳକ ନଥିଲା । ସେ ସମୟରେ matriculation ଓ S.L.C. ଦୁଇ ପ୍ରକାର ପରୀକ୍ଷା ଦିଆଯାଉଥିଲା । Matriculation ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଛାତ୍ରମାନେ କଲେଜରେ ନାମ ଲେଖାଉଥିଲେ । S.L.C. ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରମାନେ ଇଞ୍ଜିନିୟରିଂ ଓ ମେଡ଼ିକାଲ ସ୍କୁଲ୍‌ରେ ଅଧ୍ୟୟନ କରୁଥିଲେ ।

Competitve scholarship କେବଳ ମାଟ୍ରିକ୍ୟୁଲେସନ ପରୀକ୍ଷା ପାଇଁ ଉଦ୍ଦିଷ୍ଟ ଥିଲା । ମୁଁ ଉଭୟ S.L.C. ଓ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲି । ୧୯୨୬ ମସିହାରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ୨ୟ ଶ୍ରେଣୀ ରେ ପାଟନା ବିଶ୍ୱବିଦ୍ୟାଳୟ ରୁ ପାସ୍ କଲି । ସେହି ବର୍ଷ କେବଳ ପୁରୀ ଜିଲ୍ଲା ସ୍କୁଲ୍‌ରେ ୬ ଜଣ ପ୍ରଥମ ଶ୍ରେଣୀ ରେ ପାସ୍ କରିଥିଲେ । ପୁରୀ ଜିଲ୍ଲା ସ୍କୁଲ୍ ରୁ ୨୨ ଜଣ ଓ ଖୋର୍ଦ୍ଧା ହାଇ ସ୍କୁଲ୍‌ରୁ ୧୦ଜଣ ଏପରି ମୋଟ ୩୨ ଜଣ ଛାତ୍ର ପୁରୀ ଜିଲ୍ଲାରୁ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ମାଟ୍ରିକ୍ୟୁଲେସନ ପରୀକ୍ଷା ଦେବା ପରେ ମୋର ଦାମ୍ପତ୍ୟ ଜୀବନ ଆରମ୍ଭ ହେଲା । ସେତେବେଳକୁ ମୋର ପ୍ରକୃତ ବୟସ ୧୯ ବର୍ଷ ହୋଇଥିଲା । ଘରେ ଆଶୀର୍ବାଦ ଘର ହେଲା । ତୋର ମାତାମହୀ ମଧ ଘରେ ଥିଲେ ।

ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ କଟକ ଯାଇ ଆମ ଗ୍ରାମର ସ୍ୱର୍ଗତ ଦୟାନିଧି ମିଶ୍ରଙ୍କ ସହାୟତାରେ ରେଭେନ୍ସା କଲେଜରେ I.Aରେ ନାମ ଲେଖାଇ ବାଲୁବଜାରରେ ତାଙ୍କ ବସାରେ ରହଲି । ସେଠାରୁ ରେଭେନ୍ସା କଲେଜ ପ୍ରାୟ ୨ମାଇଲ ଦୂର । ପ୍ରତ୍ୟହ ପଦବ୍ରଜରେ ଯିବାକୁ ପଡୁଥିଲା । ପ୍ରାୟ ୨ମାସ ପରେ ମଙ୍ଗଳାବାଗରେ ଚିନ୍ତାମଣି ଶତପଥୀଙ୍କ କାଠଗୋଲାରେ ଅବସ୍ଥିତ ଗୋଟିଏ ଘରୋଇ ମେସ୍‌ରେ ରହି ଅଧ୍ୟୟନ କଲି । ମୁଁ Baker's scholarship ମାସିକ ଟ ୧୦/- ବୃତ୍ତି ପାଇଥିଲି ଓ କଲେଜର social service guildରୁ ମାସିକ ଟ ୪/- ବୃତ୍ତି ପାଉଥିଲି । ପୁରୀ ବ୍ରାହ୍ମଣ ସମିତିରୁ ମଧ ମାସିକ ଟ୪/- ସାହାଯ୍ୟ ପାଉଥିଲି । ତୋର ପିତାମହଙ୍କୁ ମାସିକ ଟ୧୦/- ଦେବାକୁ ପଡୁଥିଲା । ଏହି ଟ୧୦/- ମୋ ପାଖକୁ ପଠାଇବା ଓ ଘରକୁ ପ୍ରତିମାସରେ ଟ ୧୦/- ଦେବାକୁ ପଡୁଥିବାରୁ ତୋର ପିତାମହ ପ୍ରାୟ ୨ ବର୍ଷ କାଳ ଗ୍ରାମକୁ ଆସାମରୁ ଆସିପାରିନଥିଲେ I.A. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କଲେ ବୃତ୍ତି ପାଇବି-ଏହି ଆଶା ପୋଷଣକରି ମୋତେ କଠିନ ପରିଶ୍ରମ କରିବାକୁ ପଡ଼ିଲା । ଏପରିକି ସାରାରାତ୍ର ଉଜାଗର ରହି ଅଧ୍ୟୟନ କଲି ।

I.A. ରେ ମୋର Logic, History ଓ Sanskrit ଥିଲା । ମନୁଷ୍ୟ କର୍ମ କରେ କିନ୍ତୁ ଫଳ ଭଗବାନଙ୍କ ହସ୍ତରେ । ପରୀକ୍ଷାର ଠିକ୍ ପୂର୍ବ ଦିନ ରାତ୍ରରେ ମୋତେ ଭୀଷଣ ଜ୍ୱର ହେଲା । ମୁଁ ସଜ୍ଞାହୀନ ଅବସ୍ଥାରେ ପଡ଼ି ରହିଲି । ସେତେବେଳେ ଦୟାନିଧି ମିଶ୍ର ମୋ ପାଖରେ ରହି ବି.ଏ ପରୀକ୍ଷା ଦେଉଥାନ୍ତି । ସେ ଡ଼ାକ୍ତର ଅଣାଇ ବହୁ ଚେଷ୍ଟାକଲେ କିନ୍ତୁ ମୋର ଜ୍ୱର ଛାଡ଼ିଲା ନାହିଁ । ତେଣୁ ପରୀକ୍ଷାରୁ ବଞ୍ଚିତ ହୋଇ ଗ୍ରାମକୁ ଆସି ପୁରୀରେ ଆମ୍ଭ ଗ୍ରାମର ଏଲିମେଣ୍ଟରୀ ସ୍କୁଲ୍‌ର ପ୍ରଧାନଶିକ୍ଷକ ସ୍ୱର୍ଗତ ହରିହର ମିଶ୍ରଙ୍କ ବସାରେ ରହି ଅଧ୍ୟୟନ କରି supplementary ପରୀକ୍ଷା ଦେବାକୁ ଜୁନ୍ ମାସରେ କଟକ ଗଲି । ଦୟାନିଧି ମିଶ୍ର ମଧ ବି.ଏ. ପରୀକ୍ଷାରେ ଅକୃତ କାର୍ଯ୍ୟ ହେଲେ । ଆମର ସମସ୍ତ ପରୀକ୍ଷା ଖାତା ପାଟନା କଲେଜକୁ ଯାଉଥିଲା । ସେତେବେଳେ ପୁରୀ ଜିଲ୍ଲାରୁ ପ୍ରାୟ ୫୦ଜଣ ଛାତ୍ର କଲେଜରେ ପଢୁଥିଲେ । କଲେଜରେ ଜଣେ ମାତ୍ର ଛାତ୍ରୀ ନଥିଲେ । ୧୯୨୮ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ୨ୟ ଶ୍ରେଣୀରେ ପାସ୍ କରିବାରୁ କୌଣସି ସରକାରୀ ସାହାଯ୍ୟ ପାଇନଥିଲି । ସେହି ବର୍ଷ ଦୟାନିଧି ମିଶ୍ରେ ବି.ଏ. ପାସ୍ କଲେ । ତୋର ପିତାମହଙ୍କର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଅଗତ୍ୟା ବି.ଏ. ପଢ଼ିନପାରି ଗ୍ରାମରେ ରହିଲି । ମୋର ଛାତ୍ର ଜୀବନ ୨୨ ବର୍ଷ ବୟସରେ ଶେଷ ହେଲା ।

## କର୍ମମୟ ଜୀବନ:

୧ ୯ ୨ ୮ ମସିହା ନଭେମ୍ବର ମାସରେ ଶାସନ ଦାମୋଦରପୁର ମି.ଇ. ସ୍କୁଲରେ ମାସିକ ଟ.୩୫/- ବେତନ ପାଇ ସେଠାରେ ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତ ହେଲି । ଆମ ଗ୍ରାମର ସ୍ୱର୍ଗତ ହରିହର ରଥ ସେହି ସ୍କୁଲରେ ୨ୟ ଶିକ୍ଷକ ହୋଇ ରହିଥାନ୍ତି । ମହାମହୋପାଧ୍ୟାୟ ସ୍କୁଲର ସେକ୍ରେଟାରୀ ଓ ପ୍ରତିଷ୍ଠାତା ଥିଲେ । ସ୍କୁଲର ମୋଟ ଛାତ୍ର ସଂଖ୍ୟା ଥିଲା ୧୫ । ଶାସନ ଦାମୋଦରପୁର ମି.ଇ.ସ୍କୁଲ ଯାଇ ଦେଖିଲି ୭ମ ଶ୍ରେଣୀରେ ଜଣେ ମାତ୍ର ଛାତ୍ର ଅଛି । ନାମ ଗଙ୍ଗାଧର ମିଶ୍ର । ବର୍ତ୍ତମାନ ଜୀବିତ । ସେ ମଧ୍ୟ ସବୁ ବିଷୟରେ ଦୁର୍ବଳ । ସେତେବେଳେ କେନ୍ଦ୍ର ପରୀକ୍ଷା ହେଉଥାଏ । ଜିଲ୍ଲାର ସମସ୍ତ ମାଇନର ସ୍କୁଲର ଛାତ୍ରମାନେ ପୁରୀ ଜିଲ୍ଲା ସ୍କୁଲରେ ପରୀକ୍ଷା ଦେଉଥାଆନ୍ତି । ସ୍କୁଲ୍ ଜିଲ୍ଲା ବୋର୍ଡ଼ରୁ ମାସିକ ଟ୯୦/- ଗ୍ରାଣ୍ଟ ପାଉଥାଏ । ଯଦି ସେହି ଏକମାତ୍ର ବାଳକ ପରୀକ୍ଷାରେ ଅକୃତକାର୍ଯ୍ୟ ହୁଏ ତାହାହେଲେ ସ୍କୁଲର ଗ୍ରାଣ୍ଟ ବନ୍ଦ ହୋଇଯିବ । ଅନ୍ୟୁନ ୬୦ ଜଣ ଛାତ୍ର ନରହିଲେ ମାଇନର ସ୍କୁଲ୍ ତିଷ୍ଠି ପାରିବ ନାହିଁ । ସ୍କୁଲରେ ୪ଟି ଶ୍ରେଣୀ ଥିଲା । ଅନେକ ଲୋକଙ୍କର



ପଞ୍ଚାୟତ / ରାମହରି ନୋଡାଲ୍ ଉଚ୍ଚ ବିଦ୍ୟାଳୟ, ଶାନ ଦାମୋଦରପୁର



| ମସିହା | ବିଦ୍ୟାଳୟ ନାମ |
|---|---|
| ୧୯୨୮-୧୯୩୧ | ଶାସନ ଦାମୋଦରପୁର ମି.ଇ.ସ୍କୁଲ |
| ୧୯୩୧-୧୯୩୩ | କାକଟପୁର ମି.ଇ.ସ୍କୁଲ |
| ୧୯୩୪-୧୯୩୫ | କଟକ ସି.ଟି.ସ୍କୁଲ |
| ୧୯୩୬-୧୯୪୧ | ସତ୍ୟବାଦୀ ସ୍କୁଲ |
| ୧୯୪୧-୧୯୪୩ | ଟାଙ୍ଗୀ ମଧ୍ୟ ଇଂରାଜୀ ବିଦ୍ୟାଳୟ |
| ୧୯୪୩-୧୯୪୫ | ସତ୍ୟବାଦୀ ସ୍କୁଲରେ ୨ୟ ଥର ଶିକ୍ଷକତା |
| ୧୯୪୬-୧୯୪୯ | ସତ୍ୟବାଦୀ ସ୍କୁଲରେ ୩ୟ ଥର ଶିକ୍ଷକତା |
| ୧୯୪୯-୧୯୫୬ | ଭାର୍ଗବୀ ସ୍କୁଲ |
| ୧୯୫୭-୧୯୫୮ | ଗଦାଧର ହାଇସ୍କୁଲ |
| ୧୯୫୮-୧୯୬୯ | ଭାର୍ଗବୀ ସ୍କୁଲ |
| ପେନ୍‌ସନ୍ ପ୍ରାପ୍ତ | |

ମିଛ ନାମ ରହିଥିଲା । ପ୍ରତିଦିନ ହାଜରା ଖାତାରେ ସେମାନଙ୍କର ଉପସ୍ଥାନ ପଡୁଥିଲା । କେବଳ ମହାମହୋପାଧ୍ୟାୟଙ୍କ ଭୟରେ କର୍ତ୍ତୃପକ୍ଷ ଜାଣି ଶୁଣି କିଛି କରିପାରୁ ନଥିଲେ । ଜିଲ୍ଲା ଇନସ୍‌ପେକ୍ଟର ଆସି ବର୍ଷେ ମଧ୍ୟରେ ଥରେ ବୁଲିକରି ଯାଆନ୍ତି । ମହାମହୋପାଧ୍ୟାୟ ପୁରୀ ଜିଲ୍ଲା ସ୍କୁଲରୁ ବିଦାୟ ନେଇ ପୁରୀରେ ଅବସ୍ଥାନ କରୁଥିଲେ । ତାଙ୍କୁ ନ ଜଣାଇ ସ୍କୁଲ୍ ଦେଖିବାକୁ ଆସୁନଥିଲେ । ସେ ପୂର୍ବରୁ ସମ୍ବାଦ ଦିଅନ୍ତି ଓ Inspection ସକାଶେ କାଗଜ ପତ୍ର ପ୍ରସ୍ତୁତ ହୁଏ । ପ୍ରାୟ ୨୦ଜଣ ଛାତ୍ରଙ୍କୁ ଡ଼କାଇ ବସାଯାଏ ।

ଜିଲ୍ଲା ଇନସ୍‌ପେକ୍ଟର କୌଣସି ଶ୍ରେଣୀ ଦେଖନ୍ତି ନାହିଁ । ମହାମହୋପାଧ୍ୟାୟଙ୍କ ଘରେ ତାଙ୍କର ଖାଦ୍ୟପେୟର ବ୍ୟବସ୍ଥା କରାଯାଏ । ସେ ୨, ୩ ଘଣ୍ଟା ରହି Visitors' Book ରେ ତାଙ୍କର ମନ୍ତବ୍ୟ ଲେଖି ଚାଲି ଯାଆନ୍ତି । ସେତେବେଳେ ଲୋକନାଥ ପଟ୍ଟନାୟକ ବି.ଏ. ବି.ଇଡି ଜିଲ୍ଲା ଇନସ୍‌ପେକ୍ଟର ଥିଲେ ଓ ବ୍ରହ୍ମାନନ୍ଦ ମହାନ୍ତି ଓକିଲ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ୍ ଥିଲେ । ମାଇନର ସ୍କୁଲ୍‌ରେ ଦ୍ୱୈତ ଶାସନ ପ୍ରଣାଳୀ ଅନୁସୃତ ହେଉଥିଲା । ସ୍କୁଲ୍ ଛାତ୍ରମାନେ ଅଧା ଦରମା ଦେଉଥିଲେ । ତାହା ମଧ୍ୟ ନିୟମିତ ନଥିଲା । ମାସିକ ଟ୧୦/- ଛାତ୍ର ଦତ୍ତ ବେତନରୁ ମିଳୁଥିଲା । ସେ ସମୟରେ ମାଇନର ସ୍କୁଲ୍‌ରେ ୪ଜଣ ଶିକ୍ଷକ ରହୁଥିଲେ । ପ୍ରଧାନଶିକ୍ଷକଙ୍କ ମାସିକ ବେତନ ଟ.୫୦/-, ଦ୍ୱିତୀୟ ଶିକ୍ଷକ ଟ୩୫/, ହେଡ୍ ପଣ୍ଡିତ ଟ୨୫/- ଓ ସେକେଣ୍ଡ ପଣ୍ଡିତ ଟ୨୦/- ଥିଲା । ଜଣେ ପିଅନ ରହିବାର କଥା । ସେହି ଗ୍ରାମର ଜଣେ ବାରିକ ମାସକୁ ଟ୨/- ଦରମାନେଇ କେବଳ ସ୍କୁଲ୍ ଘର ସଫା କରି ଚାଲିଯାଏ । ଦୈନିକ ୬, ୭ ଜଣ ଛାତ୍ର ସ୍କୁଲ୍‌କୁ

ଆସୁଥାଆନ୍ତି । ଡିଭିଜନାଲ୍ ଇନସ୍‌ପେକ୍ଟର ମଧ୍ୟ ଆସନ୍ତି । ତାଙ୍କ ସହିତ ମହାମହୋପାଧ୍ୟାୟ ମଧ୍ୟ ଆସୁଥିଲେ । ତାଙ୍କର ଉପଯୁକ୍ତ ଖାଦ୍ୟପେୟ ତାଙ୍କ ଘରେ କରାଯାଉଥିଲା । ସେ ସେଠାରେ ଖାଇ ସ୍କୁଲ୍ ଭ୍ରମଣ କରି ଚାଲିଯାଆନ୍ତି । ମୋର ମନେଅଛି ଡିଭିଜନାଲ୍ ଇନସ୍‌ପେକ୍ଟର ଭବନାଥ ମୁଖାର୍ଜୀ ସ୍କୁଲ୍ ଦେଖି Visitors' book ରେ ଲେଖିଥିଲେ "The existence of the school is only due to the strenuous efforts of Pandit Mahamahopadhyaya". ଏହାର ମୂଳ କାରଣ ହେଲା ମହାମହୋପାଧ୍ୟାୟ ତାଙ୍କ ବିରୁଦ୍ଧରେ D.P.I. ଫକସ୍ ସାହେବଙ୍କୁ କହିପାରନ୍ତି । ଜିଲ୍ଲା ଇନସ୍‌ପେକ୍ଟର ତାଙ୍କୁ ପ୍ରାଣରେ ଭୟକରନ୍ତି । ଗ୍ରାମ ନିକଟରେ ଗୋଟିଏ ସଂସ୍କୃତ ଟୋଲ ପଣ୍ଡୁଆ ଗ୍ରାମରେ ଥିଲା । ବର୍ଷ ମଧ୍ୟରେ ଆଠମାସ ଘରେ ତାଲା ପଡୁଥିଲା । ଜଣେ କାବ୍ୟତୀର୍ଥ ପଣ୍ଡିତ ଥାଆନ୍ତି । ସେ ପ୍ରତିମାସରେ ପୁରୀରୁ ଦରମା ନେଇ ନିଜ ଘରେ ରହିଥାଆନ୍ତି । ଗ୍ରାମରେ ଗୋଟିଏ ପ୍ରାଇମେରୀ ସ୍କୁଲ୍ ଥାଏ । ସ୍କୁଲର ଛାତ୍ରାବାସ ରେ ମୋଟ ୫ ଜଣ ଛାତ୍ର ଥାଆନ୍ତି । ଶିକ୍ଷକ ୨ ଜଣ ଥିଲେ । ଖାଦ୍ୟ ଅତି ନିକୃଷ୍ଟ ଧରଣର ଥିଲା । ମୁଁ ପ୍ରଥମେ ଯାଇ ଗ୍ରାମର ଜଣେ ଭଦ୍ରବ୍ୟକ୍ତିଙ୍କ ଘରେ ଖାଦ୍ୟପେୟର ବ୍ୟବସ୍ଥା କରି ସ୍କୁଲ ଘରେ ଆସି ରହେ । ଶିକ୍ଷକ ମାନେ ଛାତ୍ର ମାନଙ୍କୁ ୨ବେଳା ରୋଷେଇ କରିଦିଅନ୍ତି ଓ ସେମାନଙ୍କର ମେସିଂ ଛାତ୍ର ମାନଙ୍କୁ ବହନ କରିବାକୁ ପଡୁଥିଲା । ଶାସନ ଦାମୋଦରପୁର ଠାରୁ ବ୍ରହ୍ମଗିରି ପର୍ଯ୍ୟନ୍ତ ଆଉ ମାଇନର ସ୍କୁଲ୍ ନଥିଲା । ମୋର କଠିନ ପରିଶ୍ରମ ଫଳରେ ସେହି ବର୍ଷ ଏକମାତ୍ର ଛାତ୍ର



"ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ,
ଶୀତୋଷ୍ଣସୁଖଦୁଃଖଦାଃ ।
ଆଗମାପାୟିନୋଽନିତ୍ୟାଂ,
ସ୍ତାଂସ୍ତିତିକ୍ଷୟସ୍ୱ ଭାରତ ॥"

"'ୟଂ ହି ନ ବ୍ୟଥୟନ୍ତ୍ୟେତେ,
ପୁରୁଷଂ ପୁରୁଷର୍ଷଭ ।
ସମଦୁଃଖସୁଖଂ ଧୀରଂ,
ସୋଽମୃତତ୍ୱାୟ କଳ୍ପତେ ॥"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ- ୧୪ ଓ ୧୫)

ରହି ଇନ୍ଦ୍ରିୟବଶେ ନର ।
ଦୁଃଖ ସୁଖ ଭୋଗେ ନିକର ॥
ତଥାପି ସେ ଦୁଃଖ ସୁଖର ।
ବିନାଶ ଅଛି ପାର୍ଥବୀର ॥
ସଂଯୋଗ ସମୟରେ ଜାଣ ।
ସ୍ଥିତି ଉତ୍ପତ୍ତି ଲୟ ପୁଣ ॥
ଏଣୁ ଅନିତ୍ୟ ଏହିମାନେ ।
ତାହା ତୁ ସହ ସାବଧାନେ ॥
ଯେ ଦୁଃଖ ସୁଖ ସମ କରେ ।
ନ ପଡ଼େ ସୁଖର ଗର୍ବରେ ॥
ଦୁଃଖେ ନୁହଇ ବିଚଳିତ ।
ସେହି ଲଭଇ ମୋକ୍ଷ ପଥ ॥
ସମାନ ଦୁଃଖ ସୁଖ ଯାର ।
ମୁକ୍ତିରେ ତାର ଅଧିକାର ॥

ମାଇନର ପାସ୍ କରିଗଲା । ମୁଁ ଗ୍ରାମକୁ ୨ ମାସ କାଳ ଆସିନଥିଲି । ପରୀକ୍ଷା ଫଳ କଟକରୁ ପ୍ରକାଶିତ ହେଉଥିଲା । ତତ୍‌ପରେ ଗ୍ରାମରୁ ଚାନ୍ଦା ଆଦାୟ କରି ସ୍କୁଲ୍ ଗୃହର ସଂସ୍କାର କରି, ବଡ଼ଦିନ ଛୁଟିରେ ବ୍ରହ୍ମଗିରି ଓ ତତ୍‌ସଂଲଗ୍ନ ଗ୍ରାମ ମାନଙ୍କରୁ ଛାତ୍ର ସଂଗ୍ରହ କଲି । ୧୯୨୯ ମସିହାରେ ସ୍କୁଲର ଛାତ୍ର ସଂଖ୍ୟା ୫୦କୁ ବୃଦ୍ଧି ପାଇଲା । ସେହି ବର୍ଷ ମଧ୍ୟ ହରିରଥେ କଟକ C.T ସ୍କୁଲ୍‌କୁ ଟ୍ରେନିଂ ପାଇବାକୁ ଗଲେ । ବଳଭଦ୍ରପୁରର ବିଶ୍ୱନାଥ ମହାପାତ୍ର ୨ୟ ଶିକ୍ଷକ ହୋଇ ରହିଲେ ।

ସେ ବର୍ତ୍ତମାନ ଜୀବିତ ଓ ଓଡ଼ିଶାର ଜଣେ ବିଶିଷ୍ଟ ସାମ୍ବାଦିକ । ୧୯୩୦ ମସିହାରେ ସ୍କୁଲରୁ ୩ଜଣ ଛାତ୍ର ମାଇନର ପରୀକ୍ଷାରେ ପାସ୍ କରିବାରୁ ଗ୍ରାମବାସୀମାନେ ମୋ ଉପରେ ସନ୍ତୁଷ୍ଟ ହେଲେ । ଛାତ୍ରାବାସରେ ଛାତ୍ର ସଂଖ୍ୟା ବୃଦ୍ଧି ପାଇଲା । ଶିକ୍ଷକମାନଙ୍କର ମାଗଣା messing ପ୍ରଥା ବନ୍ଦ କଲି ଓ ମୁଁ ମଧ୍ୟ ଛାତ୍ରାବାସରେ ଖାଇଲି । ଜଣେ ପୂଜାରି ଆସି ରୋଷେଇ କଲା ।

୧୯୨୯ମସିହାରେ ମହାମହୋପାଧ୍ୟାୟ ପରଲୋକଗତ ହେଲେ । ମୁଁ ତାଙ୍କର ପୁରୀ ବାସଭବନରେ ପ୍ରାୟ ୮ ଦିନ କାଳ ରହିଥିଲି । ସେ ସଜ୍ଞାହୀନ ଅବସ୍ଥାରେ ପଡ଼ି ରହିଥିଲେ । ବହୁ ଚିକିତ୍ସକ ଆସି ଚିକିତ୍ସାକଲେ । ପ୍ରତିଦିନ ଶତାଧିକ ଲୋକ ଦେଖିବାକୁ ଆସନ୍ତି । ଏପରିକି ପୁରୀର ରାଜା ସାହେବ ଓ ଏମାର ମଠାଧୀଶ ଦେଖିବାକୁ ଆସିଥିଲେ । ତାଙ୍କର ଗ୍ରାମରେ ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ହେଲା । ସ୍କୁଲ ୧୦ଦିନ ପର୍ଯ୍ୟନ୍ତ ବନ୍ଦ ରହିଲା । ଦଶାହ ଦିନ ପୁରୀର ସୁଆର ନିଯୋଗ, ପଣ୍ଡା ନିଯୋଗ ଓ କେତେକ ମଠାଧୀଶ ପ୍ରାୟ ୫୦ ହାଣ୍ଡି ମହାପ୍ରସାଦ



"ନାସତୋବିଦ୍ୟତେ ଭାବୋ,
ନାଭାବୋ ବିଦ୍ୟତେ ସତଃ ।
ଉଭୟୋରପି ଦୃଷ୍ଟୋନ୍ତ,
ସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ ॥"

"ଅବିନାଶୀ ତୁ ତଦ୍‌ବିଦ୍ଧି,
ଯେନ ସର୍ବମିଦଂ ତତଂ ।
ବିନାଶମବ୍ୟୟସ୍ୟାସ୍ୟ,
ନ କଶ୍ଚିତ୍କର୍ତ୍ତୁମର୍ହତି ॥"

(ଦ୍ୱିତୀୟୋଦ୍ଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୧୬ ଓ ୧୭)

"ଯେ ଅସତ୍ତ୍ୱ ବିନାଶୀଳ ।
ନାହିଁ ତା ସ୍ଥିତି ମନେ ଭାଳ ॥
ସତ ପଦାର୍ଥ ନଷ୍ଟ ନୋହି ।
ଅଭାବ ଅବା ତା'ର କାହିଁ ॥"
ଅସତ ଜଡ଼ ଅଟେ ନାଶି ।
ସତ ଚୈତନ୍ୟ ଅବିନାଶୀ ॥
ଏ ଦେହ ଅସତ୍ୟ ଅନିତ୍ୟ ।
ଜୀବାତ୍ମା ସତ୍ୟ ପୁଣି ନିତ୍ୟ ॥
ଏ ଦୁଇ ବିଷୟଟି ସ୍ଥିର ।
ଜାଣନ୍ତି ତତ୍ତ୍ୱଦର୍ଶୀ ନର ॥
ଯେ ଆତ୍ମା ଆପେ ସର୍ବଠାରେ ।
ଅବିନାଶୀ ଯେହୁ ବିଧିରେ ॥
ସୁଖ ଦୁଃଖ ଏ ନାଶ ହୋଇ ।
ଆତ୍ମାର ବିନାଶ ନୁହଇ ॥
ସେ ଆତ୍ମା ବିନାଶେ ସମର୍ଥ ।
ଅଛି କାହାର ସାମରଥ ॥

ପଠାଇଥିଲେ । ମହାପ୍ରସାଦ ସଭାରେ ପ୍ରାୟ ୩ ହଜାର ଲୋକ ଖାଇଥିଲେ । ତାଙ୍କର ପୋଷ୍ୟପୁତ୍ର ଶ୍ରୀ ଲୋକନାଥ ମିଶ୍ର ଏମ୍ .ଏ.ବି.ଏଲ୍ ସ୍କୁଲ୍‌ର ସେକ୍ରେଟାରୀ ହେଲେ । ମୁଁ ମୋର ଭାବୀ ଉନ୍ନତି ଆଶାରେ ୧୯୩୧ ମସିହାରେ କାକଟପୁର ମାଇନର ସ୍କୁଲ୍‌କୁ ମାସିକ ଟ ୫୦/-ର ବେତନରେ ଚାଲିଗଲି । ଗ୍ରାମବାସୀ ମାନେ ବିଦାୟ ସଭାରେ ମୋର ଉପଯୁକ୍ତ ସମ୍ବର୍ଦ୍ଧନା କରି ଗୋଟିଏ ଶଗଡ଼ ଗାଡ଼ିରେ ମୋତେ ଜଣଙ୍କୁ ସଙ୍ଗରେ ଦେଇ ବିଦାୟ କଲେ ।

## କାକଟପୁର ମି.ଇ.ସ୍କୁଲ୍ (୧୯୩୧-୩୩)

୧୯୩୧ ଫେବୃୟାରୀ ମାସ ତା୨ରିଖରେ କାକଟପୁର ମାଇନର ସ୍କୁଲ୍‌ରେ ପ୍ରଧାନ ଶିକ୍ଷକ ଭାବରେ ଯୋଗଦେଲି । ଜିଲ୍ଲାର ଅନ୍ୟାନ୍ୟ ମାଇନର ସ୍କୁଲ୍‌ର ଆର୍ଥିକ ଅବସ୍ଥା ତୁଳନାରେ ସେ ସ୍କୁଲ୍‌ର ଆର୍ଥିକ ଅବସ୍ଥା ଭଲଥିଲା । ସ୍କୁଲ୍‌ର ପାସ୍‌ବୁକ୍‌ରେ ପ୍ରାୟ ଟ୫୦୦୦/- ଥିଲା । ମୁଁ ସେଠାରେ ମାସିକ ଟ୫୦/- ବେତନରେ ନିଯୁକ୍ତ ହେଲି । ସେ ସ୍କୁଲ୍‌କୁ ଯିବା ପାଇଁ କେହି ଇଚ୍ଛା ପ୍ରକାଶ କରନ୍ତି ନାହିଁ । ପ୍ରଥମ କାରଣ ହେଲା ଦୂରତା ଓ ୨ୟ ହେଲା ସେ ସ୍ଥାନର ଲୋକମାନେ ଖଳପ୍ରକୃତିର ଲୋକ ଥିଲେ । କୌଣସି ପ୍ରଧାନ ଶିକ୍ଷକ ସେଠାରେ ୨ବର୍ଷରୁ ଅଧିକ ସମୟ ରହିପାରୁ ନଥିଲେ । ସେତେବେଳେ ମୋର ବୟସ ଥିଲା ୨୪ । ପୁରୀ ଜିଲ୍ଲା ସ୍କୁଲ୍ ଇନ୍‌ସ୍‌ପେକ୍ଟର ଲୋକନାଥ ପଟ୍ଟନାୟକ ମୋତେ ସେଠାକୁ ଯିବାକୁ ବାରଣ କଲେ । ଜିଲ୍ଲା ବୋର୍ଡ଼ର ଭାଇସ୍ ଚେ଼ୟାରମ୍ୟାନ୍ ବ୍ରହ୍ମାନନ୍ଦ ମହାନ୍ତିଙ୍କଠାରୁ ପ୍ରେରଣା ପାଇ ସେ ସ୍କୁଲ୍‌କୁ ଗଲି । ସେତେବେଳେ କାକଟପୁରକୁ ପଦବ୍ରଜରେ ଯିବାକୁ ପଡୁଥିଲା । ପୁରୀଠାରୁ କାକଟପୁର ୩୨ ମାଇଲ । ସେଠାକୁ ଯିବା




ସରକାରୀ ଉଚ୍ଚ ବିଦ୍ୟାଳୟ, କାକଟପୁର

ପାଇଁ ମୋତେ ଦେଢ଼ ଦିନ ଲାଗୁଥିଲା । କାକଟପୁର ଥାନାରେ ତାହା ଏକମାତ୍ର ମାଇନର ସ୍କୁଲ୍ ଥିଲା । ସେତେବେଳେ କାକଟପୁର ଥାନାର ମୋଟ ଲୋକ ସଂଖ୍ୟା ୬୦ହଜାର ଥିଲା । କାକଟପୁରରେ ଗୋଟିଏ ପୋଲିସ୍ ଷ୍ଟେସନ (Police Station), ଗୋଟିଏ ଜିଲ୍ଲା ବୋର୍ଡ଼ପରିଚାଳିତ ଡାକ୍ତରଖାନା, କାନୁନ୍‌ଗୋ ଅଫିସ୍ ଓ ଜଣେ ସ୍କୁଲ୍ ସବ୍ ଇନସ୍‌ପେକ୍ଟର ଥିଲେ । ଲୋକମାନଙ୍କର ପ୍ରଧାନ ବ୍ୟବସାୟ ଥିଲା କୃଷି ଓ ପାନ ବ୍ୟବସାୟ । ପୁରୀ ସଦର ଥାନାରେ ଏକମାତ୍ର କାକଟପୁର ନିକଟରେ ୪ଗୋଟି ମୁସଲମାନ ବସ୍ତିଥିଲା – କଟକଣା, ଭଣ୍ଡାଘର, ଲତାହରଣ ଓ ରସୁଲପୁର ।

ବସନ୍ତ ପଞ୍ଚମୀ ଦୁଇଦିନ ଥିଲା ମୁଁ ସ୍କୁଲରେ ଯୋଗଦେଲି । ବସନ୍ତ ପଞ୍ଚମୀ ଦିନ ସକାଳେ କେତେଜଣ ଛାତ୍ର ଟ ୫/- ଆଣି ମୋପାଖରେ ରଖିଲେ । ପଚାରି ବୁଝିଲି ସେଠାରେ ଗଣେଶ ପୂଜା ଓ ବସନ୍ତ ପଞ୍ଚମୀକୁ ପ୍ରତ୍ୟେକ ଶିକ୍ଷକଙ୍କୁ ଟ ୫/- ଲୁଗା ପାଇଁ ଦିଆଯାଏ । ରାତିରେ ଛାତ୍ରମାନଙ୍କୁ ଗୋଟା ଚୂଡାଘଷା ଓ ଗହମ ଖିରି ଦିଆଯାଏ । କେବଳ ଅଫିସରମାନଙ୍କ ସକାଶେ ପୁରି ତରକାରି ହୁଏ । ତା'



"ଅନ୍ତବନ୍ତ ଇମେ ଦେହା
 ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।"
ଅନାଶିନୋଽପ୍ରମେୟସ୍ୟ,
 ତସ୍ମାଦ୍‌ଯୁଧ୍ୟସ୍ୱ ଭାରତ ॥"
"ଯ ଏନଂ ବେତ୍ତି ହନ୍ତାରଂ,
 ଯଶ୍ଚୈନଂ ମନ୍ୟତେ ହତଂ ।
ଉଭୌତୌ ନ ବିଜାନୀତୋ,
 ନାୟଂ ହନ୍ତି ନ ହନ୍ୟତେ ॥"
(ଦ୍ୱିତୀୟୋଽଧ୍ୟାୟଃ – ସାଂଖ୍ୟଯୋଗଃ – ଶ୍ଳୋକ-୧୮ ଓ ୧୯)

ଆତ୍ମା ସକଳ ଘଟେ ଥାଇ ।
 ତାହାର କ୍ଷୟ ବୃଦ୍ଧି ନାହିଁ ॥
ନିତ୍ୟ ଏ ଆତ୍ମାର ସଂସ୍ଥାନ ।
 ସର୍ବଦା ଆତ୍ମାଟି ନିର୍ଗୁଣ ॥
ଯେ ଘଟେ ଆତ୍ମା ବାସକରେ ।
 ସେ ଘଟ ନଷ୍ଟ ହୋଇପାରେ ॥
ଏ ଦେହ ଦିନେ ଛାଡ଼ିଯିବ ।
 ସ୍ୱଧର୍ମ କିମ୍ପାଇ ଛାଡ଼ିବ ॥
ତେଣୁ ଏ ଯୁଦ୍ଧେ ଦିଅ ଆଶ ।
 ଦେହ ବିନାଶେ ଦୁଃଖ କିସ ॥
ଆତ୍ମାକୁ କେହି ନ ନାଶଇ ।
 ସର୍ବଦା ଥାଏ ହତ ନୋହି ॥
ଦେଖ ଯେସନେ ଏ ଅମ୍ବୁଧି ।
 ନାହିଁ ତାହାର କ୍ଷୟ ବୃଦ୍ଧି ॥

ପରେ ଦେଖିଲି ସେ ସ୍କୁଲ ଛାତ୍ରାବାସରେ ଶିକ୍ଷକମାନଙ୍କୁ ସେମାନଙ୍କର ମେସିଂ ଖର୍ଚ୍ଚ ଦେବାକୁ ପଡ଼େ ନାହିଁ । ଛାତ୍ରାବାସରେ ୩ ଜଣ ଶିକ୍ଷକ ଥାଆନ୍ତି । ସେମାନେ ଛାତ୍ରାବାସସ୍ଥ ଛାତ୍ରମାନଙ୍କୁ ବିନା ପଇସାରେ ରାତି ଓ ସକାଳେ ପଢ଼ାନ୍ତି । ମୁଁ ମଧ୍ୟ କିଛି ଦିନ ସେହିପରି ଚଳିବା ପରେ ଏପରି କୁପ୍ରଥା ବନ୍ଦ କଲି । ତା' ଫଳରେ ଶିକ୍ଷକମାନଙ୍କର ଅପ୍ରୀତି ଭାଜନ ହେଲି । ଛାତ୍ରାବାସରେ ୪୦ ଜଣ ଛାତ୍ର ଥିଲେ । ସେ ସମୟରେ କାକଟପୁରରେ ଆଳୁ ମିଳୁ ନଥିଲା । କେବଳ ସାରୁ, କଦଳୀ, ବାଇଗଣରେ ତରକାରି ହେଉଥିଲା । ମାଛ ମଧ୍ୟ ଦୁର୍ଲଭ । ମାଂସ, ଅଣ୍ଡା, କ୍ଷୀର ଓ ଘିଅ ଶସ୍ତା ଓ ସହଜଲଭ୍ୟ ଥିଲା । ଭଲ ଦୁଗ୍ଧ ସେର ପ୍ରତି ଦୁଇଅଣା ଓ ଘିଅ ସେର ପ୍ରତି ଟ ୧/- ଥିଲା । ପାଚିଲା କଦଳୀ ପଇସାରେ ୨ ଗୋଟା । ପ୍ରତ୍ୟହ ୪ ଟା ସମୟରେ ୨ଟା କଦଳୀ ଓ ପାଏ କ୍ଷୀର ମୋର ଜଳଖିଆ ଥିଲା । କାକଟପୁରରେ ସେପରି ଦୋକାନ ନଥିଲା । ୪ ମାଇଲ୍ ଦୂରରେ ଅବସ୍ଥିତ ନୟାହାଟରୁ (ସିଂହପାନିଆ) ପରିବା ଆସୁଥିଲା । କାକଟପୁର ପୁରୀ ଜିଲ୍ଲାର ବନ୍ୟାଞ୍ଚଳ ଥିଲା । ପ୍ରାଚୀ ନଦୀ କୂଳରେ ଅବସ୍ଥିତ । ପ୍ରାଚୀ ନଦୀ କୂଳରେ ବହୁ ଐତିହାସିକ ପ୍ରସିଦ୍ଧ ସ୍ଥାନ ଥିଲା ।

ସ୍କୁଲ୍‌ର ପରୀକ୍ଷା ଫଳ ସନ୍ତୋଷ ଜନକ ନଥିଲା । ଛାତ୍ର ମାନେ ପୁରୀରେ ଆସି ମାଇନର ପରୀକ୍ଷା ଦେଉଥିଲେ । ପରୀକ୍ଷା ଫଳ କିପରି ସନ୍ତୋଷଜନକ ହେବ ସେଥିପାଇଁ ମୋତେ କଠିନ ପରିଶ୍ରମ କରିବାକୁ ପଡ଼ିଲା । ସେଠାରେ ୩ ବର୍ଷ ରହିବା ମଧ୍ୟରେ ୨ଜଣ ଛାତ୍ର ମାଇନର ବୃତ୍ତି ମାସିକ ଟ୪/- କରି ପାଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ



"ନ ଜାୟତେ ମ୍ରିୟତେ ବା କଦାଚିତ୍,
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।
ଅଜୋନିତ୍ୟଃ ଶାଶ୍ୱତୋଦ୍ଧୟଂ ପୁରାଣୋ,
ନ ହନ୍ୟତେ ହନ୍ୟମାନେ ଶରୀରେ ॥"

"ବେଦାବିନାଶିନଂ ନିତ୍ୟଂ, ଯ ଏନମଜମବ୍ୟୟଂ
କଥଂ ସପୁରୁଷଃ ପାର୍ଥ, କଂ ଘାତୟତି ହନ୍ତି କଂ ॥"

(ଦ୍ୱିତୀୟୋଦ୍ଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୨୦ ଓ ୨୧)

ଆତ୍ମାର ନାହିଁ ଆଦି ଅନ୍ତ ।
ସର୍ବଦା ଜ୍ୟୋତି ରୂପେ ସ୍ଥିତ ॥
କ୍ଷୟ ବୃଦ୍ଧି ତାହାର ନାହିଁ ।
ସୂର୍ଯ୍ୟଙ୍କ ପରାଏ ଭ୍ରମଇ ॥
ଏ ଆତ୍ମା ନିତ୍ୟ ନିରଞ୍ଜନ ।
ଅଜ ଅମର ସନାତନ ॥
ସେ ଅବା ମରିବ କିପରି ।
ଅନ୍ୟକୁ ମରାଇ ନ ପାରି ॥
ଏ ଜ୍ଞାନ ଉଦେ ହୋଏ ଯାର ।
ଆତ୍ମାମୟ ଦେଖେ ସଂସାର ॥
ଜୀବ ମରଣ ପାପପୁଣ୍ୟ ।
ନ ଘେନେ ଚିତ୍ତେ ସେହି ଜନ ॥

ମେଧାବୀ, ଗରିବ ଛାତ୍ର ଶ୍ରୀ ଉଦୟ ନାଥ ମିଶ୍ରଙ୍କୁ ଆଣି ପୁରୀ ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇ ପଢ଼ାଇଲି । ତା'ର ଘର ସିଂହପାନିଆ ନିକଟବର୍ତ୍ତୀ । ପିତା ପୁରୋହିତ ଥିଲେ । ଦୁଇବର୍ଷ ପର୍ଯନ୍ତ ତାକୁ ମାସିକ ଟ୨/- କରି ସାହାଯ୍ୟ କରିଥିଲି । ସେ ବ୍ରାହ୍ମଣ ସମିତିରେ ରହି ଅଧ୍ୟୟନ କଲା । ତାପରେ ତା'ର ପିତାମାତାଙ୍କୁ ପ୍ରବର୍ତ୍ତାଇ ପୁରୀ ପଠାଇଲି । ସେ ପୁରୀ ଜିଲ୍ଲା ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ କଟକ ରେଭେନ୍ସା କଲେଜରେ ଅଧ୍ୟୟନ କଲା । ବି.ଏ. ପାସ୍ କରିବା ପରେ ପ୍ରଥମେ ପୁରୀ କଲେକ୍‌ଟୋରେଟ୍‌ରେ କିରାଣି ହୋଇ କଟକରେ ଅବସ୍ଥିତ ସରକାରୀ ପ୍ରେସ୍‌ରେ କାମ ପାଇଲା । ତାର ପ୍ରତିଭା ବଳରେ ତା'ର ପଦୋନ୍ନତି ହେଲା । ୧୫ ବର୍ଷ ପରେ ପ୍ରେସ୍‌ରେ ଡ଼େପୁଟୀ ସୁପରିଟେଣ୍ଡେଣ୍ଟ ହୋଇ ବିଲାତ ଗଲା । ସେଠାରୁ ଆସି ପ୍ରେସ୍‌ର ସୁପରିଟେଣ୍ଡେଣ୍ଟ ହୋଇ ମାସିକ ଟ୧୪୦୦/- ପାଇଲା । ସେ ମୋର ଅତିପ୍ରିୟ ଛାତ୍ର ଥିଲା । ତାର ଛାତ୍ର ଜୀବନରେ ମୋ ଠାରୁ ସାହାଯ୍ୟ ପାଇଥିବାରୁ ସେ ମୋତେ ଶ୍ରଦ୍ଧାଭକ୍ତି କରେ । ତାକୁ କହି ଚକ୍ରଧରର ସାନଭାଇ ବ୍ରଜକୁ ସରକାରୀ ପ୍ରେସ୍‌ରେ ରଖାଇଥିଲି । ସେ ବର୍ତ୍ତମାନ ସେଠାରେ ସହକାରୀ ସୁପରିଟେଣ୍ଡେଣ୍ଟଭାବରେ କାର୍ଯ୍ୟ କରୁଛି । ଉଦୟନାଥ ବର୍ତ୍ତମାନ କାର୍ଯ୍ୟରୁ ଅବସର ନେଇ କଟକରେ ପିଲାମାନଙ୍କୁ ନେଇ ଅଛି । ପ୍ରାୟ ୩୦ବର୍ଷ ହେଲା ତା ସହିତ ଆଉ ଦେଖା ହୋଇ ନାହିଁ । ତାର ଗୋଟିଏ ମାତ୍ର ପୁତ୍ର ଓ ୩ଟି କନ୍ୟା ଥିଲେ । ତାପରେ ୩ୟ ବର୍ଷ ରତ୍ନାକର ମିଶ୍ର ନାମରେ ଆଉ ଜଣେ ଛାତ୍ର କାକଟପୁର ମାଇନର ସ୍କୁଲ୍‌ରୁ ବୃତ୍ତି ଲାଭ କଲେ । ସେ ମଧ୍ୟ ସରକାରୀ ଚାକିରିରେ ରହି ବର୍ତ୍ତମାନ ଅବସର ନେଇ କେଉଁଠାରେ ଅଛି ମୋର ଅଜ୍ଞାତ ।

୧୯୩୨ରେ କାକଟପୁରରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ସେ ଥାନାରୁ ବହୁ ଲୋକ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କଲେ । ସ୍କୁଲର ପରିଚାଳନା କମିଟିରେ



"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ,
ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-,
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।।"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୨୨)

ପୁରୁଣା ଲୁଗାକୁ ଛାଡ଼ିଣ ।
ପିନ୍ଧନ୍ତି ନୂଆ ଲୁଗା ଜାଣ ।।
ପୁରୁଣା ଲୁଗା ନଷ୍ଟ ହୋଇ ।
ତାକୁ ତ ନଖୋଜନ୍ତି କେହି ।।
ସେପରି ଆତ୍ମା ଜୀର୍ଣ୍ଣ ଦେହ ।
ଛାଡ଼ି ଖୋଜଇ ନୂଆ ଦେହ ।।
ଏଥିରେ ଆତ୍ମାର ଆନନ୍ଦ ।
କହିଲୁ ଯୋଗର ଏ ଭେଦ ।।
ଯୋଗରେ ହୋଇଛି ବର୍ଣ୍ଣିତ ।
ଆତ୍ମା ଗମଇ ଯେଉଁ ପଥ ।।

ଦଳଗତ ବିଦ୍ୱେଷ ଥିଲା । ଆର୍ତ୍ତତ୍ରାଣ ଦାଶ ନାମକ ଜଣେ ପ୍ରାଇମେରୀ ସ୍କୁଲର ଶିକ୍ଷକଙ୍କର ପ୍ରତିପତ୍ତି କାକଟପୁର ଥାନାରେ ଅଧିକ ଥିଲା । ସେ କାକଟପୁର ସ୍କୁଲ୍ କମିଟିର ସଭ୍ୟ ଥିଲେ କିନ୍ତୁ ତାଙ୍କ ଇଙ୍ଗିତରେ ସ୍କୁଲ୍ ଚଳୁଥିଲା । ମୁଁ କୌଶଳ କରି ତାଙ୍କୁ କମିଟିରୁ ବାହାର କଲି । ପରେ ସେଠାକାର ପରିସ୍ଥିତି ଖରାପ ଦେଖିବାରୁ ବ୍ରହ୍ମାନନ୍ଦ ମହାନ୍ତିଙ୍କର ସହାୟତା ଲାଭ କରି କଟକ ସି.ଟି. ସ୍କୁଲକୁ ୧୯୩୩ ମସିହାରେ ଆସିଲି । କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ ବ୍ରହ୍ମାନନ୍ଦ ମହାନ୍ତିଙ୍କର ସହପାଠୀ ଥିବାରୁ ସେ ବ୍ରହ୍ମାନନ୍ଦ ବାବୁଙ୍କ ଅନୁରୋଧ ଉପେକ୍ଷା କରିପାରିନଥିଲେ । ତାପରେ ମୁଁ ଆଇ.ଏ ଥିବାରୁ ସେଠାରେ ନାମ ଲେଖାଇବାକୁ ବିଶେଷ ଅସୁବିଧା ହେଲା ନାହିଁ । କାକଟପୁରରେ ଥିବା ସମୟରେ ତୋର ପିତାମହ ବିଦେଶ ଯାତ୍ରା ବନ୍ଦ କଲେ । ସେତେବେଳକୁ ତାଙ୍କର ବୟସ ୬୫ । ମୁଁ କାକଟପୁରରେ ଥିବା ସମୟରେ ସେଠାରେ ଡାକ୍ତର ରାଧାଚରଣ ପଣ୍ଡା ଓଡ଼ିଶାର ଜଣେ ଖ୍ୟାତନାମା ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ତଥା ଲେଖକ ଥାଆନ୍ତି । ତାଙ୍କର ମାତା ମୋତେ ଧର୍ମପୁତ୍ର କରି ଥାଆନ୍ତି । ଡ଼ାକ୍ତର ପଣ୍ଡା ବର୍ତ୍ତମାନ ମୃତ । ତାଙ୍କର ପିଲାମାନେ ବର୍ତ୍ତମାନ ବାଲୁଗାଁରେ ଅବସ୍ଥାନ କରୁଅଛନ୍ତି । ତାଙ୍କର ୨ୟ ସ୍ତ୍ରୀ ବର୍ତ୍ତମାନ ଜୀବିତ । ତାଙ୍କର ଜ୍ୟେଷ୍ଠ ପୁତ୍ର ମୂକ ଓ ବଧିର । କନିଷ୍ଠ ପୁତ୍ର ଡ଼ାକ୍ତର । କାକଟପୁରରେ ୨ଜଣ ସ୍କୁଲ୍ ସବ୍ ଇନ୍‌ସ୍‌ପେକ୍ଟର ଶ୍ରୀ ମଧୁସୂଦନ ମିଶ୍ର ଓ କଟକ ସାଲେପୁରର ଶ୍ରୀ ବନବିହାରୀ ପଟ୍ଟନାୟକ ମୋର ପରମବନ୍ଧୁ ଥିଲେ । ଶ୍ରୀ ମଧୁସୂଦନ ମିଶ୍ରଙ୍କର ଘର ପୁରୀ ନିକଟସ୍ଥ ପିପିଲି ଗ୍ରାମରେ । ସେ ସଂସ୍କୃତ ପ୍ରଫେସର ମହାମହୋପାଧ୍ୟାୟ ଜଗନ୍ନାଥ ମିଶ୍ରଙ୍କର ଜ୍ୟେଷ୍ଠପୁତ୍ର । ସେ ଶାସନ ଦାମୋଦରପୁରର ସଂସ୍କୃତ ପଣ୍ଡିତ ବିଶ୍ୱନାଥ ରଥଙ୍କର କନ୍ୟାକୁ ବିବାହ କରି ତାଙ୍କର



"ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି,
ନୈନଂ ଦହତି ପାବକଃ ।
ନ ଚୈନଂ କ୍ଲେଦୟନ୍ତ୍ୟାପୋ,
ନ ଶୋଷୟତିମାରୁତଃ ॥"

(ଦ୍ୱିତୀୟୋଽଧ୍ୟାୟଃ – ସାଂଖ୍ୟଯୋଗଃ – ଶ୍ଳୋକ- ୨୩)

ଅଙ୍ଗ ପ୍ରତ୍ୟଙ୍ଗ ରୂପ ଯାର ।
ଦଗ୍ଧ କରେ ବୈଶ୍ୱାନର ॥
ଜଳ ଯେ ବୁଡାଇ ମାରଇ ।
ପବନ ଉଡ଼ାଇ ନିଅଇ ॥
ଶସ୍ତ୍ର ଯେ ଛେଦନ କରଇ ।
ଦେହୀ ପକ୍ଷରେ ଏ ଘଟଇ ॥
ଆତ୍ମାର ଦେହ ନାହିଁ ଯେଣୁ ।
ଅଗ୍ନି ଦହି ନ ପାରେ ତେଣୁ ॥
ଜଳ ବୁଡ଼ାଇ ନ ମାରଇ ।
ପବନ ନ ପାରେ ଉଡ଼ାଇ ॥
ଅସ୍ତ୍ର ଯେ ହାଣି ନ ପାରଇ ।
ତେଣୁ ଅବିନାଶୀ ଅଟଇ ॥

ଗୋଟିଏ ପୁତ୍ର, ଗୋଟିଏ କନ୍ୟା ହେବାପରେ ପିପିଲିର ଖ୍ରୀଷ୍ଟିଆନ ପ୍ରସନ୍ନ ମହାନ୍ତିଙ୍କର କନ୍ୟାକୁ ବିବାହ କଲେ । ସେ ଓ ତାଙ୍କର ଦୁଇପତ୍ନୀ ବର୍ତ୍ତମାନ ଜୀବିତ । ସେ ଗଞ୍ଜାମର D.I ଥାଇ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ଖ୍ରୀଷ୍ଟିଆନ ପତ୍ନୀଙ୍କ ଆଡୁ ତାଙ୍କର ପୁତ୍ରକନ୍ୟା ହୋଇଛନ୍ତି । ସେ ବର୍ତ୍ତମାନ ସେହି ଖ୍ରୀଷ୍ଟିଆନ ପତ୍ନୀଙ୍କ ପାଖରେ ପୁରୀରେ ଅବସ୍ଥାନ କରୁଛନ୍ତି । ଆମ ଗ୍ରାମର ସଦାଶିବ ମିଶ୍ରଙ୍କର ସେ ସଢୁ । ବର୍ତ୍ତମାନ ସୁଦ୍ଧା ସେ ବ୍ରାହ୍ମଣ ହୋଇ ପିତୃଶ୍ରାଦ୍ଧ ଓ ତର୍ପଣ କରୁଅଛନ୍ତି । କିନ୍ତୁ ଜଗନ୍ନାଥ ମନ୍ଦିରକୁ ଯାଆନ୍ତି ନାହିଁ । ଶ୍ରୀ ବନବିହାରୀ ପଟ୍ଟନାୟକ ଜଣେ ନିଷ୍ଠାପର ଓ କର୍ତ୍ତବ୍ୟପରାୟଣ ବ୍ୟକ୍ତିଥିଲେ । ଅଳ୍ପ ବୟସରେ ପତ୍ନୀ ବିଚ୍ଛେଦ ଘଟିଲା । ତାଙ୍କର ଦୁଇଗୋଟି ପୁତ୍ର ଆମେରିକା ଯାଇଥିଲେ । ୧୫ବର୍ଷତଳେ ସେ ଆମ ଘରକୁ ଆସିଥିଲେ । ସେ ବର୍ତ୍ତମାନ ସାଲେପୁରରେ ଅଛନ୍ତି । ଆସିଷ୍ଟାଣ୍ଟ ଡ଼ିରେକ୍ଟର ପୋଷ୍ଟରେ ରହି ଅବସର ଗ୍ରହଣ କଲେ ।

## କଟକ C.T.School (୧୯୩୪-୩୫)

୧୯୩୩ ମସିହା ଶେଷରେ କାକଟପୁର ମି.ଇ. ସ୍କୁଲରୁ ବିଦାୟ ନେଲି । ଗୋଟିଏ ବିରାଟ ବିଦାୟ ସଭାରେ ମୋତେ ସମ୍ବର୍ଦ୍ଧନା କରାଗଲା । ପରିଚାଳନା କମିଟିର ସଭାପତି ଶେଖ୍ ଯୋଗୀ ମହାଜନ ଦେବୀ ନଦୀରେ ଗୋଟିଏ କୋଶଳି ଡ଼ଙ୍ଗାରେ ମୋତେ ବସାଇ କଟକ ଛାଡ଼ିଲେ । ମୋ ପରେ ଗୁଣନିଧି ପଟ୍ଟନାୟକ ବି.ଏ କାକଟପୁର ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । ସେ ବି


C.T.School, Cuttack

ମିଷ୍ଟଭାଷୀ ଓ ବନ୍ଧୁପ୍ରିୟ ଥିଲେ । ସେତେବେଳେ କାକଟପୁର ଥାନାରେ ମାତ୍ର ଦୁଇଜଣ ବି.ଏ ଥିଲେ । ଗୁଣନିଧି ପଟ୍ଟନାୟକ ମୃତ । ଶ୍ରୀଧର ଦାଶ ଏମ୍ .ଏ ପାସ୍‌କରି କଟକ ଷ୍ଟୁଆର୍ଟ ସ୍କୁଲରେ ଅଧାପକ ରହି ବର୍ତ୍ତମାନ କଟକରେ ଅବସ୍ଥାନ କରୁଅଛନ୍ତି । ସେ ଜଗନ୍ନାଥ ରଥଙ୍କର ଛାତ୍ରଥିଲେ । କିଛି ଦିନ ଆମ ଗ୍ରାମ ବିଶ୍ୱନାଥ ମି.ଇ. ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ଘର ଦେବୀନଦୀ କୂଳରେ ଓସିଆଁ ଗ୍ରାମରେ କଟକ C.T ସ୍କୁଲରେ ଅଧ୍ୟୟନ କରିବା ସମୟରେ ସେଠାରୁ ମାସିକ ଟ୧୫/-ସରକାରୀ ସାହାଯ୍ୟ ପାଉଥିଲି । ତେଣୁ ଘରେ ଅର୍ଥାଭାବ ଘଟିଲା । ତୋର ପିତାମହ ଘରେ ଥାଆନ୍ତି । ସେତେବେଳେ ଡାକ୍ତର ପଣ୍ଡାପୁରୀ ଜିଲ୍ଲାର ସାଧାରଣ ସ୍ୱାସ୍ଥ୍ୟ ବିଭାଗରେ ଚାକିରି କରି ପୁରୀରେ ଅବସ୍ଥାନ କରୁଥିଲେ । ସେ ପ୍ରତିମାସରେ ଆମଘର ଖର୍ଚ୍ଚ ଚଳାଉଥିଲେ । ମୁଁ ଜୀବନ ବୀମା ଟ୧୦୦୦/-କୁ କରିଥିଲି । ସେ ମଧ ମୋର Premium ଦେଉଥିଲେ । ସେ ବଡ଼ ବଦାନ୍ୟ, ପରୋପକାରୀ ଥିଲେ । ତାଙ୍କର ସହାୟତା ଲାଭ କରିନଥିଲେ ମୁଁ ଟ୍ରେନିଂ ସ୍କୁଲରେ ଅଧ୍ୟୟନ କରିପାରିନଥାନ୍ତି । ସେ ମଧ ମୋତେ ବହୁ ଆର୍ଥିକ ସାହାଯ୍ୟ କରି ମୋଠାରୁ ନେଇନାହାଁନ୍ତି ।

ସେତେବେଳେ ଟ୍ରେନିଂ ସ୍କୁଲକୁ ସମୁଦାୟ ଓଡ଼ିଶାରୁ ୨୨ଜଣ ଛାତ୍ର ମନୋନୀତ ହୋଇ ପଢୁଥାଆନ୍ତି । ମୋଗଲବନ୍ଦିରୁ ୨୦ ଜଣ ଓ ୨୪ ଗୋଟି ଗଡ଼ଜାତରୁ ୨ଜଣ ଛାତ୍ର ପଢୁଥିଲେ । ଆମେ ୩ଜଣ ଛାତ୍ର I.A ପାସ୍‌କରି ପଢୁଥିଲୁ । ତେଣୁ ଆମର ଛାତ୍ରମାନଙ୍କ ମଧରେ ବିଶେଷ ଖ୍ୟାତିଥିଲା ।



"ଅଚ୍ଛେଦ୍ୟୋଽୟମଦାହ୍ୟୋଽୟ,
ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ।
ନିତ୍ୟଃ ସର୍ବଗତଃ ସ୍ଥାଣୁ,
ରଚଳୋଽୟଂ ସନାତନଃ ॥"

"ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟ,
ମବିକାର୍ଯ୍ୟୋଽୟମୁଚ୍ୟତେ ।
ତସ୍ମାଦେବଂ ବିଦିତ୍ୱୈନଂ,
ନାନୁଶୋଚିତୁମର୍ହସି ॥"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୨୪ ଓ ୨୫)

ଏ ଆତ୍ମା ଅଚ୍ଛେଦ୍ୟ ଅଦାହ୍ୟ ।
ଶୁଷ୍କ ଆର୍ଦ୍ର ଯେ ଏହି ନୁହଁ ॥
ସର୍ବବ୍ୟାପୀ ଏ ସ୍ଥିର ନିତ୍ୟ ।
ଅଚଳ ଅଟଳ ସତତ ॥
କୌଣସି ପାର୍ଥିବ ବସ୍ତୁରେ ।
ବିନାଶ ନୁହଇ ଏହାରେ ॥
ଅବ୍ୟକ୍ତ ଅଚିନ୍ତ୍ୟ ଅଟଇ ।
ବିଭିନ୍ନ କେବେ ଏ ନୁହଇ ॥
ରହିଛି ଚିରଦିନ ଏହି ।
ରହିବ ଏଥେ ଆନ ନୋହି ॥
ଷଡ଼ବିଧ ବିକାର ଶୂନ୍ୟ ।
ଚିନ୍ତାର ଅଟଇ ଅଗମ୍ୟ ॥
ଏପରି ଆତ୍ମା ନିମିତ୍ତରେ ।
ଶୋକ ନକରେ ଜ୍ଞାନୀ ନରେ ॥

ସେତେବେଳେ ଟ୍ରେନିଂ ସ୍କୁଲରେ ୭ ଜଣ ଶିକ୍ଷକ ଥାଆନ୍ତି ।

୧. କୃଷ୍ଣଚନ୍ଦ୍ର ସେନଗୁପ୍ତ ବି.ଏ ବି.ଇଡି ପ୍ରଧାନ ଶିକ୍ଷକ (ମୃତ)

୨. ଜଗନ୍ନାଥ ତ୍ରିପାଠୀ ବି.ଏ ବି.ଇଡି ସହକାରୀ ପ୍ରଧାନ ଶିକ୍ଷକ (ମୃତ)

୩. ଶ୍ରୀ ଶ୍ରୀରାମ ଦାଶ ଏମ୍.ଏ ବିଲାତ ଫେରନ୍ତା (ଜୀବିତ)

୪. ଶ୍ରୀ ରାମଚନ୍ଦ୍ର ମହାପାତ୍ର ଏମ.ଏ., ଘର ପୁରୀ(ଜୀବିତ)

୫. ବସନ୍ତ କୁମାର ପଣ୍ଡା –ଡ୍ରଇଂ ଶିକ୍ଷକ, ବାଲେଶ୍ୱର (ମୃତ)

୬. ଗଙ୍ଗା ମହାରାଜ-Y.M.C.A ବ୍ୟାୟାମ ଶିକ୍ଷକ, ଘର ମୁଙ୍ଗେଂର (ମୃତ)

୭. ଜଣେ ବିଜ୍ଞାନ ଶିକ୍ଷକ ।

ପଠିତ ବିଷୟ ମାନଙ୍କ ମଧ୍ୟରେ Psychology, School Management, Art of teaching, M.I.L, History, Geography, English, Drawing, Drill and Games, Gardening, Science, Music ବାଧ୍ୟତା ମୂଳକ ଥିଲା । Sanskrit, higher Oriya and Mathematics ଏହି ୩ଗୋଟି ଇଚ୍ଛାଧୀନ ବିଷୟ ମଧ୍ୟରୁ ଯେ କୌଣସି ୧ଗୋଟି ନେବାକୁ ପଡୁଥିଲା । ମୁଁ Sanskrit ନେଇଥିଲି । କୌଣସି ବିଷୟରେ ଫେଲ୍ ହେଲେ ଛାତ୍ର C.T. Certificate ପାଉନଥିଲେ । ତେଣୁ ଆମର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ମୋତେ କଠିନ ପରିଶ୍ରମ କରିବାକୁ ପଡୁଥିଲା ।



"ଅଥ ଚୈନଂ ନିତ୍ୟଜାତଂ,
ନିତ୍ୟଂ ବା ମନ୍ୟସେ ମୃତଂ ।
ତଥାପି ତ୍ୱଂ ମହାବାହୋ,
ନୈନଂ ଶୋଚିତୁମର୍ହସି ॥"
"ଜାତସ୍ୟ ହି ଧ୍ରୁବୋମୃତ୍ୟୁ,
ଧ୍ରୁବଂ ଜନ୍ମମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ,
ନ ତ୍ୱଂ ଶୋଚିତୁମର୍ହସି ॥"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୨୬ ଓ ୨୭)

ଯଦି ବା ଆତ୍ମା ନିତ୍ୟ ଜାତ ।
ହୋଇଣ ନିତ୍ୟ ହୁଏ ମୃତ ॥
ଏହା ତୁ ଜାଣ ବୀରବର ।
ଏ ଯାହା ଶୋକ କର ଦୂର ॥
ଏ ଭାବେ ପ୍ରାଣୀ ଜନ୍ମ ହୋଇ ।
ମୃତ୍ୟୁ ତା ନିଶ୍ଚୟ ଅଟଇ ॥
ମୃତ ପ୍ରାଣୀର ପୁନଃ ଜାତ ।
ଏ କଥା ଅଟଇ ନିଶ୍ଚିତ ॥
ଏଣୁ ଏ ଚିନ୍ତା ଛାଡ଼ି ଦେଇ ।
ଶୋକକୁ ତେଜ ବୀର ତୁହି ॥

ଚିତ୍ରାଙ୍କନ ଓ Games ରେ ମୋର ଆଗ୍ରହ ନଥିଲା । ଚିତ୍ରାଙ୍କନ ଶ୍ରେଣୀକୁ ଯାଉନଥିଲି । ତେଣୁ ବସନ୍ତ ବାବୁଙ୍କର ବିରକ୍ତି ଭାଜନଥିଲି । ସେ ଛାତ୍ରାବାସର ପରିଚାଳକ ଥିଲେ । ଚିତ୍ରାଙ୍କନରେ ୧୦୦ ନମ୍ବର ଥିଲା । Drillରେ ମୋର command ଦେବା ସର୍ବୋତ୍କୃଷ୍ଟ ଥିବାରୁ ମୁଁ ଗଙ୍ଗା ମହାରାଜଙ୍କର ଅତି ପ୍ରିୟଥିଲି । ତେଣୁ Games ରେ କେବଳ ଉପସ୍ଥାନ ପକାଇ ସେଠାରେ ବସିରହୁଥିଲି । ମୋର ମନେଅଛି Final ପରୀକ୍ଷାରେ ସେ ମୋତେ Drill and Games ରେ ୭୫ ନମ୍ବର ଦେଇଥିଲେ । ତାଙ୍କୁ ପୁରୀ ଆଣି ମହପ୍ରସାଦ ଖଟଣି କରି ଖାଇବାକୁ ଦେଉଥିଲି । ସେ ଆନନ୍ଦ ବଜାରରେ ମହାପ୍ରସାଦ ସ୍ପର୍ଶ କରୁନଥିଲେ । ଟ୍ରେନିଂ ସ୍କୁଲରେ ବ୍ୟାୟାମ ଶିକ୍ଷକ ଥାଇ ଓଡ଼ିଶାର ଅନ୍ୟାନ୍ୟ ହାଇସ୍କୁଲକୁ ଯାଇ ବ୍ୟାୟାମ ଶିକ୍ଷା ଦେଉଥିଲେ । ସେ ଆମ ଘରକୁ ମଧ୍ୟ ଆସିଥିଲେ ।

୧୯୩୪ ମସିହାରେ ବାରିଷ୍ଟର ମଧୁବାବୁଙ୍କର ମୃତ୍ୟୁହେଲା । ସେତେବେଳେ ମୁଁ କଟକରେ ଥିଲି । ତାଙ୍କର ଶବାଧାର ସଙ୍ଗେ ଯେଉଁ ଶୋଭାଯାତ୍ରା ଯାଉଥିଲା ସେପରି ଜନ ସମାଗମ ମୋ ଜୀବନ କାଳ ମଧ୍ୟରେ ମୁଁ ଦେଖିନାହିଁ । ଦୀର୍ଘ ୨ ମାଇଲ ଦୂରବ୍ୟାପୀ ସ୍ଥାନ ଜନ ବହୁଳ ଥିଲା । ଡ଼ିଭିଜନାଲ୍ କମିସନର ଖାଲି ପାଦରେ ଯାଉଥିଲେ । ବେଡା ବେଡା ପୁଷ୍ପ ଲୋକମାନେ କୋଠା ଉପରୁ ପକାଉଥିଲେ । ତାଙ୍କର ଶବାଧାରକୁ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନ ମାନେ ବହନ କରି ନେଉଥାଆନ୍ତି । ଲୋକମାନେ ତାଙ୍କର ପଲଙ୍କ ପାଖକୁ ଯାଇ ଖଟଖୁରାରେ ମୁଣ୍ଡ ଲଗାଇ ଆସୁଥିଲେ । ତାଙ୍କର ରାତ୍ର ୧୧ଟାରେ ମୃତ୍ୟୁ ହେଲା କିନ୍ତୁ ପରଦିନ ୨ଟା ସମୟରେ ଶୋଭାଯାତ୍ରା ବାହାରିଲା । ପୁରୀ, ବାଲେଶ୍ୱର ଓ ଗଡ଼ଜାତରୁ କେତେକ ଉଚ୍ଚଶିକ୍ଷିତ ଓ ରାଜାମାନେ ଆସିଥିଲେ ।



"ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ,
ମାଶ୍ଚର୍ଯ୍ୟବଦ୍‌ବଦତି ତଥୈବ ଚାନ୍ୟଃ ।
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି,
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ ॥"

"ଦେହୀ ନିତ୍ୟମବଧ୍ୟୋଦୟଂ,
ଦେହେ ସର୍ବସ୍ୟ ଭାରତ ।
ତସ୍ମାତ୍ ସର୍ବାଣି ଭୂତାନି,
ନ ତ୍ୱଂ ଶୋଚିତୁମର୍ହସି ॥"

(ଦ୍ୱିତୀୟୋଽଧ୍ୟାୟଃ – ସାଂଖ୍ୟଯୋଗଃ – ଶ୍ଳୋକ-୨୯ ଓ ୩୦)

କେ ଆତ୍ମାକୁ ଆଶ୍ଚର୍ଯ୍ୟ ଦେଖେ ।
କେ ପୁଣି ଆଶ୍ଚର୍ଯ୍ୟ ପ୍ରକାଶେ ॥
କେ ଅବା ଶ୍ରବଣେ ଶୁଣନ୍ତି ।
କିଛି ହିଁ ବୁଝି ନ ପାରନ୍ତି ॥
ଆତ୍ମା ଚରିତ ଅଗୋଚର ।
କିଛି ନ ବୁଝେ ଏହା ନର ॥
ଏ ଆତ୍ମା ସମସ୍ତ ଦେହରେ ।
ରହଇ ଅବଧ୍ୟ ରୂପରେ ॥
ଯେଣୁ ଏ ଅବିନାଶୀ ହୋଇ ।
ସର୍ବାବସ୍ଥାରେ ଦେହେ ଥାଇ ॥
ତେଣୁ ଏ ଯୁଦ୍ଧେ ନାଶ ପାଇଁ ।
ଦୁଃଖ ନ କର ବୀର ତୁହି ॥

**ଶବାଧାର ସମ୍ମୁଖରେ ବୋଲା ଯାଉଥିଲା :**

"ଭୂମିକମ୍ପହେବ ମେଦିନୀ ଫାଟିବ
ଉଠିବେ ସହସ୍ର ଭୁଜା
ସେହି ତୋର ପିତା ସେହି ତୋର ମାତା
କର ତାଙ୍କ ପାଦପୂଜା ।"

କେବଳ ତାଙ୍କର ଶବ ଗୋରା କବର ଖାନାରେ କବର ଦିଆଗଲା । ହିନ୍ଦୁମାନେ ତାଙ୍କର ସମାଧି ମନ୍ଦିର ରାଧାନାଥ ରାଏ ଓ ଭକ୍ତକବି ମଧୁସୂଦନଙ୍କ ସମାଧି ମନ୍ଦିର ପାଖରେ ନିର୍ମାଣ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ତାଙ୍କର କନ୍ୟାମାନେ ଆପତ୍ତିକଲେ । ମୃତ୍ୟୁ ଶଯ୍ୟା ପାଖରେ ନୀଳକଣ୍ଠ ଦାଶ ଉପସ୍ଥିତ ଥିଲେ । ମଧୁସୂଦନ ତାଙ୍କୁ କହିଥିଲେ, "ମୁଁ ଆଉ ତୋ ପରି ଯୋଗ୍ୟପୁତ୍ର ଓଡ଼ିଶାରେ ଦେଖୁନାହିଁ । ଓଡ଼ିଶାର ଦାୟିତ୍ୱ ତୋ ଉପରେ ଅର୍ପଣ କରି ମୁଁ ବିଦାୟ ନେଉଛି ।"

୧୯୩୫ ମସିହାରେ Final C.T ପରୀକ୍ଷା ଦେଲି । ପୂର୍ବବର୍ଷ ବିଜ୍ଞାନରେ ୧୦ଜଣ ଛାତ୍ର ଫେଲ ହୋଇଥିବାରୁ ମୁଁ Science paper Englishରେ ଲେଖିବାରୁ କେବଳ ମୋ ଖାତା ବିହାରକୁ ଗଲା । Drawing paperରେ Distinction ପାଇଥିଲି । ସେତେବେଳେ ଟ୍ରେନିଂ ସ୍କୁଲର ଅଧିକାଂଶ ଖାତା ବିହାରକୁ ଯାଉଥିଲା । ମୁଁ Sanskrit, Drawing, ଓ Psychology ରେ Distinction ରଖି ୨ୟ ଶ୍ରେଣୀରେ ପାସ୍ କଲି । କେବଳ ରାମସ୍ୱାମୀ ସେନାପତି ନାମକ ଜଣେ ଛାତ୍ର ୧ମ ଶ୍ରେଣୀରେ ପାସ୍ କରିଥିଲେ । ତାଙ୍କ ଘର କଳାହାଣ୍ଡି । ଭବାନୀପାଟଣା ହାଇସ୍କୁଲରେ Matric C.T Postରେ ରହିଲେ ।



"ଅଥଚେତ୍ତ୍ୱମିମଂ ଧର୍ମ୍ୟଂ,
ସଂଗ୍ରାମଂ ନ କରିଷ୍ୟସି ।
ତତଃ ସ୍ୱଧର୍ମଂ, କୀର୍ତ୍ତିଂ ଚ,
ହିତ୍ୱା ପାପମବାପ୍ସ୍ୟସି ॥

"ଅକୀର୍ତ୍ତିଂ ଚାପି ଭୂତାନି,
କଥୟିଷ୍ୟନ୍ତି ତେଽବ୍ୟୟାଂ ।
ସମ୍ଭାବିତସ୍ୟ ଚାକୀର୍ତ୍ତି,
ର୍ମରଣାଦତିରିଚ୍ୟତେ ॥"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୩୩ ଓ ୩୪)

ଯାହାର ପୂର୍ବପୁଣ୍ୟ ଥିବ ।
ଏ ଯୁଦ୍ଧେ ସେ ଜନ ମରିବ ॥
ଏ ଧର୍ମଯୁଦ୍ଧୁ ଯେବେ କ୍ଷାନ୍ତ ।
ହୋଇବୁ ସରିବ ମହତ ॥
ତୋ ଧର୍ମ କୀର୍ତ୍ତି ନାଶ ଯିବ ।
ପାପ ଯେ ତୋତେ ଗିରାସିବ ॥
ଅନନ୍ତ କାଳର ପର୍ଯ୍ୟନ୍ତ ।
ତୋ ନିନ୍ଦା ଘୋଷିବ ଜଗତ ॥
ନିନ୍ଦା ଯେ ସମ୍ମାନ ବ୍ୟକ୍ତିର ।
ମରଣୁ ବଳି କ୍ଲେଶକର ॥

ସେ ଜାତିରେ ତେଲୁଗୁଥିଲେ । କଳାହାଣ୍ଡିର ଯୁବରାଜ ରାଜାହେବାପରେ ସେ ତାଙ୍କୁ state ପକ୍ଷରୁ ସାହାଯ୍ୟ ଦେଇ ରେଭେନ୍ସା କଲେଜରେ ପଢାଇଲେ । ସେ ଏମ୍.ଏ. ପାସ୍ କରିବା ପରେ ଓଡ଼ିଶାର Training Collegeରେ ଅଧ୍ୟାପକ ଓ ପରେ Deputy Director post ରେ ରହି ଅବ୍ୟାହତି ଗ୍ରହଣ କଲେ । ବର୍ତ୍ତମାନ ସେ ଜଗତସିଂହପୁର Collegeରେ Principal ଅଛନ୍ତି । ଭୁବନେଶ୍ୱରରେ ତାଙ୍କର କୋଠା ଅଛି ।

## ସତ୍ୟବାଦୀ ସ୍କୁଲରେ ଶିକ୍ଷକତା:- ୧୯୩୬-୧୯୪୧

ସତ୍ୟବାଦୀର ପ୍ରସିଦ୍ଧ ବନ ବିଦ୍ୟାଳୟ ୧୯୨୧ ମସିହାରେ ଭାଜି ଯାଇଥିଲା । ୧୯୩୦ ମସିହାରେ ସ୍ୱର୍ଗତ ନୀଳମଣି ସେନାପତି I.C.S ପୁରୀର କଲେକ୍ଟର ଥାଆନ୍ତି । ଅସହଯୋଗ ଆନ୍ଦୋଳନ ଲାଗିଥାଏ । ସତ୍ୟବାଦୀ ସ୍କୁଲ ସମ୍ବନ୍ଧରେ ବହୁ Confidential Record ଥିଲା । ସେଥିରେ ଲେଖାଥିଲା 'It is a serpent under flowers.' ତଥାପି ସତ୍ୟବାଦୀର କେତେକ ବିଶିଷ୍ଟ ବ୍ୟକ୍ତି ବିଶେଷତଃ ଶ୍ରୀ ଚନ୍ଦ୍ରମାଧବ ମିଶ୍ରଙ୍କ ପିତା ସ୍ୱର୍ଗତ ଲକ୍ଷ୍ମଣ ମିଶ୍ର ନୀଳମଣି ବାବୁଙ୍କୁ ଅନୁରୋଧ କରି ୧୯୩୦ ମସିହାରେ ସେଠାରେ ସେହି ପୂର୍ବତନ ସତ୍ୟବାଦୀ ସ୍କୁଲରେ ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠା କଲେ । ଲକ୍ଷ୍ମଣ ମିଶ୍ର ଗୋପବନ୍ଧୁଙ୍କର ସମସାମୟିକ ଥିଲେ ଓ ପୁରୀ ମ୍ୟୁନିସିପାଲିଟିର Accountant ଥିଲେ । ତାଙ୍କର ସୁନାମ ଥିଲା । ସେ ସ୍କୁଲର ସମ୍ପାଦକ ରହି ଚାନ୍ଦାକରି ମାଇନର ସ୍କୁଲକୁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କଲେ । ଛାତ୍ର ଦତ୍ତ ବେତନ



"ଭୟାଦ୍ରଣାଦୁପରତଂ,
ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।।
ଯେଷାଂ ଚ ତ୍ୱଂ ବହୁମତୋ,
ଭୂତ୍ୱା ଯାସ୍ୟସି ଲାଘବଂ ।।"

"ଅବାଚ୍ୟବାଦାଂଶ୍ଚ ବହୂନ୍,
ବଦିଷ୍ୟନ୍ତି ତବାହିତାଃ ।
ନିନ୍ଦନ୍ତସ୍ତବ ସାମର୍ଥ୍ୟଂ,
ତତୋ ଦୁଃଖତରଂ ନୁ କିଂ ।।"

ଯାହାଙ୍କଠାରୁ ବହୁ ମାନ୍ୟ ।
ପାଉଣଥିଲୁ ତୁ ଅର୍ଜୁନ ।।
ଯେବେ ତୁ ଯୁଦ୍ଧ ନ କରିବୁ ।
ନିନ୍ଦିବେ ଅଯଶ ପାଇବୁ ।।
କ୍ଷତ୍ରିୟ ନିନ୍ଦିବେ ବହୁତ ।
ଶୁଣି ତୁ ରହିବୁ କେମନ୍ତ ।।
ପୁଣି ତୁମ୍ଭର ଶତ୍ରୁମାନେ ।
ତୁମ ସାମର୍ଥ୍ୟକୁ ନିନ୍ଦନେ ।।
କହିବେ ନାନା କଟୁବାଣୀ ।
ଏଥୁ କି ଦୁଃଖ ଅଛି ପୁଣି ।।

(ଦ୍ୱିତୀୟୋଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୩୫ ଓ ୩୬)




ଓ ଚାନ୍ଦାରେ ସ୍କୁଲ ଚ଼ଳୁଥିଲା । ୧୯୩୬ ରେ ମୁଁ ଟ୍ରେନିଂ ପାସ୍ କଲି । ସରକାରୀ ଚାକିରି ଦୁର୍ଲଭ ଥିଲା । ସେତେବେଳେ ଆମେ ୩ଜଣ ମାତ୍ର Trained I.A ଓଡ଼ିଶାରେ ଥିଲୁ । ଲକ୍ଷ୍ମଣ ମିଶ୍ରଙ୍କର ଅନୁରୋଧ ରକ୍ଷାକରି ଘର ନିକଟରେ ରହିବାକୁ ଇଚ୍ଛାକରି ସତ୍ୟବାଦୀ ସ୍କୁଲରେ ମାସିକ ଟ୩୫/- ବେତନରେ ନିଯୁକ୍ତ ହେଲି । ସେତେବେଳେ ଶ୍ରୀ ହରିହର ମହାପାତ୍ର B.Sc ପ୍ରଧାନ ଶିକ୍ଷକ ଓ ଶ୍ରୀ ଚିନ୍ତାମଣି ଦାଶ ବି.ଏ.ବି.ଇଡି. ସହକାରୀ ପ୍ରଧାନ ଶିକ୍ଷକ ଥିଲେ । ତା ପରେ ହରେକୃଷ୍ଣପୁର ନିବାସୀ ସ୍ୱର୍ଗତ ଗଙ୍ଗାଧର ରଥ ଓ ମୋର ଜଣେ ସହାଧ୍ୟାୟୀ ସ୍ୱର୍ଗତ ଦୀନବନ୍ଧୁ ଦାଶ ଓ ବୀର ରାମଚନ୍ଦ୍ରପୁରର ସ୍ୱର୍ଗତ ଗଣେଶ୍ୱର ରଥ ସ୍କୁଲରେ ଶିକ୍ଷକତା କରୁଥିଲେ । ମୁଁ ସମସ୍ତଙ୍କ ମଧ୍ୟରେ କନିଷ୍ଠ ଥିଲି । ଛାତ୍ରାବାସରେ ରହିଲି । ପୂର୍ବ ସତ୍ୟବାଦୀ ସ୍କୁଲ ଢାଞ୍ଚାରେ ଛାତ୍ରମାନଙ୍କୁ ଶିକ୍ଷା ଦିଆଯାଉଥିଲା । ସତ୍ୟବାଦୀରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଆରମ୍ଭ ହେବାରୁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବହୁ ସଂଖ୍ୟାରେ ଛାତ୍ର ଆସି ଛାତ୍ରାବାସରେ ରହି ଅଧ୍ୟୟନ କଲେ । Messing ଖର୍ଚ୍ଚ କିରୋସିନ୍ ସହିତ ମାସିକ ଟ୫/- ପଡୁଥିଲା । ସ୍କୁଲରେ ୧୦ମ ଶ୍ରେଣୀ ଖୋଲିଥାଏ । ଛାତ୍ରାବାସରେ ୯୦ଜଣ ଛାତ୍ର ଥାଆନ୍ତି । ଚିନ୍ତାମଣି ଦାଶଙ୍କର ଜ୍ୟେଷ୍ଠଭ୍ରାତା ସ୍ୱର୍ଗତ ନୀଳମଣି ଦାଶ ସ୍କୁଲରେ କିରାଣି ଥିଲେ । ସେ ୨ମାସତଳେ ମରିଯାଇ ଅଛନ୍ତି । ଚିନ୍ତାମଣି ଦାଶ ବର୍ତ୍ତମାନ ଜୀବିତ ଅଛନ୍ତି ।

ତୋର ପିତାମହ, ମାତାମହୀ ଓ ମାତା ଘରେ ଥାଆନ୍ତି । ଦୀର୍ଘ ୨୦ ବର୍ଷପରେ ୧୯୩୬ ମମିହାରେ ତୋର ମାତାଙ୍କର ଗର୍ଭସଞ୍ଚାର ହେଲା । ୮ମ ମାସରେ ନ୍ୟୁମୋନିଆ (ନିମୋନିଆ) ହେବାରୁ ସବାରିରେ

ନେଇ ସତ୍ୟବାଦୀରେ ରଖାଇ ଆୟୁର୍ବେଦ ଚିକିତ୍ସା କରାଇ ଭଲକଲି । କିଛିଦିନ ପରେ ତୋର ମାତାମହୀ ବେମାର ହେବାରୁ ସେ ମଧ୍ୟ ଯାଇ ସତ୍ୟବାଦୀରେ ରହିଲେ ଓ ଗ୍ରହଣୀ ରୋଗରେ ପରଲୋକଗତା ହେଲେ । ସେ ସମୟରେ ମାତା ଅନ୍ତଃସତ୍ତ୍ୱା । ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶ୍ରୀରାମଚନ୍ଦ୍ରପୁରରେ ମୋତେ କରିବାକୁ ପଡ଼ିଲା । ଅନନ୍ୟୋପାୟ ହୋଇ ମୋର ଜଣେ ସହକର୍ମୀ ଶିକ୍ଷକ ସ୍ୱର୍ଗତ ବାଳକୃଷ୍ଣ ମହାପାତ୍ରଙ୍କ ବସାରେ ମୁଁ ଓ ତୋର ମାତା ଯାଇ ରହିଲୁ । ତାଙ୍କର ସ୍ତ୍ରୀ ଜଣେ ଭଦ୍ରମହିଳା ଥିଲେ । ତାଙ୍କରି ବସାରେ ଭାଇନା ଜନ୍ମ ଗ୍ରହଣ କଲା ୧୯୩୭ ମସିହା ନଭେମ୍ବର ମାସ କାର୍ତ୍ତିକ ଶୁକ୍ଳପଞ୍ଚମୀ ଦିନ । ଜନ୍ମ ସମୟରୁ ସେ ବେମାର ହେଲା । ତା'ର ଏକବିଂଶ ଦିବସରେ ସତ୍ୟବାଦୀରେ ସତ୍ୟନାରାୟଣ ପୂଜା ପିତାମହ କଲେ । ତପ୍ତରେ ଗୋଟିଏ ଭଡ଼ାଘର ନେଇ ସେଠାରେ ତୋର ପିତାମହ, ମାତା, ଭାଇନା ରହିଲୁ । ପାଙ୍କୋଳରୁ ଜଣେ ବାରିକ ପିଲା ନେଇ ରଖିଲି । ସେହି ଟ୩୫/-ରେ ଘରଭଡ଼ା ଦେଇ ମାସିକ ଖର୍ଚ୍ଚ ଚଳାଇବାକୁ ପଡ଼ିଲା । ୧୯୩୯ ମସିହାରେ ବଡ଼ନାନୀ ସତ୍ୟବାଦୀରେ ଜନ୍ମ ହେବାରୁ ଚଳିବାକୁ ଅର୍ଥ ଅନାଟନ ହେବାରୁ ସମସ୍ତଙ୍କୁ ଗ୍ରାମକୁ ଛାଡ଼ିଦେଇ ମୁଁ ଛାତ୍ରାବାସରେ ରହିଲି । ପ୍ରତିମାସରେ ଘରକୁ ଟ୩୦/-ଟଙ୍କା ପଠାଉଥିଲି । ମୋର ଦରମା ଟ୪୦/-ଙ୍କା କୁ ବୃଦ୍ଧି ପାଇଲା ।

## ଟାଙ୍ଗି ମଧ୍ୟ ଇଂରାଜୀ ବିଦ୍ୟାଳୟ - ୧୯୪୧-୧୯୪୩

ନିଜେ ଚଳି ଘରେ ସମସ୍ତଙ୍କୁ ଚଳାଇବା ଲାଗି ଅର୍ଥାଭାବର ସମ୍ମୁଖୀନ ହେବାରୁ ମୋତେ ବାଧ୍ୟହୋଇ ସତ୍ୟବାଦୀ ସ୍କୁଲ୍ ତ୍ୟାଗକରି କାଳୁପଡ଼ା ଟାଙ୍ଗି ମଧ୍ୟ ଇଂରାଜୀ ବିଦ୍ୟାଳୟକୁ ପ୍ରଧାନ ଶିକ୍ଷକ ଭାବରେ ମାସିକ ଟ୫୦/- ବେତନରେ ଯିବାକୁ ପଡ଼ିଲା । ଟ୪୫/-ଦେଇଥିଲେ ମୁଁ ସତ୍ୟବାଦୀରେ ରହିଥାଆନ୍ତି । କିନ୍ତୁ ପରିଚାଳନା କମିଟିର ସଭାପତି



ନୀଳକଣ୍ଠ ଦାସ ଓ ସମ୍ପାଦକ ଲକ୍ଷ୍ମଣ ମିଶ୍ର ଅନିଚ୍ଛା ପ୍ରକାଶ କରିବାରୁ ସତ୍ୟବାଦୀ ସ୍କୁଲରୁ ଇସ୍ତଫା ଦେଇ ଟାଙ୍ଗି ଗଲି । ଟାଙ୍ଗିରେ ମୋର ପୂର୍ବ ପରିଚିତ ବନବିହାରୀ ପଟ୍ଟନାୟକ ସ୍କୁଲ I.A. ଓ ପାଙ୍କୋଳର ମୋର ପରିଚିତ ଶ୍ରୀଦୀନବନ୍ଧୁ ମହାପାତ୍ରେ ଡ଼ାକ୍ତର ଥାଆନ୍ତି । ସେମାନେ ପରିଚାଳନା କମିଟିର ସଭ୍ୟଥିଲେ । ସେମାନଙ୍କର ଅନୁରୋଧ ରକ୍ଷାକରି ସେ ସ୍କୁଲର ସମ୍ପାଦକ ସ୍ୱର୍ଗତ ବେଣୁଧର ପଟ୍ଟନାୟକ ମୋ ପାଖକୁ ଆସିଲେ । ସେ ଖୋର୍ଦ୍ଧାର ଜଣେ ବିଶିଷ୍ଟ ସରବରାକାର ଥିଲେ । ୧୯୪୧ ମସିହାରେ ମୁଁ ଟାଙ୍ଗି ଯାତ୍ରାକଲି ।

ଟାଙ୍ଗିର ଜଳବାୟୁ ଭଲ । ଚିଲିକା କୂଳରେ ଅବସ୍ଥିତ । ପ୍ରାକୃତିକ ଦୃଶ୍ୟ ମଧ୍ୟ ମନୋରମ । ସେ ସ୍କୁଲର ପରୀକ୍ଷାଫଳ ସନ୍ତୋଷ ଜନକ ନଥିଲା । ବେଣୁଧର ପଟ୍ଟନାୟକଙ୍କର ଜ୍ୟେଷ୍ଠପୁତ୍ର (ବର୍ତ୍ତମାନ ମୃତ) ୭ମ ଶ୍ରେଣୀରେ ଅଧ୍ୟୟନ କରି ୨ବର୍ଷ ମାଇନର ପରୀକ୍ଷାରେ ଫେଲ୍ ହୋଇଗଲା । ପରୀକ୍ଷା କେନ୍ଦ୍ର ଖୋର୍ଦ୍ଧା ହାଇସ୍କୁଲ ଥିଲା ।

୧୯୪୧ ରେ ୭ମ ଶ୍ରେଣୀରେ ୩୦ ଜଣଛାତ୍ର ଥାଆନ୍ତି । ସ୍କୁଲରେ ଛାତ୍ରୀ କେହି ନଥିଲେ । ମୋର ଦୁର୍ନାମ ଆଶାପୋଷଣ କରି ଶିକ୍ଷକମାନେ ସମସ୍ତ ଛାତ୍ରଙ୍କୁ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ Sent Up କରିବାକୁ ମୋତେ ବାଧ କରିବାରୁ ମୁଁ ସେମାନଙ୍କର ଅଭିପ୍ରାୟ ଜାଣିପାରି ସମସ୍ତଙ୍କୁ Sent up କଲି । ଶିକ୍ଷକମାନେ ସମସ୍ତେ Trained Matric ଓ I.A ଥିଲେ । ସ୍କୁଲରେ ୫ଜଣ ଶିକ୍ଷକ ଥାଆନ୍ତି । ଛାତ୍ରାବାସରେ ୫୦ଜଣ ଛାତ୍ର ଥିଲେ । ମୁଁ ପ୍ରତ୍ୟେକ ଶିକ୍ଷକଙ୍କ ଦାୟିତ୍ୱରେ ୬ଜଣ କରି ଛାତ୍ରଙ୍କୁ ରଖାଇ



"ହତୋବା ପ୍ରାପ୍ସ୍ୟସି ସ୍ୱର୍ଗଂ,
ଜିତ୍ୱା ବା ଭୋକ୍ଷ୍ୟସେ ମହୀଂ ।
ତସ୍ମାଦୁତ୍ତିଷ୍ଠ କୌନ୍ତେୟ,
ଯୁଦ୍ଧାୟ କୃତନିଶ୍ଚୟଃ ॥"
"ସୁଖଦୁଃଖେ ସମେ କୃତ୍ୱା,
ଲାଭାଲାଭୌଜୟାଜୟୌ ।
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ,
ନୈବଂ ପାପମବାପ୍ସ୍ୟସି ॥"
(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୩୭ ଓ ୩୮)

ମରିଲେ ହେବ ସ୍ୱର୍ଗ ଭୋଗ ।
ଜିଣିଲେ ହେବ ରାଜ୍ୟ ଭୋଗ ॥
ଏଣୁ ତୁ ସ୍ଥିର କର ମନ ।
ଯୁଦ୍ଧକୁ ଉଠ ହେ ଅର୍ଜୁନ ॥
ସୁଖ ଦୁଃଖକୁ ସମଜ୍ଞାନ ।
ଜୟ ଅଜୟ ସମଜ୍ଞାନ ॥
ଲାଭ କ୍ଷତି ସମାନ ମଣି ।
ନିର୍ବିବାଦରେ ବୀରମଣି ॥
ଯୁଦ୍ଧେ ଉଦ୍‌ଯୋଗୀ ହୁଅ ବୀର ।
ପାପ ନ ଲାଗିବ ଶରୀର ॥
ଏପରି ଭାବ ମନେ କରି ।
ଯୁଦ୍ଧରେ ପଶ ବୀର ପରି ॥
ଏଥେ ନିର୍ମଳ ମୁକ୍ତି ପାଇ ।
ରହିଛି ଜାଣ ବୀର ତୁହି ॥

ପ୍ରତ୍ୟହ ସ୍କୁଲ ପରେ ଏକଘଣ୍ଟା କାଳ କେବଳ ଛାତ୍ରମାନଙ୍କୁ ପ୍ରଶ୍ନୋତ୍ତର କରାଇଲି । ୩ମାସ ବାରମ୍ବାର ଲେଖିବା ଫଳରେ ସେମାନଙ୍କର ଯଥେଷ୍ଟ ଉନ୍ନତି ହେଲା ଓ କେନ୍ଦ୍ର ପରୀକ୍ଷାରେ ସମସ୍ତେ ପାସ୍ କଲେ ଓ ବେଣୁଧର ବାବୁଙ୍କ ପୁତ୍ର ମଧ ଉତ୍ତୀର୍ଣ୍ଣ ହେଲା । ସେ ସାତିଶୟ ଆନନ୍ଦିତ ହୋଇ ମୋର ମାସିକ ବେତନ ଟ୫୫/- କୁ ବୃଦ୍ଧିକଲେ କିନ୍ତୁ ମୁଁ ଗ୍ରହଣ କରିନଥିଲି । ସେହି ବର୍ଷର ଜଣେ ବାଳକ ମଧ ମାଇନର ବୃତ୍ତି ପାଇଲା । ତତ୍‌ପର ବର୍ଷ ପରୀକ୍ଷା ସନ୍ତୋଷ ଜନକ ହେଲା । ସେତେବେଳକୁ ଗୋଦାବରୀଶ ବାବୁ ମନ୍ତ୍ରୀଥିଲେ । ମୋର ସୁନାମ ନୀଳକଣ୍ଠ ଦାଶ ଶୁଣି ମୋତେ ସତ୍ୟବାଦୀକୁ ଆଣିବାକୁ ଚେଷ୍ଟାକଲେ । ୧୯୪୨ ମସିହାରେ ପୁରୀ, ଗଞ୍ଜାମ ଓ କଟକ ଜିଲ୍ଲାରେ ଭୟାନକ ବାତ୍ୟା ହେଲା । ସେପରି ବାତ୍ୟା ଆଜିକୁ ୩୫ ବର୍ଷ ହେଲା ପୁରୀ ଜିଲ୍ଲାରେ ହୋଇ ନାହିଁ । ୧୯୪୩ ମସିହାରେ ମୁଁ ଟାଙ୍ଗି ସ୍କୁଲ୍ ଛାଡ଼ି ସତ୍ୟବାଦୀକୁ ଆସିଲି । ସେହି ବର୍ଷ ନିଧି ଟାଙ୍ଗି ସ୍କୁଲରୁ ମାଇନର ପାସ୍ କଲା ।

## ସତ୍ୟବାଦୀ ସ୍କୁଲରେ ୨ୟ ବାର ଶିକ୍ଷକତା (୧୯୪୩-୧୯୪୫) :

୧୯୪୩ ମସିହାର ପ୍ରାରମ୍ଭରେ ସତ୍ୟବାଦୀ ଆସି ମାସିକ ଟ ୫୦/- ବେତନରେ ଛାତ୍ରାବାସରେ ରହିଲି । ସେତେବେଳେ ସତ୍ୟବାଦୀ ସ୍କୁଲରେ କେତେକ ଯୋଗ୍ୟ ଶିକ୍ଷକ ଥିଲେ । ରାଏ ସାହେବ ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ଦତ୍ତ ପ୍ରଧାନ ଶିକ୍ଷକ ଥାଆନ୍ତି । ସେ ବଡ଼ ନିଷ୍ଠାପର, ଧାର୍ମିକ ଓ ପରୋପକାରୀ ଥିଲେ । ମୋର ପୂର୍ବତନ ସହକର୍ମୀ ଶିକ୍ଷକଙ୍କ ଛଡ଼ା ବୀରଗୋବିନ୍ଦପୁରର ଶ୍ରୀ ହରିହର ମହାପାତ୍ର B.A. B.Ed, ସ୍ୱର୍ଗତ ପଣ୍ଡିତ



"ଏଷା ତେଽଭିହିତା ସାଂଖ୍ୟେ,
ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ।
ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ,
କର୍ମବନ୍ଧଂ ପ୍ରହାସ୍ୟସି ।।"
"ନେହାଭିକ୍ରମନାଶୋଽସ୍ତି,
ପ୍ରତ୍ୟବାୟୋ ନ ବିଦ୍ୟତେ ।
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ,
ତ୍ରାୟତେ ମହତୋଭୟାତ୍ ।।"
(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୩୯ ଓ ୪୦)

ଏ ସାଂଖ୍ୟ ଆତ୍ମାତତ୍ତ୍ୱଜ୍ଞାନ ।
ତୋ ଆଗେ କହିଲି ଅର୍ଜୁନ ।।
ଏବେ ତୁ କର୍ମଯୋଗ ଶୁଣ ।
ତେଜିବୁ କର୍ମ ମୋହ ଜାଣ ।।
ଏହାର ଆରମ୍ଭ ବିନାଶ ।
ନାହିଁ ତୁ ଜାଣ ବୀରଈଶ ।।
ପ୍ରାରବ୍‌ଧ ନିଷ୍ଫଳତା ନାହିଁ ।
ଶେଷରେ ପାତକ ନ ହୋଇ ।।
ଅଳପେ ବହୁଗୁଣ ଫଳେ ।
ଅଭ୍ୟାସୀ ଜନ ଭବୁ ତରେ ।।

ବାସୁଦେବ ମହାପାତ୍ର ଓ ସ୍ୱର୍ଗତ ପରମାନନ୍ଦ ମିଶ୍ର ପ୍ରମୁଖ ଶିକ୍ଷକ ମାନେ ଆସି ରହିଲେ । ରାଜେନ୍ଦ୍ର ବାବୁ ଦିନ ମଧ୍ୟରେ ୨ଟି ମାତ୍ର ପିରିୟଡ୍ ନେଉଥିଲେ । ଉପଯୁକ୍ତ ଶିକ୍ଷକ ମାନଙ୍କ ହସ୍ତରେ ୧୦ମ ଓ ୧୧ଶର ବିଷୟ ନ୍ୟସ୍ତ କରି ସେ ନିଶ୍ଚିନ୍ତ ରହୁଥିଲେ । ୧୯୪୪ ମସିହାରେ ରମାନାନୀ ଜନ୍ମଗ୍ରହଣ କଲା । ୧୯୪୫ ମସିହାରେ ବିଶ୍ୱନାଥ ମି.ଇ ସ୍କୁଲର ପ୍ରଧାନ ଶିକ୍ଷକ ସ୍ୱର୍ଗତ ଗଙ୍ଗାଧର ମହାପାତ୍ର ଭାର୍ଗବୀ ହାଇସ୍କୁଲକୁ ଆସିବାରୁ ମୁଁ ସତ୍ୟବାଦୀ ସ୍କୁଲରୁ ୧ବର୍ଷ ଛୁଟି ଆଣି ବିଶ୍ୱନାଥ ମି.ଇ. ସ୍କୁଲର ପ୍ରଧାନ ଶିକ୍ଷକ ହୋଇ ରହିଲି । ସେହି ବର୍ଷ ମୋର ଅବସ୍ଥା ସଙ୍କଟାପନ୍ନ ହେଲା । ମୋତେ cholera ହେଲା । ଡ଼ାକ୍ତର ମହାଦେବ ମିଶ୍ର ଆସି ଚିକିତ୍ସା କରିବାରୁ ଭଲ ହେଲି । ତତ୍ ପୂର୍ବରୁ ତୋର ମାତାକୁ ମଧ୍ୟ cholera ହୋଇଥିଲା । ଦୁଇଟି saline injection ଦିଆଗଲା । ତା'ର ଅବସ୍ଥା ସଙ୍କଟାପନ୍ନ ଥିଲା । ୧୯୪୫ ମସିହାରେ ତୋର ମାତାର ମାନସିକ ବିକୃତି ଦେଖାଗଲା । ବହୁ ଔଷଧ ଦେଇ ଭଲ ନହେବାରୁ କେତେଜଣ ଡ଼ାକ୍ତର ତାହାକୁ ସ୍ଥାନାନ୍ତରରେ ରଖାଇବାକୁ ପରାମର୍ଶ ଦେବାରୁ ବର୍ଷ ଶେଷରେ ପୁନର୍ବାର ସତ୍ୟବାଦୀ ସ୍କୁଲକୁ ଗଲି ।

## ସତ୍ୟବାଦୀ ସ୍କୁଲରେ ୩ୟ ଥର ଶିକ୍ଷକତା (୧୯୪୬-୧୯୪୯):

୧୯୪୬ ମସିହାରେ ସତ୍ୟବାଦୀ ସ୍କୁଲକୁ ଯାଇ ଛାତ୍ରାବାସର ପରିଚାଳକ ହୋଇ ମାସିକ ଟ୧୦/- ପାଇଲି । ସ୍କୁଲରୁ ମାସିକ ବେତନ ଟ୫୦/- ପାଉଥିଲି । ତୋର ପିତାମହ, ଭାଇନା ଓ ଦୁଇ ନାନୀ ଯାଇ ସତ୍ୟବାଦୀରେ ମୋ ପାଖରେ ରହିଲେ । ଘରୁ ଚାଉଳ ନେଉଥିଲି । ତେଣୁ ଚ଼ଳିବାକୁ ବିଶେଷ ଅସୁବିଧା ହେଉନଥିଲା । ଛାତ୍ରାବାସର କର୍ମଚାରୀମାନେ ଆସି ବୋଉକୁ ସାହାଯ୍ୟ କରୁଥିଲେ । ଭାଇନା ଓ ଉମାନାନୀ ସେବକ ସାହି ଉ:ପ୍ରା ସ୍କୁଲରେ ପଢ଼ିଲେ । ୧୯୪୭ ମସିହାରେ ତୋର ପିତାମହ କାର୍ତ୍ତିକ ମାସରେ ୧ଲକ୍ଷ ଗୋପାଳ ମନ୍ତ୍ର ଜପ କରି ହବିଷ୍ୟ କରିଥିଲେ । ଘରର ଇଷ୍ଟଦେବତା ସେଠାରେ



"ଯାମିମାଂ ପୁଷ୍ପିତାଂ ବାଚଂ,
ପ୍ରବଦନ୍ତ୍ୟବିପଶ୍ଚିତଃ ।
ବେଦବାଦରତାଃ ପାର୍ଥ,
ନାନ୍ୟଦସ୍ତୀତି ବାଦିନଃ ॥"

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୪୨)

ଏଣୁ ଏଥିରେ ଚିତ୍ତ ତୁହି ।
କେବେ ନ ଦିଅ ମୁଁ କହଇ ॥
ବେଦବାଦୀ ଯେତେକ ଜନ ।
ସ୍ୱର୍ଗ ତାଙ୍କର ଶ୍ରେଷ୍ଠ ସ୍ଥାନ ॥
ସ୍ୱର୍ଗହୁଁ ବଳି ସୁଖ ନାହିଁ ।
ଲୋକରେ କହନ୍ତି ଯେ ସେହି ॥
କାମନା ବ୍ରତ ଲକ୍ଷ୍ୟ ସ୍ୱର୍ଗ ।
କର୍ମକାଣ୍ଡ ଯେ ସାର ମାର୍ଗ ॥

ଥିଲେ । ରହିବାକୁ ଘର ପ୍ରଶସ୍ତ ଥିଲା । ତାଙ୍କର ଆରାଧନା ଫଳରେ ୧୯୪୮ ଜାନୁଆରୀ ତା ୩୦ରିଖ ଅର୍ଥାତ୍ ମହାତ୍ମା ଗାନ୍ଧୀଙ୍କର ମହାପ୍ରୟାଣ ଦିବସରେ ରାତ୍ର ୪ ଘଟିକା ସମୟରେ ତୁ ଭୂମିଷ୍ଠ ହେଲୁ ।

ତୋର ଜନ୍ମର ଏକବିଂଶ ଦିବସରେ ପିତାମହ ସତ୍ୟ ନାରାୟଣ ପୂଜା କରି ତୋର ନାମ କୃଷ୍ଣ, ଡ଼ାକ ନାମ କାହ୍ନୁ ଦେଲେ । ମୁଁ ଯେଉଁ ଗୃହରେ ଥିଲି ସେହି ଗୃହରେ ପ୍ରଧାନ ଶିକ୍ଷକ ଆସି ରହିବାର ହେଲା । ହରିବାବୁ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ପୂର୍ବରୁ ଲକ୍ଷ୍ମୀ ଶଙ୍କର ଭଟ୍ଟନାଗର ନାମକ ଜଣେ ଏମ୍.ଏ ଉପାଧିଧାରୀ ଶିକ୍ଷକ ମଧ୍ୟପ୍ରଦେଶରୁ ଆସି ସତ୍ୟବାଦୀ ସ୍କୁଲ୍‌ରେ ପ୍ରଧାନ ଶିକ୍ଷକ ଭାବରେ ୨ବର୍ଷ କାଳ ଥିଲେ । ସେ ଓଡ଼ିଆ ଜାଣି ନଥିବାରୁ ମୁଁ ତାଙ୍କୁ ପ୍ରତ୍ୟହ ରାତ୍ରରେ ଓଡ଼ିଆ ପଢ଼ାଉଥିଲି । ସେ ମାସିକ ଟ୧୦୦/- ପାଉଥିଲେ । ସେ ପୂର୍ବରୁ ସୈନିକ ବିଭାଗରେ ଥିଲେ । ପରେ ମଧ୍ୟପ୍ରଦେଶର ଗୋଟିଏ ହାଇସ୍କୁଲ୍‌ରେ ଶିକ୍ଷକତା କଲେ । ନୀଳକଣ୍ଠ ଦାସଙ୍କର ଆହ୍ୱାନ ପାଇବାରୁ ସେ ସତ୍ୟବାଦୀ ଆସିଲେ । ବାହାରେ ରହି ଛାତ୍ରାବାସର ପରିଚାଳକ ହେବାକୁ ମୋତେ କୁହାଯିବାରୁ ବାଧ ହୋଇ ୧୯୪୮ମସିହାରେ ତୁମ୍ଭ ମାନଙ୍କୁ ଗ୍ରାମକୁ ଛାଡ଼ିଦେଇ ମୁଁ ଛାତ୍ରାବାସରେ ପରିଚାଳକ ହୋଇ ରହିଲି । ସେଠାରେ ୧ବର୍ଷ ରହିବା ପରେ ଭାର୍ଗବୀ ସ୍କୁଲ୍‌ରେ ଗୋଟିଏ I.A.CT. Post ଖାଲି ହେଲା । ପଣ୍ଡିତ ଜଗନ୍ନାଥ ରଥଙ୍କ ପ୍ରେରଣା ପାଇ ସେହି ଗ୍ରାମର ହାଇସ୍କୁଲ୍‌କୁ ୧୯୪୯ ମସିହା ଅପ୍ରେଲ୍ ପହିଲାରେ ସତ୍ୟବାଦୀ ସ୍କୁଲ୍‌ରୁ ଚିର ବିଦାୟ ନେଇ ଆସିଲି । ସେତେବେଳକୁ I.A.C.T. ଶିକ୍ଷକ ମାନଙ୍କର ମାସିକ ବେତନ ଟ୬୦/- ହୋଇଯାଇଥାଏ ।

## ଭାର୍ଗବୀ ସ୍କୁଲ୍‌ରେ ଶିକ୍ଷକତା (୧୯୪୯-୧୯୫୬):

୧୯୪୯ ମସିହାରେ ଗ୍ରାମ ହାଇସ୍କୁଲ୍‌କୁ ଆସିବା ସମୟରେ ବାଜପୁର ନବଜୀବନର ସମ୍ପାଦକ ଶ୍ରୀ ଚିନ୍ତାମଣ ମିଶ୍ର (ବର୍ତ୍ତମାନ ଜୀବିତ)ଙ୍କର ସାନଭାଇ ଶ୍ରୀ ନୀଳମଣି ମିଶ୍ର ପ୍ରଧାନ ଶିକ୍ଷକ ଥିଲେ ।



ତାଙ୍କପରେ ଶ୍ରୀ କୈଳାସ ମହାପାତ୍ର (ମୋର ଜଣେ ସହାଧ୍ୟାୟୀ) ବୀରପ୍ରତାପପୁରର ଶ୍ରୀ ନିତ୍ୟାନନ୍ଦ ମିଶ୍ର, ଶ୍ରୀ ଲୋକନାଥ ମହାପାତ୍ର ଏମ୍.ଏ, ଶ୍ରୀ ମଦନ ସୁନ୍ଦର ଦାସ, (୨ମାସ ତଳେ ୯୧ବର୍ଷ ବୟସରେ ପ୍ରାଣତ୍ୟାଗ କଲେ) ଯଥାକ୍ରମେ ପ୍ରଧାନ ଶିକ୍ଷକ ହୋଇ ରହିଲେ । କୈଳାସ ମହାପାତ୍ରଙ୍କ ସମୟରେ ତୋର ଶିକ୍ଷକ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ ହିନ୍ଦୀ ଶିକ୍ଷକ ଭାବରେ ଭାର୍ଗବୀ ସ୍କୁଲ୍‌କୁ ଆସିଲେ । ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କର ମୃତ୍ୟୁ ପରେ ସୁଦର୍ଶନ ବାବୁ ଆଜିକୁ ୩୦ ବର୍ଷ ହେଲା ଭାର୍ଗବୀ ସ୍କୁଲ୍‌ରେ ହେଡ୍ ପଣ୍ଡିତ ହୋଇ ରହିଅଛନ୍ତି । **ସେ ବୟସରେ ମୋର କନିଷ୍ଠ ହୋଇଥିଲେ ମଧ ଜ୍ଞାନରେ ଜ୍ୟେଷ୍ଠ ଥିବାରୁ ମୁଁ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରେ ।** ୧୯୫୫ ମସିହା ଡ଼ିସେମ୍ବର ମାସରେ ପିତାମହଙ୍କର ୮୪ ବର୍ଷ ବୟସରେ ମୃତ୍ୟୁ ହେଲା । ୧୯୫୬ ରେ ଭାଇଙ୍କର ମସ୍ତିଷ୍କ ବିକୃତ ହେଲା । ବହୁ ଅର୍ଥ ବ୍ୟୟ କଲି । ତାକୁ ସମ୍ଭାଳି ରଖିବା ଅସମ୍ଭବ ହେଲା । କେବଳ ନୀଳକଣ୍ଠ ଦାସଙ୍କ ସହାୟତାରେ ତାକୁ ରାଞ୍ଚି ପଠାଇଲି । ନୀଳକଣ୍ଠ ବାବୁ ସେ ସମୟରେ ଓଡ଼ିଶା ବିଧାନ ସଭାର ବାଚ୍‌ସ୍ପତି ଥିଲେ । ସେ ଓଡିଶାର ମୁଖ୍ୟ ଶାସନ ସଚିବ (Chief Secretary) ଶିବରମଣଙ୍କୁ ଫୋନ୍‌ରେ ଅନୁରୋଧ କରିବାରୁ ସେ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକଙ୍କୁ କହିଲେ । ତେଣୁ Director ରାଞ୍ଚି ପଠାଇବାକୁ ଆଦେଶ ଦେଲେ ।

ଗଦେଇ ମଉସା ଓ ମୁଁ ଭାଇନାକୁ ନେଇ ରାଞ୍ଚି ନିକଟସ୍ଥ କାଙ୍କେ ମାନସିକ ଚିକିତ୍ସାଳୟରେ ଛାଡ଼ିଦେଇ ଆସିଲୁ । ତା ଚିନ୍ତାରେ ବୋଉର ଦେହ ଖରାପ ହେଲା । ନାନୀ ବିଭା ହୋଇ ସାରିଥାଏ । ସେତେବେଳକୁ ମୁଁ ଭାର୍ଗବୀ ସ୍କୁଲ୍‌ରେ ଟ ୮୦/- ପାଉଥିଲି । କିନ୍ତୁ ବୋଉର ଅବସ୍ଥା ଦେଖି ବାଧ ହୋଇ ୧୯୫୭ ଅଗଷ୍ଟ ପହିଲାରେ ଗଦାଧର ହାଇସ୍କୁଲ୍‌ରେ ୧ବର୍ଷ ରହିଲି । ପୁରୀ ଗୁଡ଼ିଆ ସାହିରେ ତୁମେ ସମସ୍ତେ ରହିଲ ।

## ଗଦାଧର ହାଇସ୍କୁଲ୍ :-(୧୯୫୭-୫୮)

ଗଦାଧର ହାଇସ୍କୁଲ୍ ରେ ୧୯୫୭ ମସିହା ଅଗଷ୍ଟ ପହିଲାରେ join କଲି । ଘରେ ତାଲା ପଡ଼ିଲା । ସ୍କୁଲ୍‌ରୁ ଟ.୬୦/- ବେତନ ପାଉଥିଲି । ଘରଭଡ଼ା ମାସିକ ଟ୧୫/- ଦେଉଥିଲି । ଘରୁ ଧାନ ନେଉଥିଲି । ଚଳିନପାରିବାରୁ ବାଧ ହୋଇ ଦୁଇ ବେଳା ଟ୍ୟୁସନ୍ କରିବାକୁ ପଡ଼ିଲା । ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଶ୍ରୀକୃଷ୍ଣ ପ୍ରତିହାରୀ ଅତି ଭଦ୍ର ଲୋକ । ୧୯୫୮ ଜୁଲାଇ ପହିଲାରେ ସରକାର କେତେକ



ହାଇସ୍କୁଲର ପରିଚାଳନା ଦାୟିତ୍ୱ ହସ୍ତକୁ ନେବାରୁ ମୁଁ ଇନ୍‌ସ୍‌ପେକ୍ଟରଙ୍କୁ ଆପତ୍ତି ଦରଖାସ୍ତ ଦେଇ ଭାର୍ଗବୀ ସ୍କୁଲକୁ ୧୯୫୮ ଅଗଷ୍ଟ ପହିଲାରେ ଆସିଲି । ସେତେବେଳେ ଇନ୍‌ସ୍‌ପେକ୍ଟରଙ୍କ ଅଫିସ ବ୍ରହ୍ମପୁରରେ ଥିଲା ।

## ଭାର୍ଗବୀ ସ୍କୁଲରେ ଶିକ୍ଷକତା (୧୯୫୮-୧୯୬୯)

ଭାର୍ଗବୀ ସ୍କୁଲରେ ବହୁ ଦରଖାସ୍ତ କରି ମୁଁ ମୋର ପୂର୍ବ ବେତନ ଟ ୮୦/- ପାଇଲି । ତୁ ଆସି ୬ଷ୍ଠ ଶ୍ରେଣୀରେ ନାମ ଲେଖାଇଲୁ । ତୋର ବାଲ୍ୟ ଜୀବନରେ ରହିବାର ଅସ୍ଥିରତା ରହିବା ଫଳରେ ୬ଷ୍ଠ ଶ୍ରେଣୀରେ ପଢ଼ିଲା ବେଳକୁ ତୋର ପ୍ରକୃତ ବୟସ ୧୧ବର୍ଷ ହୋଇଯାଇଥିଲା । ରମାନାନୀ ୮ମ ଶ୍ରେଣୀରେ ନାମ ଲେଖାଇଲା । ୧୯୬୦ ମସିହାରୁ ମହଙ୍ଗାଭତ୍ତା ଦିଆଗଲା । ମଦନ ବାବୁଙ୍କ ପରେ ଶ୍ରୀ ଗୋବିନ୍ଦ ପୃଷ୍ଟି କାକଟପୁର ସ୍କୁଲରୁ ବଦଳି ହୋଇ ଆସିଲେ । ସେ ମୋର ପୂର୍ବତନ ଛାତ୍ର ଥିଲେ । ସେ ୨ବର୍ଷ ରହିବା ପରେ କାକଟପୁର ଗଲେ ଓ ଶ୍ରୀ ବାଉରିବନ୍ଧୁ ପାଣିଗ୍ରାହୀ ପ୍ରଧାନ ଶିକ୍ଷକ ହୋଇ ଆସିଲେ । ତାଙ୍କରି ସମୟରେ ତୁ Matriculation ପାସ୍ କଲୁ । ରମା ନାନୀ ମଦନ ବାବୁଙ୍କ ସମୟରେ ୨ୟ ଶ୍ରେଣୀରେ Matriculation ପାସ୍ କରି ବୃତ୍ତି ପାଇଥିଲା । ଭାର୍ଗବୀ ସ୍କୁଲରେ ସେ ପ୍ରଥମ ଛାତ୍ରୀ ଭାବେ Matriculation ପାସ୍ କରିଥିଲା । Matriculation ପରୀକ୍ଷା ଦେବା ପରେ ତାକୁ ବିବାହ ଦେଲି । ତତ୍‌ପରେ ସେ ପୁରୀ ମହିଳା କଲେଜରେ I.A. ପଢିଲା । I.A. ରେ ୨ୟ ଶ୍ରେଣୀରେ ପାସ୍ କରି ବୃତ୍ତି ପାଇଥିଲା । ତା'ପରେ ରାମଜନ୍ମ ହେବାରୁ ତା'ର କଲେଜ ପଢ଼ା ବନ୍ଦ ହେଲା । ପୁରୀରେ ଥିବା ସମୟରେ ତାରା ୧୯୫୮ ନଭେମ୍ବର ମାସରେ ଜନ୍ମ ଗ୍ରହଣ କଲା । ରମାନାନୀ ୧୯୬୨ ରେ Matriculation ପାସ୍ କଲା । ବର୍ଷକ ପରେ ତା'ର ସ୍ୱାମୀ ବି.ଏ. ପାସ୍ କରି ବାଙ୍କି ବ୍ଲକ୍‌ରେ ଚାକିରି କରିବାରୁ ରମାନାନୀ ବାଙ୍କି କଲେଜରେ ବି.ଏ.ପଢିଲା ।



ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ,<br>
ତୟାପହୃତଚେତସାଂ ।<br>
ବ୍ୟବସାୟାତ୍ମିକା ବୁଦ୍ଧିଃ,<br>
ସମଧୌ ନ ବିଧୀୟତେ ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୪୪)

ନାରୀ ସଂଯୋଗ ଯେହ୍ନେ ସୁଖ ।<br>
ଶେଷରେ ମିଳେ ନାନା ଦୁଃଖ ॥<br>
ପୁଣ୍ୟ ଶେଷରେ ସ୍ୱର୍ଗ ଚ୍ୟୁତ ।<br>
ବେଦ କର୍ମର ଏ ସିଦ୍ଧାନ୍ତ ॥<br>
ଐଶ୍ୱର୍ଯ୍ୟେ ହୋଇ ପରାଧୀନ ।<br>
ସମାଧି ଯୋଗେ ନାହିଁ ଜ୍ଞାନ ॥<br>
ସମତା ନ ଆସଇ ଯେଣୁ ।<br>
ମୋକ୍ଷପଦ ନ ଲଭେ ତେଣୁ ॥

ରମା ବାଙ୍କି କଲେଜରେ ପଢ଼ିବା ସମୟରେ ମାମୀ ଜନ୍ମ ହେଲା । ସେତେବଳକୁ ତା'ର B.A. Final ୧ମାସ ଥାଏ । ମାମୀକୁ କଲେଜ ଛାତ୍ରାବାସରେ କେତେଜଣ ବାଳିକାଙ୍କ ପାଖରେ ଛାଡ଼ିଦେଇ ପରୀକ୍ଷା ହଲ୍‌କୁ ଯାଏ । ଏହିପରି ଭାବରେ B.A.ରେ Political Sc. ରେ 2nd Class Hons ପାଇ B.A. ପାସ୍ କଲା । ବି.ଏ. ଫଳ ବାହାରି ନଥାଏ ମୁଁ ତାକୁ ସଙ୍ଗରେ ନେଇ ଅନୁଗୁଳ ଗଲି । ସେଠାରେ ତା'ର Interview ହେଲା । ପ୍ରାୟ ୨୦ ଜଣ ଶିକ୍ଷୟିତ୍ରୀ B.Ed ଟ୍ରେନିଂ ପାଇବାକୁ ଯାଇଥିଲେ । ତା'ର ଦିଅର ଜଗନ୍ନାଥ ଅନୁଗୁଳରେ ଚାକିରି କରୁଥିଲା । ରମାର Selection ହୋଇଗଲା । ସେ B.Ed. ପାସ୍ କଲା । ସେଠାରୁ ଫେରି ତାଙ୍କ ଗ୍ରାମରେ ରହିଲା । ସେହି ସମୟରେ ତାର ଶାଶୁ ପୁରୀ ଡ଼ାକ୍ତରଖାନାରେ ମୃତ୍ୟୁ ବରଣ କଲେ । ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟାପରେ ରାମକୁ ଆମ ଘରେ ରଖି ଦଶପଲ୍ଲାରେ ଘରୋଇ ହାଇସ୍କୁଲରେ ଚାକିରି କଲା । ସେଠାରେ ୬ ମାସ ପରେ ବାଉ ଭାଇନାଙ୍କ ଚେଷ୍ଟାରେ ବ୍ରହ୍ମପୁର ସରକାରୀ ବାଳିକା ହାଇସ୍କୁଲରେ ଚାକିରି କଲା । ସେତେବେଳେ ବାଉ ଭାଇନା ଭୁବନେଶ୍ୱରରେ D.P.I. Officeରେ Senior Accounts Officer ଥା'ନ୍ତି । ରମାନାନୀର ସ୍ୱାମୀ ବି.ଏ. ପାସ୍ କରିବା ପରେ ବ୍ରହ୍ମପୁର ଜେଲରେ ଆସିଷ୍ଟାଣ୍ଟ ଜେଲର ଥା'ନ୍ତି ।

୧୯୬୯ ମସିହାରେ ଭାର୍ଗବୀ ସ୍କୁଲ ସରକାରୀ ସ୍କୁଲରେ ପରିଣତ ହେବାରୁ ଓ ମୋର ବୟସ (Certificate age) ୬୧ ହୋଇଥିବାରୁ ମୁଁ, ଓ କଣ୍ଠ ପଣ୍ଡିତେ ସ୍କୁଲରୁ ବିଦାୟ ନେଲୁ । ଓଡ଼ିଶାର ୧୪୨ଟି Taken Over High School ସରକାରୀ ସ୍କୁଲରେ ପରିଣତ ହେଲା । ଆମେ ୬୦ଜଣ ଶିକ୍ଷକ ପ୍ରତ୍ୟେକ ଟ ୧୦୦/- ଦେଇ କଟକ High Courtରେ ରିଟ୍ କଲୁ । ରିଟ୍ ଅଗ୍ରାହ୍ୟ ହେଲା । ତେଣୁ ବାଧ୍ୟହୋଇ ଘରେ ରହିବାକୁ ପଡ଼ିଲା । କେତେକ ଘରୋଇ ସ୍କୁଲରେ ରହିବା ପାଇଁ ସେ ସବୁ ସ୍କୁଲର ସେକ୍ରେଟାରୀ ମାନେ ମୋ ପାଖକୁ ଆସିଲେ । ମୁଁ ଗ୍ରାମର ସୋସାଇଟ୍‌ର ସଭାପତି



ତ୍ରୈଗୁଣ୍ୟବିଷୟା ବେଦା,
ନିସ୍ତ୍ରୈଗୁଣ୍ୟୋଭବାର୍ଜୁନ ।
ନିର୍ଦ୍ୱନ୍ଦ୍ୱୋନିତ୍ୟସତ୍ତ୍ୱସ୍ଥୋ,
ନିର୍ଯୋଗକ୍ଷେମ ଆତ୍ମବାନ୍ ।।

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୪୫)

ତ୍ରିଗୁଣ ଛାଡି ହୋ ତୁ ଧର ।
ସର୍ବ ସମାନ ମନେ କର ।।
ନିତ୍ୟ ସତ୍ତ୍ୱଗୁଣ ଅଧୀନ ।
ହୁଅ ତୁ ହେ ବୀର ଅର୍ଜୁନ ।।
ଅପ୍ରାପ୍ତ ବସ୍ତୁ ପ୍ରାପ୍ତ ପାଇଁ ।
ଉଦ୍‌ଯୋଗ କର ନାହିଁ ତୁହି ।।
ଯେ ପ୍ରାପ୍ତ ତା'ର ସଂରକ୍ଷଣେ ।
ତତ୍ପର ହୁଅ ବୀର ମନେ ।।
ତ୍ରିଗୁଣ ଛାଡ଼ି ଆତ୍ମାଚିନ୍ତା ।
କର ତୁ ବୀର ସାଧୁଚେତା ।।




ଥିଲି । ମୋର ଅକ୍ଳାନ୍ତ ପରିଶ୍ରମ ଫଳରେ ସମିତି ପୁରୀ ଜିଲ୍ଲାରେ ସୁନାମ ଅର୍ଜନ କରିଥିଲା । ୧୯୭୦ ମସିହାରେ ଓଡ଼ିଶା ରାଜ୍ୟପାଳଙ୍କ ଅଧ୍ୟାଦେଶ Ordinance ଫଳରେ ମୋତେ ସମବାୟ ସମିତିକୁ ଛାଡ଼ିବାକୁ ପଡ଼ିଲା । ସେତେବେଳକୁ ସମିତିର ପ୍ରାୟ ଟ୨୦୦୦/-ରଣ ଥାଏ । ଏଣେ ଘରେ ଅର୍ଥର ଅନଟନ । ତେଣୁ ପ୍ରତାପ ରାମଚନ୍ଦ୍ର ପୁରରେ ଗୋଟିଏ ମାଇନର ସ୍କୁଲ ସ୍ଥାପନ (ପ୍ରତାପ ରାମଚନ୍ଦ୍ରପୁର ମି.ଇ ସ୍କୁଲ ୧୯୭୧-୭୫) କରି ସେଠାରେ ମାସିକ ଟ୧୦୦/- ବେତନରେ ପ୍ରଧାନ ଶିକ୍ଷକ ହୋଇ ରହିଲି । ସେଠାରେ ୩ ବର୍ଷ ରହି ସ୍କୁଲକୁ ଗୋଟିଏ ଆଦର୍ଶ ମି.ଇ. ସ୍କୁଲରେ ଗଢ଼ିଲି । ୩ ବର୍ଷ ମଧ୍ୟରେ ସ୍କୁଲରୁ ୨ଜଣ ଛାତ୍ରୀ ବୃତ୍ତି ପାଇଲେ ।

ତୁ ୧୯୭୩ ମସିହାରେ ଚାକିରିରେ ପ୍ରବେଶ କଲୁ । ତୋର ଚାକିରି କରିବାର ୨ ବର୍ଷ ପରେ ମୁଁ ୧୯୭୫ରେ ଘରେ ରହିଲି । ପ୍ରତାପରାମଚନ୍ଦ୍ରପୁରର ଗ୍ରାମବାସୀମାନେ ବିଦାୟ ସଭାରେ ବହୁ ସମ୍ବର୍ଦ୍ଧନାକରି ବିଦାୟ ଦେଲେ । ତାପରେ ୧୯୭୭ ମସିହାରେ

ଯାବାନର୍ଥ ଉଦପାନେ,
ସର୍ବତଃ ସଂପ୍ଳୁ ତୋଦକେ ।
ତାବାନ୍ ସର୍ବେଷୁ ବେଦେଷୁ,
ବ୍ରାହ୍ମଣସ୍ୟ ବିଜାନତଃ ॥
କର୍ମଣ୍ୟେବାଧିକାରସ୍ତେ,
ମା ଫଳେଷୁ କଦାଚନ ।
ମା କର୍ମଫଳହେତୁର୍ଭୂ,
ର୍ମାତେ ସଙ୍ଗୋଽସ୍ତ୍ୱ କର୍ମଣି ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୪୬ ଓ ୪୭)

କୂପ ତଡ଼ାଗ ନଦୀ ହ୍ରଦ ।
ସେ ଜଳ ଘେନଇ ମାନସ ।
ମହାସମୁଦ୍ର ଲୁଣି ଜଳ ।
ଲଭିଲେ ତହୁଁ ବହୁ ଫଳ ॥



ବେଦୋକ୍ତ କର୍ମକାଣ୍ଡାଦିରେ ।
ଯେ ଫଳ ଲାଭ ହୋଇପାରେ ॥
ବ୍ରହ୍ମଦରଶୀ ଯେ ବ୍ରାହ୍ମଣ ।
ଅକ୍ଳେଶେ ଲଭେ ଏଥୁଁ ପୁଣ୍ୟ ॥
ତେଣୁ ଯେ ସମୁଦ୍ର ଲଭଇ ।
କୂପ ନଦୀରେ କାର୍ଯ୍ୟ ନାହିଁ ॥
ଯେ ଆତ୍ମଦର୍ଶୀ ତତ୍ତ୍ୱ ଜ୍ଞାନୀ ।
ବେଦେ ତା କିସ କାର୍ଯ୍ୟ ପୁଣି ॥
କର୍ମ ଯେ ତୁମ୍ଭର ଅଧୀନ ।
କର୍ମଫଳେ ନ ଦିଅ ମନ ॥
ପ୍ରବୃତ୍ତି କର୍ମଫଳେ ନୋହି ।
ଆସକ୍ତି ଅକର୍ମା ନ ହୋଇ ॥
ଏ ଅଟେ ନିଷ୍କାମ ଭକତି ।
ଏଥିରେ ମିଳେ ଯେ ମୁକତି ॥

ସରକାର ଆମର କାର୍ଯ୍ୟକାଳ ବିଚାର କରି ୧୯୬୯ ମସିହାର ବିଦାୟୀ ଶିକ୍ଷକ ମାନଙ୍କୁ ଅବସର କାଳୀନ ପେନ୍‌ସନ୍ ସର୍ବନିମ୍ନ ପେନସନ୍ ଟ୭୦/- ପ୍ରଦାନ କଲେ ।

## ପେନ୍‌ସନ୍ :

ଏହି ପେନ୍‌ସନ୍ ପାଇବା ପାଇଁ ଖୋର୍ଦ୍ଧା ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ସ୍ୱର୍ଗତ ବିଶ୍ୱେଶ୍ୱର ପଟ୍ଟନାୟକ ବହୁ ଶ୍ରମ ସ୍ୱୀକାର କରିଥିଲେ । କେବଳ ତାଙ୍କରି ଚେଷ୍ଟା ଫଳରେ ଦୁଃସ୍ଥ ଶିକ୍ଷକମାନେ ପେନ୍‌ସନ୍ ପାଇଲେ ।

ଉମାନାନୀର ୪ ଗୋଟି ପିଲା ପୁରୀ ଡ଼ାକ୍ତରଖାନାରେ ପ୍ରସବ ହୋଇଥିଲେ । କେବଳ ଇତି ଗ୍ରାମରେ ଜନ୍ମ ହୋଇଥିଲା । ରମାନାନୀର ରାମ ଓ କତି ପୁରୀରେ ଜନ୍ମ ହୋଇଥିଲେ । ମାମୀ ବାଙ୍କିରେ ଓ ଲାଲୁ ବ୍ରହ୍ମପୁରରେ ଜନ୍ମ ହୋଇଥିଲା । ଦୁଇ ନାନୀଙ୍କୁ ସଙ୍ଗରେ ନେଇ ମୁଁ ଓ ବୋଉ ପୁରୀ ଯାଇଥିଲୁ । ତାରା ଭାର୍ଗବୀ ସ୍କୁଲରୁ ୮ମ ଶ୍ରେଣୀ ପାସ୍ କରି ଭୁବନେଶ୍ୱର ଯାଇ ସେଠାରେ ନନା ବୋଉଙ୍କ ପାଖରେ ରହି ପଢ଼ିଲା । ବର୍ତ୍ତମାନ ମୋର ବୟସ ୭୩ ବର୍ଷ ୬ ମାସ । ଅର୍ଥାତ୍ ୭୪ ବର୍ଷ ବୟସରେ ପଦାର୍ପଣ କରିଛି ।

## ତତ୍ କାଳୀନ ଶିକ୍ଷା ଓ ଶିକ୍ଷାନୁଷ୍ଠାନ :

ସେ ସମୟର ଅର୍ଥାତ୍ ୧୯୨୦ ମସିହାର ଶିକ୍ଷାଦାନ ପଦ୍ଧତି ଜଣାଉଛି । ସେତେବେଳେ ଶିକ୍ଷକମାନଙ୍କର ପାଣ୍ଡିତ୍ୟ ଥିଲା । ସେମାନେ ପ୍ରବୀଣ ଓ ଜ୍ଞାନୀ ଥିଲେ । ଲୋକ ସମାଜରେ ସେମାନଙ୍କର ଖ୍ୟାତି ଓ ସମ୍ମାନ ଥିଲା । ଶିକ୍ଷକମାନେ ଛାତ୍ରବତ୍ସଳ ଓ ଛାତ୍ରମାନେ ଗୁରୁଭକ୍ତ ଥିଲେ । ଶିକ୍ଷା ଉପରେ ଯେପରି ଦୃଷ୍ଟି ଦିଆଯାଉଥିଲା ତଦପେକ୍ଷା ଛାତ୍ରମାନଙ୍କର ସଦାଚରଣ ଉପରେ ବିଶେଷ ଦୃଷ୍ଟି ଦିଆଯାଉଥିଲା ।

ସେ ସମୟରେ ବଙ୍ଗ, ବିହାର ଓ ଓଡ଼ିଶା ମିଶି ଗୋଟିଏ ପ୍ରଦେଶଥିଲା । ୧୯୧୦ରେ ବଙ୍ଗପ୍ରଦେଶ

ଯୋଗସ୍ଥଃ କୁରୁ କର୍ମାଣି,
ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।
ସିଦ୍ଧ୍ୟସିଦ୍ଧ୍ୟୋଃ ସମୋଭୂତ୍ୱା,
ସମତ୍ୱଂ ଯୋଗ ଉଚ୍ୟତେ ॥
ଦୂରେଣ ହ୍ୟବରଂ କର୍ମ,
ବୁଦ୍ଧିଯୋଗାଦ୍ଧନଞ୍ଜୟ ।
ବୁଦ୍ଧୌ ଶରଣମନ୍ୱିଚ୍ଛ,
କୃପଣାଃ ଫଳହେତବଃ ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୪୮ ଓ ୪୯)



କାର୍ଯ୍ୟେ ସର୍ବଦା ଦିଅ ମନ ।
ଈଶ୍ୱରେ କରି ସମର୍ପଣ ॥
ମୁଁ କର୍ମୀ ବୋଲି ନ ବିଚାର ।
ସିଦ୍ଧି ଅସିଦ୍ଧି ସମ କର ॥
ଏ ସମଜ୍ଞାନ ଯୋଗ କହି ।
କରମଯୋଗୀ ହୁଅ ତୁହି ॥
ହେ ଧନଞ୍ଜୟ ତୁହି ଶୁଣ ।
କର୍ମଯୋଗ ନିକୃଷ୍ଟ ଜାଣ ॥
ତହୁଁ ଯେ ଜ୍ଞାନଯୋଗ ଶ୍ରେଷ୍ଠ ।
ସକର୍ମୀ କୃପଣ ଗରିଷ୍ଠ ॥
ତୁ ପଶ ଈଶ୍ୱରେ ଶରଣ ।
ସନ୍ତୋଷ ହେବେ ଭଗବାନ ॥

ବିଚ୍ଛିନ୍ନ ହେବାରୁ ବିହାର ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲା । ବିହାର ଓଡ଼ିଶା ପ୍ରଦେଶରେ ୫ଗୋଟି ଡ଼ିଭିଜନ ଥିଲା । ଓଡ଼ିଶାରେ ଜଣେ ଗୋରା କମିସନର ଥିଲେ । ଗଭର୍ଣ୍ଣର ପାଟଣାରେ ଅବସ୍ଥାନ କରୁଥିଲେ । ବଡ଼ ବଡ଼ ସରକାରୀ କର୍ମଚାରୀ ପ୍ରାୟ ସାହେବ ଥିଲେ । ବିହାର ଓଡ଼ିଶାର ଏକମାତ୍ର ପାଟନା ବିଶ୍ୱବିଦ୍ୟାଳୟ ପାଟନାରେ ଅବସ୍ଥିତ ଥିଲା । ଶିକ୍ଷା ବିଭାଗର ପ୍ରଧାନ ନିର୍ଦ୍ଦେଶକ (ଡ଼ିରେକ୍ଟର) ପାଟନାରେ ଅବସ୍ଥାନ କରୁଥିଲେ । ଓଡ଼ିଶାର ଡ଼ିଭିଜନାଲ ଇନସ୍‌ପେକ୍ଟର କଟକରେ ଅବସ୍ଥାନ କରୁଥିଲେ । ସେ ଉଚ୍ଚ ଇଂରଜୀ ବିଦ୍ୟାଳୟ ଓ ମାଇନର ସ୍କୁଲ ପରିଦର୍ଶନ କରୁଥିଲେ । ଇନସ୍‌ପେକ୍ଟରଙ୍କ ଅଧୀନରେ ପ୍ରତ୍ୟେକ ଜିଲ୍ଲାରେ ଜଣେ ଜିଲ୍ଲା ଇନସ୍‌ପେକ୍ଟର ଥିଲେ । ସେ ଉଚ୍ଚଇଂରାଜୀ ବିଦ୍ୟାଳୟ ପରିଦର୍ଶନ କରୁନଥିଲେ । ଜିଲ୍ଲା ଇନସ୍‌ପେକ୍ଟରଙ୍କ ଅଧୀନରେ ପ୍ରତ୍ୟେକ



ଥାନାରେ ଜଣେ ଲେଖାଏଁ ସ୍କୁଲ ସବ୍‌ଇନସ୍‌ପେକ୍ଟର ଥିଲେ । ସେମାନେ ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ କରୁଥିଲେ । ସେମାନଙ୍କର ମାସିକ ବେତନ ଟ୬୦/- ଥିଲା । ସେମାନଙ୍କର ଯୋଗ୍ୟତା B.A. B.Ed ବା I.A. C.T. ଥିଲା । ଏପରିକି କେତେକ ସବ୍‌ଇନସ୍‌ପେକ୍ଟର ଏନ୍‌ଟ୍ରାନସ୍ (ବର୍ତ୍ତମାନ ମାଟ୍ରିକ୍ୟୁଲେସନ) ପାସ୍‌କରି ରହୁଥିଲେ । ଜିଲ୍ଲା ଇନ୍‌ସ୍‌ପେକ୍ଟରଙ୍କ ଅଫିସରେ ୨ ଜଣ କିରାଣି ଓ ୩ ଜଣ ପିଅନ ଥିଲେ । ଏହି ପ୍ରଥା ୧୯୩୫ ମସିହା ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଜିଲ୍ଲା ଇନସ୍‌ପେକ୍ଟର ମାନେ ବର୍ଷମଧ୍ୟରେ ୨ଥର ମଧ୍ୟଇଂରାଜୀ ବିଦ୍ୟାଳୟ ପରିଦର୍ଶନ କରୁଥିଲେ । ୧୯୩୦ ସମୟକୁ ମଧ୍ୟ ଭର୍ଣ୍ଣାକ୍ୟୁଲର ସ୍କୁଲ ପ୍ରାୟ ଲୋପ ପାଇଥିଲା ।

୧୯୨୦ ମସିହାରେ ମାତ୍ର ୪ ଗୋଟି ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥିଲା । ସେମାନଙ୍କ ମଧ୍ୟରେ ଏକମାତ୍ର ପୁରୀଜିଲ୍ଲା ସ୍କୁଲ ସରକାରୀ ଥିଲା । ଖୋର୍ଦ୍ଧା ହାଇସ୍କୁଲ ସରବରାକାର ହାଇସ୍କୁଲ ନାମରେ ପରିଚିତ ଥିଲା । ଓଲସିଂହର ପ୍ରଖ୍ୟାତ ଜମିଦାର ଦାଶରଥି ପଟ୍ଟନାୟକ ତାଙ୍କ ନାମାନୁସାରେ ଦାଶରଥି ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । କିନ୍ତୁ ଏସବୁ ବିଦ୍ୟାଳୟ ମଧ୍ୟରେ ସତ୍ୟବାଦୀରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଚେଷ୍ଟାରେ ସ୍ଥାପିତ ବନବିଦ୍ୟାଳୟ ଓଡ଼ିଶା ତଥା ଭାରତରେ ପ୍ରସିଦ୍ଧି ଲାଭ କରିଥିଲା ।

ଭାରତର ବହୁମାନ୍ୟଗଣ୍ୟ ବ୍ୟକ୍ତି ସତ୍ୟବାଦୀସ୍କୁଲ ଦେଖିବାକୁ ଆସୁଥିଲେ । କେବଳ ଛାତ୍ରାବାସରେ ୬୦୦ ଛାତ୍ର ବାସ କରୁଥିଲେ । ସ୍କୁଲର ମୋଟ ଛାତ୍ର ସଂଖ୍ୟା ପ୍ରାୟ ଏକହଜାର ଥିଲା । ଛାତ୍ରମାନଙ୍କୁ ଉପଯୁକ୍ତ ଶିକ୍ଷାଦେଇ ସେମାନଙ୍କୁ ସ୍ୱାବଲମ୍ବନଶୀଳ କରିବା ବିଦ୍ୟାଳୟର ମୁଖ୍ୟ ଉଦ୍ଦେଶ୍ୟଥିଲା । ଶିକ୍ଷକ ମାନେ ପ୍ରବୀଣ ଓ କାର୍ଯ୍ୟଦକ୍ଷ ଥିଲେ । ମାତ୍ର ଟ୨/- ବ୍ୟୟରେ ଛାତ୍ରମାନଙ୍କର ମାସିକ ଭରଣ ପୋଷଣ ହୋଇପାରୁଥିଲା । ଶିକ୍ଷକ

ବୁଦ୍ଧିଯୁକ୍ତୋଜହାତୀହ,
ଉଭେ ସୁକୃତଦୁଷ୍କୃତେ ।
ତସ୍ମାତ୍‌ଯୋଗାୟ ଯୁଜ୍ୟସ୍ୱ,
ଯୋଗଃ କର୍ମସୁ କୌଶଳଂ ॥
କର୍ମଜଂ ବୁଦ୍ଧିଯୁକ୍ତାହି,
ଫଳଂ ତ୍ୟକ୍ତ୍ୱା ମନୀଷିଣଃ ।
ଜନ୍ମବନ୍ଧବିନିର୍ମୁକ୍ତାଃ,
ପଦଂ ଗଚ୍ଛନ୍ତ୍ୟନାମୟଂ ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୫୦ ଓ ୫୧)



ସମତା ବୁଦ୍ଧି ଯାର ଥାଇ ।
ସୁକୃତ ଦୁଷ୍କୃତ ତା' ନାହିଁ ॥
ଏଣୁ ତୁ ମୋର କଥା ମାନ ।
ନିଷ୍କାମ କର୍ମେ ଦିଅ ମନ ॥
ସାଧନ ବନ୍ଧନ ଯେ କର୍ମ ।
ଜ୍ଞାନେ ସେ ସବୁ ଜାଣ ଭ୍ରମ ॥
ତାହାର ବିନାଶ ନିମିତ୍ତ ।
ଯୋଗବଳ ଏକା ସମର୍ଥ ॥
ସମତା ବୁଦ୍ଧିଯୁକ୍ତ ଜନ ।
କର୍ମ ଫଳକୁ ସେ ତେଜିଣ ॥
ଜନ୍ମ ବନ୍ଧନୁ ସେ ତରନ୍ତି ।
ଅକ୍ଷୟ ମୁକତି ଲଭନ୍ତି ॥

ମାନେ ସ୍ୱଳ୍ପ ବେତନ ଭୋଗୀ ଥିଲେ । ଶିକ୍ଷକ ମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ କୃପାସିନ୍ଧୁ, ପଣ୍ଡିତ ଗୋଦାବରୀଶ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ ବାସୁଦେବ ମହାପାତ୍ରଙ୍କର ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ପଣ୍ଡିତ ନୀଳକଣ୍ଠ ଦାସ ମାସିକ ଟ ୧୦/- ବେତନରେ କାର୍ଯ୍ୟ କରୁଥିଲେ । ପ୍ରଧାନ ଶିକ୍ଷକ ପଦବୀ ପରିବର୍ତ୍ତିତ ହେଉଥିଲା । ପଣ୍ଡିତ କୃପାସିନ୍ଧୁ ମିଶ୍ର ମଧ୍ୟ କେତେଦିନ ଧରି ପ୍ରଧାନ ଶିକ୍ଷକ ଥିଲେ । ପଣ୍ଡିତ ଗୋପବନ୍ଧୁ ଭାରତର ବିଭିନ୍ନ ସ୍ଥାନରୁ ଅର୍ଥ ଚାନ୍ଦାକରି ସ୍କୁଲକୁ ଆଣୁଥିଲେ । ଛାତ୍ରମାନଙ୍କୁ ମାସିକ ଆଠ ଅଣା ବେତନ ଦେବାକୁ ପଡୁଥିଲା । ଛାତ୍ରାବାସରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଜମିଦାର ଏପରିକି ରାଜକୁମାର ମାନେ ଖଜୁରିପଟିରେ ଶୟନକରି ସାଧାରଣ ଖାଦ୍ୟ ଖାଉଥିଲେ । ଏକାଠି ଭୋଜନ Common Messing ବ୍ୟବସ୍ଥା ପ୍ରଚଳିତ ଥିଲା ।

ସତ୍ୟବାଦୀ ସ୍କୁଲରେ ଗୋଟିଏ ବୃହଦାକାର ପୁସ୍ତକାଗାର ଥିଲା । ପୁସ୍ତକାଗାରରେ ବହୁ ଉପାଦେୟ ଜ୍ଞାନଗର୍ଭକ ପୁସ୍ତକଥିଲା । କେବଳ ପଣ୍ଡିତ ନୀଳକଣ୍ଠଙ୍କ ଅଧ୍ୟୟନ ଲିପ୍ସା ପୁସ୍ତକାଗାରର କଳେବର ବୃଦ୍ଧି କରିଥିଲା । ପୁସ୍ତକ ସବୁ ସାଧାରଣ ଶିକ୍ଷିତ ଲୋକଙ୍କର ବୋଧଗମ୍ୟ ନଥିଲା । ପ୍ରତ୍ୟହ ନୀଳକଣ୍ଠ ରାତ୍ରିରେ ୧୦ଖଣ୍ଡ ବହି ଅଧ୍ୟୟନ କରି ପଠିତ ବିଷୟ ମନେ ରଖିପାରୁଥିଲେ । ତାଙ୍କର ଜ୍ଞାନ କଳ୍ପନାତୀତ । ତାଙ୍କପରି ଜ୍ଞାନୀଲୋକ ଭାରତରେ ବିରଳ ଥିଲେ । ପଣ୍ଡିତ ଗୋଦାବରୀଶ, ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ

ଯଦା ତେ ମୋହକଲିଳଂ,
ବୁଦ୍ଧିର୍ବ୍ୟତିତରିଷ୍ୟତି ।
ତଦା ଗନ୍ତାସି ନିର୍ବେଦଂ,
ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ॥
ଶ୍ରୁତିବିପ୍ରତିପନ୍ନା ତେ,
ଯଦା ସ୍ଥାସ୍ୟତି ନିଶ୍ଚଳା ॥
ସମାଧାବଚଳା ବୁଦ୍ଧି,
ସ୍ତଦା ଯୋଗବାପ୍ସ୍ୟସି ॥



(ଦ୍ୱିତୀୟୋଦ୍ଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୫୨ ଓ ୫୩)

ଯେବେଳେ ମୋହକୁ ବିନାଶି ।
ବିଶୁଦ୍ଧ ବୁଦ୍ଧିକୁ ପ୍ରକାଶି ॥
ଦେହାଭିମାନ ମୋହ ଯେତେ ।
ଗହନ ଅଟେ ସେ ଜଗତେ ॥
ଆଗରୁ ତାହା ଅଛି ଶୁଣି ।
ଏବେ ଜାଣୁଛି ତାହା ପୁଣି ॥
ସେ ସର୍ବବାକ୍ୟ ମୋହ ହେଲେ ।
ବୈରାଗ୍ୟ ଜନ୍ମେ ନାହିଁ ଭଲେ ॥
ଯେବେଳେ ବୁଦ୍ଧି ମନ ତୋର ।
ନ ଘେନି ବେଦ ବାକ୍ୟ ସାର ॥
ନିଷ୍କାମକର୍ମେ ହୋଇ ମତ୍ତ ।
ଫଳ ଈଶ୍ୱର କରେ ଦତ୍ତ ॥
ବିଶୁଦ୍ଧ ଫଳ ଯୋଗ ସେହି ।
ସେ କାଳେ ଲଭିବୁ ଯେ ତୁହି ॥
ନିଷ୍କାମ କର୍ମ ବୁଦ୍ଧି ଜ୍ଞାନ ।
ଈଶ୍ୱର ଉକ୍ତିକୁ ଘେନିଣ ॥
ସଂଯୋଗ ଏ ସମାଧି ଫଳ ।
ତତ୍ତ୍ୱଜ୍ଞାନ ନାମ କେବଳ ॥
ଅଜ୍ଞ ଏ ତତ୍ତ୍ୱ ନ ଜାଣଇ ।
ସ୍ଥିତପ୍ରଜ୍ଞ ଏହା ଜାଣଇ ॥

କୃପାସିନ୍ଧୁଙ୍କର ପାଣ୍ଡିତ୍ୟ ପ୍ରଶଂସା ଯୋଗ୍ୟ ଥିଲା । ସତ୍ୟବାଦୀ ବନ ବିଦ୍ୟାଳୟର ଶିକ୍ଷାଦାନ – ପ୍ରତିଦିନ ରାତ୍ରିରେ, ପଣ୍ଡିତ ନୀଳକଣ୍ଠ କୌଣସି ବିଷୟ ଡାକନ୍ତି । ତାଙ୍କର ଜ୍ଞାନ ଗର୍ଭକ ଶିକ୍ଷା ପଣ୍ଡିତ ବାସୁଦେବ ଲିପିବଦ୍ଧ କରନ୍ତି ଓ ତତ୍ ପରଦିନ ତାହା ଶ୍ରେଣୀରେ ପଢ଼ାଯାଏ । ସେପରି ବାଧ୍ୟତାମୂଳକ ପାଠ୍ୟ ପୁସ୍ତକ ନଥିଲା । ଆଚାର୍ଯ୍ୟ ହରିହର I.A. ପାସ୍ କରି ମଧ୍ୟ ତାଙ୍କର ଗଣିତ ଶାସ୍ତ୍ରରେ ଗଭୀର ପାଣ୍ଡିତ୍ୟଥିଲା । ପଣ୍ଡିତ କୃପାସିନ୍ଧୁ ପ୍ରସିଦ୍ଧ ଐତିହାସିକ । ପଣ୍ଡିତ ଗୋଦାବରୀଶଙ୍କର ଇଂରାଜୀ ଶିକ୍ଷାଦାନ ପ୍ରଣାଳୀ ଉଚ୍ଚ ପ୍ରଶଂସିତ । **ପଣ୍ଡିତ ନୀଳକଣ୍ଠଙ୍କର ପାଣ୍ଡିତ୍ୟ ହିମାଳୟ ସଦୃଶ ତୁଙ୍ଗ** । ସେ ଛାତ୍ରବତ୍ସଳଥିଲେ ସତ୍ୟ କିନ୍ତୁ ତାଙ୍କର କ୍ରୋଧ ଦୁର୍ବାସାଙ୍କ କ୍ରୋଧ ସଦୃଶ ଥିଲା । ସମସ୍ତ ଶିକ୍ଷକ ଦାଢ଼ି ରଖିଥିଲେ । କେବଳ ଗୋଦାବରୀଶ ସର୍ବଦା ସାହେବ ପୋଷାକ ପରିଧାନ କରୁଥିଲେ । ସାଧାରଣ ଦେଶଜ ଓଡ଼ିଆ ଭାଷା ଶ୍ରେଣୀରେ କୁହାଯାଉ ନଥିଲା । ଇଂରାଜୀ ଶବ୍ଦ ଓଡ଼ିଆରେ ଅନୁବାଦ କଲେ ତାହା ଅବୋଧ ଥିଲା । ମୁଁ ଶୁଣିଛି – ନୀଳକଣ୍ଠ ଏହିପରି ଅନୁବାଦ କରୁଥିଲେ । A bunch of hanging flowers ଦୋଳାୟମାନ ପୁଷ୍ପଗୁଚ୍ଛ far fetched Meaning – କଷ୍ଟ କଳ୍ପିତାର୍ଥ ।

ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠାତା ଥିଲେ କିନ୍ତୁ ସ୍କୁଲରେ ଶିକ୍ଷକତା କରିନଥିଲେ । ସେ ବିହାର ଓଡ଼ିଶା ବିଧାନ ସଭାର ସଭ୍ୟଥିଲେ । ଯେତେବେଳେ ସତ୍ୟବାଦୀ ଆସନ୍ତି ସତ୍ୟବାଦୀ ସ୍କୁଲ ଛାତ୍ରାବାସରେ ଅବସ୍ଥାନ କରୁଥିଲେ । ତାଙ୍କର ଅଧିକାଂଶ ସମୟ ଓଡ଼ିଶାର ବୁଭୁକ୍ଷୁ, ଅସହାୟ ଲୋକଙ୍କର ସେବାରେ କଟୁଥିବାରୁ ସେ ଉତ୍କଳମଣି ଉପାଧିରେ ଭୂଷିତ ହୋଇଥିଲେ । ତଥାପି ସମୟ ବିଶେଷରେ ଶ୍ରେଣୀକୁ ଯାଇ ଛାତ୍ରମାନଙ୍କୁ ପଢ଼ାଉଥିଲେ । ତାଙ୍କ ଉଦ୍ୟମରେ ପ୍ରଥମେ ସତ୍ୟବାଦୀରେ ଗୋଟିଏ ଛାପାଖାନା ବସିଥିଲା । ସେହି ପ୍ରେସ୍‌ରୁ ପ୍ରଥମେ ଗୋଟିଏ ସାପ୍ତାହିକ ପତ୍ରିକା ପ୍ରକାଶ ପାଉଥିଲା । ଗୋପବନ୍ଧୁ ସମାଜର ସମ୍ପାଦକ ଥିଲେ । ପରେ ସମାଜ ପ୍ରେସ୍ ପୁରୀକୁ ସ୍ଥାନାନ୍ତରିତ ହୋଇ ତାଙ୍କର ମୃତ୍ୟୁପରେ କଟକକୁ ସ୍ଥାନାନ୍ତରିତ ହେଲା । ସେହିପ୍ରେସ୍ ବର୍ତ୍ତମାନ ସମାଜ ପ୍ରେସ ନାମରେ ପରିଚିତ । ଗୋପବନ୍ଧୁଙ୍କ ମୃତ୍ୟୁପରେ ପଣ୍ଡିତ ଲିଙ୍ଗରାଜ ମିଶ୍ର ସମାଜର ସମ୍ପାଦକ

ପ୍ରଜାହାତି ଯଦା କାମାନ୍,
ସର୍ବାନ୍ ପାର୍ଥ ମନୋଗତାନ୍ ।
ଆତ୍ମନ୍ୟେବାତ୍ମନାତୁଷ୍ଟ,
ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ।।

(ଦ୍ୱିତୀୟୋଦ୍ଧ୍ୟାୟଃ – ସାଂଖ୍ୟଯୋଗଃ – ଶ୍ଳୋକ-୫୫)

ଯେକାଳେ ପ୍ରାଣୀଙ୍କର ମନ ।
ମୋହ କାମନା ବରଜିଣ ।।



କାମନା ପଥୁ ରହେ ଦୂରେ ।
ନ ପଡ଼େ ବିଷୟ ଧନ୍ଦାରେ ।।
ସେକାଳେ ନିତ୍ୟ ଆତ୍ମା ଧ୍ୟାନ ।
କରଇ ନିଷ୍କାମ ଭାବେଣ ।।
ନିତ୍ୟ ଆତ୍ମାରେ ତୋଷ ହୋଇ ।
ପରମାନନ୍ଦ ସୁଖ ପାଇ ।।
ସେ ପ୍ରାଣୀ ସ୍ଥିତପ୍ରଜ୍ଞ ଜାଣ ।
ଭଲେ ତୁ ଜାଣ ହେ ଅର୍ଜୁନ ।।

ବହୁଦିନ ଧରି ରହିଥିଲେ । ତାଙ୍କର ତିରୋଧାନପରେ ଶ୍ରୀ ରାଧାନାଥ ରଥ ବର୍ତ୍ତମାନ ସମାଜର ସମ୍ପାଦକ ହୋଇଅଛନ୍ତି । ସମାଜ ବର୍ତ୍ତମାନ ଓଡ଼ିଶାର ଶ୍ରେଷ୍ଠ ଦୈନିକ ପତ୍ରିକା । ସମାଜ ପ୍ରେସ୍‌ରେ ବର୍ତ୍ତମାନ ସହସ୍ରାଧିକ କର୍ମଚାରୀ କାର୍ଯ୍ୟକରୁ ଅଛନ୍ତି । ୧୯୨୧ ମସିହାରେ ଭାରତରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବାରୁ ସତ୍ୟବାଦୀ ସ୍କୁଲ ଜାତୀୟ ସ୍କୁଲ (National School)ରେ ପରିଣତ ହେଲା ଓ କିଛି ସମୟ ପରେ ଏତେବଡ଼ ଶିକ୍ଷାନୁଷ୍ଠାନର ଅବସାନ ଘଟିଲା । ୧୭ ଜୁନ୍ ୧୯୨୮ ମସିହାରେ ଗୋପବନ୍ଧୁ ମାତ୍ର ୫୨ ବର୍ଷ ବୟସରେ ସତ୍ୟବାଦୀ ସ୍କୁଲରେ ପ୍ରାଣ ତ୍ୟାଗ କରିଥିଲେ । ତାଙ୍କର ଦୁଇଟି କନ୍ୟାଥିଲେ । ପୁତ୍ର ନଥିବାରୁ ପୋଷ୍ୟ ପୁତ୍ର ଗ୍ରହଣ କରିଥିଲେ । ତାଙ୍କର ନିଜର ପୁତ୍ର ଶୈଶବରେ ପ୍ରାଣତ୍ୟାଗ କରିଥିଲା । ତାଙ୍କ ଜ୍ୟେଷ୍ଠ ଜାମାତା ସ୍ୱର୍ଗତ ରତ୍ନାକର ପତି ରେଭେନ୍ସା କଲେଜରେ ଦର୍ଶନ ଶାସ୍ତ୍ରର ଅଧ୍ୟାପକ ଥିଲେ । କନିଷ୍ଠ ଜାମାତା ଓ କନିଷ୍ଠା କନ୍ୟା ବର୍ତ୍ତମାନ ଜୀବିତାବସ୍ଥାରେ ଅଛନ୍ତି । ତାଙ୍କର ପୌତ୍ର ଡ଼କ୍ଟର ସତ୍ୟବାଦୀ ମିଶ୍ର ପୁରୀ କଲେଜର ପ୍ରିନ୍ସପାଲ ଥିଲେ । ତାଙ୍କର ପିତା ଓ ପିତାମହ ମୋର ଶିକ୍ଷକ ଥିଲେ ଓ ସେ ମଧ୍ୟ ମୋର ଛାତ୍ରଥିଲେ ।

୧୯୨୦ ମସିହାରେ ପୁରୀଜିଲ୍ଲାରେ ମୋଟ ୨୦ଟି ମାଇନର ଓ ମଧ୍ୟ ଭର୍ଣ୍ଣାକ୍ୟୁଲର ସ୍କୁଲ ଥିଲା । ମାଇନର ସ୍କୁଲର ପ୍ରଧାନ ଶିକ୍ଷକଙ୍କର ଯୋଗ୍ୟତା I.A. ବା I.A.C.T ଥିଲା । ସମୁଦାୟ ଓଡ଼ିଶାରେ ପ୍ରାୟ ୧୫୦ ମଧ୍ୟରେ ମାଇନର ସ୍କୁଲ ଥିଲା । ମାଇନର ପାସ୍‌କରି ଛାତ୍ରମାନେ ଓ ପ୍ରତି ଜିଲ୍ଲାରେ ଏଲିମେଣ୍ଟାରୀ ସ୍କୁଲରୁ ପାସ୍ କରିବା ପରେ ସେମାନେ ପ୍ରାଇମେରୀ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତ ହେଉଥିଲେ ପ୍ରତ୍ୟେକ ପ୍ରାଇମେରୀ ସ୍କୁଲରେ ୩ ଗୋଟି ଶ୍ରେଣୀ ଥିଲା । ପ୍ରାଇମେରୀ ସ୍କୁଲ ପାସ୍ କରିବା ପରେ ଛାତ୍ରମାନେ ମାଇନର ସ୍କୁଲରେ ୪ର୍ଥ ଶ୍ରେଣୀରେ ନାମ ଲେଖାଉ ଥିଲେ । ହାଇସ୍କୁଲ ମାନଙ୍କରେ ୪ର୍ଥ ଶ୍ରେଣୀଠାରୁ ଆରମ୍ଭ ହୋଇ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଥିଲା । ପୁରୀଜିଲ୍ଲାରେ ଚାରୋଟି, କଟକ ଜିଲ୍ଲାରେ ୭

ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ,
ସୁଖେଷୁ ବିଗତସ୍ପୃହଃ ।
ବୀତରାଗଭୟକ୍ରୋଧଃ,
ସ୍ଥିତଧୀର୍ମୁନିରୁଚ୍ୟତେ ।।



(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୫୬)

ଦୁଃଖରେ କାତର ନୁହଇ ।
ସୁଖରେ ଭୋଳ ସେ ନ ହୋଇ ।।
ରାଗ କ୍ରୋଧ ଗର୍ବାଦିମାନ ।
ଲୋଭ ମୋହ ଭୟ ଯେ ପୁଣ ।।
ନାଶ ହୋଇଣ ଅଛି ଯାର ।
ସ୍ଥିତପ୍ରଜ୍ଞ ଯେ ସେହି ନର ।।
ଏ କଥା ଅଜ୍ଞ ନ ଜାଣଇ ।
କର୍ତ୍ତବ୍ୟ ପାଳନର ପାଇଁ ।।
ଯାହାର ହୃଦ ଭୟହୀନ ।
ଦେଖିଲେ ଆତତାୟୀ ଜନ ।।
ମନରେ କ୍ରୋଧ ଉଦେ ନୋହି ।
ବୁଦ୍ଧି ତାହାର ସ୍ଥିର ହୋଇ ।।
ଅତେ ସେ ସ୍ଥିତପ୍ରଜ୍ଞ ନର ।
ଅର୍ଜ୍ଜୁନ ଏହା ମନେ ଧର ।।

ଗୋଟି, ବାଲେଶ୍ୱର ଜିଲ୍ଲାରେ ୩ ଗୋଟି, ସମ୍ବଲପୁରରେ ୨ ଗୋଟି ଓ ଅନୁଗୁଳ ଜିଲ୍ଲାରେ ଗୋଟିଏ ହାଇ ସ୍କୁଲ ଥିଲା । ହାଇସ୍କୁଲ ମାନଙ୍କ ମଧ୍ୟରେ ପୁରୀଜିଲ୍ଲା ସ୍କୁଲ, କଟକ କଲେଜିଏଟ୍, ପ୍ୟାରି ମୋହନ ଏକାଡ଼େମୀ ବିଶେଷ ଖ୍ୟାତି ଲାଭ କରିଥିଲା । ପ୍ରଧାନ ଶିକ୍ଷକମାନଙ୍କ ମଧ୍ୟରେ ଭକ୍ତ କବି ମଧୁସୂଦନ, ଚନ୍ଦ୍ରମୋହନ ମହାରଣା, ଦାଶରଥି ପାଣିଗ୍ରାହୀ, ଉପେନ୍ଦ୍ର ବାବୁ ଓ ବିଶ୍ୱମ୍ଭର ମିଶ୍ରଙ୍କର ନାମ ଉଲ୍ଲେଖନୀୟ । ବିହାର ଓଡ଼ିଶାରେ ଓଡ଼ିଶା ପାଇଁ ୩ ଗୋଟି ଟ୧୫/- ବୃତ୍ତି ଓ ଗୋଟିଏ ମାତ୍ର ଟ୨୦/- ବୃତ୍ତି ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରମାନଙ୍କୁ ଦିଆଯାଉଥିଲା । ଏହା ବ୍ୟତୀତ ପ୍ରତ୍ୟେକ ଜିଲ୍ଲାରେ ୨ ଗୋଟି, ୧୦ ଟଙ୍କିଆ ବୃତ୍ତି ଦିଆଯାଉଥିଲା । କେବଳ ରେଭେନ୍ସା କଲେଜିଏଟ୍ ଓ ପୁରୀଜିଲ୍ଲା ସ୍କୁଲର ଛାତ୍ରମାନେ ବିଶ୍ୱବିଦ୍ୟାଳୟ ବୃତ୍ତି ପାଉଥିଲେ । ସାଧାରଣତଃ ବ୍ରାହ୍ମଣ ପରିବାରର ଛାତ୍ରମାନେ ଅଧ୍ୟୟନରେ ପ୍ରଶଂସା ଅର୍ଜନ କରୁଥିଲେ । ସ୍କୁଲମାନଙ୍କରେ ବ୍ରାହ୍ମଣ, କରଣ ଓ ବଙ୍ଗାଳୀ ଛାତ୍ରମାନଙ୍କର ସଂଖ୍ୟା ଅଧିକ ଥିଲା । ଅନ୍ୟାନ୍ୟ ପାଟକର ଛାତ୍ର ଅତି ନ୍ୟୁନ । ୧୯୩୦ ମସିହା ପର୍ଯ୍ୟନ୍ତ ପ୍ରତିବର୍ଷ ପୁରୀ ଜିଲ୍ଲାରୁ ୩୦-୪୦ ଭିତରେ ପରୀକ୍ଷାର୍ଥୀ ମାଟ୍ରିକ୍ୟୁଲେସନ ପାସ୍ କରୁଥିଲେ । ସମୁଦାୟ ଓଡ଼ିଶା ତଥା ଗଡ଼ଜାତରୁ ୨୦୦ ମଧ୍ୟରେ ଛାତ୍ର ପାସ୍ କରୁଥିଲେ । ବାଳିକା ଆଦୌ କେହି ନଥିଲେ ।

ସେ ସମୟରେ ସମଗ୍ର ବିହାର ଓଡ଼ିଶା ପ୍ରଦେଶରେ ୫ ଗୋଟି କଲେଜ ଥିଲା । ପାଟନା କଲେଜ ବ୍ୟତୀତ ଅନ୍ୟ କୌଣସି କଲେଜରେ ଉପାଧ୍ୟୁତ୍ତର ଏମ୍.ଏ ଶ୍ରେଣୀ ନଥିଲା । କଟକ ରେଭେନ୍ସା କଲେଜରେ ୧୯୨୬ ମସିହାରେ କେବଳ ଇଂରାଜୀରେ ଏମ୍. ଏ. ଶ୍ରେଣୀ ଖୋଲିଲା ଓ ତହିଁରେ ପ୍ରାୟ ୧୦ଜଣ ଛାତ୍ର ଅଧ୍ୟୟନ କରୁଥିଲେ । ତେଣୁ ଓଡ଼ିଶାରୁ ଅଳ୍ପ ସଂଖ୍ୟକ କୃତୀଛାତ୍ର ପାଟନା କଲେଜରେ ଦର୍ଶନ, ଗଣିତ, ଅର୍ଥଶାସ୍ତ୍ର ଓ ଇତିହାସରେ ଏମ୍.ଏ.ପାସ୍ କରୁଥିଲେ । ଓଡ଼ିଶାରେ ଓକିଲାତି ଶିକ୍ଷାରେ ଅନୁଷ୍ଠାନ ନଥିଲା । ତେଣୁ ଓଡ଼ିଆ



ଯଃ ସର୍ବତ୍ରାନଭିସ୍ନେହ,
ସ୍ତତତ୍ପ୍ରାପ୍ୟ ଶୁଭାଶୁଭଂ ।
ନାଭିନନ୍ଦତି ନ ଦ୍ୱେଷ୍ଟି,
ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୫୭)

ଯାହାର ଭଲ ମନ୍ଦ ନାହିଁ ।
ନିନ୍ଦା ପ୍ରଶଂସା ନ ଇଚ୍ଛଇ ॥
ଛଳନା ଚିତ୍ତରେ ନ ଥାଏ ।
ପଦାର୍ଥେ ଆସକ୍ତ ସେ ନୁହେଁ ॥
ଜାୟା ପୁତ୍ର କଳତ୍ର ଧନ ।
ଆବର ନିଜ ଦେହ ପୁଣ ॥
ଏଥିରେ ମୋହ ଲୋଭ ନାହିଁ ।
ମନ ବଚନ ଏକ ହୋଇ ॥
ସେ ଅଟେ ସ୍ଥିତପ୍ରଜ୍ଞ ଜାଣ ।
ଏହା ଅର୍ଜୁନ ମନେ ଘେନ ॥

ଓକିଲଙ୍କର ସଂଖ୍ୟା ଅତି ଅଳ୍ପ ଥିଲା । ତେଣୁ ବଙ୍ଗ ପ୍ରଦେଶରୁ ବହୁତ B.L ଆସି ପୁରୀ, କଟକ ତଥା ବାଲେଶ୍ୱର ରେ ଓକିଲାତି ଆରମ୍ଭ କଲେ ଓ ଓଡ଼ିଶାରେ ବଙ୍ଗାଳୀ ପରିବାର ସଂଖ୍ୟା ବୃଦ୍ଧିପାଇଲା । ବିଶେଷତଃ ବାଲେଶ୍ୱର ଜିଲ୍ଲାରେ ବଙ୍ଗାଳୀମାନଙ୍କର ସଂଖ୍ୟା ଅଧିକ ଥିଲା । ବଙ୍ଗ ବିଚ୍ଛେଦପରେ ଅନେକ ଓଡ଼ିଆ ମେଦିନ୍‌ପୁରରେ ରହିଲେ । ଓଡ଼ିଶାରେ ଯେଉଁ ବଙ୍ଗାଳୀମାନେ ଥିଲେ ସେମାନଙ୍କୁ କେରା ବଙ୍ଗାଳୀ କୁହାଯାଉଥିଲା ।

ଓଡ଼ିଶାର ଏକମାତ୍ର କଲେଜ୍ ରେଭେନ୍ସାରେ ମୋଗଲବନ୍ଦି ଓ ଗଡ଼ଜାତରୁ କଳା ଓ ବିଜ୍ଞାନ ଶ୍ରେଣୀରେ ମୋଟ ୬୦୦ ଛାତ୍ର ଅଧ୍ୟୟନ କରୁଥିଲେ । ଛାତ୍ରୀ ଆଦୌନଥିଲେ । ତତ୍‌କାଳୀନ ଓଡ଼ିଶାର କମିସନର ରେଭେନ୍ସା ସାହେବଙ୍କର ନାମାନୁସାରେ କଲେଜର ନାମକରଣ ହୋଇଥିଲା । କଲେଜର ପ୍ରିନ୍‌ସପାଲ୍ ସାହେବ ଥିଲେ । ତାଙ୍କର ମାସିକ ବେତନ ଟ୨୨୦୦/- ଥିଲା । ପ୍ରଫେସର ମାନଙ୍କର ମାସିକ ବେତନ ଟ୩୦୦ରୁ ୪୦୦/- ମଧ୍ୟରେ ଥିଲା । ପ୍ରତ୍ୟେକ ବିଭାଗରେ ୩ ଜଣ ଅଧ୍ୟାପକ ଥିଲେ । ସେତେବେଳେ I.E.S ବିଲାତରୁ ପାସ୍‌କରି ଯେଉଁମାନେ ଆସୁଥିଲେ ସେମାନେ ମାସିକ ଟ୧୦୦୦/- ଉପରେ ବେତନ ପାଉଥିଲେ । ଅଧ୍ୟାପକ ମାନଙ୍କ ମଧ୍ୟରେ ଡ଼କ୍ଟର ପ୍ରାଣକୃଷ୍ଣ ପରିଜା, ଶ୍ୟାମତ୍ରିପାଠୀ, ଲୋକନାଥମିଶ୍ର, ଆର୍ତ୍ତବଲ୍ଲଭ ମହାନ୍ତି, ରତ୍ନାକର ପତି, ବିପିନ ବିହାରି ରାଏ, ଗିରିଜା ଶଙ୍କର ଓ ଶାରଦାକାନ୍ତ ଗାଙ୍ଗୁଲିମାନଙ୍କର ନାମ ଉଲ୍ଲେଖଯୋଗ୍ୟ । କେତେ ଜଣ ବଙ୍ଗାଳୀ ପ୍ରଫେସର କଲେଜ୍‌ରେ ଥିଲେ । ସେତେବେଳେ ଲେକ୍‌ଚରର କିମ୍ବା ରିଡ଼ର ପୋଷ୍ଟ ନଥିଲା । ସମସ୍ତେ ପ୍ରଫେସର ଥିଲେ । ଡ଼କ୍ଟର ପରିଜା ଓଡ଼ିଶାରୁ ପ୍ରଥମେ ବିଲାତ୍ ଯାଇ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଉଦ୍ଭିଦ ବିଜ୍ଞାନରେ ଏମ୍. ଏ. ପାସ୍‌କରି ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ଅଧ୍ୟାପକ ରହିଥିଲେ । ୧୯୨୮ ମସିହାରେ ରେଭେନ୍ସା କଲେଜରେ ବିଲାତ ଫେରନ୍ତା ପ୍ରଫେସର ରହିଥିଲେ । ଏମ୍. ଏରେ ୩ୟ ଶ୍ରେଣୀରେ ପାସ୍‌କରି ମଧ୍ୟ ପ୍ରଫେସର ହୋଇପାରୁଥିଲେ । କିନ୍ତୁ ସେମାନଙ୍କର ଗଭୀର ପାଣ୍ଡିତ୍ୟ ଥିଲା ।



ଯଦା ସଂହରତେ ଚାୟଂ,
କୂର୍ମୋଙ୍ଗାନୀବ ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟ,
ସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୫୮)

କଚ୍ଛପ ନିଜ ଦେହ ଯେହ୍ନେ ।
ପଞ୍ଚାଙ୍ଗ ରଖଇ ଗୋପନେ ॥
ନିଜ ଇଚ୍ଛାରେ ବାହାରଇ ।
ପୁଣି ସେ ଭିତରେ ପଶଇ ॥
ସେପରି ଜ୍ଞାନବନ୍ତ ନର ।
ନିଜ ଇଚ୍ଛାରେ କାରବାର ॥
ସଂଯୋଗ ବିଯୋଗ ଇନ୍ଦ୍ରିୟ ।
ଇଚ୍ଛାରେ ଭୋଗଇ ବିଷୟ ॥
ପରମାନନ୍ଦେ ଚିତ୍ତ ଥାଇ ।
ସେ ଲୋକ ସ୍ଥିତପ୍ରଜ୍ଞ ହୋଇ ॥

## ନାରୀ ଶିକ୍ଷା :

୧୯୨୦ ମସିହାରେ ଓଡ଼ିଶାର ପୁର ପଲ୍ଲୀ ଏପରିକି ସହର ମାନଙ୍କରେ ନାରୀଶିକ୍ଷା ପ୍ରତି ଦୃଷ୍ଟି ଦିଆଯାଉ ନଥିଲା । ପ୍ରାଥମିକ ବିଦ୍ୟାଳୟର ପାଠ୍ୟ ଶେଷକରି ବାଳିକାମାନେ ଘରେ ରହୁଥିଲେ । କୃଷକ ପରିବାରରେ ପ୍ରାୟ ସମସ୍ତ ବାଳିକା ନିରକ୍ଷର ଥିଲେ । ବର୍ତ୍ତମାନ ସୁଦ୍ଧା ଟିପଚିହ୍ନର ବ୍ୟବସ୍ଥା ରହିଅଛି । ହରିଜନ ଓ ଆଦିବାସୀମାନେ ସମସ୍ତେ ନିରକ୍ଷର ଥିଲେ । ବ୍ରାହ୍ମଣ ସମାଜରେ ବାଲ୍ୟ ବିବାହ ଅର୍ଥାତ୍ ୭ ବର୍ଷରୁ ୧୦ ବର୍ଷ ମଧ୍ୟରେ କନ୍ୟାସମ୍ପ୍ରଦାନ କରିବା ପ୍ରଥା ରହିଥିବାରୁ ବ୍ରାହ୍ମଣ ପରିବାରର କନ୍ୟାମାନେ ଉଚ୍ଚଶିକ୍ଷାରୁ ବଞ୍ଚିତ ହେଉଥିଲେ । ମୁଁ ମାଇନର ସ୍କୁଲରେ ପଢ଼ିବା ସମୟରେ ଜଣେ କେହି ବାଳିକା ସ୍କୁଲରେ ଅଧ୍ୟୟନ କରୁନଥିଲେ । ଏପରିକି ୧୯୨୬ ମସିହା ପର୍ଯ୍ୟନ୍ତ ଉଚ୍ଚଇଂରାଜୀ ବିଦ୍ୟାଳୟରେ ବାଳିକାମାନେ ପଢ଼ିବାର ମୋର ଦୃଷ୍ଟିପଥରେ ଆସି ନାହିଁ । ବଙ୍ଗାଳୀ କାୟସ୍ଥ ଓ କରଣ ସମାଜରେ ଯୁବତୀ ବିବାହ ପ୍ରଥା ପ୍ରଚଳିତ ଥିବାରୁ ସେହିମାନଙ୍କ ମଧ୍ୟରୁ କେତେକ ଧନୀ ଓ ସମ୍ଭ୍ରାନ୍ତ ବଂଶୀୟ ବାଳିକା ଉଚ୍ଚଶିକ୍ଷା ପାଇଥିଲେ । ୧୯୨୮ ମସିହାରେ ମୁଁ ଜଣେ ମାତ୍ର ବାଳିକା ଛାତ୍ରୀ ରେଭେନ୍ସା କଲେଜରେ ଅଧ୍ୟୟନ କରିବାର ଦେଖି ନାହିଁ । ୧୯୧୫ରେ କଟକରେ ରେଭେନ୍ସା ବାଳିକା ଉଚ୍ଚ ବିଦ୍ୟାଳୟ ସ୍ଥାପିତ ହେବାରୁ କଟକ ଓ ପୁରୀ ସହରରୁ କେତେକ ବାଳିକା ସେଠାରେ ଅଧ୍ୟୟନ କରୁଥିଲେ । ସେହିସ୍କୁଲ ଓଡ଼ିଶାରେ ଏକମାତ୍ର ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥିଲା ।

ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଶୈଳବାଳା ହାଜରା ଥିବାରୁ ତାହା ପରବର୍ତ୍ତୀ କାଳରେ ଶୈଳବାଳା ସ୍କୁଲ ନାମରେ ନାମିତ ହେଲା । ଶୈଳବାଳା ହାଜରା ସ୍ୱର୍ଗତ ସ୍ୱାଧୀନ ଉତ୍କଳର ପ୍ରତିଷ୍ଠାତା ବାରିଷ୍ଟର ମଧୁସୂଦନ ଦାସଙ୍କର ପାଳିତା



ତାନି ସର୍ବାଣି ସଂଯମ୍ୟ,
ଯୁକ୍ତ ଆସୀତ ମତ୍ପରଃ ।
ବଶେ ହି ଯସ୍ୟେନ୍ଦ୍ରିୟାଣି,
ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୬୧)

ମୋହର ଭକ୍ତ ଯେତେ ଜନ ।
ଯୋଗରେ ଇନ୍ଦ୍ରିୟ ଦମନ ॥
କରନ୍ତି ଇନ୍ଦ୍ରିୟ ତାଙ୍କର ।
ବଶରେ ଥାଇ ନିରନ୍ତର ॥

ବିଷୟ ସୁଖ ବିଷ ପରି ।
ମନ ମଧ୍ୟରେ ଥାନ୍ତି ଧରି ॥
ସମୁଦ୍ର ଚଳୁ ପରି ମଣେ ।
ସୂର୍ଯ୍ୟ ନକ୍ଷତ୍ର ପରି ମଣେ ॥
ମେରୁଗିରି ଲୋଷ୍ଟ୍ର ସମାନ ।
କଳ୍ପ ବୃକ୍ଷକୁ କାଷ୍ଠ ସମ ॥
ପୃଥିବୀ ପତିକୁ ଭୃତ୍ୟରେ ।
ସମାନ କରେ ସେ ମନରେ ॥
ତ୍ରିଲୋକେ କାରେ ସ୍ନେହ ନୋହି ।
ନିଜ ଦେହ ଭାର ମଣଇ ॥
ସେହୁ ମୋ ଭକ୍ତି ଦୃଢ଼େ ଧରି ।
ମୋହ ମାୟାରୁ ଯାଏ ତରି ॥

କନ୍ୟା ଥିଲେ । ସେ ଜାତିରେ ବଙ୍ଗାଳୀ ଥିଲେ । ମଧୁସୂଦନ ଖ୍ରୀଷ୍ଟ ଧର୍ମ ଗ୍ରହଣ କଲାପରେ କଳିକତାରୁ ଓକିଲାତି ଛାଡ଼ି କଟକରେ ଓକିଲ ଥିଲେ । ସେ ଓକିଲ ଥିଲେ ମାତ୍ର ତାଙ୍କର ବଳିଷ୍ଠ ପ୍ରତିଭା ଥିବାରୁ ବାରିଷ୍ଟର ବୋଲି ପରିଚିତ ଥିଲେ । ସେତେବେଳେ ପୁରୀ ଜିଲ୍ଲାର ସୋମେଶ୍ୱର ପୁର ଗ୍ରାମନିବାସୀ ବିଶ୍ୱନାଥ ମିଶ୍ର ପ୍ରଥମେ ବିଲାତ ଯାଇ ବାରିଷ୍ଟରି ପାସ୍‌କରି କଟକରେ ଆସି ବାରିଷ୍ଟର ହେଲେ । ଓଡ଼ିଶାର ଶତକଡା ୯୮ ଜଣ ବାଳିକା ନିରକ୍ଷର ଥିଲେ ।

## ସଂସ୍କୃତ ଶିକ୍ଷା :

ସଂସ୍କୃତ ଶିକ୍ଷାର ଆଦର ଓ ପ୍ରସାର ଓଡ଼ିଶାର ବ୍ରାହ୍ମଣ ସମାଜରେ ପ୍ରାଧାନ୍ୟ ଲାଭକରିଥିଲା । କାରଣ ବେଦାଧ୍ୟୟନ ଓ ଦେବପୂଜା ବ୍ରାହ୍ମଣ ମାନଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟଥିଲା । ହୋମ ଯଜ୍ଞ ପ୍ରଭୃତି ଅନୁଷ୍ଠାନମାନଙ୍କରେ ବ୍ରାହ୍ମଣମାନେ ଆଚାର୍ଯ୍ୟ ରହି କର୍ମ କରୁଥିଲେ । ଓଡ଼ିଶାର କେବଳ ବ୍ରାହ୍ମଣ ଶାସନମାନଙ୍କରେ ସଂସ୍କୃତ ଟୋଲ୍ ଥିଲା । ପୁରୀର ପ୍ରତ୍ୟେକ ମଠରେ ସଂସ୍କୃତ ଟୋଲ୍‌ଥିଲା । କଟକ ଜିଲ୍ଲାର ସଦର ସବ୍‌ଡ଼ିଭିଜନରେ ଶାରଳା ଠାକୁରାଣୀଙ୍କ ନିକଟବର୍ତ୍ତୀ ବ୍ରାହ୍ମଣ ଶାସନମାନଙ୍କରେ କେତୋଟି ସଂସ୍କୃତ ଟୋଲ୍ ଥିଲା । ଗଡ଼ଜାତ ଅଞ୍ଚଳରେ ସଂସ୍କୃତଶିକ୍ଷାର ପ୍ରସାର ଆଦୌନଥିଲା । ପୁରୀଜିଲ୍ଲା ଶାସନ ଦାମୋଦରପୁର ନିବାସୀ ପ୍ରଖ୍ୟାତ ପଣ୍ଡିତ ମହାମହୋପାଧ୍ୟାୟ କାବ୍ୟକଣ୍ଠଙ୍କ ପ୍ରଚେଷ୍ଟାରେ ଏକମାତ୍ର ସଂସ୍କୃତ ମହାବିଦ୍ୟାଳୟ ସ୍ଥାପିତ ହେଲା । ତାଙ୍କରି ନାମାନୁସାରେ ସେହି କଲେଜ ବର୍ତ୍ତମାନ ସଦାଶିବ ମହାବିଦ୍ୟାଳୟ ନାମରେ ସର୍ବତ୍ର ପରିଚିତ । କାବ୍ୟକଣ୍ଠ ସଦାଶିବ ଓଡ଼ିଶାର ଜନୈକ ପ୍ରଖ୍ୟାତ ବ୍ୟକ୍ତିଥିଲେ । ତାଙ୍କର ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ନଥାଇ କେବଳ ପ୍ରତିଭାବଳରେ ସୁନାମ ଅର୍ଜନ କରିଥିଲେ । ବିହାର ଓଡ଼ିଶାର ଗଭର୍ଣ୍ଣର ଓ ଶିକ୍ଷା ବିଭାଗର ଡି.ପି. ଆଇ ତାହାଙ୍କୁ ଶ୍ରଦ୍ଧା



ଧ୍ୟାୟତୋବିଷୟାନ୍ ପୁଂସଃ,
ସଙ୍ଗସ୍ତେଷୂପଜାୟ ତେ ।
ସଙ୍ଗାତ୍‌ସଞ୍ଜାୟତେକାମଃ,
କାମାତ୍‌କ୍ରୋଧୋଦ୍ଭିଜାୟତେ ॥
କ୍ରୋଧାତ୍ ଭବତି ସମ୍ମୋହଃ,
ସମ୍ମୋହାତ୍ ସ୍ମୃତିବିଭ୍ରମଃ ।
ସ୍ମୃତିଭ୍ରଂଶାତ୍‌ବୁଦ୍ଧିନାଶୋ,
ବୁଦ୍ଧିନାଶାତ୍‌ପ୍ରଣଶ୍ୟତି ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୬୨ ଓ ୬୩)

ବିଷୟ ଭୋଗେ ଯାର ଧ୍ୟାନ ।
ଥାଏ ଆସକ୍ତି ତହୁଁ ଜନ୍ମ ॥
ଆସକ୍ତିରୁ କାମନା ଜାତ ।
କାମନାରୁ କ୍ରୋଧ ସମ୍ଭୁତ ॥
କ୍ରୋଧରୁ ମୋହ ଯେ ଜନ୍ମଇ ।
ମୋହରୁ ଗର୍ବ ଜାତ ହୋଇ ॥
ମୋହ ଗର୍ବରେ ଜ୍ଞାନୀଜନ ।
ସ୍ମରଣ ଶକ୍ତି ହୁଏ ହୀନ ॥
ତହୁଁ ତା ବୁଦ୍ଧି ହୀନ ହୋଇ ।
ହୀନ ଅବସ୍ଥା ସେ ଭୋଗଇ ॥
ନିର୍ଜୀବ ମୃତ ପ୍ରାଣୀ ସମ ।
ଭବେ ବଞ୍ଚଇ ସେ ଅଧମ ॥

କରୁଥିବାରୁ ଓଡ଼ିଶାର ଡ଼ିଭିଜନାଲ ଇନସ୍‌ପେକ୍ଟର ଓ ଜିଲ୍ଲା ଇନ୍‌ସ୍‌ପେକ୍ଟରମାନେ ତାଙ୍କୁ ଭୟ ଓ ଭକ୍ତି କରୁଥିଲେ । ସେ ତାଙ୍କର ଉଦ୍ୟମରେ ପୁରୀରେ ବେଦ ବିଦ୍ୟାଳୟ, ବ୍ରାହ୍ମଣ ସମିତି ଓ ମୁକ୍ତିମଣ୍ଡପ ପୁସ୍ତକାଗାର ସ୍ଥାପନ କରିଥିଲେ । ତାଙ୍କରି ଉଦ୍ୟମରେ ଓଡ଼ିଶାର ପୁରପଲ୍ଲୀ ପ୍ରଧାନତଃ ବ୍ରାହ୍ମଣ ଶାସନ ମାନଙ୍କରେ କେତେକ ସଂସ୍କୃତ ଟୋଲ ସ୍ଥାପିତ ହୋଇଥିଲା । ପୁରୀ ସଂସ୍କୃତ ମହାବିଦ୍ୟାଳୟରେ କାବ୍ୟ, ବ୍ୟାକରଣ, ବେଦ, ଦର୍ଶନ ଓ ଜ୍ୟୋତିଷ ଶାସ୍ତ୍ର ଶିକ୍ଷା ଦିଆଯାଉଥିଲା । ପୁରୀର ସ୍ୱନାମଧନ୍ୟ କବିରାଜ ମାଗୁଣି ବ୍ରହ୍ମା ଆୟୁର୍ବେଦର ଅଧ୍ୟାପକଥିଲେ । ଶାସନ ଦାମୋଦର ପୁର ନିକଟସ୍ଥ ପିପିଲିର ପ୍ରସିଦ୍ଧ ପଣ୍ଡିତ ଜଗନ୍ନାଥ ମିଶ୍ର କାବ୍ୟ ଶାସ୍ତ୍ର ଅଧ୍ୟୟନ କରି ଇଂରାଜୀ ଶିକ୍ଷା ନପାଇ ରେଭେନ୍ସା କଲେଜରେ ଅଧ୍ୟାପକ ଥିଲେ । ସେ ମଧ ଇଂରେଜ ସରକାରଙ୍କ ଠାରୁ ମହାମହୋପାଧ୍ୟାୟ ଉପାଧି ପାଇଥିଲେ । କିନ୍ତୁ ମହା ମହୋପାଧ୍ୟାୟ କହିଲେ କେବଳ କାବ୍ୟକଣ୍ଠ ସଦାଶିବ ମିଶ୍ରଙ୍କୁ ବୁଝାଯାଉଥିଲା । ସେ ନିଃସନ୍ତାନ ଥିଲେ । ତାଙ୍କର ଜଣେ ପୋଷ୍ୟ ପୁତ୍ର ଓ ପାଳିତା କନ୍ୟା ଥିଲେ । ତାଙ୍କର କନ୍ୟା ଆମରି ଗ୍ରାମରେ ବିବାହ କରିଥିଲେ । ପୋଷ୍ୟପୁତ୍ର ଶ୍ରୀ ଲୋକନାଥ ମିଶ୍ର (ପଙ୍କବାବୁ) ବର୍ତ୍ତମାନ ଜୀବିତ । ସେ ବର୍ତ୍ତମାନ ପଣ୍ଡିଚେରୀ ଅରବିନ୍ଦ ଆଶ୍ରମରେ ସସ୍ତ୍ରୀକ ଅବସ୍ଥାନ କରୁଅଛନ୍ତି । ମହାମହୋପାଧ୍ୟାୟଙ୍କର ଜୀବିତାବସ୍ଥାରେ ମୁଁ ତାଙ୍କ ପ୍ରତିଷ୍ଠିତ ଶାସନ ଦାମୋଦରପୁର ମାଇନର ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲି । ୧୯୨୯ ମସିହାରେ ତାଙ୍କର ମୃତ୍ୟୁ ହେବାରୁ ମୁଁ ମୋର ଭାବୀ ଉନ୍ନତିର ଆଶା ଦେଖିବାରୁ ୧୯୩୦ରେ କାକଟପୁର ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ହୋଇ ସେଠାକୁ ଚାଲିଗଲି ।

ସେ ସମୟରେ ଓଡ଼ିଶାର ମୁସଲମାନ ବସ୍ତିମାନଙ୍କରେ ଉର୍ଦ୍ଦୁ ଶିକ୍ଷା ଦିଆଯାଉଥିଲା । ସ୍କୁଲ ସବୁ ପ୍ରାଇମେରୀ ସ୍କୁଲ ଧରଣର । ସ୍କୁଲମାନଙ୍କୁ ମକ୍ତବ ଓ ପ୍ରଧାନ ଶିକ୍ଷକଙ୍କୁ ଆଖୁଁଜୀ କୁହାଯାଉଥିଲା । ମକ୍ତବରୁ ଉତ୍ତୀର୍ଣ୍ଣ ହୋଇ ଛାତ୍ରମାନେ ମାଇନର ସ୍କୁଲରେ



ରାଗଦ୍ୱେଷବିମୁକ୍ତୈସ୍ତୁ,
ବିଷୟାନିନ୍ଦ୍ରିୟୈଶ୍ଚରନ୍ ।
ଆତ୍ମବଶ୍ୟୈର୍ବିଧେୟାତ୍ମା,
ପ୍ରସାଦମଧିଗଚ୍ଛତି ॥
ପ୍ରସାଦେ ସର୍ବଦୁଃଖାନାଂ,
ହାନିରସ୍ୟୋପଜାୟତେ ।
ପ୍ରସନ୍ନ ଚେତସୋହ୍ୟାଶୁ,
ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୬୪ ଓ ୬୫)

ଇନ୍ଦ୍ରିୟ ବଶ କରି ଯେବେ ।
ଚଞ୍ଚଳ ମାନସ ତା ଭବେ ॥
ଇନ୍ଦ୍ରିୟ ବଶେ ଫଳ କିସ ।
ଯେବେ ବା ଚଞ୍ଚଳ ମାନସ ॥
ଇନ୍ଦ୍ରିୟ ମନ ବଶେ ଥାଇ ।
ରାଗ ଦ୍ୱେଷାଦି ଶୂନ୍ୟ ହୋଇ ॥
ବିଷୟ ରସେ ମଜ୍ଜେ ଯେବେ ।
ଶାନ୍ତିକୁ ଲଭେ ସେହି ତେବେ ॥
ଶାନ୍ତିର ଆସଇ ଚିତ୍ତେ ଯେବେ ।
କିଅଁତେ ଦୁଃଖ ନାଶେ ତେବେ ॥
ପ୍ରସନ୍ନ ଚିତ୍ତ ସେ ହୁଅଇ ।
ବୁଦ୍ଧି ତା ସ୍ଥିର ଯେ ରହଇ ॥

ଅଧ୍ୟୟନ କରୁଥିଲେ । କେତେକ ମାଇନର ସ୍କୁଲରେ ଉର୍ଦ୍ଦୁଶିକ୍ଷା ଦେବାପାଇଁ ମୁସଲମାନ ଶିକ୍ଷକ ରହିଥିଲେ । ମୁସଲମାନ ମାନେ ଘରେ ଉର୍ଦ୍ଦୁଭାଷାରେ କଥାବାର୍ତ୍ତାକରି ହିନ୍ଦୁମାନଙ୍କ ସହିତ ଓଡ଼ିଆଭାଷାରେ କଥାବାର୍ତ୍ତା କରୁଥିଲେ । ଓଡ଼ିଶାରେ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସୁସମ୍ପର୍କ ଥିଲା । ମୁସଲମାନମାନେ ଗୋ ମାଂସ ଭକ୍ଷଣ କରୁଥିଲେ । ହିନ୍ଦୁମାନଙ୍କର ଗହ୍ମାପୂର୍ଣ୍ଣମୀ ପରି କେତେକ ହିନ୍ଦୁଧର୍ମର ପର୍ବ ସେମାନଙ୍କର ଥିଲା ।

## ଡ଼ାକ୍ତରୀ ଶିକ୍ଷା :

ଡ଼ାକ୍ତରୀ ଶିକ୍ଷା ଓଡ଼ିଶାରେ ପ୍ରସାରଲାଭ କରିନଥିଲା । ପୁରପଲ୍ଲୀ ଅଞ୍ଚଳରେ ବୈଦ୍ୟମାନେ ଚିକିତ୍ସା କରୁଥିଲେ । ସେତେବେଳେ ପୁରୀର ମାଗୁଣି ବ୍ରହ୍ମା ଓ କଟକର ବାଲୁକେଶ୍ୱର ଆଚାର୍ଯ୍ୟ ପ୍ରସିଦ୍ଧ କବିରାଜ ନାମରେ ପରିଚିତ ଥିଲେ । କଟକରେ ଏକମାତ୍ର ମେଡ଼ିକାଲ ସ୍କୁଲ ଥିଲା । ସେହି ଅନୁଷ୍ଠାନରେ ଅନ୍ୟୂନ ୩୦୦ ଜଣ ଛାତ୍ର ଅଧ୍ୟୟନ କରୁଥିଲେ । ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ ମେଡ଼ିକାଲ ସ୍କୁଲରେ ଛାତ୍ରମାନେ ନାମଲେଖାଇ ୪ ବର୍ଷକାଳ ଅଧ୍ୟୟନ କରୁଥିଲେ । ଉତ୍ତୀର୍ଣ୍ଣ ଛାତ୍ର ମାନଙ୍କୁ L.M.P. (Lower Medical Practitioner) କୁହା ଯାଉଥିଲା । ପ୍ରତ୍ୟେକ ଜିଲ୍ଲାର ସଦର ମହକୁମାରେ ସରକାରୀ ଚିକିତ୍ସାଳୟ ଥିଲା । ପ୍ରତ୍ୟେକ ଥାନାରେ ଗୋଟିଏ ଲେଖାଏଁ ଜିଲ୍ଲାବୋର୍ଡ଼ ପରିଚାଳିତ ଡ଼ାକ୍ତର ଖାନା ରହିଥିଲା । ସେହି ଡ଼ାକ୍ତର ଖାନା ମାନଙ୍କରେ L.M.P ଡାକ୍ତରମାନେ ରହୁଥିଲେ । ସେମାନେ ଜିଲ୍ଲାବୋର୍ଡ଼ରୁ ବେତନ ପାଉଥିଲେ । ସେମାନଙ୍କର ମାସିକ ବେତନ ଟ୬୦/- ଥିଲା । କଟକ ମେଡ଼ିକାଲ ସ୍କୁଲରେ କମ୍ପାଉଣ୍ଡରୀ ଶିକ୍ଷା ଦିଆଯାଉଥିଲା । କମ୍ପାଉଣ୍ଡରମାନେ ସରକାରୀ ତଥା ବେସରକାରୀ ଡ଼ାକ୍ତରଖାନାମାନଙ୍କରେ ମାସିକ ଟ୨୦/- ବେତନରେ କାର୍ଯ୍ୟକରୁଥିଲେ । କଲେରା, ମ୍ୟାଲେରିଆ ପ୍ରଭୃତି ରୋଗର ପ୍ରତିଷେଧକ ବ୍ୟବସ୍ଥା



ନାସ୍ତି ବୁଦ୍ଧିରଯୁକ୍ତସ୍ୟ,
ନ ଚାଯୁକ୍ତସ୍ୟ ଭାବନା ।
ନ ଚାଭାବୟତଃ ଶାନ୍ତି,
ରଶାନ୍ତସ୍ୟ କୁତଃ ସୁଖଂ ॥
ଇନ୍ଦ୍ରିୟାଣାଂ ହି ଚରତାଂ,
ଯନ୍ମନୋଽନୁବିଧୀୟତେ ।
ତଦସ୍ୟ ହରତି ପ୍ରଜ୍ଞାଂ,
ବାୟୁର୍ନାବମିବାମ୍ଭସି ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୬୬ ଓ ୬୭)

ଇନ୍ଦ୍ରିୟ ଯାର ବଶେ ନାହିଁ ।
ପବିତ୍ର ବୁଦ୍ଧି ତା'ର କାହିଁ ॥
ବୁଦ୍ଧି ନଥିଲେ ନାହିଁ ଧ୍ୟାନ ।
ଧ୍ୟାନ ବିହୀନେ ଶାନ୍ତି ହୀନ ॥
ଶାନ୍ତି ନଥାଏ ଯାହାଙ୍କର ।
ସୁଖ ମିଳିବ କି ପ୍ରକାର ॥
ଯାହାର ସ୍ୱେଚ୍ଛାଚାରୀ ମନ ।
ଇନ୍ଦ୍ରିୟମାନଙ୍କ ଅଧୀନ ॥
ପ୍ରବଳ ବାୟୁ ନାବେ ଯଥା ।
ଜଳେ ନ ରଖଇ ସ୍ଥିରତା ॥
ସେ ମନ ତା'ର ବୁଦ୍ଧି ବୃତ୍ତି ।
ହରିଣ କୁମାର୍ଗେ ଚଳାନ୍ତି ॥

ପାଇଁ ସାଧାରଣ ସ୍ୱାସ୍ଥ୍ୟ ବିଭାଗ ରହିଥିଲା । ସେ ସମୟରେ କଲେରା, ବସନ୍ତ ଓ ମାଲେରିଆ ପ୍ରଭୃତି ସଂକ୍ରାମକ ରୋଗମାନଙ୍କର ପ୍ରାଦୁର୍ଭାବ ଦେଖାଯାଉଥିଲା ।

ସମଗ୍ର ବିହାର ଓଡ଼ିଶା ପ୍ରଦେଶରେ ଏକମାତ୍ର ମେଡ଼ିକାଲ କଲେଜ ପାଟନାରେ ଥିଲା । I.Sc କମ୍ବା ବି.ଏସ୍.ସି ପାସ୍ କରିବାପରେ ସେଠାରେ ୪ ବର୍ଷ ଅଧ୍ୟୟନ କରିବାକୁ ପଡୁଥିଲା । ସେମାନଙ୍କର ଉପାଧି M.B.B.S ଥିଲା । ସେମାନେ ସଦରମହକୁମା ସରକାରୀ ଚିକିତ୍ସାଳୟ ମାନଙ୍କରେ ଆସିଷ୍ଟାଣ୍ଟସର୍ଜନ ଭାବରେ କାର୍ଯ୍ୟକରି କାଳକ୍ରମେ Civil Surgeon ପଦବୀକୁ ଉନ୍ନୀତ ହେଉଥିଲେ । ୬୦ ବର୍ଷପରେ ଲୋକମାନଙ୍କୁ ଦୀର୍ଘାୟୁ କୁହାଯାଉଥିଲା । ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀ ମୃତ୍ୟୁ ହାର ଅଧିକ ସଂଖ୍ୟାରେ ଦେଖାଯାଉଥିଲା । ମୃତଦାରମାନେ ପୁନର୍ବିବାହ କରୁଥିଲେ କିନ୍ତୁ ବିଧବାମାନଙ୍କର ବିବାହ ପ୍ରଥା କେବଳ ବ୍ରାହ୍ମଣ ସମାଜରେ ନଥିଲା । ଅପ୍ରାପ୍ତ ବୟସ୍କା କନ୍ୟାର ପତି ମୃତ୍ୟୁ ବରଣ କଲେ ତାହାକୁ ବାଳଶ୍ରୀ ବିଧବା ଆଖ୍ୟା ଦିଆଯାଉଥିଲା ।

## ଇଞ୍ଜିନିୟରିଂ ଶିକ୍ଷା :

ଓଡ଼ିଶାର କଟକରେ ମେଡ଼ିକାଲ ସ୍କୁଲପରି ଏକମାତ୍ର ଇଞ୍ଜିନିୟରିଂ ସ୍କୁଲଥିଲା । ମାଟ୍ରିକ୍ୟୁଲେସନ୍ ପାସ୍ କରିବାପରେ ଛାତ୍ରମାନେ ସେହି ଅନୁଷ୍ଠାନରେ ୩ ବର୍ଷ ଅଧ୍ୟୟନକରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ସେମାନଙ୍କୁ ବାହାରେ ରହି ଏକବର୍ଷ ଟ୍ରେନିଂ ନେବାକୁ ପଡୁଥିଲା । ଟ୍ରେନିଂ ପିରିଅଡ୍‌ରେ ଟ୍ରେନିଂପ୍ରାପ୍ତ ଓଭରସିଅର ମାସିକ ଟ୨୦/- ଭତ୍ତା ପାଉଥିଲେ । ପରେ ସରକାରୀ ବା ବେସରକାରୀ



ତସ୍ମାଦ୍ୟସ୍ୟ ମହାବାହୋ,
ନିଗୃହୀତାନି ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟ,
ସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥
ଯା ନିଶା ସର୍ବଭୂତାନାଂ,
ତସ୍ୟାଂ ଜାଗର୍ତ୍ତି ସଂଯମୀ ।
ଯସ୍ୟାଂ ଜାଗ୍ରତି ଭୂତାନି,
ସା ନିଶା ପଶ୍ୟତୋମୁନେଃ ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୬୮ ଓ ୬୯)

ହେ ମହାବାହୁ ଶୁଣ ତୁହି ।
ଇନ୍ଦ୍ରିୟ ଯାର ବଶେ ଥାଇ ॥
ବିଷୟ ସୁଖରୁ ନିବୃତ୍ତ ।
ସ୍ଥିତପ୍ରଜ୍ଞ ବୋଲି ତାକୁ ତ ॥
ଅଜ୍ଞାନୀ ପ୍ରାଣୀ ପକ୍ଷେ ରାତ୍ରି ।
ସଂଯମୀ ଦିବସ ବୋଲାନ୍ତି ॥
ଅଜ୍ଞାନୀ ହୋଇଲେ ଜାଗ୍ରତ ।
ଜ୍ଞାନୀଏ ହୋନ୍ତି ନିଦ୍ରାଗତ ॥
ସଂଯମୀ ଜ୍ଞାନରେ ଦେଖଇ ।
ଅଜ୍ଞାନୀ ଅନ୍ଧାରେ ଭ୍ରମଇ ॥
ଅଜ୍ଞାନୀ ବିଷୟରେ ରସେ ।
ସଂଯମୀ ତହିଁରେ ନ ପଶେ ॥
ନର୍ତ୍ତକୀ ଶିରେ ଘଟେ ଧ୍ୟାନ ।
ପରି ବିଷୟ ଭୁଞ୍ଜେ ଜାଣ ॥
ଯଥା ଲବଣୀ କ୍ଷୀରୁ କାଢ଼ି ।
ପୁଣି ଯଦ୍ୟପି ତହିଁ ଛାଡ଼ି ॥
ଯେତେ ବା ଯତ୍ନ କରୁଥିବ ।
ସେ କାହିଁ ତହିଁରେ ମଶିବ ॥

ଭାବରେ କାର୍ଯ୍ୟକଲେ ସେମାନଙ୍କ ମାସିକ ଦରମା ଟ୬୦/- ଥିଲା । ସେହି ବିଭାଗର ନାମଥିଲା P.W.D. ବା ଓଡ଼ିଆରେ ବାରିକମିସ୍ତ୍ରୀ ବୋଲି କୁହାଯାଉଥିଲା । ଏକମାତ୍ର ଇଞ୍ଜିନିୟରିଂ କଲେଜ ପାଟନାରେ ଥିଲା । I.Sc କିମ୍ବା B.Sc. ପାସ୍ କରିବାପରେ ଓଡ଼ିଶାରୁ ମାତ୍ର ଅଳ୍ପ ସଂଖ୍ୟକ ଯୁବକ ସେଠାରୁ ଉତ୍ତୀର୍ଣ୍ଣ ହୋଇ ଓଡ଼ିଶାରେ ଇଞ୍ଜିନିୟର ବା ସହକାରୀ ଇଞ୍ଜିନିୟର ଭାବରେ କାର୍ଯ୍ୟକରୁଥିଲେ । ସେମାନଙ୍କର ବେତନ ଟ୨୫୦/- ଥିଲା । ଓଭରସିଅରମାନେ ସେମାନଙ୍କ ଅଧୀନରେ ରହି କାର୍ଯ୍ୟକରୁଥିଲେ । ଇଞ୍ଜିନିୟର ଓ ଓଭର ସିଅରମାନେ ସରକାରୀ କର୍ମଚାରୀ ଓ ଜିଲ୍ଲା ବୋର୍ଡ଼, ମ୍ୟୁନିସ୍‌ପାଲିଟିରେ ରହି କାର୍ଯ୍ୟ କରୁଥିଲେ । ଓଡ଼ିଶାରେ ଜଣେ ମାତ୍ର ଚିଫ୍ ଇଞ୍ଜିନିୟର ଥିଲେ । ସେ ସାଧାରଣତଃ ସାହେବ ଥିଲେ । ସଡ଼କ, ନଦୀବନ୍ଧ, ନଦୀରେ ସେତୁ ନିର୍ମାଣ ଓ ସରକାରୀ କୋଠା ନିର୍ମାଣ ସେମାନଙ୍କର କାର୍ଯ୍ୟଥିଲା । ଓଡ଼ିଶାରେ କେନାଲ୍ ଆଦୌନଥିଲା । କୌଣସି ସହରରେ କଳପାଣି ପାନକରିବାର ବ୍ୟବସ୍ଥା ନଥିଲା । ବିଜୁଳି ଆଲୁଅ ନଥିଲା । ସହରମାନଙ୍କରେ ଏପରିକି କଲିକତା ନଗରୀରେ ବତୀଖୁଣ୍ଟରେ କିରୋସିନ୍ ଲ୍ୟାମ୍ପ ଦିଆଯାଉଥିଲା ।

•••



ବିହାୟ କାମାନ୍ ଯଃ ସର୍ବାନ୍,<br>
ପୁମାଂଶ୍ଚରତି ନିସ୍ପୃହଃ ।<br>
ନିର୍ମମୋ ନିରହଂକାରଃ<br>
ସ ଶାନ୍ତିମଧିଗଚ୍ଛତି ॥<br>
ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ,<br>
ନୈନାଂ ପ୍ରାପ୍ୟ ବିମୁହ୍ୟତି ।<br>
ସ୍ଥିତ୍ୱାସ୍ୟାମନ୍ତକାଳେଽପି,<br>
ବ୍ରହ୍ମନିର୍ବାଣମୃଚ୍ଛତି ॥

ସର୍ବକାମନା ଯେ ତେଜଇ ।<br>
ମୋହାଦି ଅହଙ୍କାର ନାହିଁ ॥<br>
ବିଷୟ ଭୋଗ ଥିଲେ ତା'ର ।<br>
ସେ ମଧ୍ୟ ଶାନ୍ତି ପାଏ ଧୀର ॥<br>
ଏ ବ୍ରହ୍ମଜ୍ଞାନ ଯେ ଲଭଇ ।<br>
ଅଜ୍ଞାନେ ମୋହ ସେ ନୁହଇ ॥<br>
ଶେଷେ ପରମବ୍ରହ୍ମେ ଲୀନ ।<br>
କହଇ ବାସୁଦେବ ହୀନ ॥

(ଦ୍ୱିତୀୟୋଽଧ୍ୟାୟଃ - ସାଂଖ୍ୟଯୋଗଃ - ଶ୍ଳୋକ-୭୧ ଓ ୭୨)

# ଶିକ୍ଷକତା କରିବାର କାରଣ

## ମୁଁ କାହିଁକି ଶିକ୍ଷକ ହେଲି ?

ଜୀବନ କାଳ ମଧ୍ୟରେ ମୁଁ ପ୍ରାୟ ୫୦ ବର୍ଷ ଧରି ଶିକ୍ଷକତା କରିପାରିଛି । ଆଜିକାଲି ଉଚ୍ଚଶିକ୍ଷା ପାଇ ଶିକ୍ଷକତା କରିବାକୁ କେହି ପସନ୍ଦ କରୁନାହାନ୍ତି । ବିଏ ପାସ୍ କରିବା ପରେ ଜଣେ କିରାଣି ହେବାକୁ ଲାଳାୟିତ ହେଉଛନ୍ତି । ଆଜିକାଲି ଯୁଗରେ ଜଣେ କିରାଣିର ଆତ୍ମ ସମ୍ମାନ ସମାଜରେ ଅଧିକ ଦେଖାଯାଉଛି । ଜଣେ ଅବସରପ୍ରାପ୍ତ ଉଚ୍ଚପଦସ୍ଥ ବ୍ୟକ୍ତି ଟ୍ରେଜେରୀରେ କିରାଣିଙ୍କୁ ତୋଷାମଦ କରିବାର ଦେଖାଯାଏ । ଜଣେ ଅଧ୍ୟାପକର ଆର୍ଥିକ ଅବସ୍ଥା ଠାରୁ ଜଣେ କିରାଣିର ଆର୍ଥିକ ଅବସ୍ଥା ଉନ୍ନତତର । ଜଣେ କିରାଣି କୋଠାଘର ନିର୍ମାଣ କରିପାରୁଛି କିନ୍ତୁ ଜଣେ ସଚ୍ଚୋଟ ରାଜ କର୍ମଚାରୀର ପରିବାର ବର୍ଗ ସ୍ୱଚ୍ଛଳ ନୁହେଁ ।

୧୯୨୮ ମସିହାରେ I.A. ପାସ୍ କରିବା ପରେ ଚେଷ୍ଟା କରିଥିଲେ ମୁଁ ପୁରୀ ସବ୍ ରେଜିଷ୍ଟ୍ରାର ଅଫିସ୍‌ରେ କିରାଣି ହୋଇ ପାରିଥାଆନ୍ତି । ତତ୍‌କାଳୀନ ପୁରୀର ମାଜିଷ୍ଟ୍ରେଟ୍ ଦୟାନିଧି ଦାସଙ୍କର ସ୍ତ୍ରୀ ସହିତ ମୋର ମାତା ଶ୍ରୀ ମନ୍ଦିରରେ ମିତ୍ରତା ସୂତ୍ରରେ ଆବଦ୍ଧ ରହିଥିଲେ । ମୁଁ କେତେଥର ତାଙ୍କ ଘରକୁ ଯାଇଛି । ତାଙ୍କୁ କହିବାରୁ ସେ ମୋତେ କହିଲେ, "ତୁ ବି.ଏ. ପାସ୍ କରିବା ପରେ ମୋ ସହିତ ଦେଖା କରିବୁ" । ସେ ଆମର ଆର୍ଥିକ ଅବସ୍ଥା ଜାଣିବେ ବା କିପରି ? **ମୁଁ ଜୀବନରେ କେବେହେଲେ ନିଜକୁ ହୀନ ସମ୍ବଳ ବୋଲି କାହାରି ଆଗରେ ପ୍ରକାଶ କରୁନଥିଲି ।** ମୁଁ ଜାଣିଥିଲି ନିଜର ଦାରିଦ୍ର୍ୟ ଅନ୍ୟ ସମ୍ମୁଖରେ ପ୍ରକାଶ କଲେ କେହି ମୋର ଦରିଦ୍ରତା ଦୂର କରିପାରିବେ ନାହିଁ ଅଥଚ୍ ମୁଁ ସମସ୍ତଙ୍କ ଦ୍ୱାରା

ନ କର୍ମଣାମନାରମ୍ଭା,<br>
    ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।<br>
ନ ଚ ସନ୍ନ୍ୟସନାଦେବ,<br>
    ସିଦ୍ଧିଂ ସମଧିଗଚ୍ଛତି ॥



(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୪)

ଯା ଚିତ୍ତ ବୁଦ୍ଧି ଯେ ନୁହଇ ।<br>
    ବୁଦ୍ଧି ନିର୍ମଳ ହେବ କାହିଁ ॥<br>
ନିଷ୍ପାପ କର୍ମ ତା ପକ୍ଷରେ ।<br>
    ଉଚିତ ଅଟଇ ସଂସାରେ ॥

ନିଷ୍କାମ ଭାବେ କଲେ କର୍ମ ।<br>
    ମୁକ୍ତି ଲଭଇ ସେହୁ ଜନ ॥<br>
ପୌରୁଷ କର୍ମୁ ନିବର୍ତ୍ତିଲେ ।<br>
    କର୍ମ ବନ୍ଧନ ଘୋଟେ ହେଳେ ॥<br>
ସନ୍ନ୍ୟାସ ଅବଲମ୍ବନରେ ।<br>
    ସିଦ୍ଧିଲାଭ ନ କରିପାରେ ॥<br>
ଯେ ନର ବସ୍ତୁ କରେ ଧରେ ।<br>
    ସେ ସିନା ତାକୁ ତ୍ୟାଗ କରେ ॥<br>
ଉଲଗ୍ନ ହୋଇ ଯେ ବୁଡ଼ିବ ।<br>
    ପିନ୍ଧିଣ କିସ ଚୁପୁଡ଼ିବ ॥

ଘୃଣିତ ହେବି । ତାପରେ ମୁଁ ବହୁ ପୁସ୍ତକ ଅଧ୍ୟୟନ କରି ଜାଣିଥିଲି ପୃଥିବୀର ବଡ଼ ବଡ଼ ଲୋକମାନେ ପ୍ରଥମେ ଶିକ୍ଷକତା କରିଥିଲେ । ଉଦାହରଣ ସ୍ୱରୂପ ଆମ ଓଡ଼ିଶାର - ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଭକ୍ତ କବି ମଧୁସୂଦନ, କବିବର ରାଧାନାଥ ଓ ବ୍ୟାସକବି ଫକୀର ମୋହନ । ସେହି ମାନଙ୍କର ଜୀବନୀ ମୋତେ ପ୍ରେରଣା ଦେଇଥିଲା । ଶିକ୍ଷକତାରେ ଯେଉଁ ଅନାବିଳ ଶାନ୍ତି ଓ ଆନନ୍ଦ ମିଳେ ଅନ୍ୟ କୌଣସି ବିଭାଗରେ ତାହା ବିରଳ । ଓକିଲ ହେଲେ ମଧ୍ୟ ମହକିଲ ପାଖରେ ହାତ ପତାଏ । ସେହିପରି ତୋଷର ପାତ ବା ଦୁର୍ନୀତିର ଆଶଙ୍କା ମଧ୍ୟ ନଥିଲା । ମୋର ଧାରଣା ଥିଲା ସଂଯତ ଜୀବନ ଯାପନ କଲେ ମନୁଷ୍ୟ ଧନ ରଖିପାରିବ । ତାପରେ ତାର ଭାବୀ ବଂଶଧର ମାନେ ଅସାଧୁ ଉପାୟ ଅବଲମ୍ବନ କରିପାରିବେ ନାହିଁ । ଜଣେ ନିଷ୍ପାପର ଶିକ୍ଷକ ଜୀବନରେ କେତେଜଣ ମନୁଷ୍ୟ ଗଢ଼ିପାରିବ । ମହାମହୋପାଧ୍ୟାୟ ଜଣେ ସାଧାରଣ କାବ୍ୟ ତୀର୍ଥ ହୋଇ ଭାରତରେ ଖ୍ୟାତି ଲାଭ କରିଥିଲେ । ସେ ଓଡ଼ିଶାକୁ ପୁର୍ନଜୀବିତ କରାଇଥିଲେ । ଭାରତ ପ୍ରସିଦ୍ଧ ମଧୁବାବୁ ପ୍ରଥମେ କଲିକତା ନଗରୀରେ ଶିକ୍ଷକତା କରିଥିଲେ । **ଶିକ୍ଷକ ଦରିଦ୍ର ହେଲେ ମଧ୍ୟ ନମସ୍ୟ କିନ୍ତୁ ଜଣେ କଲେକ୍ଟର ତାଙ୍କର କାର୍ଯ୍ୟକାଳ ମଧ୍ୟରେ କେବଳ ପ୍ରଣାମ ପାଆନ୍ତି କିନ୍ତୁ ନମସ୍ୟ ନୁହଁନ୍ତି** । ନମସ୍ୟ ଶବ୍ଦର ଅର୍ଥ ହେଲା- ନମସ୍କାର ପାଇବାର ଯୋଗ୍ୟ ବ୍ୟକ୍ତି ଯେପରି ଦେବତା, ପିତା, ମାତା । ତେଣୁ ଦେବତା, ପିତା, ମାତା, ଶିକ୍ଷା ଗୁରୁ ଚିର ନମସ୍ୟ । ଅନ୍ୟମାନେ ଶିଷ୍ଟାଚାର ଦୃଷ୍ଟିରୁ । ଏହି ସବୁ ପ୍ରେରଣା ମୋତେ ଶିକ୍ଷାନୁଷ୍ଠାନକୁ ଆକର୍ଷଣ କରିଥିଲା ।

ଯସ୍ତ୍ୱିନ୍ଦ୍ରିୟାଣି ମନସା,<br>
ନିୟମ୍ୟାରଭତେଽର୍ଜୁନ ।<br>
କର୍ମେନ୍ଦ୍ରିୟୈଃ କର୍ମଯୋଗ,<br>
ମସକ୍ତଃ ସ ବିଶିଷ୍ୟତେ ॥<br>
ନିୟତଂ କୁରୁ କର୍ମତ୍ୱଂ,<br>
କର୍ମଜ୍ୟାୟୋ ହ୍ୟକର୍ମଣଃ ।<br>
ଶରୀରଯାତ୍ରାପି ଚ ତେ,<br>
ନ ପ୍ରସିଧ୍ୟେଦକର୍ମଣଃ ॥

(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୭ ଓ ୮)



ଜୟ ଯେ କରେ ଜ୍ଞନେନ୍ଦ୍ରିୟ ।<br>
ତେଜି ଫଳ କାମନା ମୋହ ॥<br>
କର୍ମେନ୍ଦ୍ରିୟ କର୍ମେ ଲଗାଇ ।<br>
କର୍ମାନୁଷ୍ଠାନେ ପ୍ରିୟ ହୋଇ ॥<br>
ଏମାନେ ଅଟନ୍ତି ଯେ ଜ୍ଞାନୀ ।<br>
ଶୁଣ ଅର୍ଜୁନ ବୀରମଣି ॥<br>
ଏଣୁ ତୁ ଅନବରତରେ ।<br>
କର୍ମକୁ କର ସୁଚିତ୍ତରେ ॥<br>
କର୍ମ ଅକର୍ମଠାରୁ ଶ୍ରେୟ ।<br>
କର୍ମେ ରହିଛି ଏହି ଦେହ ॥<br>
ଶୟନ ଭୋଜନ ଗମନ ।<br>
ପାନାଦି ନିତ୍ୟ ପ୍ରୟୋଜନ ॥<br>
ଏ କର୍ମେ ଶରୀର ରହଇ ।<br>
ଅକର୍ମେ ଶରୀର ନ ଥାଇ ॥

ଶିକ୍ଷକ ଜ୍ଞାନୀ ନହେଲେ ଶିକ୍ଷାଦାନ କରିବାକୁ ଅସମର୍ଥ ହୁଏ ଫଳରେ ଛାତ୍ର ମାନଙ୍କ ସମ୍ମୁଖରେ ଅପମାନିତ ହୁଏ । ମୁଁ ତାର ଦୃଷ୍ଟାନ୍ତ ଦେଖିଛି ଓ ନିଜ ଜୀବନରେ ଅନୁଭବ କରିଛି । ଛାତ୍ର ଜୀବନରେ ମନୁଷ୍ୟ ଜ୍ଞାନାର୍ଜନ କରି ନଥାଏ କିନ୍ତୁ ଶିକ୍ଷକ ଜୀବନରେ ଜ୍ଞାନ ଆହରଣ କରିବାକୁ ସୁବିଧା ଓ ସୁଯୋଗ ପାଏ । **ଶିକ୍ଷକର ଅବସର ସମୟ ପୁସ୍ତକାଗାରରେ କଟିବା ଉଚିତ୍ ।** ଅତିକମ୍ ଏକହଜାର ପୁସ୍ତକ ନପଢ଼ିଲେ କେହି ଶିକ୍ଷକ ହୋଇପାରନ୍ତି ନାହିଁ । **ସ୍ୱଳ୍ପ ଜ୍ଞାନ ଶିକ୍ଷକତାର ପ୍ରଧାନ ଶତ୍ରୁ ।** ଆଜିକାଲି ଦୀର୍ଘ ୪ ବର୍ଷ ପଢ଼ାଇବା ପରେ ମଧ ଶିକ୍ଷକମାନେ ଛାତ୍ରମାନଙ୍କର ନାମ ଜାଣୁ ନାହାନ୍ତି । ସେପରି ଜ୍ଞାନ ଲିପ୍ସୁ ଛାତ୍ର ମଧ ବିରଳ । ୪୦ବର୍ଷ ତଳେ ଆମେ ଛାତ୍ର ମାନଙ୍କର ପିତୃ ପିତା ମହଙ୍କର ନାମ ଜାଣିଥିଲୁ । ସେମାନଙ୍କର ଆର୍ଥିକ ଅବସ୍ଥା ମଧ ଜାଣିଥିଲୁ । କେହି ଗରିବ ଛାତ୍ର ଖାଇ କରି ଆସି ନଥିଲେ ତାକୁ ବସାରେ ପଖାଳ ଖାଇବାକୁ ଦେଉଥିଲୁ । କିଛି ଦିନ ତଳେ ମୋର ଜଣେ ପୁରାତନ ଛାତ୍ର ଅବସରପ୍ରାପ୍ତ ରିଡ଼ର ଶ୍ରୀ ନିରଞ୍ଜନ ମହାପାତ୍ର ରାସ୍ତାରେ ମୋତେ ଦେଖି ପାଦ ଧୂଳି ନେଇ ମସ୍ତକରେ ଲଗାଇ କହିଲେ, "ଆଉ ଏ ସୁଯୋଗ ମିଳିବନି ?" ଯେଉଁ କତିପୟ ଛାତ୍ରଙ୍କୁ ପ୍ରେରଣା ଓ ସାହାଯ୍ୟଦେଇ ମୁଁ ମନୁଷ୍ୟ କରିପାରିଛି ସେମାନଙ୍କ ନାମ ଉଲ୍ଲେଖ କରୁଛି ।

୧-ଶ୍ରୀ ନିରଞ୍ଜନ ମହାପାତ୍ର, ପାଙ୍କୋଳ ୨-ଶ୍ରୀ ନିଧି ନାଏକ - ଆସିଷ୍ଟାଷ୍ଟ ସେକ୍ରେଟାରୀ ବିଦ୍ୟୁତ୍ ବୋର୍ଡ଼, ୩- ଶ୍ରୀ ଉଦୟ ନାଥ ମିଶ୍ର - ଅବସର ପ୍ରାପ୍ତ ସୁପରିଟେଣ୍ଡେଣ୍ଟ, ସରକାରୀ ପ୍ରେସ୍, କଟକ ୪-ଶ୍ରୀ ନାରାୟଣ ଶତପଥୀ ୫- ଶ୍ରୀ ନାରାୟଣ ସାହୁ, ଭଗବାନପୁର, ୬- ଶ୍ରୀ ଭରତ ପରିଡା, ୭- ଶ୍ରୀ ଜଟାଧାରୀ ନାଏକ - ପାଟେଳି, ୮- ଭରତ ପଟ୍ଟନାୟକ, ଅଙ୍କିଆ, ୯- ଶ୍ରୀ ଚକ୍ରଧର ମହାପାତ୍ର, ୧୦- ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ ଏମ୍.ଏ. (ବେଗୁନିଆ) (ଏହିପରି ଆହୁରି ଅନେକ) ଯାହାଙ୍କର ନାମ ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ଯଜ୍ଞାର୍ଥାତ୍କର୍ମଣୋଽନ୍ୟତ୍ର,
ଲୋକୋଽୟଂକର୍ମବନ୍ଧନଃ ।
ତଦର୍ଥଂ କର୍ମ କୌନ୍ତେୟ,
ମୁକ୍ତସଙ୍ଗଃ ସମାଚର ॥
ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା,
ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱ,
ମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ ॥

(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୯ ଓ ୧୦)



ଯଜ୍ଞ ଅର୍ଥରେ କର କର୍ମ ।
ଯଜ୍ଞ ସାକ୍ଷାତେ ପରଂବ୍ରହ୍ମ ॥
ଯେ କର୍ମେ ବିଷ୍ଣୁ ପ୍ରୀତି ନୋହି ।
ସେ କର୍ମେ ଜୀବ ବନ୍ଦୀ ହୋଇ ॥
ସୃଷ୍ଟି ଆରମ୍ଭେ ବେଦବର ।
ଯଜ୍ଞ ସହିତ ପ୍ରଜାକୁଳ ॥
ଉତ୍ପତ୍ତି କରିଥିଲେ କହି ।
ଏ ଯଜ୍ଞେ ବୃଦ୍ଧି ପ୍ରାପ୍ତ ହୋଇ ॥
ଏ ଯଜ୍ଞ ବୃଦ୍ଧି ଯେବେ ହେବ ।
ସର୍ବ ଅଭୀଷ୍ଟ ଫଳ ଦେବ ॥

# ଶିକ୍ଷା ଓ ଶିକ୍ଷକ

କାହ୍ନୁ

ଦୀର୍ଘ ୫୦ବର୍ଷ କାଳ ଶିକ୍ଷକତା କରି ଓ ସହସ୍ରାଧିକ ଶିକ୍ଷାର୍ଥୀଙ୍କୁ ଶିକ୍ଷାଦାନ ଦେଇ ଅନେକ ବାଳକଙ୍କୁ ମନୁଷ୍ୟ କରି ଗଢ଼ିଛି । ଏକଲବ୍ୟ ପରି ସେମାନଙ୍କର ଗୁରୁଭକ୍ତି ରହିଛି । ସେମାନଙ୍କ ମଧ୍ୟରୁ

୧- ଶ୍ରୀ ଉଦୟ ନାଥ ମିଶ୍ର - ଅବସର ପ୍ରାପ୍ତ ସୁପରିଟେଣ୍ଡେଣ୍ଟ- ସରକାରୀ ପ୍ରେସ୍

୨- ଶ୍ରୀ ନିଧି ନାୟକ - ଆସିଷ୍ଟାଣ୍ଟ ସେକ୍ରେଟାରୀ - ବିଦ୍ୟୁତ୍ ବୋର୍ଡ

୩- ଶ୍ରୀ ନାରାୟଣ ଶତପଥୀ – ସବ୍ ଆସିଷ୍ଟାଣ୍ଟ ଇଞ୍ଜିନିୟର

୪- ଶ୍ରୀ ନିରଞ୍ଜନ ମହାପାତ୍ର – ଅବସରପ୍ରାପ୍ତ ରିଡ଼ର (ଓ ଆହୁରି ଅନେକ)

ମୋ ସହ ସମ୍ପର୍କରେ ବର୍ତ୍ତମାନ ବି ଅଛନ୍ତି । ଏପରି ବହୁ ଛାତ୍ର ବାହାରିବେ । ନାତି କଳେବର ପ୍ରବନ୍ଧରେ ସେମାନଙ୍କର ନାମ ଲେଖିବା କଷ୍ଟକର । ଏହି ଛାତ୍ର ମାନଙ୍କର ଆଚରଣ, ଗୁରୁଭକ୍ତି ଓ ବିଦ୍ୟାର୍ଜନ ଲିପ୍ସା ମୋର ପ୍ରାଣକୁ ଉଦ୍‌ବେଳିତ କରିଥିଲା । ଶିଷ୍ୟ ଗୁରୁଙ୍କ ପାଖରେ ଗୋରୁଙ୍କ ପରି ପଡ଼ି ରହେ । ତେଣୁ ପାଓ୍ୱାରି ବାବା ବିବେକାନନ୍ଦଙ୍କୁ କହିଥିଲେ "ଗୁରୁକା ପାଶ୍ ଗୋରୁ କା ମାଫ୍ ପଡ଼େ ରହେ ।" ବିବେକାନନ୍ଦ ତା ପରେ ରାମକୃଷ୍ଣଙ୍କର ଶିଷ୍ୟ ହୋଇ ପାରିଥିଲେ ।

ଶିକ୍ଷାର ଅର୍ଥ ବ୍ୟାପକ । ସିଲେଇ କରିବାଠାରୁ, ନର୍ତ୍ତନ ଶୀଳତା ପର୍ଯ୍ୟନ୍ତ ଶିକ୍ଷା ରହିଛି । ଯେ ଶିକ୍ଷା ଦାନ କରେ ସେ ଶିକ୍ଷକ ଓ ଯେ ଅଧ୍ୟାପନା ନିଜେ କରେ ସେ ଅଧ୍ୟାପକ । ଆଜିକାଲି କଲେଜ ମାନଙ୍କରେ ଶିକ୍ଷାଦାନ ବ୍ୟକ୍ତିଙ୍କୁ ଅଧ୍ୟାପକ ଓ ସ୍କୁଲ ମାନଙ୍କରେ ଯେଉଁମାନେ ଶିକ୍ଷା ଦେଉଛନ୍ତି ସେମାନଙ୍କୁ ଶିକ୍ଷକ କୁହାଯାଉଅଛି । ଯାହାର ପାଣ୍ଡିତ୍ୟ ଅଛି ସେମାନେ ପଣ୍ଡିତ । ଯଥା-ପଣ୍ଡିତ ନୀଳକଣ୍ଠ ଦାସ । **ପ୍ରକୃତ ଶିକ୍ଷା ହେଲା- ଯେଉଁ ଶିକ୍ଷାଦ୍ୱାରା ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ପରିସ୍ଫୁଟ ହୁଏ ।** ସେ ପ୍ରଥମେ ପଶୁବତ୍ ଜୀବନ ଧାରଣ କରି ପରେ ପ୍ରକୃତ

ଅନ୍ନାଭବନ୍ତି ଭୂତାନି,
ପର୍ଜ୍ଜନ୍ୟାଦନ୍ନସମ୍ଭବଃ ।
ଯଜ୍ଞାଦ୍‌ଭବତି ପର୍ଜ୍ଜନ୍ୟୋ,
ଯଜ୍ଞଃ କର୍ମସମୁଭବଃ ॥

(ତୃତୀୟୋଦ୍ଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୧୪)



ଭୁଞ୍ଜେ ରାନ୍ଧିଣ ନିଜ ପାଇଁ ।
କେବଳ ପାପ ସେ ଭୋଗଇ ॥
ଅନ୍ନରୁ ପ୍ରାଣୀ ହୋନ୍ତି ଜାତ ।
ବୃଷ୍ଟିରୁ ସେ ଅନ୍ନ ପ୍ରସ୍ତୁତ ॥
ଯଜ୍ଞରୁ ବୃଷ୍ଟି ଜନମଇ ।
ସେ ଯଜ୍ଞ କର୍ମରୁ ହୁଅଇ ॥

ମନୁଷ୍ୟତା ଅର୍ଜନ କରେ । **ସେ ସଦାଚାରୀ, ସତ୍ୟନିଷ୍ଠ, ସେବକ, ସହିଷ୍ଣୁ, ସତ୍‌କର୍ମରତ ରହି ସଦୁପାୟରେ ଓ ସତ୍‌ସଂସର୍ଗ ବଳରେ ସତ୍ୟଧନ ଲାଭକରେ । ନିଜେ ଜୀବନରେ ଶାନ୍ତି, ସୁଖ ଲାଭକରେ । ଆନନ୍ଦରେ ସୁଖୀ ବା ବିପଦରେ ଦୁଃଖୀ ହୁଏନାହିଁ** । ବିପଦ ସମୟରେ ଧୈର୍ଯ୍ୟ ଅବଲମ୍ବନ କରେ । ପରୋପକାରୀ ହୁଏ ଓ ଭାବୀ ଜୀବନରେ ଅହମିକା ତ୍ୟାଗକରି ମାନବ ସେବାରେ ସମୟର ସଦ୍ ବ୍ୟବହାର କରେ । ମୁଁ ସେପରି ମୋର ଜୀବନ କାଳ ମଧ୍ୟରେ ମାତ୍ର ୨ଜଣ ଦେଖିଅଛି । ୧-ପଣ୍ଡିତ ଗୋପବନ୍ଧୁ ୨-ଆଚାର୍ଯ୍ୟ ହରିହର । ଭାଗ୍ୟବଳରୁ ସେମାନଙ୍କର ସାନ୍ନିଧ୍ୟ କିଛିଦିନ ପାଇଥିଲି ।

ବର୍ତ୍ତମାନ ଯୁଗରେ ଶିକ୍ଷାନିକେତନ ମାନଙ୍କରେ ଅର୍ଥକରୀ ଶିକ୍ଷା ଦିଆଯାଉଅଛି । ଛାତ୍ର ପରୀକ୍ଷାରେ ପାସ୍ କରୁଛି ଓ ସାର୍ଟିଫିକେଟ ପାଉଛି । ଆଗେ ସାର୍ଟିଫିକେଟ ମାନଙ୍କରେ, Good, Fair, Bad ଲେଖାଯାଉଥିଲା । ବର୍ତ୍ତମାନ ପ୍ରଧାନ ଶିକ୍ଷକ ମାନେ Good Conduct Certificate ଦେଉଛନ୍ତି । 'His Character is good' ଲେଖାଯାଉଅଛି । କାରଣ ଚ଼ରିତ୍ର ଅନ୍ତର୍ନିହିତ କିନ୍ତୁ ଆଚ଼ରଣ ମନୁଷ୍ୟର ବହିର୍ପ୍ରକାଶ ମାତ୍ର । ସଦାଚରଣ ସତ୍‌ଚରିତ୍ରର ପୃଷ୍ଠପୋଷକ ହୋଇଥାଏ । ତେଣୁଶିକ୍ଷକ ସଦାଚାରୀ ନହେଲେ ଛାତ୍ରମାନଙ୍କୁ ସଦାଚରଣ ଶିକ୍ଷାଦେଇ ପାରନ୍ତି ନାହିଁ । ପ୍ରଥମେ ଶିଶୁ ମାତା ହସ୍ତରୁ ଖାଦ୍ୟଖାଇ ପରେ ନିଜ ହସ୍ତରେ ଖାଦ୍ୟ ଖାଇବାକୁ ସମର୍ଥ ହୁଏ । ତେଣୁ ସଦାଚରଣ ବଳରେ ମନୁଷ୍ୟର ପ୍ରକୃତ ମନୁଷ୍ୟତା ଆସେ ମନୁଷ୍ୟ ଅନାବିଳ ଚ଼ରିତ୍ର ଗଠନ କରେ । ନିଜେ ସମ୍ମାନିତ ହେବା ସଙ୍ଗେ ସଙ୍ଗେ



କର୍ମବ୍ରହ୍ମୋଭବଂ ବିଦ୍ଧି,
ବ୍ରହ୍ମାକ୍ଷର ସମୁଦ୍ଭବଂ ।
ତସ୍ମାତ୍ ସର୍ବଗତଂ ବ୍ରହ୍ମ,
ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତଂ ॥
ଏବଂ ପ୍ରବର୍ତ୍ତିତଂ ଚକ୍ରଂ,
ନାନୁବର୍ତ୍ତୟତୀହ ଯଃ ।
ଅଘାୟୁରିନ୍ଦ୍ରିୟାରାମୋ,
ମୋଘଂ ପାର୍ଥ ସ ଜୀବତି ॥

(ତୃତୀୟୋଦ୍ଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୧୫ ଓ ୧୬)

କର୍ମ ବେଦରୁ ଜନମଇ ।
ପରମାତ୍ମା ବେଦୁ ଜନ୍ମଇ ॥
ଯଦ୍ୟପି ଆତ୍ମା ସର୍ବବ୍ୟାପୀ ।
ଯଜ୍ଞେ ରହନ୍ତି ସେ ତଥାପି ॥
ଏପରି ଇଚ୍ଛା ଫଳଦାୟୀ ।
ଯଜ୍ଞରୁ ବଳି ଆଉ ନାହିଁ ॥
ଇହଲୋକରେ ଯେଉଁ ବ୍ୟକ୍ତି ।
କର୍ମ ଚକ୍ରର ଅନୁବର୍ତ୍ତୀ ॥
ଯେ ଯାହା ପରି କର୍ମ କରେ ।
କର୍ମ ଚକ୍ରକୁ ନ ସୁମରେ ॥
ଇନ୍ଦ୍ରିୟ ବଶେ ରହିଥାଇ ।
ବିଷୟ ସୁଖକୁ ଭୋଗଇ ॥
ବୃଥା ଜୀବନ ସେ ପାପୀର ।
ଜନ୍ମଇ ସେ ନୀଚ ଯୋନିର ॥
ନାନାଦି ଦୁଃଖ ସେ ଭୋଗଇ ।
ବ୍ରହ୍ମାନନ୍ଦ ସୁଖ ନା ପାଇ ॥

ଛାତ୍ରମାନଙ୍କୁ ସମ୍ମାନିତ କରାଏ । ନିଜେ ସୁନାମ ଅର୍ଜନ କରିବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ସୁନାମ ବଢ଼ାଏ ।

ତେଣୁ ପ୍ରକୃତ ଜ୍ଞାନାର୍ଜନ କରିବା ଶିକ୍ଷାର ଚରମ ଉଦ୍ଦେଶ୍ୟ । ସେପରି ବିଦ୍ୟାରତ୍ନ ଲାଭକରି ମନୁଷ୍ୟର ଭାବୀ ଜୀବନ ଦୁଃଖମୟ ବା କଳୁଷିତ ହୁଏନାହିଁ । ମାୟାବଦ୍ଧ ଜୀବନରେ ଅର୍ଥ ଉପାର୍ଜନ କରିବା ବିଧେୟ । କେତେକ କହନ୍ତି ଅବୈଧ ଉପାୟ ଅବଲମ୍ବନ ନକଲେ ମନୁଷ୍ୟ ଧନଶାଳୀ ହୋଇପାରେ ନାହିଁ । ଏହା ସମ୍ପୂର୍ଣ୍ଣ ଭ୍ରମଧାରଣା । ମୁଁ ଆଗରୁ କହିରଖିଛି କେବଳ ସଂଯତ ଜୀବନ ମନୁଷ୍ୟକୁ ବିତ୍ତଶାଳୀ କରିଥାଏ । ସେ ଜୀବନରେ ଅର୍ଥାନଟନର ସମ୍ମୁଖୀନ ହୁଏନାହିଁ । କାର୍ପଣ୍ୟ ଯେପରି ପରିହାର୍ଯ୍ୟ, ବିଳାସ ବ୍ୟସନ ସେହିପରି ପରିହାର୍ଯ୍ୟ । କେତେକ ଶିକ୍ଷକ ଛାତ୍ରମାନଙ୍କୁ ଉପଦେଶ ଦିଅନ୍ତି, "Do What I say but do not do what I do" ଏହାର ଅର୍ଥ ହେଲା ସିଗାରେଟ୍ ଖାଅନାହିଁ, କିନ୍ତୁ ମୁଁ ସିଗାରେଟ୍ ଖାଉଛି ଦେଖି ଧୂମପାନ ବର୍ଜନ କର । ଏହା ମୂଲ୍ୟହୀନ ଉପଦେଶ । ଶିଶୁ ଅନୁକରଣ ପଟୁ । ଦେଖାଶିଖା ଓଡ଼ିଶା । ଶିଶୁ ପିତାମାତାଙ୍କର ଯେଉଁ ଆଚରଣ ଦେଖେ ତାହାହିଁ ଅନୁକରଣ କରିଥାଏ । **ତେଣୁ ପିତାମାତା ସଦାଚାରୀ, ମିଷ୍ଟଭାଷୀ, ପରୋପକାରୀ, ନିତ୍ୟ ସଂଯତ ହେଲେ ତାହାର ଦାୟାଦମାନେ ସେହିପରି ହୁଅନ୍ତି ।** ଯାହାର ପିତା ଅନ୍ୟକୁ ଶଳାବୋଲି ଗାଳିଦିଏ ତାର ପୁତ୍ର ମଧ୍ୟ ସେହିପରି ଶିକ୍ଷା କରିଥାଏ । ତେଣୁ ପାରିବାରିକ ଜୀବନରେ ଜନକ ଜନନୀ ପୁତ୍ର କନ୍ୟାଙ୍କର ପ୍ରକୃତ ଶିକ୍ଷକ, ଶିକ୍ଷାୟତନର ଶିକ୍ଷକ ମାନେ ନୁହଁନ୍ତି ।

ଅନେକ ପରିବାରରେ ପିତାମାତା ଶିକ୍ଷିତ ଥାଇ ମଧ୍ୟ ପିଲାମାନଙ୍କ ସକାଶେ ଘରୋଇ ଶିକ୍ଷକ ନିଯୁକ୍ତ କରିଥାଆନ୍ତି । ତାହା ଶୋଭନୀୟ ନୁହେଁ । ଅଶିକ୍ଷିତ ପରିବାରରେ ଚଳନୀୟ । ଅତି **କମ୍ ଏକହଜାର ପୁସ୍ତକ ପାଠ ନକଲେ ଶିକ୍ଷକ ଶିକ୍ଷକ ହୋଇପାରେ ନାହିଁ । ଛାତ୍ରମାନଙ୍କୁ ପ୍ରକୃତ ଶିକ୍ଷାଦେବା ଶିକ୍ଷକଙ୍କର ପରମ ଧର୍ମ । ସ୍ୱାବଲମ୍ବନଶୀଳତା ଶିକ୍ଷାର ପ୍ରଧାନ ଅଙ୍ଗ । ସତ୍ୟବାଦୀର ବନବିଦ୍ୟାଳୟର ଶିକ୍ଷାଦାନ ପ୍ରଣାଳୀ ଶାନ୍ତିନିକେତନର ଉଦ୍ଦେଶ୍ୟ ସହ ସମାନ ଥିଲା ।**

ଯସ୍ତ୍ୱାତ୍ମରତିରେବସ୍ୟା,
ଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସନ୍ତୁଷ୍ଟ,
ସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ॥
(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୧୭)



ଜନ୍ମେ ଆତ୍ମାରେ ଯା ଶରଧା ।
ତୁଷ୍ଟି ସନ୍ତୋଷ ମତି ସଦା ।
ସକାମ କର୍ମ ନିମିତ୍ତର ।
ଚିତ୍ତ ନ ବଳଇ ତାହାର ॥
ବିଷୟ ଭୋଗ ଲାଳସାରେ ।
ଯେ କାମୀ ମଜ୍ଜଇ କର୍ମରେ ॥
ସେ ସୁଖ ଅଟଇ ଅନିତ୍ୟ ।
ପୁତ୍ର କଳତ୍ର ପଶୁ ବିତ୍ତ ॥
ମାଳା ଚନ୍ଦନ ଯୁବାନାରୀ ।
ଏ ସୁଖ ବିନା ଦୁଇ ଚାରି ॥
ଏ ସବୁ ଅନିତ୍ୟ ଅଟଇ ।
ଜ୍ଞାନୀଏ କର୍ମ ଆଶ୍ରେ ରହି ॥

# ବିଦ୍ୟାଳୟ ମାନଙ୍କରେ ସାଂସ୍କୃତିକ କାର୍ଯ୍ୟକ୍ରମ

## (ସମାଲୋଚନା ମୂଳକ)

ଆଜି କାଲି ସମାଲୋଚନା ଶବ୍ଦର ବ୍ୟଙ୍ଗ ଅର୍ଥ କରାଯାଉଅଛି । କେହି କାହାର ନିନ୍ଦା ବା କୁତ୍ସାରଟନା କରେ ବା ହୃଦୟରେ ଈର୍ଷା ପୋଷଣ କରି ଅନ୍ୟର ସମ୍ମୁଖରେ କିଛି କହିଲେ ତାହାକୁ ସମାଲୋଚନା ବୋଲି ଧରାଯାଉଅଛି । କିନ୍ତୁ ସମାଲୋଚନାର ପ୍ରକୃତ ଅର୍ଥ ହେଲା ସମ୍ୟକ୍ ଆଲୋଚ୍ନା । ତେଣୁ ସଭ୍ୟ ସମାଜରେ ଏହା ଉପେକ୍ଷଣୀୟ ନୁହେ । କୌଣସି ବିଷୟରେ ଯୁକ୍ତିଯୁକ୍ତ ସମାଲୋଚ୍ନା ବିଧେୟ ।

ବର୍ତ୍ତମାନ ଶିକ୍ଷାନୁଷ୍ଠାନ ମାନଙ୍କରେ ସାଂସ୍କୃତିକ କାର୍ଯ୍ୟକ୍ରମ ଦେଖାଯାଉଛି । ସାଂସ୍କୃତିକ ଶବ୍ଦ ସଂସ୍କୃତି ଓ ସଂସ୍କୃତ ଶବ୍ଦରୁ ବାହାରି ଅଛି । ସଂସ୍କୃତି ଶବ୍ଦର ଅର୍ଥ ହେଲା ସଭ୍ୟତା । ସଂସ୍କୃତ କହିଲେ ଆଜିକାଲି ସଂସ୍କୃତ ଭାଷାକୁ ବୁଝାଯାଏ । ପୂର୍ବେ ସଂସ୍କୃତ ଭାଷା ଭାରତୀୟ ଆର୍ଯ୍ୟମାନଙ୍କର କଥିତ ଶୁଦ୍ଧ ଭାଷା ଥିଲା । ସାମାଜିକ ସଂସ୍କୃତି କହିଲେ ଯାହା ସମାଜକୁ ସମୁନ୍ନତ କରି ଗଢିଥାଏ ।

ଆଜିକାଲି ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମ ଶିକ୍ଷାନୁଷ୍ଠାନ ତଥା ସାଧାରଣ ସଭା ମାନଙ୍କରେ ଦେଖାଯାଉଅଛି ତାହା ବିଭ୍ରାନ୍ତି ମୂଳକ କହିଲେ ଅଯଥାର୍ଥ ହେବ ନାହିଁ । ଆଗେ ୪୦ବର୍ଷ ତଳେ ଏପରି କାର୍ଯ୍ୟାନୁଷ୍ଠାନ ପବିତ୍ର ଶିକ୍ଷାୟତନରେ କରାଯାଉନଥିଲା । "ସାଂସ୍କୃତିକ କାର୍ଯ୍ୟ" ଲୋକଙ୍କୁ ଅବିଦିତ ଥିଲା । ବର୍ତ୍ତମାନ ଏହାର ବିଚିତ୍ର ରୂପ

ନୈବ ତସ୍ୟ କୃତେନାର୍ଥୋ,
ନାକୃତେନେହ କଶ୍ଚନ ।
ନା ଚାସ୍ୟ ସର୍ବଭୂତେଷୁ,
କଶ୍ଚିଦର୍ଥବ୍ୟପାଶ୍ରୟଃ ॥
ତସ୍ମାଦ୍ ସକ୍ତଃ ସତତଂ,
କାର୍ଯ୍ୟଂ କର୍ମ ସମାଚର ।
ଅସକ୍ତୋ ହ୍ୟାଚରନ୍‌କର୍ମ,
ପରମାପ୍ନୋତି ପୁରୁଷଃ ॥
(ତୃତୀୟୋଦ୍ଧ୍ୟାୟଃ - କର୍ମଯୋଗ - ଶ୍ଲୋକ - ୧୮ ଓ ୧୯)



କର୍ମାନୁଷ୍ଠାନେ ପ୍ରୟୋଜନ ।
ସିଦ୍ଧିରେ ନ ଦିଅଇ ମନ ॥
ମୁକ୍ତି ନ ଇଚ୍ଛଇଟି ସେହି ।
କାହା ଆଶ୍ରୟ ନ ଇଚ୍ଛଇ ॥
ଯେଣୁ ସେ ଅହଙ୍କାର ହୀନ ।
ତେଣୁ ସେ ନୁହେଁ କା ଅଧୀନ ॥
ବିଧି ନିଷେଧ କର୍ମ ଫଳେ ।
ନିଶ୍ଚିନ୍ତେ ରହଇ ନିର୍ମଳେ ॥
ଲଭିବା ଯାଏ ଆତ୍ମଜ୍ଞାନ ।
ଉଚିତ କର୍ମ ଅନୁଷ୍ଠାନ ॥
ବିଶୁଦ୍ଧ ବୁଦ୍ଧି କରି ଆଗ ।
କର୍ମ ଦେଖାଏ ମୁକ୍ତିମାର୍ଗ ॥
ମୁକ୍ତି ଲଭିବ ଆପେ ବଳେ ।
ନିଜ କର୍ତ୍ତବ୍ୟ କର୍ମଫଳେ ॥
ଏ ହେତୁ ସତ୍‌କର୍ମର ଫଳ ।
କୁଳ ଧର୍ମକୁ ମନେ ଭାଳ ॥

ପ୍ରକାଶ ପାଉଛି ଓ ତଦ୍ଵାରା ଆମ ଶିକ୍ଷିତ ଯୁବ ସମାଜ ନିଜକୁ ଗୌରବାନ୍ୱିତ ମନେ କରୁଅଛନ୍ତି ।

ବର୍ତ୍ତମାନ ସାଂସ୍କୃତିକ କାର୍ଯ୍ୟକ୍ରମ କହିଲେ ଏକାଙ୍କିକା ବା ଗୀତିନାଟ୍ୟକୁ ବୁଝାଯାଏ । ସେହିପରି ଦାଶକାଠିଆ ଓ ପାଲାକୁ ମଧ୍ୟ ବୁଝାଯାଉଅଛି । ମୋର ମନେ ଅଛି ୧୯୪୨ ମସିହାରେ ବାଣପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଏକ ପୁରସ୍କାର ବିତରଣୀ ସଭାରେ ମୁଁ ଉପସ୍ଥିତ ଥିଲି । ସ୍କୁଲର ପ୍ରତିଷ୍ଠାତା ସ୍ୱନାମଧନ୍ୟ ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ଥାଆନ୍ତି । ଆନ୍ଧ୍ର ବିଶ୍ୱ ବିଦ୍ୟାଳୟର କୁଳପତି ସଭାପତି ଆସନ ଅଳଙ୍କୃତ କରିଥିଲେ । ସେ ଓଡ଼ିଆ ବୁଝି ପାରୁଥିଲେ କିନ୍ତୁ ଓଡ଼ିଆ ଭାଷାରେ କହି ପାରୁନଥିଲେ । ଛାତ୍ରମାନଙ୍କର ଅଭିନୟ ମଧ୍ୟରେ ସ୍ୱର୍ଗତ କବି ତଥା ସମାଲୋଚକ ଗୋଦାବରୀଶ ମହାପାତ୍ରଙ୍କ ରଚିତ ଗୋଟିଏ ଦାଶ କାଠିଆ ସଂଗୀତ ବୋଲା ଯାଇଥିଲା । ସେହି ସଙ୍ଗୀତ ପାଇଁ ସେ ଓଡ଼ିଶା ସରକାରଙ୍କଠାରୁ ଟ୧୦୦/- ପୁରସ୍କାର ପାଇଥିଲେ । ଆଜିକୁ ଦୀର୍ଘ ୩୮ ବର୍ଷ ତଳର ଲେଖା, ମାତ୍ର ଶୁଣିଥିଲି ମୋର ଗୋଟିଏ ପଦ ଏପର୍ଯ୍ୟନ୍ତ ମନେ ଅଛି । ତାହା ହେଉଛି ;-

"ବାଣୀ ଗୋ, ବେଗେ ଆସ ।<br>ଡ଼ାକେ ଓଡ଼ିଶା ଦେଶ ।<br>କଣ୍ଠରେ ନବସି, କଣ୍ଠରେ ନବସି,<br>କଣ୍ଠରେ ନବସି କାନ୍ଧରେ ବସ । ଘୋଷା<br>କେବେ ଚଢୁଥିଲ ହଂସ ବାହାନରେ<br>ଏବେ ବସ୍ ରିକ୍ସା ଗାଡ଼ିରେ ଆସ,<br>କେବେ ଥିଲା ତୁମ୍ଭ କଜ୍ଜଳ ଲୋଚନ,<br>ଏବେ ପିନ୍ଧ ସୁନା ଚଷମା କସି ।<br>ଅଳତା, ହୀନା ଗୋ, ଚ଼ଟି ଚ଼ରଣା,<br>ଏ କବି ବନ୍ଦନା ହେଉ ଗୋ ଘେନା ।"

ଅଭିନେତା ଦ୍ୱୟ ଉଚ୍ଚ ପ୍ରଶଂସିତ ହୋଇଥିଲେ ।

ଏହି ସଙ୍ଗୀତ ତଦାନୀନ୍ତନ ନାରୀ ସଭ୍ୟତାକୁ ସମାଲୋଚନା କରି ସେ ରଚନା କରି ଥିଲେ । ଆଜିକାଲି ସାଂସ୍କୃତିକ କାର୍ଯ୍ୟକ୍ରମରେ ରଙ୍ଗ ମଞ୍ଚମାନଙ୍କରେ ଗୀତିନାଟ୍ୟ ପ୍ରଧାନ ଭୂମିକା ଗ୍ରହଣ କରିଛି । ଏହା ଯୁବତୀ ବାଳିକା ମାନଙ୍କ ଦ୍ୱାରା ଅଭିନୀତ ହେଉଅଛି । ଏହି ନାଟ୍ୟର ଦର୍ଶକ ସଂଖ୍ୟା ଅଧିକ । ଆଗେ ଅଭିନେତ୍ରୀମାନଙ୍କର ଭୂମିକା ପୁରୁଷମାନେ ନେଉଥିଲେ । ଆଜିକାଲି ବାଳକ ସ୍କୁଲମାନଙ୍କରେ ଯୁବତୀମାନେ ଶିକ୍ଷା ପ୍ରଲୋଭନ

ଯଦ୍‌ଯଦାଚରତି ଶ୍ରେଷ୍ଠ,<br>ସ୍ତତ୍ତଦେବେତରୋ ଜନଃ ।<br>ସ ଯତ୍ ପ୍ରମାଣଂ କୁରୁତେ,<br>ଲୋକସ୍ତଦନୁବର୍ତ୍ତତେ ॥

(ତୃତୀୟୋଦ୍ଧ୍ୟାୟଃ – କର୍ମଯୋଗ – ଶ୍ଳୋକ – ୨୧)



ତେଣୁ ତୁ ସେହି ପଥେ ଚଳ ।<br>ଦେଖି ଚଳିବେ ନରକୁଳ ॥<br>ଶ୍ରେଷ୍ଠ ଯା ପ୍ରମାଣ କରନ୍ତି ।<br>ଅନ୍ୟାନ୍ୟମାନେ ତା ମାନନ୍ତି ॥<br>ଚକ୍ରବର୍ତ୍ତୀ ଯା ଆଚରଇ ।<br>ପ୍ରଜା ସେ ବାଟରେ ଗମଇ ॥<br>ଯେ ବୁଦ୍ଧିମନ୍ତ ସାଧୁ ଧୀର ।<br>ଏହାଙ୍କ କାର୍ଯ୍ୟ ଶ୍ରେଷ୍ଠତର ॥

ହେଉ ବା ଜ୍ଞାନାର୍ଜନ ପାଇଁ ହେଉ, ଅଧ୍ୟୟନ କରିବାକୁ ଯାଉଛନ୍ତି । ଶାଢ଼ି ବଦଳରେ ଜାମା ପ୍ୟାଣ୍ଟ ପିନ୍ଧୁଛନ୍ତି । ସେମାନଙ୍କର ତତ୍ତ୍ୱାବଧାନ ନେବା ଶିକ୍ଷକ ମାନଙ୍କର ଏକ ମୁଖ୍ୟ କର୍ତ୍ତବ୍ୟ ।

ବର୍ତ୍ତମାନ ଅନୁସୃତ ସାଂସ୍କୃତିକ ଅନୁଷ୍ଠାନ ପରିସରରେ ଯଦି ଦାନବୀର ହରିଶ୍ଚନ୍ଦ୍ର, ଗୁରୁଭକ୍ତ ଏକଲବ୍ୟ, ବିଷ୍ଣୁ ଭକ୍ତ ପ୍ରହଲ୍ଲାଦ, ପିତୃଭକ୍ତ ପର୍ଶୁରାମ, ଦେଶ ପ୍ରାଣ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ଭକ୍ତକବି ମଧୁସୂଦନ, ଦାର୍ଶନିକ ରାଧାକୃଷ୍ଣନ, ନରଦେହ ଧାରୀ ରାମଚନ୍ଦ୍ର ଓ ଶ୍ରୀକୃଷ୍ଣ, ଭାରତର ଆର୍ଯ୍ୟ ମହିଳା ସୀତା, ସାବିତ୍ରୀ, ଦମୟନ୍ତୀ, ଗାନ୍ଧାରୀଙ୍କ ପବିତ୍ର ଚରିତ୍ରର ଆଦର୍ଶ ଫୁଟାଇ ଶିକ୍ଷକମାନେ ଏକାଙ୍କିକା ରଚନା କରିପାରନ୍ତେ, ତାହା ରୁଚିକର ହୁଅନ୍ତା ନାହିଁ କି ? କିମ୍ବା ଭଗବତ୍ ଗୀତା ଓ ଭାଗବତ ପାରାୟଣ ଛାତ୍ର ମାନଙ୍କର ହୃଦୟରେ ପବିତ୍ରଭାବ ସୃଷ୍ଟି କରନ୍ତା । ଏହା ବିଚାର କରୁଛନ୍ତି କେତେଜଣ ?

ମୋର କେତେକ ପ୍ରିୟ ଛାତ୍ର – ଯେଉଁମାନଙ୍କୁ ମଣିଷକରି ଗଢ଼ିବାରେ ମୁଁ ଶ୍ରମସ୍ୱୀକାର କରିଛି, ସେମାନଙ୍କର ନାମ ତଳେ ଲେଖିଲି ।

୧– ଶ୍ରୀ ନିଧିନାଏକ – ୧ମ – ଟାଙ୍ଗୀ

୨– ଶ୍ରୀ ନାରାୟଣ ଶତପଥୀ – ୨ୟ – ପ୍ରତାପ ପୁରୁଷୋତ୍ତମପୁର

୩– ଶ୍ରୀ ନାରାୟଣ ସାହୁ – ଭଗବାନ ପୁର ୩ୟ ।

ଅନ୍ୟମାନେ ହେଲେ –

୧– ଶ୍ରୀ ପଦ୍ମଚରଣ ବିଶ୍ୱାଳ – ଅବସର ପ୍ରାପ୍ତ ଡ଼ି.ଏସ୍. ପି . ଲତାହରଣ, କାକଟପୁର

୨– ଶ୍ରୀ ଉଦୟ ନାଥ ମିଶ୍ର – ଅବସର ପ୍ରାପ୍ତ ସୁପରିଟେଣ୍ଡେଣ୍ଟ ସରକାରୀ ପ୍ରେସ୍, କଟକ ।

୩– ମହମ୍ମଦ ଆୟୁବ – ସିଂହ ପାନିଆ ।

୪– ଶ୍ରୀ ଇନ୍ଦ୍ର ମଣି କାନୁନ୍‌ଗୋ – ଅସ୍ତରଙ୍ଗ ।

ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ,
ତ୍ରିଷୁ ଲୋକେଷୁ କିଞ୍ଚନ ।
ନାନବାପ୍ତମବାପ୍ତବ୍ୟଂ,
ବର୍ତ୍ତଏବ ଚ କର୍ମଣି ।।

ଯଦି ହ୍ୟହଂ ନ ବର୍ତ୍ତେୟଂ,
ଜାତୁ କର୍ମଣ୍ୟତନ୍ଦ୍ରିତଃ ।
ମମ ବର୍ତ୍ମାନୁବର୍ତ୍ତନ୍ତେ,
ମନୁଷ୍ୟାଃ ପାର୍ଥ ସର୍ବଶଃ ।।

(ତୃତୀୟୋଽଧ୍ୟାୟଃ – କର୍ମଯୋଗ – ଶ୍ଳୋକ – ୨୨ ଓ ୨୩)



ତିନି ଭୁବନେ ମୋ କର୍ତ୍ତବ୍ୟ ।
କର୍ମଟି ନାହିଁ ହେ ଗାଣ୍ଡିବ ।।
ପ୍ରାପ୍ତ ଅପ୍ରାପ୍ତ କିଛି ନାହିଁ ।
ତଥାପି କର୍ମ ମୁଁ କରଇ ।।
କର୍ତ୍ତବ୍ୟ ପଥେ ମୁଁ ଚଳଇ ।
କେବଳ ଲୋକଶିକ୍ଷା ପାଇଁ ।।
ଯେବେ ମୁଁ ଆଳସ୍ୟ ବିହୀନ ।
ହୋଇ ନ କରେ କର୍ମମାନ ।।
ଆହେ ଅର୍ଜ୍ଜୁନ ପ୍ରାଣୀଗଣ ।
ମୋ ପଥେ କରିବେ ଗମନ ।।
ଯା ପକ୍ଷେ ଅଟେ କର୍ମ ଶ୍ରେୟ ।
ସେ ନ କରିବ ତାକୁ ହେୟ ।।

୫- ଶ୍ରୀ ବୃନ୍ଦାବନ ହୋତା - ଜମିଦାର, ସତ୍ୟବାଦୀ ।

୬- ଶ୍ରୀ ଚକ୍ର ଧର ମହାପାତ୍ର - ବୀରନରସିଂହପୁର

୭- ଡଃ ଜଗନ୍ନାଥ ଦାସ - ଦାସଗୋବା

୮- ଶ୍ରୀ ବାଇଧର ଦାଶ - ଦାସଗୋବା

୯- ଶ୍ରୀ ସଚ୍ଚିଦାନନ୍ଦ ରଥ, ବର୍ତ୍ତମାନ ପୁରୀ କଲେକ୍ଟର ।

୧୦- ଶ୍ରୀମତୀ ସୌଭାଗିନୀ ଦେବୀ - ପାଟେଳି ।

୧୧- ରମାଦେବୀ - ଶ୍ରୀରାମଚନ୍ଦ୍ରପୁର

୧୨- ବ୍ରଜସୁନ୍ଦର ମହାପାତ୍ର

ଏପରି ଆହୁରି ଅନେକ

ବାଲ୍ୟ ସଙ୍ଗୀ ସ୍ୱର୍ଗତ ନୀଳକଣ୍ଠ ମହାପାତ୍ର
(ଗ୍ରାମରେ) ଶ୍ରୀ ଉଦୟନାଥ ମିଶ୍ର
ଡ଼କ୍ଟର ସଦାଶିବ ମିଶ୍ର ।

ଅନ୍ୟମାନଙ୍କର ନାମ ସ୍ମରଣ ହେଉନାହିଁ । ଉପରୋକ୍ତ ଛାତ୍ରମାନେ ଆଜି ପର୍ଯ୍ୟନ୍ତ ମୋ ସଂସ୍ପର୍ଶରେ ଅଛନ୍ତି ।

ସକ୍ତାଃ କର୍ମଣ୍ୟବିଦ୍ୱାଂସୋ,
ଯଥା କୁର୍ବନ୍ତି ଭାରତ ।
କୁର୍ଯ୍ୟାଦ୍ୱିଦ୍ୱାଂସ୍ତଥାସକ୍ତ,
ଶ୍ଚିକୀର୍ଷୁର୍ଲୋକସଂଗ୍ରହଂ ॥
(ତୃତୀୟୋଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୨୫)



ଆହେ ଭାରତ ଅଜ୍ଞମାନେ ।
କର୍ମ ବାସନା ରଖି ମନେ ॥
କର୍ମଫଳେ ହୋଇ ଆସକ୍ତ ।
କର୍ମକୁ କରନ୍ତି ସତତ ॥
ସେପରି କର୍ମ ଅକାରଣ ।
କେବଳ ନରକ କାରଣ ॥
ସେପରି ଧର୍ମରକ୍ଷା ଜାଣି ।
ଆସକ୍ତ ବିହୀନରେ ଜ୍ଞାନୀ ।
କର୍ମରେ ରତ ଥାନ୍ତି ହୋଇ ।
ଲୋକମାନଙ୍କ ଶିକ୍ଷା ପାଇଁ ॥
ସେପରି କର୍ମ ତୁହି କର ।
ସଂସାରେ ରହୁ ଯଶ ମୋର ॥

ପ୍ରକୃତେଃ କ୍ରିୟମାଣାନି,
ଗୁଣୈଃ କର୍ମାଣି ସର୍ବଶଃ ।
ଅହଂକାରବିମୂଢ଼ାତ୍ମା,
କର୍ତ୍ତାହମିତି ମନ୍ୟତେ ॥
(ତୃତୀୟୋଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୨୭)



ପ୍ରକୃତିରୁ ଯେ ତିନିଗୁଣ ।
ସକଳ କରନ୍ତି ଭିଆଣ ॥
ସତ୍ୱ ରଜ ତାମସ ଘେନି ।
ତ୍ରିଗୁଣେ ବନ୍ଦୀ ଜୀବ ପୁଣି ॥
ଏ ଦେଖେ ଯେତେକ ଶରୀର ।
ତ୍ରିଗୁଣ ଜାତ ପ୍ରକୃତିର ॥
ଦେହକୁ ଆତ୍ମା ଯେଣୁ ମଣେ ।
ମୁଁ କରୁଅଛି ବୋଲି ଭଣେ ॥
ଅହଙ୍କାରରେ ବିମୋହିତ ।
ହୋଇ ବୋଲେ ମୁଁ କରୁଛି ତ ॥
କ୍ରିୟାଶୂନ୍ୟ ଆତ୍ମା ଅଟଇ ।
ତାହାର ପାପ ପୁଣ୍ୟ ନାହିଁ ॥

# ମୋ ସମୟରେ ଓଡ଼ିଶାର କେତେକ ବିଶିଷ୍ଟ ବ୍ୟକ୍ତିଙ୍କର ନାମ

୧. ସାହିତ୍ୟିକ-ବ୍ୟାସକବି ଫକୀର ମୋହନ, ଗୋପାଳ ଚନ୍ଦ୍ର ପ୍ରହରାଜ, ବିଶ୍ୱନାଥ କର, ନୀଳକଣ୍ଠ ଦାସ, ବାସୁଦେବ ମହାପାତ୍ର

୨. କବି-କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତ ଚରଣ ଦାସ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଗଙ୍ଗାଧର ମେହେର, ଚିନ୍ତାମଣି ମହାନ୍ତି, କବିବର ରାଧାନାଥ ରାୟ, ଭକ୍ତ କବି ମଧୁସୂଦନ ରାଓ, ପଣ୍ଡିତ ଗୋପବନ୍ଧୁ, କବି ରାଧାମୋହନ ଗଡ଼ନାଏକ, ପଲ୍ଲୀ କବି ନନ୍ଦକିଶୋର, ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂହ, ବନମାଳୀ, ଭୀମଭୋଇ, ଅପର୍ଣ୍ଣା ଦେବୀ, କବି ସଚ୍ଚି ରାଉତରାୟ ।

୩. ଐତିହାସିକ-ପଣ୍ଡିତ କୃପାସିନ୍ଧୁ ମିଶ୍ର, ଡାକ୍ତର ରାଧାଚରଣ ପଣ୍ଡା, ଶ୍ରୀ କାଳିନ୍ଦି ପାଣିଗ୍ରାହୀ, ଜଗବନ୍ଧୁ ସିଂହ, ଡ଼କ୍ଟର ହରେକୃଷ୍ଣ ମହତାବ, ଡକ୍ଟର ମନ୍ମଥ ଦାଶ ।

୪. ଦାର୍ଶନିକ-ବିପୀନ ବିହାରୀ ରାୟ, ରତ୍ନାକର ପତି, ପଣ୍ଡିତ ନୀଳକଣ୍ଠ, ଡ଼କ୍ଟର ଗଣେଶ୍ୱର ମିଶ୍ର, ଡ଼କ୍ଟର ରାଧାନାଥ ରଥ ।

୫. ଗଣିତଜ୍ଞ-ଶାରଦାକାନ୍ତ ଗାଙ୍ଗୁଲି, ରହମତ ଅଲ୍ଲି, ଭୀମ ରାଉତ, ଦାଶରଥି ପାଣିଗ୍ରାହୀ, ହରିହର ମହାପାତ୍ର ।

୬. ସମାଲୋଚକ-ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ।

୭. ବୈଜ୍ଞାନିକ-ଡ଼କ୍ଟର ପ୍ରାଣକୃଷ୍ଣ ପରିଜା, ଲୋକନାଥ ମିଶ୍ର ।

୮. ସଂସ୍କୃତଜ୍ଞ-ମହାମହୋପାଧ୍ୟାୟ ଜଗନ୍ନାଥ ମିଶ୍ର, ପୁରୁଷୋତ୍ତମ ତର୍କାଳଙ୍କାର, ବାଚସ୍ପତି

ତତ୍ତ୍ୱବିତ୍ତୁ ମହାବାହୋ,
ଗୁଣକର୍ମବିଭାଗୟୋଃ ।
ଗୁଣାଗୁଣେଷୁ ବର୍ତ୍ତନ୍ତ,
ଇତି ମତ୍ୱା ନ ସଜ୍ଜତେ ।।

(ତୃତୀୟୋଦ୍ଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୨୮)

ହେ ମହାବୀର ଶୁଣ ଏବେ ।
ଗୁଣ କର୍ମ ବିଭାଗ ଯେବେ ।।



କରଇ ଆତ୍ମଜ୍ଞାନୀ ନର ।
କର୍ତ୍ତା ମୁଁ ନ ଭାବେ ମନର ।।
ମୋହର ଯହିଁ ଯେଉଁ ଜ୍ଞାନ ।
ତାହାକୁ ଗୁଣ କର୍ମ ଘେନ ।।
ମାୟା ଗୁଣରୁ ଯେ ଇନ୍ଦ୍ରିୟ ।
ଇନ୍ଦ୍ରିରୁ କର୍ମଟି ଉଦୟ ।।
ଦେହ ଇନ୍ଦ୍ରିୟ କର୍ମ ଯେହି ।
ତାଠାରୁ ଆତ୍ମ ଭିନ୍ନ ହୋଇ ।।
ଏ ଭେଦ ନ କରଇ ଜ୍ଞାନ ।
ସେ ଅହଙ୍କାର କର୍ତ୍ତା ହୀନ ।।

ମଧୁସୂଦନ ମିଶ୍ର, ରଘୁନାଥ ମିଶ୍ର, ସୋମନାଥ ମିଶ୍ର, କାଶୀନାଥ ମିଶ୍ର, ପଣ୍ଡିତ ନୀଳକଣ୍ଠ, ଶ୍ରୀସୁଦର୍ଶନ ଆଚାର୍ଯ୍ୟ ।

୯. ବୈୟା କରଣିକ-ଚନ୍ଦ୍ର ମୋହନ ମହାରଣା, ଚିନ୍ତାମଣି ମିଶ୍ର ।

୧୦. ଭକ୍ତକବି-ସାରଳା ଦାସ, ଅଭିମନ୍ୟୁ, ବନମାଳୀ, ଭୀମଭୋଇ, ଜଗନ୍ନାଥ ଦାସ (ଭାଗବତ ପ୍ରଣେତା), ମଧୁସୂଦନ ।

୧୧. ରାଜନୀତି ବିଜ୍ଞାନୀ- ଡ. ଶ୍ରୀରାମ ଚନ୍ଦ୍ର ଦାସ, ଡ଼କ୍ଟର ରାଧାନାଥ ରଥ, ଡକ୍ଟର ସତ୍ୟନାରାୟଣ ରଥ ।

୧୨. ଅର୍ଥନୀତିଜ୍ଞ-ଡ଼କ୍ଟର ରାଧାନାଥ ରଥ, ଡ଼କ୍ଟର ସଦାଶିବ ମିଶ୍ର, ଡକ୍ଟର ବିଦ୍ୟାଧର ମିଶ୍ର ।

୧୩. ନାଟ୍ୟକାର- କାମ୍ପାଳ ମିଶ୍ର, ପଣ୍ଡିତ ଗୋଦାବରୀଶ, ଅଶ୍ୱିନୀ କୁମାର ଘୋଷ, ବାଳକୃଷ୍ଣ, ମୋହନ ଗୋସ୍ୱାମୀ ।

୧୪. ସଙ୍ଗୀତଜ୍ଞ-ମଧୁସୂଦନ ରଥ, ବାଳକୃଷ୍ଣ ଦାସ, ନିମାଇଁ ହରିଚନ୍ଦନ ।

୧୫. ବାୟକ-ଦୟାନିଧି ତ୍ରିପାଠୀ, ତ୍ରିନାଥ ଖୁଣ୍ଟିଆ ।

୧୬. ସେବକ- ଆଚାର୍ଯ୍ୟ ହରିହର ଦାଶ, ମୁରାରି ତ୍ରିପାଠୀ ।

୧୭. ଚିକିତ୍ସକ-ବୈଦ୍ୟରତ୍ନ ମାଗୁଣି ବ୍ରହ୍ମା, ବାଲୁକେଶ୍ୱର ଆଚାର୍ଯ୍ୟ, ଡ଼କ୍ଟର ଜୟନ୍ତ ରାଓ, ସନାତନ ପୂଜାରୀ, ଡ଼କ୍ଟର ରଘୁ ସାହୁ, ଡ଼କ୍ଟର ସନାତନ ରଥ ।

୧୮. ଦେଶପ୍ରାଣ-ମଧୁସୂଦନ ଦାସ, ପଣ୍ଡିତ ଗୋପବନ୍ଧୁ ।

୧୯. ନିର୍ଭୀକ-ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ।

ଯେ ମେ ମତମିଦଂ ନିତ୍ୟ,
ମନୁତିଷ୍ଠନ୍ତି ମାନବାଃ ।
ଶ୍ରଦ୍ଧାବନ୍ତୋଽନସୂୟନ୍ତୋ,
ମୁଚ୍ୟନ୍ତେତେଽପିକର୍ମଭିଃ ॥
ଯେ ତ୍ୱେତଦଭ୍ୟସୂୟନ୍ତୋ,
ନାନୁତିଷ୍ଠନ୍ତି ମେ ମତଂ ।
ସର୍ବଜ୍ଞାନବିମୂଢ଼ାଂସ୍ତାନ୍,
ବିଦ୍ଧି ନଷ୍ଟାନଚେତସଃ ॥

(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୩୧ ଓ ୩୨)



ଯେ ନର ଏହି ମତ ମୋର ।
ନିର୍ଦ୍ଦୋଷ ନ ଭାବି ମନର ॥
ଶ୍ରଦ୍ଧାରେ କରେ ଆଚରଣ ।
ସମସ୍ତ କର୍ମୁ ତରେ ଜାଣ ॥
କର୍ମ ହୋଇଲେ ଶୁଦ୍ଧଚିତ୍ତ ।
ମୁକତି ଲଭଇ ନିଶ୍ଚିତ ॥
ଯେ ନର ନିନ୍ଦି ମୋର ମତ ।
କର୍ମରେ ନୁହଇ ପ୍ରବୃତ୍ତ ॥
ସେ ସର୍ବଜ୍ଞାନ ବିବର୍ଜିତ ।
ଅଯୋଗ୍ୟ ହୀନ ନଷ୍ଟ ଚେତ ॥
ବିବେକ ଜ୍ଞାନ ହୁଏ ନଷ୍ଟ ।
ହୁଅଇ ପୁରୁଷାର୍ଥ ଭ୍ରଷ୍ଟ ॥
ଧର୍ମାର୍ଥ କାମ ମୋକ୍ଷ ଚାରି ।
ନୁହଇ ତହିଁ ଅଧିକାରୀ ॥

୨୦. ଦାନୀ-ହରିହର ଗୁରୁ, ବିପିନ ବିହାରୀ ରାୟ, ମହାରାଜା ରାମଚନ୍ଦ୍ର ଭଞ୍ଜ ।

୨୧. ଚିତ୍ରକର-ବସନ୍ତ କୁମାର ପଣ୍ଡା, ଧନେଶ୍ୱର ମହାରଣା ।

୨୨. ଈଶ୍ୱର ବିଶ୍ୱାସୀ-ପଣ୍ଡିତ ଗୋପବନ୍ଧୁ, ଜଗନ୍ନାଥ ଦାଶ ।

୨୩. ବିଶିଷ୍ଟ ଶିଳ୍ପପତି, ଦେଶପ୍ରେମୀ ଓ ସାହସୀ ପାଇଲଟ୍ ଶ୍ରୀ ବିଜୁ ପଟ୍ଟନାୟକ ।

**ଓଡ଼ିଶାର କେତେକ ସ୍ମରଣୀୟ ବ୍ୟକ୍ତି :**

ଓଡ଼ିଶାର ବୃହତ୍ତମ ଜିଲ୍ଲା କଟକ । କଟକ ଜିଲ୍ଲାର ପ୍ରଧାନ ସ୍ୱନାମଧନ୍ୟ ବ୍ୟକ୍ତିଥିଲେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା ମଧୁସୂଦନ ଦାସ । ତାପରେ କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ଡ଼କ୍ଟର ପ୍ରାଣକୃଷ୍ଣ ପରିଜା, ବିଶ୍ୱମ୍ଭର ମିଶ୍ର, ଦାଶରଥି ପାଣିଗ୍ରାହୀ, ବିଶ୍ୱନାଥ କର, ଭାଷାକୋଷ ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜ, ଦେୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କର ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନ ମାନଙ୍କରେ କେତେକ ଜ୍ଞାନୀ, ମାନୀ ଓ ପ୍ରବୀଣ ଶିକ୍ଷାବିତ୍ ଥିଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ କୃପାସିନ୍ଧୁ, ପଣ୍ଡିତ ଗୋଦାବରୀଶ ଓ ଆଚାର୍ଯ୍ୟ ହରିହର ଦାଶଙ୍କର ନାମ ଉଲ୍ଲେଖ ଯୋଗ୍ୟ । ପାଶ୍ଚାତ୍ୟ ଶିକ୍ଷା ଲାଭକରି କେବଳ ଏହି ବ୍ୟକ୍ତିମାନେ 'ପଣ୍ଡିତ' ଉପାଧି ଲାଭ କରିଥିଲେ । ଓଡ଼ିଶାର ଅନ୍ୟ କୌଣସି ଜିଲ୍ଲାରେ ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ବ୍ୟକ୍ତିଙ୍କର ପଣ୍ଡିତ ଉପାଧି ଥିବାର ଶୁଣାଯାଏ ନାହିଁ । ପୁରୀ ଜିଲ୍ଲାର ଶ୍ରୀ ରାମଚନ୍ଦ୍ରପୁର ଶାସନରେ ବହୁ ଶିକ୍ଷିତ ବ୍ୟକ୍ତିଥିଲେ । ତାର ଏକମାତ୍ର କାରଣ ହେଲା ସତ୍ୟବାଦୀର ବନ ବିଦ୍ୟାଳୟ । ପଣ୍ଡିତ ଲିଙ୍ଗରାଜ ମିଶ୍ର ସେହି ଗ୍ରାମର ଅଧିବାସୀ । ସେ ସ୍ୱାଧୀନ ଉତ୍କଳର ପ୍ରଥମ ଶିକ୍ଷାମନ୍ତ୍ରୀଥିଲେ । ଗୋପବନ୍ଧୁଙ୍କର ମୃତ୍ୟୁପରେ 'ସମାଜ' ସମ୍ବାଦ ପତ୍ରର ସମ୍ପାଦକ ଥିଲେ । କବିବର ରାଧାନାଥ ରାୟ ଓଡ଼ିଶାର ପ୍ରଧାନ କବିଥିଲେ ।

ବାଲେଶ୍ୱର ଜିଲ୍ଲାରେ ବ୍ୟାସକବି ଫକୀର ମୋହନ ସେନାପତି ଓ ସାହିତ୍ୟ ରଥୀ ଚନ୍ଦ୍ରମୋହନ ମହାରଣାଙ୍କର ନାମ ଉଲ୍ଲେଖ ଯୋଗ୍ୟ ।

ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ,<br>
ରାଗଦ୍ୱେଷୌ ବ୍ୟବସ୍ଥିତୌ ।<br>
ତୟୋର୍ନବଶମାଗଚ୍ଛେ,<br>
ତୌ ହ୍ୟସ୍ୟପରିପନ୍ଥିନୌ ॥



(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୩୪)

ଇନ୍ଦ୍ରିୟ ପରସ୍ପରେ ଶତ୍ରୁ ।<br>
ଶ୍ରଦ୍ଧା ଶତ୍ରୁତା ବେନି ହେତୁ ॥<br>
ଏ ବେନି ନ ରହନ୍ତି ବଶେ ।<br>
ଏଣୁ ମୁମୁକ୍ଷୁ କଣ୍ଟକ ସେ ॥<br>
ମଧୁ ମଦ୍ୟର ଆସ୍ୱାଦନ ।<br>
ଜିହ୍ୱା କରିବ ଅନୁମାନ ॥<br>
ଏ ବେନି ଭାବ ସାମଞ୍ଜସ୍ୟ ।<br>
ମୁମୁକ୍ଷୁ କରିବ ଅବଶ୍ୟ ॥<br>
ସୁଗନ୍ଧ ଦୁର୍ଗନ୍ଧ ସମାନ ।<br>
ମଧୁର ତିକ୍ତ ଏକ ଜାଣ ॥<br>
ଏପରି ପଞ୍ଚ ଇନ୍ଦ୍ରିୟଙ୍କୁ ।<br>
ରଖେ ଯେ ଆୟତ୍ତେ ତାହାଙ୍କୁ ॥

ସମ୍ବଲପୁର ଜିଲ୍ଲାରେ କବି ଗଙ୍ଗାଧର ମେହେର, ଚିନ୍ତା ମଣି ମହାନ୍ତି ଓ ପୂଜାରୀ ବଂଶରେ ଡ଼ାକ୍ତର ସନାତନ ପୂଜାରୀ, ଅଚ୍ୟୁତାନନ୍ଦ ପୂଜାରୀ ଓ ତ୍ରିବିକ୍ରମ ପୂଜାରୀଙ୍କ ନାମ ସ୍ମରଣୀୟ ।

ଅନୁଗୁଳ ଜିଲ୍ଲାରେ କବି ରାଧାମୋହନ ଗଡ଼ନାୟକ ସ୍ୱନାମଧନ୍ୟ ବ୍ୟକ୍ତି ।

୧୯୨୧ ମସିହାରେ ମହାତ୍ମାଗାନ୍ଧୀ ଭାରତରେ ଅସହଯୋଗ ଆନ୍ଦୋଳନ କରିବାଫଳରେ ସତ୍ୟବାଦୀ ବନ ବିଦ୍ୟାଳୟର ଅବସାନ ଘଟିଲା । ଅନେକ ଛାତ୍ର ସ୍କୁଲ ପରିତ୍ୟାଗ କରି ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ । ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଲିଙ୍ଗରାଜ, ଗୋପବନ୍ଧୁ ଚୌଧୁରୀ ପ୍ରମୁଖ ବହୁ ବ୍ୟକ୍ତି କାରାବରଣ କଲେ । ବିଲାତି ଲୁଗା ବର୍ଜନ, ନିଶା ନିବାରଣ ଓ ଲୁଣ ମାରିବା ପ୍ରଭୃତି କାର୍ଯ୍ୟରେ ଯୋଗଦେଇ ବହୁଲୋକ ଜେଲ୍‌ଗଲେ । ସେ ସମୟରେ ସରକାରୀ କର୍ମଚାରୀ ମାନେ ଖଦଡ଼ ପରିଧାନ କରିପାରୁ ନଥିଲେ । ଖଦଡ଼ବସ୍ତ୍ର ପରିଧାନ ଦୋଷାବହ ଥିଲା । ପରେ ଗଞ୍ଜାମ ଜିଲ୍ଲା ଓଡ଼ିଶାର ଅନ୍ତର୍ଭୁକ୍ତ ହେଲା । କନ୍ଧମାଳ ଓ ଆଧୁନିକ ଫୁଲବାଣୀ, ଗଞ୍ଜାମ ଓ ଅନୁଗୁଳ ପ୍ରଥମେ କଟକ ଜିଲ୍ଲାର ଅନ୍ତର୍ଭୁକ୍ତ ହେଲା । ୧୯୪୭ରେ ଭାରତ ସ୍ୱାଧୀନ ହେବାପରେ ଶ୍ରୀ ବିଶ୍ୱନାଥ ଦାଶ ସ୍ୱାଧୀନ ଓଡ଼ିଶାର ପ୍ରଥମ ମୁଖ୍ୟ ମନ୍ତ୍ରୀ ହେଲେ । ପାରଳାଖେମୁଣ୍ଡିର ମହାରାଜା ମଧ୍ୟ କେତେଦିନ ମୁଖ୍ୟମନ୍ତ୍ରୀ ଥିଲେ । ୧୯୫୦ରେ ଭାରତରେ ଗଣତନ୍ତ୍ର ଶାସନ ଆରମ୍ଭ ହେଲା । ସେ ପର୍ଯ୍ୟନ୍ତ ଲର୍ଡ଼ ମାଉଣ୍ଟବାଟେନ୍ ଭାରତର ବଡ଼ଲାଟ ଥିଲେ । ତାଙ୍କରି ସମୟରେ ମହାତ୍ମା ଗାନ୍ଧୀଙ୍କର ସ୍ୱୀକୃତି ଲାଭ କରି ଭାରତବର୍ଷ, ଭାରତ ଓ ପାକିସ୍ତାନରେ ବିଭକ୍ତ ହେଲା । ଜବାହାର ଲାଲ୍ ନେହୁରୁ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ଓ ଡଃ ରାଜେନ୍ଦ୍ର ପ୍ରସାଦ ପ୍ରଥମ ରାଷ୍ଟ୍ରପତି ଥିଲେ । ପଣ୍ଡିତ ଗୋଦାବରୀଶଙ୍କ ମନ୍ତ୍ରିତ୍ୱ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ।

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ,
ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଧର୍ମେନିଧନଂ ଶ୍ରେୟଃ,
ପରଧର୍ମୋ ଭୟାବହଃ ॥



(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୩୪)

ପରର ଧର୍ମ ହେଲେ ଶ୍ରେଷ୍ଠ ।
ସ୍ୱଧର୍ମ ଯେବେ ବା ନିକୃଷ୍ଟ ॥
ସ୍ୱଧର୍ମେ ମୃତ୍ୟୁ ଶ୍ରେୟସ୍କର ।
ପରର ଧର୍ମ ନିନ୍ଦା ଘୋର ॥
ଧର୍ମ ବୋଇଲେ ସମାଜର ।
ଚଳିବା ଯେ ବିଧି ପ୍ରକାର ॥
ନିଜର ଗୁଣ ଅନୁସାରେ ।
ଚାରି ବର୍ଣ୍ଣରୁ ବର୍ଣ୍ଣେ ଧରେ ॥
ଦ୍ୱିଜ କ୍ଷତ୍ରିୟ ବୈଶ୍ୟ ଶୁଦ୍ର ।
ପ୍ରତ୍ୟେକ କାର୍ଯ୍ୟେ ଯେ ପ୍ରଭେଦ ॥
ଏମନ୍ତ ତାହାଙ୍କ ଆଶ୍ରମ ।
ପରସ୍ପରରେ ପର ଧର୍ମ ॥
ବ୍ରାହ୍ମଣ କଲେ ଶୂଦ୍ର କାର୍ଯ୍ୟ ।
କ୍ଷତ୍ରିୟ ନ ପାଳିଲେ ରାଜ୍ୟ ॥
ବୈଶ୍ୟ ଯେ ଭିକ୍ଷାବୃତ୍ତି କରି ।
ଧନୁ ଘୋଷକୁ ଆଶ୍ରା କରି ॥
ଶୂଦ୍ର କରିଲେ ତପ ଘୋର ।
ବିଡ଼ମ୍ବନା ଯେ ସମାଜର ॥
ଉନ୍ନତି ନୁହଇ ତାହାର ।
ବିରୋଧ ଭାବ ଯେ ସଞ୍ଚାର ॥
ଏପରି କଲେ ଆଚରଣ ।
ସମାଜ ଭ୍ରଷ୍ଟ ହୁଏ ଜାଣ ॥

# ଗ୍ରାମର ଇତିବୃତ୍ତ


ବୀରନରସିଂହପୁର

ପୁରୀ ଜିଲ୍ଲାର ଅଧିକାଂଶ ବ୍ରାହ୍ମଣ ଶାସନ ସ୍ୱାଧୀନ ଓଡିଶାର କେଶରୀ ବଂଶ, ଗଙ୍ଗବଂଶ ଓ ଭୋଇ ବଂଶ ନରପତି ମାନଙ୍କ ଦ୍ୱାରା ପ୍ରତିଷ୍ଠିତ । କୋଣାର୍କ ମନ୍ଦିରର ପ୍ରତିଷ୍ଠାତା ଲାଙ୍ଗୁଳା- ନରସିଂହ ଦେବ ଆମ ଗ୍ରାମ ବୀରନରସିଂହପୁରର ପ୍ରତିଷ୍ଠାତା ନଥିଲେ । ଗଙ୍ଗବଂଶର ଅନ୍ୟତମ ରାଜା ନରସିଂହ ଦେବଙ୍କର ଏହା ପ୍ରଧାନ କୀର୍ତ୍ତି । ପୁରୀ ଜିଲ୍ଲାରେ ବହୁ ବ୍ରାହ୍ମଣ ଶାସନ ଅଛି । ସେ ସବୁ ଶାସନ ମଧ୍ୟରେ ବୀରନରସିଂହ ପୁର ସୁପ୍ରସିଦ୍ଧ ଥିଲା । ଏହି ଗ୍ରାମ ତ୍ରୟୋଦଶ ଶତାବ୍ଦୀରେ ପ୍ରତିଷ୍ଠିତ ହେବା ଅନୁମିତ । ଆଜିକୁ ୬୦୦ ବର୍ଷ ତଳେ ଏହି ଗ୍ରାମ ପ୍ରତିଷ୍ଠିତ ହେବା ବିଷୟ ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଅନ୍ୟ କ୍ଷୁଦ୍ର ବ୍ରାହ୍ମଣ ଶାସନ ରାଜବଂଶୀୟ ସାମନ୍ତରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଏହି ଗ୍ରାମର ପ୍ରସିଦ୍ଧିର ପ୍ରଧାନ କାରଣ ହେଲା ଏହାର ନିର୍ମାଣ ପରିପାଟୀ । ଗୃହ ନିର୍ମାଣ ପରି ଗ୍ରାମ ନିର୍ମାଣର କେତେକ ନିୟମ ଅଛି । ପ୍ରତ୍ୟେକ ବ୍ରାହ୍ମଣ ଶାସନ ଐଶାନ୍ୟ ମୋଡ ହୁଏ । କିନ୍ତୁ ଆମ ଗ୍ରାମ ଏହି ନିୟମରୁ ବହିର୍ଭୂତ । ସେତେବେଳେ ଶିଳ୍ପୀମାନେ ଗଜପତି ନରସିଂହ ଦେବଙ୍କୁ କହିଥିବାର କିମ୍ବଦନ୍ତୀ ଅଛି "ଯଦି ଆପଣ ଗ୍ରାମର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ନିୟମ ଲଙ୍ଘନ କରନ୍ତି ତାହାହେଲେ ଆପଣଙ୍କ ବଂଶରେ କେହି ରହିବେ ନାହିଁ ।" ରାଜା ନରସିଂହ ଦେବ ଉତ୍ତର ଦେଇଥିଲେ "ମୋ ବଂଶରେ କେହି ନରହନ୍ତୁ କିନ୍ତୁ ମୋ କୀର୍ତ୍ତିରେ କଳଙ୍କ ନ ରହୁ" ।

ତେଣୁ କେବଳ ଆମରି ଗ୍ରାମ ସିଧା ସଳଖ । ଗ୍ରାମଟି ପୂର୍ବ ପଶ୍ଚିମରେ ଅବସ୍ଥିତ । ଗ୍ରାମ ପଥ ଦୀର୍ଘ ଓ ପ୍ରଶସ୍ତ । ଗ୍ରାମର ଉଭୟ ପଟେ ଦେବାଳୟ ଓ ଦେବାଳୟର ପଶ୍ଚାତ୍ ଭାଗରେ ବୃହତ୍ ପୁଷ୍କରିଣୀ । ଗ୍ରାମ ନିର୍ମାଣ ପରେ ରାଜା ଅନ୍ୟ ଗ୍ରାମ ମାନଙ୍କରୁ ବ୍ରାହ୍ମଣ ଅଣାଇ ସେମାନଙ୍କୁ ଭୂସମ୍ପତ୍ତି ଦେଇ ରଖାଇଥିଲେ । ବ୍ରାହ୍ମଣ ମାନେ କର ନଦେଇ ଜମି ଦଖଲ କରୁଥିଲେ । ପରେ ଇଂରେଜ ମାନେ ୧୮୦୩ ରେ ଓଡିଶା ଦଖଲ କରିବା ପରେ ଯେତେବେଳେ ଜମି ଉପରେ କର ଧାର୍ଯ୍ୟ କଲେ ସେତେବେଳେ ବ୍ରାହ୍ମଣ ମାନେ ରାଜଦତ୍ତ ତମ୍ବା ପାଟିଆ ସନନ୍ଦ ଦର୍ଶାଇବାରୁ ଖଜଣାରୁ ମୁକ୍ତ ହେଲେ ମାତ୍ର ପ୍ରତି ଏକର ପ୍ରତି ଟ୧ଙ୍କା କରି ଖଜଣା ଦେଲେ । ତେଣୁ ବ୍ରାହ୍ମଣ ଶାସନ ଗୁଡିକ ଟଙ୍କି ବାହେଲ୍ ନାମରେ ପରିଚିତ ହେଲା । ଗ୍ରାମର ରାଜସ୍ୱ ଜଗନ୍ନାଥଙ୍କ ସେବା ପୂଜାରେ ବ୍ୟୟିତ ହେଉଥିଲା । ଏହି ପ୍ରଥା ପ୍ରାୟ ୧୯୨୦ ମସିହା ପର୍ଯ୍ୟନ୍ତ ପ୍ରଚଳିତ ହେଲା । ଏହି ଗ୍ରାମ ମାନଙ୍କୁ ଅମୃତମଣି ମୌଜା ବୋଲି କୁହାଯାଉଥିଲା ।

ଗ୍ରାମମାନଙ୍କ ମଧ୍ୟରେ ୧୬ଟି ଶାସନ ପ୍ରସିଦ୍ଧ ଥିଲା । ସେମାନଙ୍କ ମଧ୍ୟରେ ବୀରନରସିଂହପୁର ସୁପ୍ରସିଦ୍ଧ ଥିଲା । ବ୍ରାହ୍ମଣମାନେ ବୈଦିକ (ବେଦ୍ + ଇକ), ବେଦ ପାଠ, ଓ ଦେବାରାଧନା ସେମାନଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ଥିଲା । ତେଣୁ ଇତର ପାଟକର ଲୋକମାନଙ୍କର ବ୍ରାହ୍ମଣ ମାନେ ନମସ୍ୟ ଥିଲେ । ସ୍ତ୍ରୀମାନେ ମଧ୍ୟ ଗୃହକର୍ମରେ ନିପୁଣା ଓ ପତି ପରାୟଣା ଥିଲେ ।



ଗ୍ରାମର ପୁଷ୍କରିଣୀ - ଗୋପୀନାଥ ମନ୍ଦିର ପଛ

ପରବର୍ତ୍ତୀ କାଳରେ କେତେକ ବ୍ରାହ୍ମଣ ସେମାନଙ୍କର ପ୍ରତିଷ୍ଠା ବଳରେ ରାଜ ପ୍ରସାଦ ଲାଭ କରିବାରୁ ସାମନ୍ତ ନାମରେ ଅଭିହିତ ହେଲେ । ସାମନ୍ତମାନେ ଚାରି ଭାଗରେ ବିଭକ୍ତ ହେଲେ । ଯଥା:- ବତ୍ସସ, ନନ୍ଦ, ଗୁଆତ୍ରିଆ ଓ ବାଜପେୟୀ । ବତ୍ସସ ସାମନ୍ତମାନେ ବୀରନରସିଂହପୁରରେ, ନନ୍ଦ ସାମନ୍ତମାନେ ଶ୍ରୀମୁକୁନ୍ଦପୁର (ଉଷୁନାବରପଦା), ଗୁଆତ୍ରିଆମାନେ ବୀର ହରେକୃଷ୍ଣପୁର ଓ ବାଜପେୟୀମାନେ ବିଶ୍ୱନାଥପୁର ଗ୍ରାମରେ ବସତି ସ୍ଥାପନ କରି ରହିଲେ । ସେମାନଙ୍କର ବିପୁଳ ସମ୍ପତ୍ତି ଓ ଧର୍ମ ନିଷ୍ଠା ବଳରେ ଅନ୍ୟାନ୍ୟ ବୈଦିକ ବ୍ରାହ୍ମଣ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଲାଭ କରିଥିଲେ । କେବଳ ସେହି ଚାରି ଶ୍ରେଣୀ ମଧ୍ୟରେ ବିବାହ ପ୍ରଥା ପ୍ରଚଳିତ ଥିଲା । ପରେ ସେମାନଙ୍କର ବଂଶବୃଦ୍ଧି ହେବାରୁ ସେମାନଙ୍କର କନ୍ୟାଦାନ ଓ କନ୍ୟାଗ୍ରହଣ କରିବାରେ ବାଧା ସୃଷ୍ଟି ହେବାରୁ ସେମାନେ ରାଜାଙ୍କୁ ଜଣାଇଲେ । କାରଣ ରକ୍ତ ସମ୍ପର୍କୀୟ ଲୋକଙ୍କ ଘରେ ବିବାହ ନିଷିଦ୍ଧ ଥିଲା । ତେଣୁ ରାଜା ବୈଦିକ ସମାଜରୁ କେତେକ ବ୍ରାହ୍ମଣଙ୍କୁ ଭଟ୍ଟମିଶ୍ର ଉପାଧି ଦେଇ ସେମାନଙ୍କ ସହିତ ବୈବାହିକ ସମ୍ପର୍କ ରଖିବା ପାଇଁ ସାମନ୍ତ ମାନଙ୍କୁ ଉପଦେଶ ଦେଲେ ଓ ତାହା ଏପର୍ଯ୍ୟନ୍ତ ପ୍ରଚଳିତ ଅଛି । ଗ୍ରାମରେ ସାମନ୍ତବାଦ ପ୍ରଚଳିତ ଥିଲା । ସାମନ୍ତମାନେ ଇତର ବୈଦିକ ବ୍ରାହ୍ମଣ ମାନଙ୍କ ଘରେ ମହାପ୍ରସାଦ ସେବନ କରୁନଥିଲେ । କିନ୍ତୁ ବୈଦକ ମାନେ ସାମନ୍ତଙ୍କ ଘରେ ଅନ୍ନ ଭୋଜନ କରୁଥିଲେ ।

ଷୋଳ ଶାସନର ବ୍ରାହ୍ମଣମାନେ ଅନ୍ୟ ପଡ଼ା ଗ୍ରାମମାନଙ୍କରେ ବନ୍ଧୁତା ସ୍ଥାପନ କରୁନଥିଲେ । ସେତେବେଳେ ବ୍ରାହ୍ମଣ ସମାଜରେ କୁଳୀନତାକୁ ପ୍ରାଧାନ୍ୟ ଦିଆଯାଉଥିଲା । ବୈବାହିକ ବନ୍ଧନ ପବିତ୍ର ଥିଲା । ଯୌତୁକ ପ୍ରଥା ନଥିଲା । ଏହା ବିଂଶ ଶତାବ୍ଦୀର ପ୍ରଥମ ଭାଗର ଶେଷ ସମୟ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ପରେ ସାମନ୍ତ ବ୍ରାହ୍ମଣ ମାନେ

କାମ ଏଷ କ୍ରୋଧ ଏଷ,
ରଜୋଗୁଣ ସମୁଦ୍ଭବଃ ।
ମହାଶନୋ ମହାପାପ୍ମା,
ବିଦ୍ଧ୍ୟେନମିହ ବୈରିଣଂ ॥

(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୩୭)

ରଜୋଗୁଣରୁ ପାପ ଜାତ ।
ଅତୃପ୍ତିକର ଅତ୍ୟୁଗ୍ରତ ॥
କାମନା ବଶେ ଜନ୍ମେ କ୍ରୋଧ ।
କରଇ ମୁକ୍ତିପଥ ରୋଧ ॥



ତା ନାମ ମହା ଭକ୍ଷ୍ୟ ଜାଣ ।
ଏକ ଲଭିଲେ ଏକ ଆଣ ॥
ଦୁଗ୍ଧରେ ଅମ୍ଳ ମିଶେ ଯଦି ।
ତକ୍ଷଣେ ହୁଅଇ ସେ ଦଧି ॥
ଏମନ୍ତ କାମ ବାଧା ପାଇ ।
ତମରେ ପରିଣତ ହୋଇ ॥
ତେଣୁ ସେ ଆଶା ତୃପ୍ତ ନୋହି ।
ଅଧିକେ ଅଧିକେ ଖୋଜଇ ॥
ସପ୍ତଦ୍ୱୀପରେ ରାଜା ହେଲେ ।
ଦ୍ୱିସପ୍ତ ଖୋଜୁଥାଏ ଭଲେ ॥
ଏମନ୍ତ ବୁଲୁଥାଇ ଭଜି ।
ମୁକ୍ତିପଥକୁ ଦୂରେ ତେଜି ॥

ଦରିଦ୍ର ହେବାରୁ ଭିଙ୍ଗାରପୁରର ଜମିଦାର ଚୌଧୁରୀ ପରିବାରରେ ପ୍ରଥମେ କନ୍ୟାଦାନ କଲେ । ସେମାନଙ୍କର କୁଳୀନତା ଲୋପ ପାଇଲା । ଏପରିକି ବୈଦିକ ମାନେ ସେମାନଙ୍କ ଗୃହରେ ଅନ୍ନ ଭୋଜନ କଲେ ନାହିଁ, କାରଣ ଜମିଦାର ଚୌଧୁରୀ ମାନେ ନିମ୍ନ ଶ୍ରେଣୀର ବ୍ରାହ୍ମଣ ଥିଲେ । ସେମାନଙ୍କୁ ଅଦାବିକା ପଣ୍ଡା କୁହାଯାଉଥିଲା । ସେମାନେ ନିମାପଡ଼ା ଚାଟ୍‌ସିଂହକୁ ସୁନିଆଁ ଦିନ ଅଦା ଭେଟି ଦେଉଥିଲେ । କ୍ରମେ ସାମନ୍ତ ଓ ଭଞ୍ଜମିଶ୍ରମାନେ ନିର୍ଦ୍ଧନ ହେବାରୁ ଧନିକ ବୈଦିକ ବ୍ରାହ୍ମଣମାନଙ୍କ ଘରେ ବନ୍ଧୁତା ସ୍ଥାପନ କଲେ । ଅଦ୍ୟାବଧି କେତେଜଣଙ୍କ ମଧ୍ୟରେ ସାମନ୍ତବାଦ ପ୍ରଥା ରହିଅଛି । ବର୍ତ୍ତମାନ ଏହା କୁସଂସ୍କାର ବୋଲି ବିବେଚିତ ହେବାରୁ ସାମନ୍ତ ବଂଶୀୟ ଲୋକମାନେ ବୈଦିକ ବ୍ରାହ୍ମଣ ମାନଙ୍କ ବ୍ରତ ବିବାହ ଉତ୍ସବରେ ସେମାନଙ୍କ ଘରେ ଅନ୍ନ ଭୋଜନ କଲେଣି । ଅଳ୍ପଦିନ ପରେ ଏହି ପ୍ରଥା ସମୂଳେ ଲୋପ ପାଇଯିବ ।

ରାଜା ନରସିଂହ ଦେବ ଗ୍ରାମ ପ୍ରତିଷ୍ଠା କରିବା ପରେ ୩୦୦ ଏକର ଜମି ବ୍ରାହ୍ମଣ ମାନଙ୍କୁ ଦାନସୂତ୍ରରେ ଦାନ କରିଥିଲେ । ଜମି ଉପରେ କରଧାର୍ଯ୍ୟ କରିନଥିଲେ । ବ୍ରାହ୍ମଣ ମାନେ ରାଜସ୍ୱ ନଦେଇ ଜମି ଦଖଲ କରିବାକୁ ଅନିଚ୍ଛା ପ୍ରକାଶ କରିବାରୁ ୧ ଟଙ୍କା ମାତ୍ର ଖଜଣା ନେଉଥିଲେ ଓ ତମ୍ବାପାଟିଆ ସନନ୍ଦ ପାଇଥିଲେ । ପରେ ହନ୍ତୁକ ମୌଜା ରାଜା ଦାନ କରିଥିଲେ । ଏହି ଦୁଇ ମୋଟ୍



ଲେଖକଙ୍କର ବାସଗୃହ ଓ ଠାକୁରଘର

ଜମିର ପରିମାଣ ପ୍ରାୟ ୬୦୦ ଏକର ଥିଲା । ତନ୍ମଧ୍ୟରୁ ପ୍ରାୟ ୨୦୦ ଏକର କୋଠ ସମ୍ପତ୍ତି ଥିଲା । ଏହି କୋଠ ସମ୍ପତ୍ତିର ଆୟରେ ଦେବତା ମାନଙ୍କର ଦୈନନ୍ଦିନ ଭୋଗ ଓ ପର୍ବପର୍ବାଣିର ବ୍ୟୟ ନିର୍ବାହ ହେଉଥିଲା । କୋଠ ସମ୍ପତ୍ତି ଉପରେ କର ଧାର୍ଯ୍ୟ ହୋଇନଥିଲା । ତାହା ଦେବୋତ୍ତର ସମ୍ପତ୍ତି ବୋଲି ଧରାଯାଉଥିଲା । ସେ ସମ୍ପତ୍ତି ମଧ୍ୟ ବିକ୍ରି ହୋଇ ପାରୁନଥିଲା । ପରେ ବ୍ରାହ୍ମଣ ମାନେ ଏକର ପ୍ରତି ଟ ୧/-ଙ୍କା ରାଜସ୍ୱ ଦେଲେ । ପରେ ଇଂରେଜ ରାଜତ୍ୱରେ ଖଜଣା ବାକି ରହିବାରୁ ବ୍ରାହ୍ମଣ ମାନଙ୍କର ସମ୍ପତ୍ତି ନିଲାମ ହେଲା ।

ମୋର ଜନ୍ମର ଅବ୍ୟବହିତ ପୂର୍ବରୁ ବଙ୍ଗ, ବିହାର ଓ ଓଡିଶା ଏକତ୍ର ଗୋଟିଏ ପ୍ରଦେଶ ଥିଲା । କଲିକତାରେ ସଦର ଦେଓ୍ୱାନି ଓ ନିଜାମତ ଥିଲା । ପୁରୀ ଜିଲ୍ଲା ବ୍ରାହ୍ମଣ ଶାସନ ମାନଙ୍କର କର ଅନାଦାୟ ରହିବା ଫଳରେ କଲିକତାର ବିଶିଷ୍ଟ ଜମିଦାର ଲାଲା ବାବୁ ଏସବୁ ଗ୍ରାମ ନିଲାମ ଧରିଲେ । ସେ ବ୍ରାହ୍ମଣ ଶାସନ ମାନଙ୍କର ଜମିଦାର ହେଲେ ଓ ବ୍ରାହ୍ମଣମାନେ ମଧ୍ୟ ସ୍ୱତ୍ୱାଧିକାରୀ ନାମରେ ପରିଚିତ ହେଲେ ।

ବ୍ରାହ୍ମଣ ଶାସନ ମାନଙ୍କରୁ କର ଆଦାୟ କ୍ଷମତା ଲାଲାବାବୁଙ୍କ ହସ୍ତକୁ ଗଲା । ସେ ଓଡିଶାକୁ ଆସି ପୁରୀ ଜିଲ୍ଲାରେ ବିଭିନ୍ନ ସ୍ଥାନରେ ଗୁମାସ୍ତା ରଖି କର ଆଦାୟ କଲେ । ପୁରୀ ଟଙ୍କିବାହେଲ ଗ୍ରାମ ମାନଙ୍କରୁ ବାର୍ଷିକ ୩୬ ହଜାର ଟଙ୍କା କର ଆଦାୟ ହୋଇ ପୁରୀର ଗଜପତି ରାଜାଙ୍କୁ ଦିଆଯାଉଥିଲା ଓ ସେସବୁ ଜଗନ୍ନାଥଙ୍କର ଭୋଗରେ ବ୍ୟୟିତ ହେଉଥିଲା । ଏହାକୁ ସେତେବେଳେ ଛତିଶ ହଜାରୀ ମାହାଲ ବୋଲି କୁହାଯାଉଥିଲା । କେବଳ ୧୬ ଶାସନର ବ୍ରାହ୍ମଣ ମାନେ ପୁରୀ ମୁକ୍ତିମଣ୍ଡପରେ ସ୍ଥାନ



ଆବୃତଂ ଜ୍ଞାନମେତେନ,
ଜ୍ଞାନିନୋ ନିତ୍ୟ ବୈରିଣା ।
କାମରୂପେଣକୌନ୍ତେୟ,
ଦୁଷ୍ପୂରେଣାନଳେନ ଚ ॥

(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୩୯)

ଅଜ୍ଞାନୀମାନଙ୍କ ଚିର ଅରି ।
କାମନା ଅନଳର ପରି ॥
ଜ୍ଞାନୀଙ୍କୁ ଢାଙ୍କି ରଖେ ସେହି ।
ଶୁଣ ଅର୍ଜୁନ ମନଦେଇ ॥
ସମିଧ ପାଇଲେ ଅନଳ ।
ଯେସନେ ହୁଅଇ ପ୍ରବଳ ॥
ପୁଣି ପାଇଲେ ଘୃତ ଧାର ।
ଜନ୍ମାଏ କଣିକା ଅପାର ॥
ସର୍ବ ଘଟରେ ସେ ଅଛଇ ।
ଭଲ ମନ୍ଦରେ ଲକ୍ଷ୍ୟ ନାହିଁ ॥
ତେମନ୍ତ ଭୋଗ୍ୟବସ୍ତୁ ପାଇ ।
କାମନା ତୃପତ ନୁହଇ ॥
ଯେତେ ସେ ଆଶା କରୁଥାଏ ।
ନୂତନ ଆଶା ଜନମାଏ ॥
କାମକର ଭଲ ମନ୍ଦ ନାହିଁ ।
ଯେ ସ୍ଥାନେ ଯେମନ୍ତ ମିଳଇ ॥
ପ୍ରଥମେ ସୁଖ ହୁଏ ଜାତ ।
ଶେଷରେ ଦୁଃଖେ ବିଚଳିତ ॥
ଏ ହେତୁ ଜ୍ଞାନୀଙ୍କ ପାଖରେ ।
କାମ ଯେ ଶତ୍ରୁ ନିରନ୍ତରେ ॥

ପାଉଥିଲେ ଓ ସାମନ୍ତ ମାନେ ରାଜାଙ୍କ ଦ୍ୱାରା ସମ୍ମାନିତ ହୋଇ ରାଜଦତ୍ତ ଉପାଧି ରାୟଗୁରୁ, ବାହିନୀପତି, ଖାଡେଙ୍ଗା, ପଟ୍ଟଯୋଶୀ ପାଉଥିଲେ । ପୁରୀ ବିମଳା ପୀଠରେ କେବଳ ଆମରି ଗ୍ରାମର କୁଳୀନ ବ୍ରାହ୍ମଣ ମାନେ ଶରତ୍ କାଳୀନ ଷୋଳ ପୂଜା କରୁଥିଲେ । ଅଦ୍ୟାବଧି ସ୍ୱର୍ଗତ ପଣ୍ଡିତ ଜଗନ୍ନାଥ ରଥଙ୍କର ବଂଶଧରମାନେ ଏହି ପୂଜା କରି ଆସୁଛନ୍ତି । ପରେ ଲାଲା ବାବୁ ଯେତେବେଳେ କର ଆଦାୟରେ କ୍ଷତିଗ୍ରସ୍ତ ହେଲେ ସେ କର ଆଦାୟର କ୍ଷମତା ପୁରୀ ରାଜାଙ୍କ ହସ୍ତରେ ଅର୍ପଣ କଲେ । ମୋର ଜନ୍ମ ସମୟରେ ପୁରୀର ରାଜା ବ୍ରାହ୍ମଣ ଶାସନ ମାନଙ୍କରେ ଗୁମାସ୍ତା ନିଯୁକ୍ତ କରି ଖଜଣା ଆଦାୟ କଲେ । ଲାଲା ବାବୁ ଜମିଦାର ସ୍ୱରୂପ ଆମ ମୌଜାରୁ ବାର୍ଷିକ ୧୫ ପାହୁଲା ମାତ୍ର ନେଉଥିଲେ । ତତ୍‌ପରେ ସେ ବିଭିନ୍ନ ସ୍ଥାନରେ ଜମି ଓ ଜମିଦାରି କ୍ରୟ କରି ଓଡିଶାର ବିଶିଷ୍ଟ ଜମିଦାର ହେଲେ । କେତେକ ବର୍ଷ ପରେ ପୁରୀ ରାଜା ପୁନର୍ବାର ଖଜଣା ଆଦାୟର ଦାୟିତ୍ୱ ଲାଲା ବାବୁଙ୍କ ହସ୍ତରେ ଅର୍ପଣ କଲେ । ଲାଲାବାବୁଙ୍କର ମୃତ୍ୟୁ ପରେ ତାଙ୍କର ପୁତ୍ରବଧୂ ବିଧବା ହର୍ଷମୁଖୀ ଦାସୀ ବିଭିନ୍ନ ସ୍ଥାନରେ କଚେରି ଗୃହ ନିର୍ମାଣକରାଇ ଖଜଣା ଆଦାୟ କରି ପୁରୀ ରାଜକୋଷକୁ ପଠାଉଥିଲେ । ତାଙ୍କର ପ୍ରଧାନ କାର୍ଯ୍ୟାଳୟ ପୁରୀରେ ଥିଲା ।

ଖୋର୍ଦ୍ଧାର ସମସ୍ତ ମୌଜା ଜଗନ୍ନାଥଙ୍କର ଖାସ୍ ଦଖଲରେ ଥିଲା । ଶ୍ରୀମନ୍ଦିରର ବହୁ ସମ୍ପତ୍ତି ଖୋର୍ଦ୍ଧାରେ ଥିଲା । ଖୋର୍ଦ୍ଧାରୁ ବାର୍ଷିକ ୨୭ ହଜାର ଟଙ୍କା

ଇନ୍ଦ୍ରିୟାଣି ମନୋବୁଦ୍ଧି,
ରସ୍ୟାଧିଷ୍ଠାନମୁଚ୍ୟତେ ।
ଏତୈର୍ବିମୋହୟତ୍ୟେଷ,
ଜ୍ଞାନମାବୃତ୍ୟ ଦେହିନଂ ।।
ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ,
ନିୟମ୍ୟ ଭରତର୍ଷଭ ।
ପାପ୍ମାନଂ ପ୍ରଜହି ହ୍ୟେନଂ,
ଜ୍ଞାନବିଜ୍ଞାନ-ନାଶନଂ ।।
(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୪୦ ଓ ୪୧)

ପଞ୍ଚ ଇନ୍ଦ୍ରିୟ, ବୁଦ୍ଧି ମନ ।
କାମର ରାଜଧାନୀ ଜାଣ ।।
ଜ୍ଞାନକୁ କାମ ଆଚ୍ଛାଦଇ ।
ଜୀବକୁ ମୋହିତ କରଇ ।।



ଦର୍ଶନ ଶ୍ରବଣ ଆଦିରେ ।
କାମ ବଢ଼ଇ ଧୀରେ ଧୀରେ ।।
ମନ ଯା ସଂକଳ୍ପ କରଇ ।
ବୁଦ୍ଧି ତା ପଥ କହି ଦେଇ ।।
ଏଣୁ ଅର୍ଜୁନ ତୁ ଇନ୍ଦ୍ରିୟ ।
ଦମନ କରି ହୁଅ ଥୟ ।।
ଜ୍ଞାନ ବିଜ୍ଞାନ ବିନାଶନ ।
କାମକୁ କର ତୁ ଦହନ ।।
ଇନ୍ଦ୍ରିୟ ତା ଗୃହ ଅଟଇ ।
ପ୍ରଥମେ ତହିଁ ବିଶ୍ରାମଇ ।।
ଇନ୍ଦ୍ରିୟ ହୋଇଲେ ଦମନ ।
ବଶ ହୁଅନ୍ତି ବୁଦ୍ଧି ମନ ।।
ତେଣୁ କାମନା ବଶ ହୁଏ ।
ଦୁଷ୍ଟବୁଦ୍ଧିରେ ମୋହ ନୁହେଁ ।।

ଖଜଣା ଆଦାୟ କରାଯାଉଥିଲା । ତାହା ସତାଇଶ ହଜାରୀ ମାହାଲ ନାମରେ ପରିଚିତ ଥିଲା । ଖୋର୍ଦ୍ଧା ଗଡରେ ଜଣେ କରଦ ରାଜା ଥିଲେ । ଇଂରେଜମାନେ ଖୋର୍ଦ୍ଧା ଦଖଲ କରି ସେଠାରୁ କର ଆଦାୟ କଲେ ଓ ତାହା ପୁରୀ ରାଜକୋଷକୁ ନଦେବାରୁ ଖୋର୍ଦ୍ଧାରେ ପାଇକମାନେ ବିଦ୍ରୋହ କଲେ । ଜୟୀ ରାଜଗୁରୁ ପାଇକ ବିଦ୍ରୋହର ପ୍ରଧାନ ସେନାପତି ଥିଲେ । ଇଂରେଜ ମାନେ ଦୃଢ଼ହସ୍ତରେ ବିଦ୍ରୋହ ଦମନ କରିଥିଲେ ଓ ଜୟୀ ରାଜଗୁରୁଙ୍କୁ ଫାଶୀ ଦିଆଗଲା । ସେହିଦିନଠାରୁ ଖୋର୍ଦ୍ଧା ଇଂରେଜ ମାନଙ୍କର ଖାସ୍ ଦଖଲରେ ରହିବାରୁ ତାହା ଖାସ୍ ମାହାଲ ନାମରେ ପରିଚିତ ହେଲା । ସମସ୍ତ ଖୋର୍ଦ୍ଧା କେତେଗୋଟି ସରବରାକାରୀରେ ବିଭକ୍ତ ହୋଇ ପ୍ରତ୍ୟେକ ସରବରାକାରୀରେ ଜଣେ ଲେଖାଏଁ ସରବରାକାର ନିଯୁକ୍ତ ହେଲେ ଓ ସରବରାକାର ମାନେ ଖଜଣା ଅସୁଲ କରି ଇଂରେଜ ମାନଙ୍କୁ ଦେଉଥିଲେ । ପ୍ରତ୍ୟେକ ସରବରାକାରଙ୍କର ଜାୟଗିରି ଥିଲା ଓ ସେମାନେ ଖୋର୍ଦ୍ଧାରେ ପ୍ରତିପତ୍ତିଶାଳୀ ଥିଲେ ।

ମୋର ଜନ୍ମ ସମୟରେ ଗ୍ରାମରେ ଏକତା ଥିଲା । ପୂର୍ବପରି ସାମନ୍ତ ମାନଙ୍କର ପ୍ରତିପତ୍ତି ଥିଲା । ସେମାନେ ବୈଦିକ ସମାଜରେ ସମ୍ମାନ ଓ ଆଦର ପାଉଥିଲେ । କ୍ରମେ ବ୍ରତ, ବିବାହ ପ୍ରଭୃତି କାର୍ଯ୍ୟରେ ବହୁଳ ଅର୍ଥ ବ୍ୟୟ କରିବା ଫଳରେ ଦରିଦ୍ର ହୋଇ ପଡିଲେ । ଭୂସମ୍ପତ୍ତି ବିକ୍ରୟ କଲେ ।

ସେତେବେଳେ ସଂସ୍କୃତ ଶିକ୍ଷାର ପ୍ରସାର କେବଳ ବ୍ରାହ୍ମଣ ଶାସନ ମାନଙ୍କରେ ପ୍ରସାର ଲାଭ କରିଥିଲା । ବିଶେଷତଃ ସାମନ୍ତ ଓ ଭଞ୍ଜମିଶ୍ର ମାନେ ସଂସ୍କୃତ ଶାସ୍ତ୍ରରେ ପାରଦର୍ଶିତା ଲାଭ କରି ରାଜ ସମ୍ମାନ ଲାଭ କରିଥିଲେ । ପରବର୍ତ୍ତୀ କାଳରେ ସେହି ମାନଙ୍କ ମଧ୍ୟରୁ ଅନେକ ସୁଦୂର ଗଡଜାତକୁ ଯାଇ ସେଠାରେ ହୋମ ଯଜ୍ଞ ପ୍ରଭୃତି କରି ରାଜା ମାନଙ୍କଠାରୁ ବିପୁଳ ସମ୍ପତ୍ତି ଲାଭ କରି ପୁରୁଷାନୁକ୍ରମେ ସେଠାରେ ବସତି ସ୍ଥାପନ କରି ରହିଲେ । ଢେଙ୍କାନାଳ, ତାଳଚେର, ଆଠଗଡ, ନୟାଗଡ, ଓ ରଣପୁରରେ ଅଧୁନା ଆମ ଗ୍ରାମର

ଇନ୍ଦ୍ରିୟାଣି ପରାଣ୍ୟାହୁ,<br>
ରିନ୍ଦ୍ରିୟେଭ୍ୟଃ ପରଂ ମନଃ ।<br>
ମନସସ୍ତୁ ପରା ବୁଦ୍ଧି,<br>
ର୍ଯୋବୁଦ୍ଧେଃ ପରତସ୍ତୁ ସଃ ॥



(ତୃତୀୟୋଽଧ୍ୟାୟଃ - କର୍ମଯୋଗ - ଶ୍ଳୋକ - ୪୨)

ଦେହରୁ ଇନ୍ଦ୍ରିୟ ଯେ ଶ୍ରେଷ୍ଠ ।<br>
ଇନ୍ଦ୍ରିୟରୁ ମନ ଗରିଷ୍ଠ ॥<br>
ମନ ଅପେକ୍ଷା ବୁଦ୍ଧି ଶ୍ରେଷ୍ଠ ।<br>
ତାଠାରୁ ଆତ୍ମା ଯେ ଗରିଷ୍ଠ ॥

ଇନ୍ଦ୍ରିୟ ଯେବେ ଚେଷ୍ଟାକରେ ।<br>
ଶରୀର ଲାଗଇ କର୍ମରେ ॥<br>
ମନସଂଯୋଗ ନୁହେଁ ଯେବେ ।<br>
ଇନ୍ଦ୍ରିୟ ଅକର୍ମଣ୍ୟ ତେବେ ॥<br>
ସଂକଳ୍ପ ବିକଳ୍ପ ମନରେ ।<br>
ଜନ୍ମଇ ବୁଦ୍ଧି ସାହାଯ୍ୟରେ ॥<br>
ଆତ୍ମାର ପାଇଲେ ଆଭାସ ।<br>
ସୁବୁଦ୍ଧି ହୁଅଇ ପ୍ରକାଶ ॥<br>
ସେହି ଆତ୍ମାକୁ କର ଧ୍ୟାନ ।<br>
ସୁବୁଦ୍ଧି ଉଦେ ହେବ ଜାଣ ॥<br>
ପରମାତ୍ମାଠୁଁ ବଳି ଧ୍ୟାନ ।<br>
ସଂସାରେ ନାହିଁ ହେ ଅର୍ଜ୍ଜୁନ ॥

ପୂର୍ବବଂଶଧରମାନେ ରହିଅଛନ୍ତି । ସେ ସମୟରେ ଓଡିଶା ଗଡଜାତ ଓ ମୋଗଲବନ୍ଦି ଏହିପରି ଦୁଇ ଭାଗରେ ବିଭକ୍ତ ହେଲା । ଗଡଜାତର ରାଜା ମାନେ ଇଂରେଜମାନଙ୍କୁ କରଦେଇ ରାଜ୍ୟର ଶାସନ ଭାର ଗ୍ରହଣ କରିଥିଲେ । ଗଡଜାତ ମାନଙ୍କରେ ଶିକ୍ଷାର ପ୍ରସାର ନଥିଲା । ଅନ୍ଧାରି ମୁଲକ କହିଲେ ଗଡଜାତ ମାନଙ୍କୁ ବୁଝାଯାଉଥିଲା । ରାଜାମାନେ ଅତ୍ୟାଚାରୀ ଓ ପ୍ରଜାପୀଡକ ଥିଲେ । ଷୋଳ ଶାସନର ବ୍ରାହ୍ମଣ ମାନେ କଟକ, ବାଲେଶ୍ୱର ଓ ଗଞ୍ଜାମକୁ ଯାଇ ସେଠାରେ ବାସ କଲେ । ପୁରୀ ଜିଲ୍ଲା ପରି କଟକ ଓ ବାଲେଶ୍ୱର ଜିଲ୍ଲାରେ ସେପରି ପ୍ରସିଦ୍ଧ ବ୍ରାହ୍ମଣ ଶାସନ ନଥିଲା । କେବଳ ସାମନ୍ତ ଓ ଭଟ୍ଟମିଶ୍ରମାନେ ଜ୍ଞାନୀ ଓ ଧର୍ମପରାୟଣ ଥିବାରୁ ଦୀକ୍ଷାଗୁରୁ ଥିଲେ । ସେମାନେ ଇତର ବୈଦିକ ମାନଙ୍କୁ ମନ୍ତ୍ର ଦେଉଥିଲେ । ଆମ ଗ୍ରାମର ନାମ ଥିଲା 'ନରଗଜରିପୁନଗରୀ' ।



ପ୍ରଭୁ ନୀଳକଣ୍ଠ

## ଗ୍ରାମର ପର୍ବପର୍ବାଣି :

ଶ୍ରୀ ନୀଳକଣ୍ଠ ଦେବ ଗ୍ରାମର ପ୍ରଧାନ ଦେବତା । ଗ୍ରାମର ପ୍ରତିଷ୍ଠା ସମୟରେ ନୀଳକଣ୍ଠ ମନ୍ଦିର ପ୍ରତିଷ୍ଠିତ ହୋଇ ଶିବଲିଙ୍ଗ ସ୍ଥାପିତ ହୋଇଥିଲା । ଯେଉଁଠାରେ ନିଷ୍ଠା ବଳବତୀ ସେହି ସ୍ଥାନର ଦେବତା ପ୍ରସିଦ୍ଧ । ବ୍ରାହ୍ମଣ ନିଜର ନିଷ୍ଠାବଳରେ ବିଗ୍ରହରେ ଦେବତ୍ୱ ଆରୋପ କରି ଦେବାରାଧନା କରେ । କେତେକ ବର୍ଷପରେ ଗ୍ରାମରେ ପଶ୍ଚିମ ମୁଣ୍ଡରେ ମନ୍ଦିର ସ୍ଥାପିତ ହୋଇ ଲୋକନାଥ ଦେବଙ୍କୁ ପ୍ରତିଷ୍ଠା କରାଗଲା । ନୀଳକଣ୍ଠ ଦେବ ଗ୍ରାମର ଇଷ୍ଟ ଦେବତା । ତାଙ୍କର ଅନ୍ୟୂନ ୨୦୦ ଏକର ସମ୍ପତ୍ତି ଥିଲା । ଗ୍ରାମର ସେବକ, ମାଳି, ଭଣ୍ଡାରି ଓ ଧୋବାମାନେ ହେତା ଜମି ପାଇ ଦେବ ସେବା ତଥା ବ୍ରାହ୍ମଣମାନଙ୍କର କ୍ଷୌର କର୍ମ ଓ ଲୁଗା ସଫା କରୁଥିଲେ ।

**ପ୍ରଭୁ ଶ୍ରୀ ଶ୍ରୀ ନୀଳକଣ୍ଠ ମହାଦେବ**

ହେ ନୀଳକଣ୍ଠ ବୃଷଭଧ୍ୱଜ ପଂଚବକ୍ତ୍ର<br>
ଲୋକେଶ ଶେଷବଳୟ ପ୍ରମଥେଶ ସର୍ବ ଶର୍ବ<br>
ହେ ଧୂର୍ଜଟେ ପଶୁପତେ ଗିରିଜା ପତେ ମାଂ<br>
ସଂସାର ଦୁଃଖ ଗହନା ଜଗଦୀଶ ରକ୍ଷ ।

(ଶିବନାମାବଲ୍ୟାଷ୍ଟକ ସ୍ତୋତ୍ର - ପୃଷ୍ଠା ୩୧, ପ୍ରଫେସର ଡାକ୍ତର ଅନନ୍ତ ମିଶ୍ର)

**ଅନ୍ୱୟ :**

ସଂସାର ବିଷପାନ କରି ଯେଉଁ ମହାଦେବଙ୍କର କଣ୍ଠ ନୀଳବର୍ଣ୍ଣ, ବୃଷଭ ଯାହାର ବାହନ, ଯେ ପଞ୍ଚାୟନନ, ସମଗ୍ର ସଂସାରର ପ୍ରଭୁ, ଶେଷନାଗ ବାସୁକୀ ଯାହାର ବଳୟ, ଯେ ଜଟାଧାରୀ ସେହି ପଶୁପତି, ଗିରିଜାପତି ପ୍ରଭୁ ନୀଳକଣ୍ଠ ମୋତେ ସଂସାର ରୂପକ ଦୁଃଖ ଗହ୍ୱର ଭିତରୁ ରକ୍ଷା କରନ୍ତୁ ।

**ଶୀତଳ ଷଷ୍ଠୀ ଯାତ୍ରା** ଗ୍ରାମର ସର୍ବ ପ୍ରଧାନ ଯାତ୍ରା । ପ୍ରତ୍ୟେକ ବ୍ରାହ୍ମଣ ଶାସନରେ ଶୀତଳ ଷଷ୍ଠୀ ଯାତ୍ରା ଅନୁଷ୍ଠିତ ହୁଏ । କିନ୍ତୁ ବୀରନରସିଂହପୁରର ଶୀତଳ ଷଷ୍ଠୀ ଓଡିଶା ପ୍ରସିଦ୍ଧ । ଆମଗ୍ରାମର ଶୀତଳ ଷଷ୍ଠୀ କହିଲେ ୩ ଦିନ ବୁଝାଯାଏ । ପ୍ରଥମ ଦିନ ନିମନ୍ତ୍ରଣ, ୨ୟ ଦିବସ ଶିବ ଦୁର୍ଗା ବିବାହ ଓ ତତ୍‌ପରବର୍ତ୍ତୀ ଦିବସ ଶୀତଳ ଷଷ୍ଠୀ ନାମରେ ଖ୍ୟାତ । ସେହିଦିନ ନୀଳକଣ୍ଠ ଓ ଲୋକନାଥ ବୃଷଭ ଉପରେ ବିଜେ କରି ଗ୍ରାମରେ ଭୋଗ ପାଆନ୍ତି । ତତ୍‌ପରେ ବାଣ ମରାଯାଏ । ଆମ୍ଭ ଗ୍ରାମରେ ହାବେଳି ଓ ତୁମ୍ବବାଣ ପ୍ରଧାନ ବାଣ । ବାଣ ମାରାତ୍ମକ ହେଲେ ମଧ୍ୟ ଆମ ଗ୍ରାମରେ କେବେ ବାଣ ବନ୍ଦ ହୋଇନାହିଁ । ଅନ୍ୟାନ୍ୟ କେତେକ ଗ୍ରାମରେ ବାଣ ବନ୍ଦ ହୋଇଗଲାଣି । ବର୍ତ୍ତମାନ କାଳରେ ଶୀତଳ ଷଷ୍ଠୀ ଯାତ୍ରାରେ ପ୍ରାୟ ୪୦ ହଜାର ଟଙ୍କା ବାଣ ଓ ଭୋଗରେ ଖର୍ଚ୍ଚ ହେଉଅଛି । ମାର୍ଗଶିର ମାସର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ ବିଜୟ ଚତୁର୍ଦ୍ଦଶୀ ଯାତ୍ରା ଅନୁଷ୍ଠିତ ହୁଏ । ଆଗେ ଗ୍ରାମରୁ ଅନେକ ଲୋକ ବିସୂଚିକା ରୋଗରେ ମୃତ୍ୟୁବରଣ କରୁଥିଲେ । ଗ୍ରାମରେ ନୀଳକଣ୍ଠ ଲୋକନାଥଙ୍କର ସର୍ପ ବାହାରୁଥିଲେ । ଏହା ମୁଁ ଦେଖିଅଛି । ପ୍ରତିଷେଧକ ଇଞ୍ଜେକସନ୍ ବାହାରିବାରୁ ବର୍ତ୍ତମାନ କଲେରା ବନ୍ଦ ହୋଇଗଲାଣି । ସେହି ସମୟରେ ନୀଳକଣ୍ଠ ବିଜେ ହୋଇ ତାଙ୍କର ଅଙ୍ଗଲାଗି ସେବକ ମୁଖରେ ବିଜୟ ଚତୁର୍ଦ୍ଦଶୀ ପର୍ବ ପାଳନ କରିବାକୁ ଆଦେଶ ଦେବାର କିମ୍ବଦନ୍ତୀ ରହିଅଛି । ଏହି ପର୍ବକୁ ସାନଶୀତଳ ଷଷ୍ଠୀ କୁହାଯାଏ । ଏହି ଦୁଇ ପ୍ରଧାନ ଉତ୍ସବରେ ନୀଳକଣ୍ଠ ଦେବ ଗ୍ରାମରେ ଭ୍ରମଣକରି ଭୋଗ ପାଆନ୍ତି । ଏହିପରି ବଡଶୀତଳ ଷଷ୍ଠୀ ଓ ସାନ ଶୀତଳ ଷଷ୍ଠୀ ଗ୍ରାମର ମୁଖ୍ୟ ପର୍ବ ଦିବସ । ଶୀତଳ ଷଷ୍ଠୀ ବ୍ୟତୀତ ଦୋଳୋତ୍ସବ, ଦୁର୍ଗାପୂଜା ଓ ଶିବରାତ୍ରି ମଧ୍ୟ ଗ୍ରାମର ପ୍ରଧାନ ପର୍ବ ଦିବସ ଅଟେ । ଦୋଳତ୍ସବ ଓ ଶିବରାତ୍ରି ଦିନ ଗ୍ରାମରେ ପ୍ରାୟ ୧୦୦୦ ଲୋକ ମନ୍ଦିର ବେଢ଼ାରେ ବସି ପ୍ରସାଦ ସେବନ କରିବାର ସୁନ୍ଦର ପରମ୍ପରା ଆଜି ପର୍ଯ୍ୟନ୍ତ ଚାଲୁ ରହିଛି ।

## ଶିତଳ ଷଷ୍ଠୀ (ଶିବ ବିବାହ)



ପ୍ରଥମ ଦିନ (ନିମନ୍ତ୍ରଣ)



ଦ୍ୱିତୀୟ ଦିନ (ଶିବ ବିବାହ)




ତୃତୀୟ ଦିନ (ଶିତଳ ଷଷ୍ଠୀ)

## ପ୍ରଭୁ ଶ୍ରୀ ଶ୍ରୀ ଶିବଶଙ୍କର

ପରେଶଂ ପଦ୍ମେଶଂ ଶିବକମଲକେଶଂ ଶିବକରଂ
ଦ୍ୱିଜେଶଂ ଦେବେଶଂ ତନୁକୁଟିଳକେଶଂ କଳିହରମ୍
ଖଗେଶଂ ନାଗେଶଂ ନିଖିଳଭୁବନେଶଂ ନଗଧରଂ
ସଦାତଂ ଗୋବିନ୍ଦଂ ପରମ ସୁଖକର ଭଜତରେ ।
(ଗୋବିନ୍ଦାଷ୍ଟକମ୍ - ପୃଷ୍ଠା - ୬ - ଶ୍ରୀମଦ୍ ପରମହଂସ ସ୍ୱାମୀ ବ୍ରହ୍ମାନନ୍ଦ ବିରଚିତଂ)

**ଅନ୍ୱୟ :**

ପରମେଶ୍ୱର ଲକ୍ଷ୍ମୀପତି, ଶିବ ଓ ବ୍ରହ୍ମାଙ୍କର ଆରାଧ୍ୟ, ମଙ୍ଗଳକର, ଦ୍ୱିଜ ଓ ଦେବତାମାନଙ୍କର ଈଶ୍ୱର କୁଞ୍ଚିତ କେଶଧାରୀ, କଳି କଳୁଷ ହରଣକାରୀ, ଉଭୟ ଗରୁଡ଼ ଓ ନାଗମାନଙ୍କର ଈଶ୍ୱର, ନିଖିଳ ଭୁବନର ସ୍ୱାମୀ, ଗିରିଧର ସେହି ପରମାନନ୍ଦ କନ୍ଦ ଗୋବିନ୍ଦଙ୍କୁ ସର୍ବଦା ଭଜନ କର ।



ପ୍ରଭୂ ଲୋକନାଥ

**ପ୍ରଭୁ ଶ୍ରୀ ଶ୍ରୀ ଲୋକନାଥ**

ହେ ନୀଳକଣ୍ଠ ବୃଷଭଧ୍ୱଜ ପଞ୍ଚବକ୍ତ୍ର
ଲୋକେଶ ଶେଷବଳୟ ପ୍ରମଥେଶ ଶର୍ବ
ହେ ଧୂର୍ଜଟେ ପଶୁପତେ ଗିରିଜାପତେ ମାଂ
ସଂସାର ଦୁଃଖ ଗହନା ଜଗଦୀଶ ରକ୍ଷ ।
(ଶିବନାମାବଲ୍ୟାଷ୍ଟକ ସ୍ତୋତ୍ର)

**ଅନ୍ୱୟ :**

ସଂସାର ବିଷ ପାନ କରି ଯେଉଁ ମହାଦେବଙ୍କର କଣ୍ଠ ନୀଳବର୍ଣ୍ଣ, ବୃଷଭ ଯାହାର ବାହାନ, ଯେ ପଞ୍ଚାନନ, ସମଗ୍ର ସଂସାରର ପ୍ରଭୁ, ଶେଷନାଗ ବାସୁକୀ ଯାହାର ବଳୟ, ଯେ ଜଟାଧାରୀ, ସେହି ପଶୁପତି, ଗିରିଜାପତି ପ୍ରଭୁ ଲୋକନାଥ ମୋତେ ସଂସାର ରୂପକ ଦୁଃଖ ଗହ୍ୱର ଭିତରୁ ରକ୍ଷା କରନ୍ତୁ ।



ଦୋଳ ପର୍ବ



ପ୍ରଭୁ ଗୋପୀନାଥ ମନ୍ଦିର

## ପ୍ରଭୁ ଶ୍ରୀ ଶ୍ରୀ ଗୋପୀନାଥ

ଜୟତି ତେଧିକଂ ଜନ୍ମନା ବ୍ରଜଃ ଶ୍ରୟତ ଇନ୍ଦିରା ଶଶ୍ୱଦତ୍ରହି
ଦୟିତ ଦୃଶ୍ୟତାମ୍ ଦିକ୍ଷୁତାବକା ସ୍ତ୍ୱୟି ଧୃତା ସବସ୍ୱାଂ ବିଚିନ୍ୱତେ ।
ସୁରତ ବର୍ଦ୍ଧନଂ ଶୋକନାଶନଂ ସ୍ୱରିତ ବେଣୁନା ସୁଷ୍ଠୁ ଚୁମ୍ବିତମ୍
ଇତର ରାଗବି ସ୍ମାରଣଂ ନୃଣାଂ ବିତର ବୀର ନସ୍ତେଧରାମୃତମ୍ ।

(ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧ ଗୋପୀକା ଗୀତମ୍- ଶ୍ରୀ ଜଗନ୍ନାଥ ସ୍ତୋତ୍ର ରତ୍ନାକର ବିଦ୍ୟାବାଗୀଶ ଜଗନ୍ନାଥ ରଥ)

**ଅନ୍ୱୟ :**

ହେ ଗୋପୀନାଥ । ଆପଣଙ୍କ ଜନ୍ମ ହେତୁ ବ୍ରଜକୁଳର ମହିମା ବୈକୁଣ୍ଠ ଠାରୁ ମଧ୍ୟ ଅଧିକ ଶୋଭାବର୍ଦ୍ଧନ କରିଅଛି । ସ୍ୱୟଂ ଲକ୍ଷ୍ମୀ ମଧ୍ୟ ବୈକୁଣ୍ଠ ତ୍ୟାଗ କରି ବୃନ୍ଦାବନରେ ନିତ୍ୟ ନିରନ୍ତର ବାସ କରୁଛନ୍ତି । ତୁମର ପ୍ରାଣବଲ୍ଲଭା ଗୋପୀମାନେ ତୁମ ପାଦପଦ୍ମରେ ତୁମକୁ ନିବେଦିତ କରିବା ସହ ବିରହରେ ଆତୁର ହୋଇ ବନସାରା ତୁମକୁ ଖୋଜୁଛନ୍ତି ।

ହେ ଗୋପୀଜନ ବଲ୍ଲଭ । ତୁମର ଅଧରାମୃତରେ ସମସ୍ତ ଶୋକତାପ ନାଶ କରୁଥିବା ମଧୁର ସ୍ୱନ ସୃଷ୍ଟି କରୁଥିବା ବଂଶୀର ରାଗିଣୀ ଅନ୍ୟ ପ୍ରତ୍ୟେକ ବିଷୟ ପ୍ରତି ଆସକ୍ତି ବା ଅନୁରାଗକୁ ବିସ୍ମରଣ କରିଥାଏ । ଆପଣଙ୍କ ବଂଶୀର ସ୍ୱନ ଏକ ନୂତନ ଯୁଗର ଆବାହନ କରୁଛି । ହେ ଶ୍ରୀକୃଷ୍ଣ ଆପଣଙ୍କର ସେହି ଅଧରାମୃତ ବିତରଣ କରି ଆମମାନଙ୍କୁ କୃତାର୍ଥ କରନ୍ତୁ ।

# ବର୍ଷ ମଧ୍ୟରେ ପ୍ରଧାନ ପର୍ବ

୧. ବଡ ଶୀତଳ ଷଷ୍ଠୀ-ଓଡ଼ିଶାର ଯେକୌଣସି ସ୍ଥାନରେ ଥିଲେ ମଧ୍ୟ ଆସି ଦେବତା କାର୍ଯ୍ୟ କରିବାକୁ ହେବ।

**ଖର୍ଚ୍ଚ**

୧. ୪ ସେରିଆ ନୌତିରେ– ୨ ଗୌଣୀ ଚୂଡା

୨. ନଡିଆ– ୨ ଗଣ୍ଡା

୩. ଗୁଡ– ୫ କେଜି

୪. ସୁଜି –୧୨୦୦

୫. କଦଳୀ– ୧୦ ଗଣ୍ଡା

୬. ଚିନି– ୫ କେଜି

୭. ଦୁଧ– ୫ ସେର

୮. ଲିଆ – ୮ ଗୌଣୀ

୯. ମଇଦା – ୧ କଲୋ

୧୦. ଭେ.ଘିଅ– ୧ କିଲୋ

୧୧. ପଇଡ– ୨ଟା

୧୨. ଅଳାଇଚ– ଟ.୦ /୨୫

୧୩. ଖଳି–୫୦ ଖଣ୍ଡ

**ପଣା ହେବ (ସାନ ଶୀତଳ ଷଷ୍ଠୀ)**

**ବିଜେ ଚତୁର୍ଦ୍ଦଶୀ - ବିଜେଚତୁର୍ଦ୍ଦଶୀ ବିଷୟ** ପାଂଜିରେ ମଧ୍ୟ ସ୍ଥାନିତ ଅଛି।

ଚୂଡା – ୪ ସେରିଆ ନୌତିରେ ୧ ଗୌଣୀ

୨. ନଡିଆ – ୧ଗଣ୍ଡା ,

୩. ଗୁଡ – ୩ କେଜି

୪. ଲିଆ– ୪ଗୌଣୀ

୫. ସୁଜି – ୧ କିଲୋ

୬. କ୍ଷୀର – ୨ସେର, ପଇଡ–୧ଟା, ଭୋଗଠାଏ ବଢ଼ାଯିବ। ଦୁଇଠା, କରିବା ଆବଶ୍ୟକ ନାହିଁ। ପିଠା ଉପେକ୍ଷା କରାଯାଇପାରେ। ପଣା ଅନାବଶ୍ୟକ।

ଆମ ପରିବାରରେ ପ୍ରଥମାଷ୍ଟମୀ ଓ ସ୍ୱନକ୍ଷତ୍ର ପୂଜା ନାହିଁ। ଆମର ପାର୍ବଣ ଶ୍ରାଦ୍ଧ। ଶ୍ରାଦ୍ଧ ତିଥିକୁ ଧରି କରାଯାଏ। ପାର୍ବଣ ଶ୍ରାଦ୍ଧରେ ଲୋକର ମୃତାହ ଦିବସର ତିଥି ଅପରାହ୍ନ ୪ ଘଟିକା ପର୍ଯ୍ୟନ୍ତ ଥିଲେ ହେବ।

•••

# ତତ୍କାଳୀନ ଗ୍ରାମ୍ୟ ଜୀବନ ଓ ଜୀବିକା

କୃଷିକାର୍ଯ୍ୟ ପଲ୍ଲୀ ଗ୍ରାମବାସୀ ସାମାଜିକ ଜୀବନର ପ୍ରଧାନ ଜୀବିକା ହୋଇଥିଲେ ମଧ୍ୟ ବ୍ରାହ୍ମଣମାନେ କୃଷି ଉପରେ ଆଦୌ ନିର୍ଭର ଶୀଳ ନଥିଲେ । ସେମାନଙ୍କର ଭୂସମ୍ପତ୍ତି ଥିଲା କିନ୍ତୁ ବ୍ରାହ୍ମଣ ମାନେ କୃଷକମାନଙ୍କୁ ଜମି ଦେଇ ସେମାନଙ୍କଠାରୁ ସଞ୍ଜା ଆଦାୟ କରୁଥିଲେ । ଗ୍ରାମରେ କୃଷିଜୀବୀ ଲୋକଙ୍କ ସଂଖ୍ୟା ଅତି କମ୍ ଥିଲା । ଅନେକ ଲୋକ ଭାରତର ଅନ୍ୟାନ୍ୟ ପ୍ରଦେଶକୁ ଯାଇ ସେଠାରୁ ତୀର୍ଥଯାତ୍ରୀ ମାନଙ୍କୁ ଆଣି ଜଗନ୍ନାଥ ଦର୍ଶନ କରାଉଥିଲେ ଓ ବିପୁଳ ଧନ ଲାଭ କରୁଥିଲେ । ବ୍ରାହ୍ମଣ ଶାସନ ମାନଙ୍କରେ ଯାତ୍ରୀ ବ୍ୟବସାୟ ଗୋଟିଏ ପ୍ରଧାନ ବ୍ୟବସାୟ ଥିଲା । ସେହି ବ୍ୟବସାୟରେ ପୁରୀ ଜିଲ୍ଲାରେ ବର୍ତ୍ତମାନ ଅନେକ ଧନୀ ପରିବାର ଦୃଷ୍ଟି ଗୋଚ଼ର ହୁଏ । କଟକ ଜିଲ୍ଲାରେ ଏହି ବ୍ୟବସାୟ ନଥିଲା । ବର୍ତ୍ତମାନ କାଳରେ ଯାତ୍ରୀ ବ୍ୟବସାୟୀଙ୍କର ସଂଖ୍ୟା ପ୍ରାୟ ଲୋପ ପାଇଗଲାଣି । ପୁରୀର ପଣ୍ଡା, ସୁଆର ଓ ପ୍ରତିହାରୀ ମାନଙ୍କର ଯାତ୍ରୀ ଗୁମାସ୍ତା ଥିଲେ । ଯାତ୍ରୀ ବ୍ୟବସାୟୀ ମାନେ ନିଜ ନିଜ ପଣ୍ଡାଙ୍କ ଠାରୁ ବାଟଖର୍ଚ୍ଚ ନେଇ ସେମାନଙ୍କର ଇଲାକାକୁ ଯାଇ ଯାତ୍ରୀ ଆଣୁଥିଲେ । ଯାତ୍ରୀମାନଙ୍କର ରହିବା ଓ ପାନ ଭୋଜନର ବ୍ୟବସ୍ଥା ପଣ୍ଡା ମାନଙ୍କ ଉପରେ ନ୍ୟସ୍ତ ଥିଲା । ସେମାନେ ଯାତ୍ରୀମାନଙ୍କୁ ଜଗନ୍ନାଥ ଦର୍ଶନ



କରାଇ ସେମାନଙ୍କ ଠାରୁ ବିପୁଳ ଅର୍ଥ ଅର୍ଜନ କରୁଥିଲେ । ତାହାକୁ ଆଟିକା କୁହାଯାଉଥିଲା । ଯାତ୍ରୀମାନଙ୍କ ମନରେ ପଣ୍ଡାମାନେ ଭ୍ରାନ୍ତ ଧାରଣା ଦେଉଥିଲେ ଯେ ସେମାନେ ଯେଉଁ ଅର୍ଥ ଦେବେ ସେଥିରେ ଜଗନ୍ନାଥଙ୍କୁ ଅନ୍ନ ପ୍ରସାଦ ଦିଆଯାଇ ପଣ୍ଡାମାନେ ତାହା ଉପଭୋଗ କରିବେ । ଯାତ୍ରୀମାନଙ୍କ ପ୍ରଦତ୍ତଅର୍ଥ ପଣ୍ଡା ଓ ଗୁମାସ୍ତାଙ୍କ ମଧ୍ୟରେ ବଣ୍ଟା ଯାଉଥିଲା । ଯାତ୍ରୀ ବ୍ୟବସାୟ ବ୍ୟତୀତ ବ୍ରାହ୍ମଣ ସମାଜରେ ପୌରୋହିତ୍ୟ ପ୍ରଥା ପ୍ରଚଳିତ ଥିଲା । ପୁରୋହିତ କର୍ମକରି ଅନେକ ଲୋକ ଅର୍ଥ ଉପାର୍ଜନ କରୁଥିଲେ । କେତେକ ବର୍ଷ ପରେ କଟକରେ ନର୍ମାଲ ଟ୍ରେନିଂ ସ୍କୁଲ୍ ସ୍ଥାପିତ ହେବାରୁ ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନ ମାନଙ୍କରୁ ମଧ୍ୟ ଭର୍ଣ୍ଣାକ୍ୟୁଲର୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନର୍ମାଲ ଟ୍ରେନିଂ ସ୍କୁଲରେ ୩ ବର୍ଷ ପଢ଼ିବା ପରେ ସେଠାରୁ ଉତ୍ତୀର୍ଣ୍ଣ ହୋଇ ମଧ୍ୟ ଭର୍ଣ୍ଣାକ୍ୟୁଲର୍ ଶିକ୍ଷାନୁଷ୍ଠାନ ମାନଙ୍କରେ ଶିକ୍ଷକତା କରୁଥିଲେ । ଆଉ କେତେକ ଲୋକ କେବଳ ମଧ୍ୟ ଭର୍ଣ୍ଣାକ୍ୟୁଲର ପାଠ୍ୟ ଶେଷ କରି ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ସେମାନଙ୍କର ମାସିକ ବେତନ ଟ ୧୨/- ମାତ୍ର ଥିଲା । ସେ ସମୟରେ ଗୋଟିଏ ମଧ୍ୟବିତ୍ତ ପରିବାରର ମାସିକ ଖର୍ଚ୍ଚ ଟ ୫/- ମଧ୍ୟରେ ଚଳିଯାଉଥିଲା । କେବଳ ଯାତ୍ରୀ ବ୍ୟବସାୟୀ ଓ ଶିକ୍ଷକ ମାନଙ୍କ ହସ୍ତରେ ନଗଦ ଟଙ୍କା ରହୁଥିଲା । କୃଷିଜୀବୀ ମାନେ ସାଧାରଣତଃ ଗରିବ ଥିଲେ ।

•••

ଅଜୋଽପି ସନ୍ନବ୍ୟାୟାତ୍ମା,
ଭୂତାନାମୀଶ୍ୱରୋଽପି ସନ୍ ।
ପ୍ରକୃତିଂ ସ୍ୱାମଧିଷ୍ଠାୟ,
ସମ୍ଭବାମ୍ୟାତ୍ମମାୟୟା ॥

(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୬)

ଜନ୍ମ ମୃତ୍ୟୁରୁ ମୁଁ ବଞ୍ଚିତ ।
ସମସ୍ତ ପ୍ରାଣୀ ମୋ ଆୟତ୍ତ ॥
ଜଗତ ଈଶ୍ୱର ଯେ ମୁହିଁ ।
ମୋହର ରୂପାନ୍ତର ନାହିଁ ॥



ପ୍ରକୃତିକି ମୁଁ ଆଶ୍ରେ କରି ।
ସଂସାରେ ହୁଏ ଦେହଧାରୀ ॥
ତଥାପି ମୋ ନିଜ ମାୟାରେ ।
ଜନମ ଲଭଇ ଧରାରେ ॥
ମୋ ମାୟା ଯୋଗମାୟା ଅଟେ ।
ଭ୍ରମଇ ସଂସାରେ ପ୍ରକଟେ ॥
ଜନ୍ମ ମରଣର ବିଷୟ ।
ମୋ ଇଚ୍ଛାବଳେ ଧନଞ୍ଜୟ ॥

# ୧୯୨୦ ମସିହାର ମୂଲ୍ୟ ହାର

୧୯୨୦ ମସିହା ଅର୍ଥାତ୍ ମୋର ୧୫ ବର୍ଷ ବୟସ ସମୟରେ କେତେକ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥର ମୂଲ୍ୟ ସୂଚି –

୧. ଧାନ - ଟଙ୍କାରେ ତେରପା ଗୌଣୀରେ ୧୫ ଗୌଣୀ ।

୨. ଗୋଟା ମୁଗ – ଟଙ୍କାରେ କଟକୀ, ୧୨ ସେର

୩. ଲୁଣ – କଟକୀ ସେର ୧ ଅଣା

୪. ରାଶିତେଲ – କଟକୀ ସେର ପ୍ରତି ୮ ଅଣା

୫. ସୋରିଷ ତେଲ – କଟକୀ ସେର ପ୍ରତି ଟ. ୮ ଅଣା ।

୬. ଗୁଆଘିଅ - କଟକୀ ସେର ଟ୦୨/–

୭. ଭଲ ଗୋକ୍ଷୀର – କଟକୀ ସେର କଟକୀ, ୮ ସେର

୮. ଲୁଗା- ବିଲାତି ୧୦ ହାତି ମାଞ୍ଚେଷ୍ଟର ଧୋତି ଗୋଟାପ୍ରତି ଟ. ଅଢେଇ ଟଙ୍କା

୯. ନଡ଼ିଆ – ୧ ଗଣ୍ଡା ଦୁଇ ଅଣା

୧୦. ପାଚିଲା ପାଟକପୁରା କଦଳୀ – ଟଙ୍କାରେ ଦେଢ଼ ଆଢ଼ । ଆଢ଼କ ୬୨ ଯୋଡ଼ା

୧୧. ବାଇଗଣ – ସେର ପ୍ରତି ଏକ ଅଣା

୧୨. ସଉପ ମଶିଣା ଚଉଡାର ଗୋଟା ପ୍ରତି ଟ୦୨/–

୧୩. ଛତା – ଗୋଟା ପ୍ରତି ଟ୧/ (ଏକ ଟଙ୍କା ଚାରିଅଣା)

ଯଦା ଯଦା ହି ଧର୍ମସ୍ୟ,
ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ,
ତଦାତ୍ମାନଂ ସୃଜାମ୍ୟହଂ ॥

(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୭)

ସତ୍ୟ ଧର୍ମ ହୋଇଲେ ନାଶ ।
ଅଧର୍ମ ବଢ଼ଇ ବିଶେଷ ॥
ଧର୍ମର ସାହାଯ୍ୟ କାରଣ ।
ମୋହର ଅବତାର ଜାଣ ॥



ବୃଥାରେ ମୁଁ ଜନ୍ମ ନୁହଇ ।
ଜନ୍ମର କାଳାକାଳ ନାହିଁ ॥
ବ୍ରାହ୍ମଣଠାରୁ ମ୍ଳେଚ୍ଛଯାଏ ।
ସମାନ ଭାବ ମୋର ହୁଏ ॥
ବ୍ରାହ୍ମଣ ଅବ୍ରାହ୍ମଣ ନାହିଁ ।
ସମସ୍ତ ସମାନ ଅଟଇ ॥
ଯହିଁ ମୋ ଶକ୍ତି କରେ ଦାନ ।
ତହିଁ ମୁଁ ଆଗେ ବିଦ୍ୟମାନ ॥
ହୋଇ ଅଧର୍ମ ନାଶ କରେ ।
ଧର୍ମ ମାର୍ଗକୁ ପ୍ରାଣୀ ଧରେ ॥

୧୪. ପାନ - କଡ଼ା ପ୍ରତି ଦୁଇ ପଇସା

୧୫. କାଗଜ - ଦିସ୍ତା ପ୍ରତି ଦୁଇ ଅଣା

ପ୍ରତ୍ୟେକ ପଦାର୍ଥର ମୂଲ୍ୟ ଚାଉଳ ଦର ଉପରେ ନିର୍ଭର କରୁଥିଲା । ଟଙ୍କା – ୬୪ ପଇସା, ୧୬ ଅଣା, ୧ଅଣା – ୪ ପଇସା, ୧ପଇସା – ୨ଅଧଲା , ୧ପଇସା - ୩ ପାହୁଲା ଓ ୫ ବୋଡ଼ି ।

(ଦୋକାନରେ ବୋଡ଼ିର ବ୍ୟବହାର ହେଉଥିଲା)

## ଗୃହର ପର୍ବପର୍ବାଣିରେ ଖର୍ଚ୍ଚ :

**ବଡ଼ ଶୀତଳ ଷଷ୍ଠୀ:** ଅନ୍ୟ ସମୟରେ ନ ଆସିପାରୁ, କିନ୍ତୁ ବଡ଼ ଶୀତଳ ଷଷ୍ଠୀକୁ ପ୍ରତିବର୍ଷ ଯେକୌଣସି ସ୍ଥାନରେ ଥିଲେ ମଧ ସେପରି ଗୁରୁତର ଅବସ୍ଥାର ସମ୍ମୁଖୀନ ନ ହେଲେ ଗ୍ରାମକୁ ଆସିବୁ ।

**ଖର୍ଚ୍ଚ :** ଚୂଡ଼ା ଚାରି ସେରିଆ ଗୌଣୀରେ ୨ ଗୌଣୀ, ଉଖୁଡା ୬ ଗୌଣୀ, ଖଇ-୨ ଗୌଣୀ, ସୁଜି-୧୨୦୦, ଚିନି-୫ କିଲୋ, ଦୁଗ୍ଧ-୫ ସେର, ପାଚିଲା କଦଳୀ, ଆମ୍ବ, ପଇଡ-୨ଟା, ମଇଦା-୧କିଲୋ, ଭେଜିଟେବୁଲ ଘିଅ-୧କିଲୋ, ନଡ଼ିଆ -୧୦କଡ଼ା ।

**ସାନ ଶୀତଳ ଷଷ୍ଠୀ :** ଚୂଡ଼ା, ଚାରିସେରିଆରେ ୨ଗୌଣୀ, ନଡ଼ିଆ-୬ଟା, ଉଖୁଡା-୪ଗୌଣୀ, ସୁଜି-୧କିଲୋ, ଚିନି-୨କିଲୋ, ଦୁଧ-୨ସେର, ପିଠା ନକଲେ ଚଳିବ । ପଇଡ଼-୧ ଗୋଟା ।

ପରିତ୍ରାଣାୟ ସାଧୁନାଂ,
ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ,
ସମ୍ଭବାମି ଯୁଗେ ଯୁଗେ ।।

(ଚତୁର୍ଥୋଦ୍ଧଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୮)

ସାଧୁଙ୍କୁ ତ୍ରାଣ ଦେବା ପାଇଁ ।
ପାପୀଙ୍କି ବିନାଶିବା ପାଇଁ ।।
ଯୁଗେ ଯୁଗେ ମୁଁ ରୂପ ବହେ ।
ଧର୍ମ ସ୍ଥାପନ କରି ଯାଏ ।।



ମୋହର ଚିତ୍‌ଶକ୍ତି ବଳରେ ।
ଜନମ ଲଭଇ ଧରାରେ ।।
ହିରଣ୍ୟ ହିରଣାକ୍ଷ ବୀର ।
ମାଳି ସୁମାଳି ଦୈତ୍ୟବୀର ।।
ରାବଣ କଂସ ଆଦି ପାପୀ ।
ନାଶି ସାଧୁଙ୍କୁ ସୁଖେ ସ୍ଥାପି ।।
ଧର୍ମକୁ କରଇ ସ୍ଥାପନ ।
ପାପକୁ କରେ ବିନାଶନ ।।

●●●

# ପିତାଙ୍କର କିଛି ସନ୍ଦେଶ

୧. ଆମର ଦଲିଲ, ପଟ୍ଟା, ପାଉତି ଗୋଟିଏ ଟିଣ ଡବାରେ ଆଲମାରିରେ ଅଛି । ତାହା ଯତ୍ନର ସହିତ ରଖିବୁ ।

୨. ବେମାର ପଡିଲେ ମଧ୍ୟ ମୋତେ କେବେହେଲେ ଡ଼ାକ୍ତର ଖାନାକୁ ନେବ ନାହିଁ ।

୩. ସଂକ୍ରମଣ ରୋଗର ଆଶଙ୍କା ଥିଲେ ଡାକ୍ତରଖାନାକୁ ପଠାଇ ପାର ।

୪. ତୋ ପାଖରେ ଥିଲେ ସେହିଠାରେ ବା ଗ୍ରାମରେ ଥିଲେ ପିତୃ ପୁରୁଷଙ୍କ ଶ୍ମଶାନରେ ମୋର ଶବଦାହ କରିବ ।

୫. ପ୍ରତିବର୍ଷ ଘର ମରାମତି କରିବୁ । ଆବଶ୍ୟକ ପଡ଼ିଲେ ମେଲାଡ଼ିହରେ ଘର ନିର୍ମାଣ କରିପାରୁ । ଉପର ଘରେ ଆଜବେଷ୍ଟସ୍ ପକାଇଲେ ତୁ ବିଦେଶରେ ଥିଲେ ମଧ୍ୟ ଅଗ୍ନି ଭୟରୁ ନିଶ୍ଚିନ୍ତ ରହିବୁ । ତାପରେ ଛଣ ବିକ୍ରୟ କରି ପ୍ରତିବର୍ଷ ଟ.୨୦୦/- ପାଇବୁ ।

୬. ସାଧାରଣତଃ ଶବାଧାରକୁ ଯେପରି ନିଆଯାଏ ତାହା ଏକ ଜଘନ୍ୟ ଦୃଶ୍ୟ । ରାତ୍ରରେ ଚ଼ଳନୀୟ । ଦିନବେଳା ମୋର ମୃତ୍ୟୁ ହେଲେ ମୋତେ ଶୁଆଇ ଶରୀରକୁ ବସ୍ତ୍ରାଚ୍ଛାଦିତ କରିନେବ ।

୭. ବ୍ରାହ୍ମଣର ନିତ୍ୟକର୍ମ ପଦ୍ଧତି ଗୋଟିଏ ଖାତାରେ ଲେଖି ରଖିଦେଇଛି । ତାକୁ ଆଜୀବନ ପାଖରେ ରଖିବୁ ।

ଜନ୍ମ କର୍ମ ଚ ମେ ଦିବ୍ୟ,
ମେବଂ ଯୋବେତ୍ତି ତତ୍ତ୍ୱତଃ ।
ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ,
ନୈତିମାମେତି ସୋଽର୍ଜୁନ ॥



(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୯)

ମୋ ଜନ୍ମ କର୍ମ ପୁଣ୍ୟମୟ ।
ଯେ କରେ ହୃଦୟେ ନିଶ୍ଚୟ ॥
ଯେ ତତ୍ତ୍ୱଜ୍ଞାନୀ ସାଧୁ ଧୀର ।
ଇନ୍ଦ୍ରିୟବଶ ଯାହାଙ୍କର ॥

ତା'ର ମରଣେ ନୁହେ ଜନ୍ମ ।
ମୋ ଅଙ୍ଗେ ହୁଅଇ ବିଲୀନ ॥
ହେଜ ମଥୁରା ବନ୍ଦୀ ଘରେ ।
ଦିବ୍ୟ ଆୟୁଧ ଐଶ୍ୱର୍ଯ୍ୟରେ ॥
ଯେ ଅଙ୍ଗ ବହି ହେଲି ଜାତ ।
ସେ କି ଲୌକିକ ପ୍ରସଙ୍ଗ ତ ॥
ଯେ ମୋତେ ମନୁଷ୍ୟ ଭାବଇ ।
ତାହାର ମୁକ୍ତି କଷ୍ଟ ହୋଇ ॥

## ମୋର ବାଲ୍ୟାବସ୍ଥାରେ କେତେକ ଦୁର୍ଲଭ ପଦାର୍ଥ

ମୋର ବାଲ୍ୟ ଜୀବନରେ କେତେକ ଆଧୁନିକ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଲୋକ ସମାଜରେ ଦୃଷ୍ଟ ହେଉ ନଥିଲା । ମୁଁ ୧୦ବର୍ଷ ବୟସ୍କ ହେବା ପର୍ଯ୍ୟନ୍ତ ନିମ୍ନ କେତେକ ପଦାର୍ଥ ଦେଖି ନଥିଲି ।

୧. **କିରୋସିନ୍ ତେଲ:** କରୋସିନ ତେଲର ବ୍ୟବହାର ନଥିଲା । ଭାରତରେ କିରୋସିନ ମିଳେ ନାହିଁ । ବ୍ରହ୍ମ ଦେଶରୁ ସମୁଦ୍ର ପଥରେ କିରୋସିନ୍ ଆମ ଦେଶକୁ ଆସୁଥିଲା । ଘରେ ଆମେ ସବୁ ପୋଲାଙ୍ଗ ତେଲ ବ୍ୟବହାର କରୁଥିଲୁ । ମୁଁ ମାଇନର ପାସ୍ କରିବା ପର୍ଯ୍ୟନ୍ତ ଦୀପ ଆଲୁଅରେ ପଢୁଥିଲି ।

୨. **ଚିନି ଓ ସୁଜି :** ୧୦ ବର୍ଷ ପର୍ଯ୍ୟନ୍ତ ମୁଁ ସୁଜି, ଚିନି ଦେଖିନଥିଲି । ଗୁଡ଼ରୁ ନବାତ (କନ୍ଦ) ପ୍ରସ୍ତୁତ ହେଉଥିଲା । ୯ଟା ବାତକୁ ଉପଶମ କରେ ବୋଲି ତାର ନାମ ନବାତ । ଚିନି ମିଳିବାପରେ ମଧ ବ୍ରାହ୍ମଣମାନଙ୍କର ଭ୍ରାନ୍ତ ଧାରଣାଥିଲା ଚିନିରେ ହାଡ଼ଗୁଣ୍ଡ ମିଶିଛି । ତେଣୁ ଦେବ କାର୍ଯ୍ୟରେ ଏହାର ବ୍ୟବହାର ନଥିଲା । ଶ୍ରୀମନ୍ଦିରରେ ଚିନିର ବ୍ୟବହାର ନଥିଲା । ଶୁଦ୍ଧ ଘର ଓ ଶୀତଳ ଷଷ୍ଠୀରେ ପାଲୁଅ, ମଇଦା ଓ ଗହମଚୂନା ଖିରି ହେଉଥିଲା । ସୁଜି ଆମ୍ଭେମାନେ ଦେଖି ନଥିଲୁ ।

୩. **ସୋରିଷତେଲ :** ଉତ୍ତର ଭାରତ ଓ ବଙ୍ଗ ପ୍ରଦେଶରେ ସୋରିଷତେଲର ବ୍ୟବହାର ଥିଲା । ଦକ୍ଷିଣ ଭାରତରେ ରାଶିତେଲ ବ୍ୟବହୃତ ହେଉଥିଲା । ବିଶୁଦ୍ଧ ରାଶିତେଲ ମିଳୁଥିଲା । ମାଛ ମଧ ରାଶିତେଲରେ ରନ୍ଧା ହେଉଥିଲା । ମାଂସ ଭକ୍ଷଣ ବ୍ରାହ୍ମଣ ସମାଜରେ ନିଷିଦ୍ଧ ଥିଲା । କେବଳ ମହାଷ୍ଟମୀରେ ବୋଦା ମାଂସକୁ ଦେବୀ ପ୍ରସାଦ ମନେ କରି ଗୁଆ ଘିଅରେ ଭାଜି ମହୁର କରି ଖାଉଥିଲେ । ତାହା ମଧ ପାକଶାଳାରେ ହେଉନଥିଲା ।

---

ବୀତରାଗଭୟକ୍ରୋଧା,
 ମନ୍ମୟା ମାମୁପାଶ୍ରିତାଃ ।
ବହବୋଜ୍ଞାନତପସା,
 ପୂତାମଦ୍ଭାବମାଗତାଃ ।।
ଯେ ଯଥା ମାଂ ପ୍ରପଦ୍ୟନ୍ତେ,
 ତାଂ ସ୍ତଥୈବ ଭଜାମ୍ୟହଂ ।
ମମ ବର୍ତ୍ମାନୁବର୍ତ୍ତନ୍ତେ,
 ମନୁଷ୍ୟାଃ ପାର୍ଥ ସର୍ବଶଃ ।।

(ଚତୁର୍ଥୋଦ୍ଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୧୦ ଓ ୧୧)



ରାଗ ଦ୍ୱେଷାଦି ଭୟ ଶୂନ୍ୟ ।
 ଛାଡ଼ି ଯେ ମୋ ଶରଣାପନ୍ନ ।।
ହୋଇ ଜ୍ଞାନ ତପସ୍ୟା ବଳେ ।
 ନିଷ୍ପାପୀ ହୁଏ ମୋକ୍ଷ ମିଳେ ।।
ଯେ ମୋତେ ଯେ ଭାବେ ଭଜଇ ।
 ସେ ଭାବେ ମୁଁ କୃପା କରଇ ।।
ବାସବ ବରୁଣାଦି ମୁହିଁ ।
 ଏ ଭାବେ ମୋତେ ଯେ ପୂଜଇ ।।
ମୋ ଡହୁଁ ଅନ୍ୟ ଦେବ ନାହିଁ ।
 ମନେ ଏ ଭାବ ଦୃଢ଼େ ଥାଇ ।।
ସେ ଦେବଙ୍କର ରୂପ ମୁହିଁ ।
 ଧରି ତା ବାସନା ପୂରାଇ ।।

୪. Bicycle ର ଅନ୍ୟ ନାମ ଶୂନ୍ୟଗାଡ଼ି । ୧୦ ବର୍ଷ ପର୍ଯ୍ୟନ୍ତ ମୁଁ ବାଇସାଇକେଲ ଦେଖିନଥିଲି । ଏହି ଗାଡ଼ିରେ କେହି ଆସିଲେ ଲୋକମାନେ ଦେଖିବାକୁ ଆଗ୍ରହ ପ୍ରକାଶ କରନ୍ତି । Cycle ଶବ୍ଦ ଭୁଲ୍ । ଏହାର ନାମ Bi-Cycle । ଅନେକ ଉଚ୍ଚ ଶିକ୍ଷିତ ବ୍ୟକ୍ତିଙ୍କ ମୁଖରୁ Cycle ଶବ୍ଦ ଶୁଣାଯାଏ । ୧୯୨୭ ମସିହାରେ ଏରୋପ୍ଲେନ୍ ପ୍ରଥମେ କଟକ ସହରକୁ ଆସି ବାରବାଟୀ ମଇଦାନରେ ପଡ଼ିଥିଲା ।

୫. ସାବୁନ, ପାଉଁରୁଟି, ରିବନ, ଗୁଡାଖୁ, Tooth Paste, ସିଗାରେଟ, ଫାଉଣ୍ଟେନ୍ କଲମ ଓ ଅନ୍ୟାନ୍ୟ ସୌଖୀନ ପଦାର୍ଥ ମଧ୍ୟ ଆମେ ଦେଖି ନଥିଲୁ ।

୬. ପରିବା ମଧ୍ୟରେ କୋବି, ବିଲାତି ବାଇଗଣ ମୋତେ ୧୦ ବର୍ଷ ହେବା ପର୍ଯ୍ୟନ୍ତ ଦେଖିବାକୁ ମିଳୁନଥିଲା । କେବଳ ଶୀତଦିନରେ ଆଳୁ ମିଳୁଥିଲା । ଏହାର ନାମ ଥିଲା ବିଲାତି ଆଳୁ । ମୋର ମନେଅଛି ନନା, ଆସାମରୁ ଫେରିବା ସମୟରେ କଲିକତାରୁ ୨ଟି ଫୁଲକୋବି ଘରକୁ ଆଣିଥିଲେ । ବୋଉ ତାକୁ କିଆଫୁଲ ମନେକରି ବାଡ଼ି ଆଡ଼େ ଫିଙ୍ଗି ଦେଇଥିଲା । ପ୍ରତ୍ୟେକ ଲୋକର ଘରେ ଗୁଆଘିଅର ବ୍ୟବହାର ଥିଲା । ଛୋଟ ପିଲାମାନଙ୍କୁ ନିୟମିତ ଭାବରେ ଗୁଆଘିଅ ଭାତରେ ଦିଆଯାଉଥିଲା । ବର୍ତ୍ତମାନ କେତେକ ଲୋକଙ୍କ ଘରେ ଘିଅ ଗିନା ରହିଛି । ଭାତ ଉପରେ ଏହି ଗିନା ଥୁଆଯାଇ ଅନ୍ନ ପରିବେଷଣ କରାଯାଏ । ଘୃତହୀନଂ କୁ-ଭୋଜନଂ।

୭. **Patent Medicine** ଡ଼ାକ୍ତରୀ ଦୋକାନ ନଥିଲା । ଡ଼ାକ୍ତର ଖାନା ମାନଙ୍କରେ Mixture ତିଆରି କରାଯାଇ ଦିଆଯାଉଥିଲା ।



କାଂକ୍ଷନ୍ତଃ କର୍ମଣାଂ ସିଦ୍ଧିଂ,
ଯଜନ୍ତଇହ ଦେବତାଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ,
ସିଦ୍ଧିର୍ଭବତି କର୍ମଜା ॥



(ଚତୁର୍ଥୋଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୧୨)

ଗୃହସ୍ଥ ଅଟଇ ଯେ ଏକ ।
ନାମ ତା ଅଟଇ ଅନେକ ॥
ପୁତ୍ର ଡାକଇ ତାକୁ ପିତା ।
ଭାଇ ଡାକଇ ତାକୁ ଭ୍ରାତା ॥
ସ୍ତିରୀ ଡାକଇ ସ୍ୱାମୀ ବୋଲି ।
ପିତା ଡାକଇ ପୁତ୍ର ବୋଲି ॥
ଏପରି ଭିନ୍ନ ଭିନ୍ନ ନାମ ।
ସମ୍ବନ୍ଧେ ଡାକେ ଗୃହୀଜନ ॥
ସେପରି ମୋ ଅଶେଷ ନାମ ।
ତୋ ଆଗେ କହିଲି ଅର୍ଜୁନ ॥
ନିଷ୍କାମ କର୍ମ ଯେ କରଇ ।
ବିଳମ୍ବେ ଫଳ ସେ ଲଭଇ ॥
ମନୁଷ୍ୟ କର୍ମ ସିଦ୍ଧି ପାଇଁ ।
ଦେବତା ପୂଜା ଯେ କରଇ ॥
ସହଜେ ଫଳ ତାର ହୋଇ ।
ବିଘ୍ନରେ ମୃଢ଼ ନାଶ ଯାଇ ॥

# ସାମ୍ପ୍ରତିକ ଓଡ଼ିଶାର ରାଜନୈତିକ ଅବସ୍ଥା

ଓଡ଼ିଶା କହିଲେ ମୋଗଲବନ୍ଦି ଓ ଗଡ଼ଜାତକୁ ବୁଝାଏ । ଓଡ଼ିଶାରେ ୨୪ ଗୋଟି ଗଡ଼ଜାତ ଓ ପୁରୀ, କଟକ, ସମ୍ବଲପୁର, ବାଲେଶ୍ୱର ଓ ଅନୁଗୁଳ ବ୍ରିଟିଶ ଶାସିତ ଜିଲ୍ଲା ଥିଲା । ଗଡ଼ଜାତ ମାନଙ୍କ ମଧ୍ୟରେ ମୟୂରଭଞ୍ଜ ବୃହତ୍ତମ ଗଡ଼ଜାତ ଥିଲା । କେବଳ ମୟୂରଭଞ୍ଜ ରାଜାଙ୍କର ଉପାଧି ମହାରାଜା ଥିଲା । ସେମାନେ କରଦ ରାଜାଥାଇ ସେମାନଙ୍କର ରାଜ୍ୟ ଶାସନକରୁଥିଲେ । କେତେକ ରାଜାମାନଙ୍କର ଫାଶୀଦେବାର କ୍ଷମତା ଥିଲା । ଗଡ଼ଜାତର ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଗରିବ ଥିଲେ । ରାଜାମାନେ ବିଳାସ ପୂର୍ଣ୍ଣ ରାଜପ୍ରାସାଦରେ ଅବସ୍ଥାନ କରୁଥିଲେ । ପ୍ରତ୍ୟେକ ଗଡ଼ଜାତର ଶାସନ କ୍ଷମତା ରାଜାଙ୍କ ଉପରେ ନ୍ୟସ୍ତ ଥିଲା । ବାମଣ୍ଡାର ସୁଢ଼ଳଦେବ ଓ ମୟୂରଭଞ୍ଜର ରାମଚନ୍ଦ୍ରଦେବ ବିଶେଷ ଖ୍ୟାତି ଲାଭ କରିଥିଲେ । ତାଙ୍କରି ସ୍ମୃତି ଉଦ୍ଦେଶ୍ୟରେ ବର୍ତ୍ତମାନ କଟକ ମେଡିକାଲ କଲେଜ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ନାମରେ ପରିଚିତ । ସମସ୍ତ ଗଡ଼ଜାତର ଶାସନଭାର ଜଣେ Political Agentଙ୍କ ଉପରେ ନ୍ୟସ୍ତ ଥିଲା । ସେ ପ୍ରତି ଗଡ଼ଜାତ ବର୍ଷମଧ୍ୟରେ ଥରେ ପରିଦର୍ଶନ କରୁଥିଲେ । ପାଟନାରେ ତାଙ୍କର ଅଫିସ୍ ଥିଲା ।

ଓଡ଼ିଶା ବିହାର ଓଡ଼ିଶା ପ୍ରଦେଶର ଗୋଟିଏ ଡ଼ିଭିଜନଥିଲା । ବିହାରରେ ପାଟନା, ହଜାରିବାଗ, ମୁଜାଫରପୁର ଓ ଦରଭଙ୍ଗା ଏହିପରି ୪ଗୋଟି ଡ଼ିଭିଜନଥିଲା । ଓଡ଼ିଶାରେ ଜଣେ ଡିଭିଜନାଲ କମିସନର ଥିଲେ । ତାଙ୍କ ଅଧୀନରେ ଓଡ଼ିଶାର ୫ଟି ଜିଲ୍ଲାରେ ୫ଜଣ କଲେକ୍ଟର ଥିଲେ । ସେ ସମୟରେ କଲେକ୍ଟର ମାନେ ଜିଲ୍ଲାର ରାଜସ୍ୱ ଆଦାୟ କରୁଥିଲେ

ନ ମାଂ କର୍ମାଣି ଲିମ୍ପନ୍ତି,
ନ ମେ କର୍ମଫଳେ ସ୍ପୃହା ।
ଇତି ମାଂ ଯୋଽଭିଜାନାତି,
କର୍ମଭିର୍ନ ସ ବଧ୍ୟତେ ॥
ଏବଂ ଜ୍ଞାତ୍ୱା କୃତଂ କର୍ମ,
ପୂର୍ବୈରପି ମୁମୁକ୍ଷୁଭିଃ ।
କୁରୁ କର୍ମୈବ ତସ୍ମାତ୍ତ୍ୱଂ,
ପୂର୍ବୈଃ ପୂର୍ବତରଂ କୃତଂ ॥

(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୧୪ ଓ ୧୫)



ଛୁଇଁ ନ ପାରେ ମୋତେ କର୍ମ ।
ତା ଫଳେ ଯେଣୁ ମୁଁ ନିର୍ମମ ॥
ଷୋଡ଼ଶ ଐଶ୍ୱର୍ଯ୍ୟ ନିକଟେ ।
କର୍ମର ଫଳ ତୁଚ୍ଛ ଅଟେ ॥
ଯେ ଏହା ଜାଣେ ଭବବନ୍ଧେ ।
ନପଡ଼େ ମୋହ ତୁଟେ ହୃଦେ ॥
ଏ ଜ୍ଞାନ କଲେ କର୍ମମାନ ।
ପୂର୍ବପୁରୁଷ ବ୍ୟକ୍ତିଗଣ ॥
ତୁ ସେହିପରି କର୍ମ କର ।
ସେହି ଜ୍ଞାନକୁ ହୃଦେ ଧର ॥
ଆତ୍ମାର କର୍ମ ଭୋଗ ନାହିଁ ।
ଅଭୋକ୍ତା ଅକର୍ତ୍ତାଟି ସେହି ॥
ଜ୍ଞାନରୁ ଦିବ୍ୟବୁଦ୍ଧି ଜାତ ।
ଅନ୍ତର ହୁଅଇ ପବିତ୍ର ॥

ଓ ଫୌଜଦାରୀ ମୋକଦ୍ଦମା ବିଚାର କରୁଥିଲେ । ତେଣୁ ସେମାନଙ୍କର ଉପାଧି ଥିଲା Collector and Magistrate । ପରେ ବିଚାର ବିଭାଗ ପୃଥକ୍ ହୋଇ- ଯିବାରୁ କଲେକ୍ଟରଙ୍କ ହସ୍ତରେ କେବଳ ରାଜସ୍ୱ ଆଦାୟ ଓ ଜିଲ୍ଲାର ଉନ୍ନତି ମୂଳକ କାର୍ଯ୍ୟ ରହିଲା ।

ପ୍ରତ୍ୟେକ ଜିଲ୍ଲାର ସଦର ମହକୁମାରେ କଲେକ୍ଟରଙ୍କର ବାସଭବନଥିଲା । Collectorate ବ୍ୟତୀତ Civil Court ମଧ୍ୟ ରହିଥିଲା । ଅଦାଲତର ବିଚାରପତି ମାନଙ୍କୁ ମ୍ୟୁନ୍‌ସିଫ୍ କୁହାଯାଏ । ସେମାନେ ଜମିଜମା ସମ୍ପର୍କୀୟ ମୋକଦ୍ଦମା ବିଚାର କରୁଥିଲେ । ଜିଲ୍ଲାର ପ୍ରତ୍ୟେକ ସବଡ଼ିଭିଜନରେ କଲେକ୍ଟରଙ୍କ ଅଧୀନରେ ଜଣେ ଏସ୍.ଡ଼ି.ଓ ଥିଲେ । ପ୍ରତ୍ୟେକ ଜିଲ୍ଲା କେତୋଟି ଥାନା (Police Station)ରେ ବିଭକ୍ତ ଥିଲା । ୪ଗୋଟି ଥାନା ଉପରେ ଜଣେ ପୋଲିସ୍ ଇନସ୍‌ପେକ୍ଟର ଥିଲେ । ଜିଲ୍ଲାର ଶାନ୍ତିରକ୍ଷା ଭାର ସେମାନଙ୍କ ଉପରେ ନ୍ୟସ୍ତ ଥିଲା । ସେତେବେଳେ ଓଡ଼ିଶାରେ High Court ନଥିଲା । ସମଗ୍ର ବିହାର ଓଡ଼ିଶା ପ୍ରଦେଶପାଇଁ କେବଳ ପାଟନାରେ ଗୋଟିଏ High Court ରହିଥିଲା । ଉତ୍କଳ ୧୯୩୬ ରେ ସ୍ୱତନ୍ତ୍ର ପ୍ରଦେଶ ହେବାରୁ କଟକରେ High Court ସ୍ଥାପିତ ହେଲା । ତତ୍ ପୂର୍ବରୁ କଟକରେ Judge Court ଥିଲା । Judge ମାନେ ପ୍ରାୟ ସାହେବ ଥିଲେ । ଗ୍ରାମ ମାନଙ୍କରେ ଚୌକିଦାରମାନେ ଥିଲେ । ଚୌକିଦାରୀ ଟିକସ ଆଦାୟ କରିବାରେ ସେମାନେ ପ୍ରେସିଡେଣ୍ଟଙ୍କୁ ସାହାଯ୍ୟ କରୁଥିଲେ । ଚୌକିଦାରୀମାନଙ୍କର ମାସିକ ବେତନ ଟ୫/- ଓ ଥାନା କନ୍‌ଷ୍ଟେବଲ ମାନଙ୍କର ବେତନ ଟ୨୦/- ଥିଲା । ପ୍ରତି ମୌଜାରେ ଚୌକିଦାରମାନଙ୍କ ଉପରେ ଜଣେ ଲେଖାଏଁ ଦଫାଦାର ରହୁଥିଲେ । ସହର ମାନଙ୍କର ପରିଚାଳନା ମ୍ୟୁନିସିପାଲିଟିମାନଙ୍କ ଉପରେ ନ୍ୟସ୍ତ ଥିଲା ।

୧୯୫୧ ମସିହାରେ ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶାରେ ୧୩ ଗୋଟି ଜିଲ୍ଲା ରହିଲା । ଗଡ଼ଜାତର ରାଜାମାନଙ୍କ ହସ୍ତରୁ ଶାସନ କ୍ଷମତା ଅପସୃତ ହେଲା । ଆଉ ମୋଗଲବନ୍ଦି ଓ ଗଡ଼ଜାତ ମଧ୍ୟରେ ପାର୍ଥକ୍ୟ ରହିଲା ନାହିଁ । ଗଡ଼ଜାତର ରାଜାମାନେ ସାଧାରଣ ଲୋକଙ୍କ ପରି ଜୀବନ ଯାପନ କରିବାକୁ ବାଧ୍ୟ ହେଲେ ।

କର୍ମଣୋ ହ୍ୟପି ବୋଦ୍ଧବ୍ୟଂ,<br>
ବୋଦ୍ଧବ୍ୟଂ ଚ ବିକର୍ମଣଃ ।<br>
ଅକର୍ମଣଶ୍ଚ ବୋଦ୍ଧବ୍ୟଂ,<br>
ଗହନା କର୍ମଣୋଗତିଃ ॥

(ଚତୁର୍ଥୋଦ୍ଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୧୭)

ଶାସ୍ତ୍ର ସିଦ୍ଧ ଯେ କର୍ମମାନ ।<br>
ଶାସ୍ତ୍ର ନିଷିଦ୍ଧ କର୍ମ ଗୁଣ ॥



କର୍ମ ତ୍ୟାଗ ବିକର୍ମ ଭେଦ ।<br>
ବୁଝିବା ଅଟଇ ଦୁର୍ଭେଦ୍ୟ ॥<br>
ସମସ୍ତ କର୍ମ ତ୍ୟାଗ କରେ ।<br>
ଅକର୍ମ ବୋଲନ୍ତି ସକଳେ ॥<br>
ତା କର୍ମ ଜାଣିବା ଉଚିତ ।<br>
ନୋହିଲେ ଲକ୍ଷ୍ୟଭ୍ରଷ୍ଟ ଚିତ୍ତ ॥<br>
ତେଣୁ ଦୁର୍ଜ୍ଞେୟ ସେ ବୋଲାଇ ।<br>
ସହଜେ ବୁଝାହୁଏ ନାହିଁ ॥

# ଓଡ଼ିଶାର ଅର୍ଥନୈତିକ ଜୀବନ

୧୯୨୦ ମସିହାରେ ସମଗ୍ର ଓଡ଼ିଶାରେ ଲୋକ ସଂଖ୍ୟା ଏକ କୋଟି ଥିଲା । ବର୍ତ୍ତମାନ ଏହି ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଲୋକ ସଂଖ୍ୟା ଅଢ଼େଇ କୋଟିକୁ ବୃଦ୍ଧିପାଇଅଛି । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷଫଳରେ ଓଡ଼ିଶାରୁ ପ୍ରାୟ ଲକ୍ଷାଧିକ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ । ଲୋକମାନଙ୍କର ଆର୍ଥିକ ମେରୁଦଣ୍ଡ ଭାଜିଗଲା । ଅନେକ ଲୋକ ଓଡ଼ିଶା ଛାଡ଼ି ସୁଦୂର ବ୍ରହ୍ମଦେଶ ଓ ଭାରତର ସ୍ଥାନାନ୍ତରରେ ଯାଇ ବାସ କଲେ । ସେ ସମୟରେ ଟଙ୍କାରେ ଚାଉଳ ବାଲେଶ୍ୱରୀ ୧ମହଣ ମିଳୁଥିବା ସ୍ଥଳେ ଲୋକମାନେ ଖାଦ୍ୟ ଖାଇବାକୁ ପାଇଲେ ନାହିଁ । ମୋର ବାଲ୍ୟ କାଳରେ କେତେକ ବୃଦ୍ଧ ଓ ବୃଦ୍ଧାଙ୍କଠାରୁ ମୁଁ ସେହି ଭୟାବହ ଦୁର୍ଭିକ୍ଷର କରୁଣ କାହାଣୀ ଶୁଣିବାକୁ ପାଇଛି । ଲୋକମାନେ ନିମପତ୍ର ଓ ତେନ୍ତୁଳିପତ୍ର ଖାଇଲେ । ବଳଦ ଗୋଟାକର ଦାମ ଟ୨/- ଦେଇ ବିକ୍ରି କଲେ ମଧ୍ୟ ଟଙ୍କା ପାଉନଥିଲେ । ସୁନାରୂପା ଦେଲେ ମଧ୍ୟ ଟଙ୍କା ପାଇଲେ ନାହିଁ । ଟଙ୍କାଦେଲେ ମଧ୍ୟ ଚାଉଳ ପାଇଲେ ନାହିଁ । ବୁଭୁକ୍ଷୁ ଲୋକମାନଙ୍କ ଭୟରେ ଧନୀଲୋକଘରର ସ୍ତ୍ରୀମାନେ ଚାଉଳ ଘରେ ଥୋଉଥିଲେ । ଓଡ଼ିଶାକୁ ରେଳପଥ ନଥିଲା । କଲିକତା ବନ୍ଦରରୁ ବାଲେଶ୍ୱରକୁ ସମୁଦ୍ରପଥରେ ଖାଦ୍ୟ ପଦାର୍ଥ ଆସିବାରୁ ସ୍ଥାନେ ସ୍ଥାନେ ଅନ୍ନଛତ୍ର ଦିଆଗଲା । ସେହି ଦୁର୍ଭିକ୍ଷ ସମୟରେ ଓଡ଼ିଶାରେ କେତେକ କୃତ୍ରିମ ଧନୀ ପରିବାର ସୃଷ୍ଟିହେଲା । ସେହି କରାଳ ଦୁର୍ଭିକ୍ଷର ପ୍ରଭାବ ଅଦ୍ୟାବଧି ଓଡ଼ିଶାରେ ରହିଅଛି । ବର୍ତ୍ତମାନ ଲୋକମାନଙ୍କର ଆର୍ଥିକ ଅବସ୍ଥା ଦାରିଦ୍ର୍ୟର ସୀମାରେଖାକୁ ଅତିକ୍ରମ କରିଛି । ଓଡ଼ିଶାର ଶତକଡ଼ା ୮୦ ଭାଗ ଲୋକ ଦରିଦ୍ର । ଓଡ଼ିଶାର ଅଧିକାଂଶ ଲୋକ କୃଷିଜୀବୀ ହୋଇଥିବାରୁ ସେମାନଙ୍କର ଆର୍ଥିକ ଅବସ୍ଥା ସଚ୍ଛଳ ନୁହେଁ । କୃଷକ ବସ୍ତିରେ ଅଧିକାଂଶ ଲୋକ ଭୂମିହୀନ । ସେମାନେ ଅନ୍ୟ ଲୋକର ଜମି ଚାଷକରି ଚଳନ୍ତି । ଶ୍ରମିକ

ଯସ୍ୟ ସର୍ବେ ସମାରମ୍ଭାଃ,
କାମସଙ୍କଳ୍ପବର୍ଜିତାଃ ।
ଜ୍ଞାନାଗ୍ନିଦଗ୍ଧକର୍ମାଣଂ,
ତମାହୁଃ ପଣ୍ଡିତଂ ବୁଧାଃ ॥
ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ,
ନିତ୍ୟତୃପ୍ତୋ ନିରାଶ୍ରୟଃ ।
କର୍ମଣ୍ୟଭିପ୍ରବୃତ୍ତୋଽପି,
ନୈବ କିଞ୍ଚିତ୍ କରୋତି ସଃ ॥
(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୧୯ ଓ ୨୦)

ଆଳସ୍ୟେ କର୍ମ ଯେ ନକରେ ।



ସେ ଭାଗୀ ନୁହଇ ମୁକ୍ତିରେ ॥
ସର୍ମ କର୍ମ ଯେ ଆରମ୍ଭଇ ।
ଫଳ କାମନା ନ ରଖଇ ॥
କାଳ ଅଗ୍ନିରେ ଦେହ କର୍ମ ।
ପଣ୍ଡିତ ବୋଲି ତାକୁ ଜାଣ ॥
ଯେ କର୍ମଫଳ ଯୋଗ କରେ ।
ଅହଂ କରତା ବୋଲି ଧରେ ॥
ନିରାବଲମ୍ବ ଅଟେ ସେହି ।
ଯଦି ବା ସେ କର୍ମ କରଇ ॥
ତହିଁରେ ଲିପ୍ତ ସେ ନ ହୋଇ ।
ଭବ ବନ୍ଧନେ କର୍ମ ଯେହି ॥

ମାନଙ୍କର ଦୈନିକ ମଜୁରି ୧୯୨୦ ମସିହାରେ ଦୁଇଅଣା ଥିଲା । ବର୍ତ୍ତମାନ ମଜୁରିର ହାର ଟ୫/- କୁ ବୃଦ୍ଧି ପାଇଥିଲେ ମଧ୍ୟ ଦିନ ମଧ୍ୟରେ ୨ ବେଳା ଖାଇବାକୁ ପାଉ ନାହାନ୍ତି । ବରଂ ହରିଜନ ଓ ଆଦିବାସୀମାନଙ୍କର ପରିବାରସ୍ଥ ସମସ୍ତ ଲୋକ ଶ୍ରମଜୀବୀ ହୋଇଥିବାରୁ ସେମାନେ ଚଳିଯାଉଛନ୍ତି ।

ବିଦେଶୀ ସରକାରଙ୍କ ସମୟରେ ଓଡ଼ିଶାର ଖଣିଜପଦାର୍ଥର ସଦୁପଯୋଗ ହୋଇ ପାରିନଥିଲା । ଓଡ଼ିଶାରେ ଆଦୌ କଳକାରଖାନା ନଥିଲା । ଲୋକମାନେ ତନ୍ତ ବୁଣା ଲୁଗା ଓ ବିଲାତି ଲୁଗା ପରିଧାନ କରୁଥିଲେ । ୧୯୨୦ ମସିହାରେ ସୁନାଭରି ଟ୧୫/- ଥାଇ ମଧ୍ୟ ସ୍ତ୍ରୀ ଲୋକମାନେ ସୁନା ଅଳଙ୍କାର ପିନ୍ଧି ପାରୁନଥିଲେ । ରୁପାଭରି ଆଠଅଣା ଥିବାରୁ ରୌପ୍ୟ ନିର୍ମିତ ଅଳଙ୍କାର ପରିଧାନ କରୁଥିଲେ । ପାଣିକାଚ ହାତରେ ଆଭରଣଥିଲା । ସାଧାରଣ ଖାଦ୍ୟ ଖାଇ ଲୋକମାନେ ଚଳୁଥିଲେ । ଧନୀ ଓ ମଧ୍ୟବିତ୍ତ ପରିବାରରେ ମାଛ ଓ ପରିବା ବ୍ୟବହୃତ ହେଉଥିଲା । ଦୁଧସେର ଦୁଇଅଣା ଥିଲା । ଗବାଘୃତ ମୁଁ ନିଜେ ସେର ପ୍ରତି ଟ୧/- ରେ କିଣିଛି । ବର୍ତ୍ତମାନ ବିଶୁଦ୍ଧ ଗୁଆଘିଅ ଦୁର୍ଲଭ । ଉପଯୁକ୍ତ ଯୋଗ୍ୟତା ଥାଇ ମଧ୍ୟ ଲୋକମାନେ ସରକାରୀ ଚାକିରି ପାଉନଥିଲେ । ଜଣେ ସରକାରୀ କର୍ମଚାରୀ ମାସିକ ଟ୨୦/- ପାଇ ଯେପରି ସ୍ୱଚ୍ଛନ୍ଦରେ ଚଳିପାରୁଥିଲା ୫ ବାଟି ବା ୨୦ ଏକର ଜମିଥାଇ ଲୋକମାନେ ସେପରି ଚଳିପାରୁ ନଥିଲେ । ୧୯୨୦ ମସିହାରେ ଅନେକ ସ୍ୱଳ୍ପ ବେତନ ଭୋଗୀ ରାଜକମଚାରୀ ବିପୁଳ ସମ୍ପତ୍ତିର ଅଧିକାରୀ ହୋଇପାରିଛନ୍ତି । ଆଉ କେତେକ ଲୋକ ଗରିବ ଚାଷୀମାନଙ୍କୁ ଧାନ କରଜ ସୂତ୍ରରେ ଦେଇ ସେମାନଙ୍କଠାରୁ ସୁଧ ଆଦାୟ କରି ଧନୀ ହେବା ପ୍ରଥା ମଧ୍ୟ ଆଜିକାଲି ସମାଜରେ ପ୍ରଚଳିତ । ଟଙ୍କା ଧାର ଦେଇ ତା ଉପରେ ଅଧିକ ପରିମାଣରେ ସୁଧ ନେବା ଅତି ହୀନ କାର୍ଯ୍ୟ । ଧାନ କରଜରେ ଅଧିକ ସୁଧ ମିଳେ ।



ଗତସଙ୍ଗସ୍ୟ ମୁକ୍ତସ୍ୟ,
ଜ୍ଞନାବସ୍ଥିତଚେତସଃ ।
ଯଜ୍ଞାୟାଚରତଃ କର୍ମ,
ସମଗ୍ରଂ ପ୍ରବିଲୀୟତେ ।।
ବ୍ରହ୍ମାର୍ପଣଂ ବ୍ରହ୍ମ ହବି,
ର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତଂ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ,
ବ୍ରହ୍ମକର୍ମସମାଧିନା ।।

(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୨୩ ଓ ୨୪)

ନିଷ୍କାମ ଭାବେ କର୍ମ କର ।
କ୍ରୋଧ ଦ୍ୱେଷାଦି ପରିହର ।।
କାଳେ ଦୃଢ଼ରେ ମନ ଦେଇ ।
ବିଷ୍ଣୁ ଆରାଧନା କରଇ ।।
ସେ କର୍ମ କଲେ ଭବେ ଥାଇ ।
କର୍ମ ବନ୍ଧନେ ନ ପଡ଼ଇ ।।
ଫଳ ସହିତ କର୍ମ ତାର ।
ଗୋବିନ୍ଦ ମିଳଇ ସତ୍ୱର ।।
ଶ୍ରୁବହିଁ ବ୍ରହ୍ମ ଘୃତ ବ୍ରହ୍ମ ।
ତିଳ ଯବାଦି ଦ୍ରବ୍ୟ ବ୍ରହ୍ମ ।।
ଅଗ୍ନି ସମୀଧ ଚରୁ ବ୍ରହ୍ମ ।
ଯେ ହୋମ କରେ ସେହି ବ୍ରହ୍ମ ।।
ଏସନ ବୁଦ୍ଧି ଦୃଢ଼ ଯାର ।
ସାଯୁଜ୍ୟ ମୁକ୍ତି ପ୍ରାପ୍ତ ତାର ।।

# ପିତୃ ଉପଦେଶ

ପିତୃଉପଦେଶ ଅଲଙ୍ଘନୀୟ । ପୁତ୍ରର ସୁନାମରେ ପିତାର ଗୌରବ ବୃଦ୍ଧିପାଏ । ତେଣୁ କୌଣସି ବ୍ୟକ୍ତିର ମୃତ୍ୟୁ ସମ୍ବାଦ, ସମ୍ବାଦ ପତ୍ରରେ ପ୍ରକାଶିତ ହେଲେ ତାର ପୁତ୍ର ତଥା ଜାମାତାଙ୍କର ନାମ ଉଲ୍ଲେଖ କରାଯାଏ । ତେଣୁ ଯଥାଶକ୍ତି ଓ ଯଥା ସମ୍ଭବ ନିମ୍ନ ଉପଦେଶମାନ ପାଳନ କରିବୁ ।

୧- ଆତ୍ମାନଂ ସତତ୍ ରକ୍ଷେତ୍ ଦାରୈରପି ଧନୈରପି । ସଂଯତ ଜୀବନ ଯାପନ ଦ୍ୱାରା ସ୍ୱାସ୍ଥ୍ୟ ଭଲ ରହେ । ତେଣୁ ଧୂମ ପାନ ବା ପାନ ଖାଇବୁ ନାହିଁ ।

୨- ସତ୍ୟ ହେଲେ ମଧ ଅପ୍ରିୟ ସତ୍ୟ କଥା କହିବୁ ନାହିଁ ।

୩- ଗୋପନୀୟ କଥା ଏପରିକି ନିଜର ସ୍ତ୍ରୀ ଆଗରେ ପ୍ରକାଶ କରିବୁ ନାହିଁ ।

୪- ଧନର ପ୍ରଲୋଭନ ରଖି କେବେ ଉତ୍କୋଚ଼ ଗ୍ରହଣ କରିବୁ ନାହିଁ । ଉଚ୍ଚ ପଦବୀରେ ଥାଇ ସାମାନ୍ୟ କେତେକ ପଇସା ପାଇଁ ଲୋକ ଜେଲ୍ ବରଣ କରିଛି ।

୫- ଗ୍ରାମର ଜ୍ଞାତ ବୁଝିବାରେ କେବେହେଲେ ଚେଷ୍ଟା କରିବୁ ନାହିଁ । ଦେବସ୍ୱ ଓ ବ୍ରହ୍ମସ୍ୱ ଅପହରଣ କରିବା ମହାପାପ ।

୬- ନିଜର ସନ୍ତାନ ମାନଙ୍କର ସ୍ୱାସ୍ଥ୍ୟ ଓ ଶିକ୍ଷା ପ୍ରତି ଦୃଷ୍ଟିଦେବୁ ।

୭- ଜ୍ୟେଷ୍ଠ ଭ୍ରାତା ପିତା ସମାନ । ତାପରେ ତାର ଭାବୀ ଜୀବନ ତୋ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛି । ତେଣୁ ତାର ସୁବିଧା ଦେଖୁଥିବୁ ।

୮- ବନ୍ଧୁମାନଙ୍କୁ ସ୍ନେହ ଓ ଗୁରୁଜନ ମାନଙ୍କୁ ଭକ୍ତି କରିବୁ ।



ଶ୍ରେୟାନ୍ ଦ୍ରବ୍ୟମୟାଦ୍ୟଜ୍ଞାଜ୍,
ଜ୍ଞାନଯଜ୍ଞଃ ପରନ୍ତପ ।
ସର୍ବଂକର୍ମାଖିଳଂ ପାର୍ଥ,
ଜ୍ଞାନେ ପରିସମାପ୍ୟତେ ॥
ତଦ୍‌ବିଦ୍ଧି ପ୍ରଣିପାତେନ,
ପରିପ୍ରଶ୍ନେନସେବୟା ।
ଉପଦେକ୍ଷ୍ୟନ୍ତିତେ ଜ୍ଞାନଂ,
ଜ୍ଞାନିନଃ ତତ୍ତ୍ୱଦର୍ଶିନଃ ॥

(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୩୩ ଓ ୩୪)

ସିଂହର ଶବ୍ଦ ଯେବେ ଶୁଣେ ।
ଅନ୍ୟ ଶବଦ ତୁଚ୍ଛ ମଣେ ॥
ଅସଂଖ୍ୟ ତାହାଙ୍କର ଜ୍ୟୋତି ।
ଚନ୍ଦ୍ର ଏକାକୀ ଯେ ନାଶନ୍ତି ॥
ସେପରି ସର୍ବ କର୍ମମାନ ।
ନିରସ୍ତ ହୋନ୍ତି ହେଲେ ଜ୍ଞାନ ॥
ଯେ ଅଟେ ଦ୍ରବ୍ୟମୟ ଯଜ୍ଞ ।
ତହିଁରୁ ଶ୍ରେଷ୍ଠ ଜ୍ଞାନ ଯଜ୍ଞ ॥
ସେ ତତ୍ତ୍ୱଜ୍ଞାନଦର୍ଶୀ ଜ୍ଞାନୀ ।
ତାଙ୍କ ପାଶେ କରି ଦୟିନୀ ॥
ପ୍ରଣତ ସେବା ଭୃତ୍ୟଭାବେ ।
ବହୁବିଧ ପ୍ରଶ୍ନ ପ୍ରସ୍ତାବେ ॥
ସେବିଲେ ହୋଇବେ ସନ୍ତୁଷ୍ଟ ।
କହିବେ ବହୁ ଜ୍ଞାନ ବାଟ ॥

୯- ଦୁର୍ଜନଃ ପରିହର୍ତ୍ତବ୍ୟୋ । ତଥାପି ଦୁର୍ଜନ ସହିତ ଶତ୍ରୁତା ଆଚରଣ କରିବୁ ନାହିଁ ।

୧୦- ସଦାଚରଣ ମନୁଷ୍ୟକୁ ବିକଶେ । ସନ୍ତାନମାନେ ପିତାମାତାଙ୍କର ଆଚରଣ ଅନୁକରଣ କରନ୍ତି । ତେଣୁ ନିଜର ଆଚରଣ ନିଷ୍କଳଙ୍କ ରଖିବାକୁ ସର୍ବଦା ଚେଷ୍ଟିତ ହେବୁ ।

୧୧- ସର୍ବଦା କର୍ତ୍ତବ୍ୟପରାୟଣ ହେବୁ । ଲୋକ କର୍ତ୍ତବ୍ୟନିଷ୍ଠ ହେଲେ କେହି ତାର ଅପକାର କରିପାରେ ନାହିଁ । ସେ ବିପଦରେ ପଡ଼େ ନାହିଁ ।

୧୨- ଅଧସ୍ତନ କର୍ମଚାରୀମାନଙ୍କ କଥା ସର୍ବଦା ବିଶ୍ୱାସ କରିବୁ ନାହିଁ । ସେମାନଙ୍କୁ ଉପଦେଶ ଦେଇପାରୁ । କିନ୍ତୁ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କଲେ ସେମାନେ ବିରୁଦ୍ଧାଚରଣ କରିବେ ।

୧୩- ଜନନୀ ଜନ୍ମ ଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ । ତେଣୁ ଯଥା ସମ୍ଭବ ଜନ୍ମଭୂମିର ଉପକାର ପାଇଁ କାର୍ଯ୍ୟ କରିବୁ ।

୧୪- ନିଜର ସ୍ୱାସ୍ଥ୍ୟ, ଆଚ଼ରଣ ଭଲ ରଖିବୁ । ସଦାଚ଼ରଣ ଓ ସଂଯତ ଜୀବନ ଯାପନ ଫଳରେ ସ୍ୱାସ୍ଥ୍ୟ ଭଲ ରହେ ।

୧୫- ଭଉଣୀମାନଙ୍କୁ ସର୍ବଦା ସ୍ନେହ କରିବୁ ।

୧୬- ସର୍ବଦା ଈଶ୍ୱର ବିଶ୍ୱାସ ହୃଦୟରେ ରଖିବୁ ।

୧୭- କ୍ଷମା ଓ ସହିଷ୍ଣୁତା ମନୁଷ୍ୟର ସର୍ବଶ୍ରେଷ୍ଠ ଗୁଣ ।

୧୮- ନିର୍ଭୀକ ହୋଇପାରୁ କିନ୍ତୁ ବର୍ତ୍ତମାନ କାଳରେ ବିଶେଷତଃ ସରକାରୀ କାର୍ଯ୍ୟରେ ଥାଇ ନିର୍ଭୀକତା ସବୁ ସ୍ଥଳରେ ଦେଖାଇବୁ ନାହିଁ ।

ଯୋଗସଂନ୍ୟସ୍ତକର୍ମାଣଂ,<br>
ଜ୍ଞାନସଂଛିନ୍ନସଂଶୟଂ ।<br>
ଆତ୍ମବନ୍ତଂ ନ କର୍ମାଣି,<br>
ନିବଧ୍ନନ୍ତି ଧନଞ୍ଜୟ ॥



(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୪୧)

ଶ୍ରୀଗୁରୁ ବାକ୍ୟ ଅର୍ଥମାନ ।<br>
ଯେ ନ ବୁଝଇ ଅଜ୍ଞ ଜାଣ ॥<br>
ବୁଝିବା ଶକ୍ତି ଯାର ଥାଇ ।<br>
ଶ୍ରଦ୍ଧା ବିହୀନେ ନାଶ ହୋଇ ॥<br>
ହେବ କି ନାହିଁ ଏ ଭାବନା ।<br>
ସନ୍ଦେହ ସର୍ବକାର୍ଯ୍ୟ ଘେନା ॥<br>
ଧନ ଅରଜି ପାରେ ନାହିଁ ।<br>
ତେଣୁ ଏ ଲୋକେ ସୁଖ ନାହିଁ ॥

ଧନ ଅର୍ଜିଲେ ଧର୍ମ କରି ।<br>
ଧର୍ମେ ପ୍ରାପତ ନରହରି ॥<br>
ଧର୍ମ କର୍ମର ଅଭାବରୁ ।<br>
କିଞ୍ଚିତ ସେ ଇହ ପରରୁ ॥<br>
ନ ଥାଏ ଅହଙ୍କାର ବୁଦ୍ଧି ।<br>
ସଦା ନିର୍ମଳ ଚିତ୍ତ ଶୁଦ୍ଧି ॥<br>
ବାସନା କ୍ଷୟ ହୋଇଥାଇ ।<br>
ଆତ୍ମାମୟ ବିଶ୍ୱ ଦେଖଇ ॥<br>
ମୁଁ କରେ ମୁଁ କରତା ବୋଲି ।<br>
ଏମନ୍ତ ଭାବ ତ ବିଚାରି ॥<br>
ଏ ଯୋଗ ଦ୍ୱାରା କର୍ମମାନ ।<br>
ଈଶ୍ୱରେ କରଇ ଅର୍ପଣ ॥<br>
ସଂଶୟ ଆତ୍ମାଜ୍ଞାନ ନାଶେ ।<br>
କର୍ମ ବନ୍ଧନେ ସେ ନ ପଶେ ॥

୧୯- କେବେହେଲେ ଜୀବନରେ ଅବାଧ୍ୟତା (Insubordination) ଦେଖାଇବୁ ନାହିଁ ।

୨୦- ଘରର ପୈତୃକ ସମ୍ପତ୍ତି ବିକ୍ରୟ କରିବୁ ନାହିଁ । ତାହା ମଧ୍ୟ ଏକ ଗୁରୁତର ଅପରାଧ ।

**ଶେଷ ଉପଦେଶ ମୋର ବିୟୋଗରେ ଦୁଃଖ ପ୍ରକାଶ କରିବ ନାହିଁ । କାରଣ ବାଲ୍ୟକାଳରୁ ମୁଁ ଦୁର୍ବଳକାୟ ଥିଲି । ବାର୍ଦ୍ଧକ୍ୟର ଯନ୍ତ୍ରଣା କେହି ଉପେକ୍ଷା କରିପାରେ ନାହିଁ । ମୁଁ ନିଜେ ଅନୁଭବରେ ଆଣିଛି । ତୋର ପିତାମହ ଅନ୍ତିମକାଳରେ ଦେହତ୍ୟାଗ କରିବାକୁ ବ୍ୟାକୁଳ ଥିଲେ । ମାତ୍ର କାହାରି ମାୟା ସେ ରଖିନଥିଲେ । ସର୍ବଦା ମୃତ୍ୟୁ ବରଣ କରିବାକୁ ବ୍ୟାକୁଳ ହୃଦୟରେ ନୀଳକଣ୍ଠଙ୍କୁ ଡ଼ାକୁଥିଲେ । ମୁଁ ବର୍ତ୍ତମାନ ଗୋଟିଏ ଶତାବ୍ଦୀରୁ ଅଧିକ ଭୋଗ କଲିଣି । ଏଣିକି ତୁମ୍ଭମାନଙ୍କୁ ଭଲରେ ରଖି ଚାଲିଗଲେ ନିଜକୁ ଭାଗ୍ୟବାନ ମନେ କରିବି ।**

ମୁଁ ବର୍ତ୍ତମାନ କାହାଠାରୁ କିଛି ଋଣ କରିନାହିଁ । ଯଦି ମୋର ମୃତ୍ୟୁ ପରେ କେହି ତୋତେ ମୁଁ ଧାର କରିଥିବା କଥା କହେ ତୁ ତାହା ଶ୍ରବଣ କରିବୁ ନାହିଁ ।

ବୋଉର ମୁହଁ ମରା ବନ୍ଦ ହେଲେ ସେ ଆଉ କିଛି ବର୍ଷ ରହିପାରେ । ଡ଼ାକ୍ତର ସନାତନ ରଥଙ୍କୁ କହି Operation ଯଥା ଶୀଘ୍ର କରେଇ ନେବୁ । ଟ୨୦୦/- ଖର୍ଚ୍ଚ ହେବ । ସେ ତାହାକୁ Minor Operation ବୋଲି କହିଛନ୍ତି । ଦୀର୍ଘ ୨୦ବର୍ଷ ମଧ୍ୟରେ ତା'ର ସେ ରୋଗରେ ପ୍ରାୟ ଏକ ହଜାର ଟଙ୍କା ଖର୍ଚ୍ଚ ହେଲାଣି ।

ଶେଷରେ କହୁଛି ଭାଇନାର ହାଇଡ୍ରୋସିଲ୍ ଅପରେସନ୍ କରାଇ ନେବୁ । ଇତି । ପିତା ।

•••

ତସ୍ମାଦଜ୍ଞାନସମ୍ଭୂତଂ,
ହୃତ୍‌ସ୍ଥଂ ଜ୍ଞାନାସିନାତ୍ମନଃ ।
ଛିତ୍ତ୍ୱୈନଂ ସଂଶୟଂ ଯୋଗ,
ମାତିଷ୍ଠୋତ୍ତିଷ୍ଠ ଭାରତ ॥

(ଚତୁର୍ଥୋଽଧ୍ୟାୟଃ - ଜ୍ଞାନଯୋଗ - ଶ୍ଳୋକ - ୪୨)

ଅଜ୍ଞାନ ଜାତ ସନ୍ଦେହକୁ ।
ନାଶ ଧରି ଜ୍ଞାନ ଖଡ଼୍‌ଗକୁ ॥



ନିଷ୍କାମ କର୍ମ ଯୋଗେ ଧ୍ୟାନ ।
କର ସ୍ୱଧର୍ମ କର୍ମମାନ ॥

ଏ ମାୟା ମୋହ ଦିଅ ଛାଡ଼ି ।
ରଥେ ତୁ ବସ ଧନୁ ଭିଡ଼ି ॥

ଏବେ ତୁ ଉଠି ଯୁଦ୍ଧ କର ।
କହଇ ବାସୁଦେବ ଛାର ॥

# ମୂଲ୍ୟବୋଧ : ସତ୍ୟ କଥନ

ନ ମିଥ୍ୟା ପାତକଂ ପରଂ । ଭଗବାନ ସତ୍ୟ ଶିବ ସୁନ୍ଦର ନାମରେ ଅଭିହିତ । ତଥାପି ସ୍ଥଳ ବିଶେଷରେ ମିଥ୍ୟାର ଆଶ୍ରୟ ନେବାକୁ ପଡେ । ବିଶେଷତଃ ରାଜ କର୍ମଚାରୀ ମାନେ ଅନେକ ସମୟରେ ମିଥ୍ୟାର ଆଶ୍ରୟ ନେଇ ଥାଆନ୍ତି । କିନ୍ତୁ ମିଥ୍ୟା ବର୍ଜନୀୟ । ଧର୍ମ ନନ୍ଦନ ଯୁଧିଷ୍ଠିରଙ୍କୁ ମଧ ମିଥ୍ୟା କହିବାକୁ ପଡିଥିଲା । ଅଶ୍ୱତ୍ଥମା ହତଃ ଇତି ନରେ ବା ଗୁଞ୍ଜରେ । ତେଣୁ ସେ ସ୍ୱଦେହରେ ସୁରପୁରକୁ ଯାଇ ମଧ ନରକ ଦର୍ଶନ କରିଥିଲେ ।

ମନୁଷ୍ୟ ସତ୍ୟପଥରେ ରହି ନିଜର କର୍ତ୍ତବ୍ୟ ସମ୍ପାଦନ କଲେ ସେ ଜୀବନରେ ଦୁଃଖ ଭୋଗ କରେ ନାହିଁ । ଅନେକ ଈର୍ଷାପରାୟଣ ବ୍ୟକ୍ତି ତାହାର ଅନିଷ୍ଟ ସାଧନ କରିବାକୁ ଚେଷ୍ଟା କରି ଶେଷରେ ବିଫଳ ମନୋରଥ ହୁଅନ୍ତି । ସତ୍ୟବାଦୀ ଲୋକକୁ ଭଗବାନ ସାହାଯ୍ୟ କରନ୍ତି । ନ ସତ୍ୟାତ୍ ପରଂ ଧର୍ମ ।

ସତ୍ୟ ଜୀବନରେ ପ୍ରତିଫଳିତ ହେଲେ ମଣିଷ ଆଲୋକୋନ୍ମୁଖୀ ହୋଇଥାଏ ।

"ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ନ ବ୍ରୂୟାତ୍ ସତ୍ୟମପ୍ରିୟମ୍ ।"

ସବୁବେଳେ ସତ୍ୟ କଥା କହିବୁ କିନ୍ତୁ ଅପ୍ରିୟ ସତ୍ୟ କହିବା ଉଚିତ ନୁହେଁ ।

•••

ଯୋଗଯୁକ୍ତୋବିଶୁଦ୍ଧାତ୍ମା,
ବିଜିତାତ୍ମା ଜିତେନ୍ଦ୍ରିୟଃ ।
ସର୍ବଭୂତାତ୍ମଭୂତାତ୍ମା,
କୁର୍ବନ୍ନପି ନ ଲିପ୍ୟତେ ॥

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୭)

ଯା ଚିତ୍ତ ଶୁଦ୍ଧପୂତ ହୋଇ ।
ଦେହ ଇନ୍ଦ୍ରିୟବଶେ ଥାଇ ॥
ଆପଣା ଆତ୍ମା ସମାନରେ ।
ସର୍ବ ଆତ୍ମାକୁ ଯେ ବିଚାରେ ॥
ରଜ ତମାଦି ଗୁଣ ଶୂନ୍ୟ ।
ନିଷ୍କାମେ ନିର୍ମଳ ଯା ମନ ॥



ମୁଁ କରେ ଆତ୍ମା ଅଭିମାନ ।
ନାଶିଛି ଏହି ଭାବମାନ ॥
ପିମ୍ପୁଡ଼ିଠାରୁ ବିଧିଯାଏ ।
ଚିତ୍ତେ ସମାନ ମଣୁଥାଏ ॥
ଏ ଜ୍ଞାନଲୋକ ଶିକ୍ଷା ପାଇଁ ।
କିବା ତା ଦେହ ରକ୍ଷାପାଇଁ ॥
ଯଦି ବା କର୍ମ ଯୋଗ କରେ ।
ନ ପଡ଼େ ସେ କର୍ମଯୋଗରେ ॥
କର୍ମ ତାକୁ ନ ଗ୍ରାସି ପାରି ।
ହେଳେ ତରଇ ଭବବାରି ॥

# ସତ୍ ସଂସର୍ଗ

ସଂସାରରେ ସମସ୍ତ ପଦାର୍ଥ ସୁଲଭ, କିନ୍ତୁ ସାଧୁସହବାସ ଦୁର୍ଲଭ ।

An educated foe is better than a false friend.

ଅନେକ ଲୋକ ଦେଖିବାକୁ ମିଳନ୍ତି ଯେଉଁମାନେ ସେମାନଙ୍କର ସ୍ୱାର୍ଥ ସିଦ୍ଧି ପାଇଁ ପ୍ରତ୍ୟକ୍ଷରେ ମଧୁର କଥା କହି ପରୋକ୍ଷରେ ଅନିଷ୍ଟ ସାଧନ କରିଥାଆନ୍ତି । ମନୁଷ୍ୟକୁ ଚିହ୍ନିବା କଷ୍ଟକର । ବିଷକୁମ୍ଭ ପୟୋମୁଖ ସଦୃଶ ସେପରି ବନ୍ଧୁଙ୍କ ଠାରୁ ଦୂରରେ ରହିବା ଉଚିତ୍ । ଦୁଷ୍ଟ ଲୋକ ମାନଙ୍କ ସହିତ ଶତ୍ରୁତା ମଧ୍ୟ କରିବା ଅନୁଚିତ । "ଦୁର୍ଜନେ ସମଂ ମୈତ୍ରୀଂ ବୈରଂଚାପି ନକାରୟେତ୍ ।" ସମସ୍ତଙ୍କୁ ମଧୁର କଥା କହିବ କିନ୍ତୁ ଲୋକର ଚରିତ୍ର ଉତ୍ତମ ରୂପେ ଜାଣିବାପରେ ତାହାକୁ ନିଜର ବୋଲି ମନେକରିବ । କଥାରେ ଅଛି-କଳାମୁଣ୍ଡିଆକୁ ଚିହ୍ନିବା କଷ୍ଟକର । "ବିଶ୍ୱାସୋ ନୈବ କର୍ତ୍ତବ୍ୟଃ ସ୍ତ୍ରୀଷୁ, ରାଜକୁଳେଷୁଚ ।" ସ୍ୱାର୍ଥପର ଲୋକକୁ ବନ୍ଧୁ ରୂପେ ବରଣ କରିବା ଅନୁଚିତ୍ । ଯଦି ଜଗତରେ କେହି ବନ୍ଧୁ ଥାଆନ୍ତି ତାହାହେଲେ କେବଳ ଜନକ ଓ ଜନନୀ । ସେମାନେ ସର୍ବଦା ପୁତ୍ର କନ୍ୟାଙ୍କର ମଙ୍ଗଳ କାମନା କରନ୍ତି । ଯେଉଁ ସ୍ତ୍ରୀ ସ୍ୱେଚ୍ଛାଚାରିଣୀ ସେପରି ସ୍ତ୍ରୀକୁ ବିଶ୍ୱାସ କରିବା ଉଚିତ୍ ନୁହେଁ । ଆଜି କାଲି ସଂସାରରେ ପ୍ରକୃତ ହିତକାମୀ ବିରଳ । କାହାରି ଆଗରେ ନିଜର ଅନ୍ତର କଥା ବ୍ୟକ୍ତ କରିବ ନାହିଁ । ମନୁଷ୍ୟକୁ ଚିହ୍ନିବା ସବୁଠାରୁ କଷ୍ଟକର ।

"ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେପ୍ରିୟବାଦିନମ୍
ବର୍ଜ୍ଜୟେତ୍ତାଦୃଶଂ ମିତ୍ରଂ ବିଷକୁମ୍ଭଂ ପୟୋମୁଖମ୍ ।"

ଅନ୍ୱୟ : ଯେଉଁ ମିତ୍ର ଦୃଷ୍ଟିପଥର ଅନ୍ତରାଳରେ ରହି କାର୍ଯ୍ୟନଷ୍ଟ କରୁଥାଏ ଓ ପ୍ରତ୍ୟକ୍ଷରେ ମଧୁର ବଚନ କୁହେ, ସେଭଳି ବନ୍ଧୁ ବିଷପୂର୍ଣ୍ଣ ମାଠିଆ ମୁହଁରେ ଅମୃତ ଥିବା ସଦୃଶ । ଏଭଳି ବନ୍ଧୁକୁ ସର୍ବାଦୌ ତ୍ୟାଗ କରିବା ଉଚିତ୍ ।

ବ୍ରହ୍ମଣ୍ୟାଧାୟ କର୍ମାଣି,
ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ ।
ଲିପ୍ୟତେ ନ ସ ପାପେନ,
ପଦ୍ମପତ୍ରମିବାମ୍ଭସା ॥
କାୟେନ ମନସା ବୁଦ୍ଧ୍ୟା,
କେବଳୈରିନ୍ଦ୍ରିୟୈରପି ।
ଯୋଗିନଃ କର୍ମ କୁର୍ବନ୍ତି,
ସଙ୍ଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ ॥

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୧୦ ଓ ୧୧)

ପଦ୍ମପତ୍ରରେ ଯେସ୍ନେ ଜଳ ।
ଲିପ୍ତ ନ ହୁଏ ଚିରକାଳ ॥



ଫଳ କାମନା ତ୍ୟାଗ କରି ।
ଆତ୍ମାଭିମାନ ପରିହରି ॥
ଈଶ୍ୱରେ କରି ସମର୍ପଣ ।
ଯେ କର୍ମଯୋଗେ ଦିଏ ମନ ॥
ନ ଲାଗେ ମାୟା ପାପୁ ତରେ ।
ମୁକତି ଲଭଇ ଅଚିରେ ॥
ଯୋଗୀଏ ଚିତ୍ତ ଶୁଦ୍ଧ ପାଇଁ ।
ଫଳ କାମନା ଛାଡ଼ି ଦେଇ ॥
ଶ୍ରବଣ କୀର୍ତ୍ତନ ଭଜନ ।
ତୀର୍ଥାଦି ଦେବ ଦରଶନ ॥
ପବିତ୍ର ଫଳ ସେ ନ କରି ।
ଧ୍ୟାନ ଧାରଣା ଚିତ୍ତେ ଧରି ॥

# ଈଶ୍ୱର ବିଶ୍ୱାସ

ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କ ଈଶ୍ୱର ବିଶ୍ୱାସ ଅଛି । ଈଶ୍ୱର ବିଶ୍ୱାସ ଥିଲେ ଲୋକ ଅନ୍ୟର ଉପକାର ସାଧନରେ ବ୍ରତୀ ରହେ । ତାର ଧ୍ରୁବ ଧାରଣା ଆସେ ସମସ୍ତେ ଏକ ଈଶ୍ୱରଙ୍କର ସନ୍ତାନ । ଈଶ୍ୱର ସେବା ମାନବ ସେବାର ନାମାନ୍ତର ମାତ୍ର । ମହାତ୍ମାଗାନ୍ଧୀ, ତାଙ୍କର ଜୀବନ କାଳ ମଧ୍ୟରେ ଜଗନ୍ନାଥ ଦର୍ଶନ କରିନଥିଲେ । ଈଶ୍ୱର ଅନନ୍ତ, ଅଦୃଷ୍ଟ, ଅବ୍ୟକ୍ତ ଓ ସନାତନ । ଈଶ୍ୱର ବିଶ୍ୱାସ ନରହିଲେ ମନୁଷ୍ୟର ଭାବୀ ଉନ୍ନତି ଅସମ୍ଭବ । ହିନ୍ଦୁମାନେ ସାକାର ଉପାସନା କରନ୍ତି । ଏହା କୁସଂସ୍କାର ନୁହେଁ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ -

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।"

ଗୀତା ଜ୍ଞାନଯୋଗ - ଶ୍ଳୋକ -୭

**ଅନ୍ୱୟ :** ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ - ଯେତେବେଳେ ଧର୍ମର ହାନି ହୁଏ ଓ ଅଧର୍ମର ପ୍ରାଦୁର୍ଭାବ ହୁଏ ଈଶ୍ୱର ସେହି ସମୟରେ ଆବିର୍ଭୂତ ହୋଇଥାନ୍ତି ।

"ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଜ୍ଞାନ ଯୋଗ - ଶ୍ଳୋକ - ୮

**ଅନ୍ୱୟ :** ସ୍ୱଧର୍ମପରାୟଣ ସାଧୁମାନଙ୍କ ରକ୍ଷା ନିମିତ୍ତ ଦୁର୍ବୃତ୍ତ ଓ ପାପୀମାନଙ୍କର ବିନାଶ ନିମନ୍ତେ ମୁଁ ଯୁଗେ ଯୁଗେ ଧରାବକ୍ଷରେ ଅବତରିତ ହୁଏ ।

ତେଣୁ ପିତୁଳା ଉପାସନା ଅଯୌକ୍ତିକ ନୁହେଁ । ବୁଦ୍ଧ ଦେବ ତାଙ୍କର ଶିଷ୍ୟ ଆନନ୍ଦଙ୍କୁ କହିଥିଲେ "ଈଶ୍ୱରଙ୍କ ସମ୍ବନ୍ଧରେ ଆଲୋଚ଼ନାକରିବା ଉଚିତ୍ ନୁହେଁ । ଏହି ଈଶ୍ୱର ଆଲୋଚ଼ନା ଦ୍ୱାରା ପୃଥିବୀରେ

ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା,
ଶାନ୍ତିମାପ୍ନୋତି ନୈଷ୍ଠିକୀଂ ।
ଅଯୁକ୍ତଃ କାମକାରେଣ,
ଫଳେ ସକ୍ତୋନିବଧ୍ୟତେ ॥

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୧୨)

ଈଶ୍ୱର ପ୍ରୀତି ଏ ଅଟଇ ।
ଏଥିରୁ ଭକ୍ତି ପ୍ରକଟଇ ॥
ଭକ୍ତିରେ ହୋଇଲେ ପ୍ରବୃତ୍ତି ।
ପ୍ରବୃତ୍ତି ହୁଅଇ ବିକୃତି ॥



ମନୁ ମଳିନ ଭାବ ଯାଏ ।
ଏ କର୍ମେ ତାର ମୁକ୍ତି ହୁଏ ॥
ନିଷ୍କାମୀ କର୍ମୀ ଯୋଗୀଗଣ ।
ଈଶ୍ୱରେ ଆତ୍ମା ସମର୍ପଣ ॥
ଏକାଗ୍ରତାରେ ଶାନ୍ତି ପାନ୍ତି ।
ମୋକ୍ଷପଦକୁ ସେ ଲଭନ୍ତି ॥
ଯେ ଯୁକ୍ତ ଫଳକାମୀ ନର ।
ଆସକ୍ତି ଫଳରେ ତାଙ୍କର ॥
ବୃଥାରେ ପରିଶ୍ରମ କରେ ।
ଭବବନ୍ଧନେ ଶେଷେ ମରେ ॥

ଧର୍ମାନ୍ତର ଜାତ ହେବ ଓ ସଂଘର୍ଷ ସୃଷ୍ଟି ହେବ। ତେଣୁ ସତ୍‌କର୍ମ କର, ତଦ୍ୱାରା ତୁମ୍ଭର ଜନ୍ମାନ୍ତର ହେବ ନାହିଁ।" ସେ ରାଜବଂଶରେ ଜନ୍ମ ଗ୍ରହଣ କରି ଯୌବନରେ ଗୃହ ତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ କରିଥିଲେ। ତପସ୍ୟାରତ ରହି ସେ ଚାରିଗୋଟି ସତ୍ୟ ଲାଭ କରିଥିଲେ ।

୧. ମନୁଷ୍ୟର ଜୀବନ ଦୁଃଖମୟ ।

୨. ଦୁଃଖର କାରଣ କାମନା ।

୩. କାମନାର ବିନାଶରେ ଦୁଃଖର ବିନାଶ ।

୪. ବିଶୁଦ୍ଧ ନୀତିମୟ ଜୀବନ ଯାପନ ଦ୍ୱାରା କାମନାର ବିନାଶ ଓ ନିର୍ବାଣ

ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି-

"ନିୟତଂ କୁରୁ କର୍ମ ତ୍ୱଂ
କର୍ମ ଜ୍ୟାୟୋ ହ୍ୟା କର୍ମଣଃ
ଶରୀର ଯାତ୍ରାପି ଚ
ତେନ ପ୍ରସିଦ୍ଧେଦକର୍ମଣଃ।"

ଗୀତା - କର୍ମଯୋଗ - ଶ୍ଲୋକ - ୮

**ଅନ୍ୱୟ :** ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୁରୁକ୍ଷେତ୍ରରେ ବୁଝାଇଥିଲେ - ତୁମେ ଇନ୍ଦ୍ରିୟମାନଙ୍କୁ ସଂଯମ କରି ନିୟମିତ କର୍ମ କର କାହିଁକିନା କର୍ମ ନକରିବା ଅପେକ୍ଷା କର୍ମ କରିବା ଉତ୍ତମ। ସବୁ ପ୍ରକାର କର୍ମ ପରିତ୍ୟାଗ କଲେ ତୁମର ଶରୀର ଯାତ୍ରା ନିର୍ବାହ ହେବନାହିଁ।

ତେଣୁ ମନୁଷ୍ୟ ସର୍ବଦା କର୍ମରତ ହେବା ବିଧେୟ। ଫଳ ଭଗବାନଙ୍କ ହସ୍ତରେ। କର୍ମ କହିଲେ ସତ୍‌କର୍ମକୁ ବୁଝାଯାଏ ।

ପ୍ରତ୍ୟେକ ଲୋକର ଈଶ୍ୱରୋପାସନା ପରମ କର୍ତ୍ତବ୍ୟ। ସ୍ତ୍ରୀ ହେଉ ବା ପୁରୁଷ ହେଉ ପ୍ରତ୍ୟହ ସ୍ନାନ

ସର୍ବକର୍ମାଣି ମନସା,
ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀ।
ନବଦ୍ୱାରେ ପୁରେ ଦେହୀ,
ନୈବକୁର୍ବନ୍ନ କାରୟନ୍।।
ନ କର୍ତ୍ତୃତ୍ୱଂ ନ କର୍ମାଣି,
ଲୋକସ୍ୟ ସୃଜତି ପ୍ରଭୁଃ।
ନ କର୍ମଫଳସଂଯୋଗଂ,
ସ୍ୱଭାବସ୍ତୁ ପ୍ରବର୍ତ୍ତତେ।।

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଲୋକ - ୧୩ ଓ ୧୪)



ଯେ ପ୍ରାଣୀ ଇନ୍ଦ୍ରିୟ ଜିଣଇ।
ସର୍ବ କର୍ମକୁ ସେ ତେଜଇ।।
ଯେହ୍ନେ ପଥିକ ବାଟେ ଥାଇ।
ସେ ସ୍ଥାନ ଶୁଦ୍ଧ କରେ ନାହିଁ।।
ଦେହୀଏ ନବଦ୍ୱାର ଘରେ।
ଅସ୍ନେହେ ସୁଖେ ବାସ କରେ।।
କର୍ତ୍ତବ୍ୟ କର୍ମ କର୍ମଫଳ।
ରଚି ନାହାନ୍ତି ଆଦିମୂଳ।।
ସ୍ୱଭାବ ବଶେ ପ୍ରାଣୀଗଣେ।
ଦେହ ଆଦିକି କର୍ତ୍ତା ମଣେ।।
କେ ଅବା ସ୍ୱଭାବ ବଶରେ।
ଜୀବ ଆତ୍ମାକୁ ଭିନ୍ନ ଧରେ।।

ପରେ କିଛି ସମୟ ପାଇଁ ଦେବାରାଧନା କରିବା ବିଧେୟ । ତା'ଫଳରେ ହୃଦୟରେ ଆନନ୍ଦ ଓ ପବିତ୍ର ଭାବ ଜାଗ୍ରତ ହୁଏ । ମୋ ଜୀବନ କାଳ ମଧ୍ୟରେ ମୁଁ ଅନେକ ଉଚ୍ଚ ପଦସ୍ଥ ରାଜକର୍ମଚାରୀଙ୍କୁ ଦେଖିଛି । ସେମାନେ ପ୍ରତ୍ୟହ ଦେବୋପାସନା କରନ୍ତି । ବ୍ରାହ୍ମଣର ଏହା ହେଲା ପରମ କର୍ତ୍ତବ୍ୟ । ହିନ୍ଦୁ ସମାଜରେ ଇତର ଜାତିମାନଙ୍କ ମଧ୍ୟରେ ବ୍ରାହ୍ମଣର ସ୍ଥାନ କେବଳ ଦେବାରାଧନା କରେ ବୋଲି ବ୍ରାହ୍ମଣ ପୂଜ୍ୟ ଓ ନମସ୍ୟ ।

ହିନ୍ଦୁ ଶାସ୍ତ୍ର ମତରେ ଜନ୍ମାନ୍ତର ବାଦ ରହିଛି । ବ୍ରାହ୍ମଣ ତାର ପରବର୍ତ୍ତୀ ଜୀବନରେ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥାଏ । ବ୍ରାହ୍ମଣ ହୋଇ ଯଦି ଘୃଣ୍ୟ କାର୍ଯ୍ୟ କରେ ତାହା ହେଲେ ସେ ନୀଚ୍ ବର୍ଣ୍ଣରେ ଜାତ ହୁଏ । କେତେକ ଜନ୍ମ ପରେ ବ୍ରାହ୍ମଣର ପୁନର୍ଜନ୍ମ ହୁଏ ନାହିଁ । ପ୍ରଜାପତି ମୁଖ ନିଃସୃତ ବାଣୀ-"ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ" । କେବଳ ଉପବୀତ ଧାରଣ କଲେ ବ୍ରାହ୍ମଣ ବ୍ରାହ୍ମଣ ହୁଏ ନାହିଁ । "ବ୍ରହ୍ମ ଜାନାତି ଇତି ବ୍ରାହ୍ମଣଃ"। ବ୍ରାହ୍ମଣ ସଦାଚାରୀ ଓ ଈଶ୍ୱର ବିଶ୍ୱାସୀ ହେବା ଉଚିତ୍ । ଶୁଦ୍ର ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ ଲୋକ ଦେବାରାଧନା ବଳରେ ପରବର୍ତ୍ତୀ ଜୀବନରେ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରେ ।

ଅସ୍ପୃଶ୍ୟତା ଅବଶ୍ୟ ସମାଜର କଳଙ୍କ ଓ କୁସଂସ୍କାର । ପୂର୍ବେ ବ୍ରାହ୍ମଣ ମାନେ ଶୁଦ୍ର ମାନଙ୍କୁ ଛୁଇଁଲେ ସ୍ନାନ କରୁଥିଲେ । ଏପରିକି ଭୋଜନ ସମୟରେ କୌଣସି ବ୍ରାହ୍ମଣେତର ଜାତିର ଲୋକର କଥା ଶୁଣିଲେ ଖାଇବା ସ୍ଥାନରୁ ଉଠି ଯାଉଥିଲେ । ଏହା କୁସଂସ୍କାର । ତେଣୁ ମହାତ୍ମାଗାନ୍ଧୀ ଅସ୍ପୃଶ୍ୟତା ନିବାରଣ ପ୍ରଥା ସମାଜରେ ଚଳାଇଥିଲେ ।

ପ୍ରତ୍ୟେକ ଭୋଜ୍ୟ ପଦାର୍ଥ ପ୍ରଥମେ ଦେବତାଙ୍କୁ ଅର୍ପଣ କରିବା ପରେ ଭୋଜନ କରିବା ଉଚିତ୍ । ପାଶ୍ଚାତ୍ୟ ଶିକ୍ଷାଭିମାନୀ ଲୋକମାନଙ୍କ ମଧ୍ୟରେ ଏହା କ୍ୱଚିତ୍ ଦେଖାଯାଏ ।

ଜ୍ଞାନେନ ତୁ ତଦଜ୍ଞାନଂ,
ଯେଷାଂ ନାଶିତ-ମାତ୍ମନଃ ।
ତେଷାମାଦିତ୍ୟବଜ୍‌ଜ୍ଞାନଂ,
ପ୍ରକାଶୟତି ତତ୍ପରଂ ॥

(ପଞ୍ଚମୋଽଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୧୬)



ଯେଉଁମାନଙ୍କ ଆତ୍ମଜ୍ଞାନ ।
ବିନାଶ କରଇ ଅଜ୍ଞାନ ॥
ଯେ ଆତ୍ମଜ୍ଞାନ ଶୁଦ୍ଧ ଭାବ ।
ବ୍ରହ୍ମ ସ୍ୱରୂପ ପାଏ ଠାବ ॥

ଯେପରି ସୂର୍ଯ୍ୟ ରଶ୍ମି ଦେଇ ।
ଜଳୀୟ ବାଷ୍ପକୁ ସେ ନେଇ ॥
ମେଘ ଯେ ହୁଅଇ ସୃଜନ ।
ଢ଼ାଙ୍କଇ ସୂର୍ଯ୍ୟଙ୍କୁ ବହନ ॥
ସେପରି ପରମାତ୍ମା ଜାଣ ।
ମାୟାରେ ହୁଅଇ ଆଚ୍ଛନ୍ନ ॥
ମାୟା ଅଜ୍ଞାନ କର୍ମ ଜାଣ ।
ଜ୍ଞାନରେ କର୍ମର ବିଲୀନ ॥
କର୍ମ ଛାଡ଼ିଲେ ଯାଏ ତତ୍ତ୍ୱ ।
ମୁକତି କାହାର ନିଶ୍ଚିତ ॥

ଧୂମପାନ, ମଦ୍ୟପାନ ପ୍ରଭୃତି ବ୍ରାହ୍ମଣ ପକ୍ଷରେ କଳଙ୍କ । ସ୍ୱାସ୍ଥ୍ୟ ଦୃଷ୍ଟିରୁ ମତ୍ସ୍ୟ ମାଂସ ବର୍ଜନୀୟ ନୁହେଁ । ଚଳୁ, ସନ୍ଧ୍ୟା, ବ୍ରାହ୍ମଣର ନିତ୍ୟ ନୈମିତ୍ତିକ କାର୍ଯ୍ୟ । ଗାୟତ୍ରୀ ମନ୍ତ୍ର ପ୍ରତ୍ୟହ ଜପ କରିବା ଉଚିତ୍ । "ଓଁ ଭୂଃ ର୍ଭୁବଃ ସ୍ୱଃ ତତ୍ ସବିତୁ ର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ୟୋନଃ ପ୍ରଚୋଦୟାତ୍"- ଏହାହିଁ ହେଲା ଗାୟତ୍ରୀ ମନ୍ତ୍ର । ପ୍ରତ୍ୟହ ଅତିକମ୍‌ରେ ୧୦ ଥର ଏହି ମନ୍ତ୍ର ପାଠ କରିବା ବ୍ରାହ୍ମଣର କର୍ତ୍ତବ୍ୟ । **ପ୍ରାଣାୟମ ମଧ୍ୟ କରିବା ଉଚିତ୍ ।**

ଏକତ୍ର ପାନ ଭୋଜନ ବୈଜ୍ଞାନିକ କାରଣରୁ ନିଷିଦ୍ଧ । କେବଳ ମହାପ୍ରସାଦ ସେବାରେ ଏହା ଧର୍ତ୍ତବ୍ୟ ନୁହେଁ । ଜୀବ ହିଂସା ବ୍ରାହ୍ମଣର କର୍ତ୍ତବ୍ୟ ନୁହେଁ । ବ୍ରାହ୍ମଣ ତା'ର ଅନ୍ତର ନିର୍ମଳ ରଖି ଯଦି କିଛି ସମୟ ଈଶ୍ୱରୋପାସନା କରେ ତାହାହେଲେ ତାର ହୃଦୟରେ ପବିତ୍ର ଭାବ ଜାତ ହୁଏ । ଏହାଦ୍ୱାରା ସମୟର ଅପଚୟ ହୁଏ ନାହିଁ । ଜାତି ଧର୍ମ ନିର୍ବିଶେଷରେ ଭଗବତ୍ ଆରାଧନା ସମସ୍ତଙ୍କର ପ୍ରଧାନ କର୍ତ୍ତବ୍ୟ । ଯେଉଁ ବ୍ୟକ୍ତି ନିଷ୍ପାପର ହୋଇ ବ୍ୟାକୁଳ ଅନ୍ତରରେ ଭଗବାନଙ୍କୁ ଆରାଧନା କରେ ତା'ର ଅଭିଷ୍ଟ କର୍ମ ଫଳପ୍ରସୂ ହୁଏ । ଦେବତାରାଧନା ଉପେକ୍ଷଣୀୟ ନୁହେଁ । ଭଗବାନ ଭକ୍ତର ଅଧୀନ । ସେ ଭକ୍ତର ଡାକ ଶୁଣନ୍ତି । ଏହା କପୋଳକଳ୍ପିତ ନୁହେ ।

ତେଣୁ ଈଶ୍ୱର ସେବା ସର୍ବାଦୌ କରଣୀୟ ।

●●●

ତଦ୍‌ବୁଦ୍ଧୟସ୍ତଦାତ୍ମାନ,
ସ୍ତନ୍ନିଷ୍ଠାସ୍ତତ୍ପରାୟଣାଃ ।
ଗଛନ୍ତ୍ୟ ପୁନରାବୃତ୍ତିଂ,
ଜ୍ଞାନନିର୍ଦ୍ଧୂତକଳ୍ମଷାଃ ॥
ବିଦ୍ୟାବିନୟସମ୍ପନ୍ନେ,
ବ୍ରାହ୍ମଣେ ଗବି ହସ୍ତିନି ॥
ଶୁନି ଚୈବ ଶ୍ୱପାକେ ଚ,
ପଣ୍ଡିତାଃ ସମଦର୍ଶିନଃ ॥

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୧୭ଓ୧୮)

ଯାହାର ଈଶ୍ୱରଙ୍କଠାରେ ।
ଦୃଢ଼ ବୁଦ୍ଧି ଯତ୍ନ ଭକ୍ତିରେ ॥
ଆବର ନିଷ୍ଠା ଈଶ୍ୱରରେ ।
ରହଇ ତାହାଙ୍କ ଆଶ୍ରାରେ ॥



ଏ ଜ୍ଞାନେ ପାପ ଯାଏ ନାଶ ।
ମୋକ୍ଷ ପଦରେ ତାର ବାସ ॥
ବିଦ୍ୱାନ ବିନୟୀ ବ୍ରାହ୍ମଣ ।
ଗୋରୁ ଚଣ୍ଡାଳ ହସ୍ତୀ ଶ୍ୱାନ ॥
ଏ ସର୍ବଜ୍ଞାନୀ ସମ ଦେଖେ ।
କାହାକୁ ପ୍ରଭେଦ ନ ରଖେ ॥
ସମୁଦ୍ର ହ୍ରଦ ନଦ ନଦୀ ।
ତଡ଼ାଗ କୂପ ବାମ୍ପୀ ଆଦି ॥
ପଡ଼ିଲେ ଚନ୍ଦ୍ରର କିରଣ ।
ଭିନ୍ନ ତା ନୁହେଁ ଏକ ଜାଣ ॥
ଜ୍ଞାନୀ ସେପରି ସର୍ବ ଜୀବେ ।
ସମାନ ଦେଖେ ଏହି ଭବେ ॥
ଅଜ୍ଞାନୀ ତାହା ନ ଦେଖଇ ।
ମୁକତି ପାଇବ ସେ କାହିଁ ॥

# ଧର୍ମ

ଧର୍ମ କହିଲେ କୌଣସି ପାର୍ଥିବ ପଦାର୍ଥକୁ ବୁଝାଏ ନାହିଁ । ଯାହା ମନୁଷ୍ୟକୁ ଧାରଣ କରି ରଖେ ତାହାହିଁ ଧର୍ମ । ଧର୍ମର ଅନ୍ୟ ନାମ କର୍ତ୍ତବ୍ୟ । ଯାହା କରଣୀୟ ତାହା ଧର୍ମ । ହର ମସ୍ତକରେ ସଲିଳ ଢ଼ାଳି, ପୂଜା ଉପାସନା କରି ଯଦି ମନୁଷ୍ୟ ଅନ୍ୟର ଅନିଷ୍ଟ ସାଧନ କରେ, ତାହାକୁ ଧାର୍ମିକ କୁହାଯାଏ ନାହିଁ । ଈଶ୍ୱର ସେବା ଯେପରି ଶ୍ରେଷ୍ଠ ଧର୍ମ ସେହିପରି ପରୋପକାରିତା, ଦୟା, କ୍ଷମା, ଭକ୍ତି, ପ୍ରୀତି, ସୌଜନ୍ୟ ଓ ସହିଷ୍ଣୁତା ମଧ୍ୟ ଧର୍ମର ଅନ୍ତର୍ଗତ । ପରୋପକାର ହେଲା ମାନବର ଶ୍ରେଷ୍ଠ ଧର୍ମ । ସହିଷ୍ଣୁ ଲୋକ କେବେ ହେଲେ ଦୁଃଖ ଭୋଗ କରେ ନାହିଁ । ମହାତ୍ମାଗାନ୍ଧୀ ଧର୍ମନିରପେକ୍ଷତାର ପକ୍ଷପାତୀ ଥିଲେ । ସେ ଚାଣ୍ଡାଳ ହସ୍ତରୁ ଖାଦ୍ୟ ଗ୍ରହଣ କରୁଥିଲେ । କିନ୍ତୁ ତାଙ୍କର 'ବସୁଧୈବ କୁଟୁମ୍ବକମ୍' ଏ ଭାବ ଥିଲା । ଅନ୍ୟ ଧର୍ମକୁ ଘୃଣା କରିବା ଉଚିତ୍ ନୁହେଁ । ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବା ଉଚିତ୍ । କିନ୍ତୁ ନିଜ ଧର୍ମ ଛାଡି ଅନ୍ୟ ଧର୍ମ ଗ୍ରହଣ କରିବା ଉଚିତ୍ ନୁହେଁ ।

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ

ଗୀତା - କର୍ମଯୋଗ - ଶ୍ଳୋକ - ୩୫

**ଅନ୍ୱୟ :** ନିଜର କୁଳଧର୍ମ ଦୋଷଯୁକ୍ତ ହେଲେ ମଧ୍ୟ ନିଜ କୁଳ ଧର୍ମରେ ମୃତ୍ୟୁଲାଭ କରିବା ବରଂ ଶ୍ରେୟ । ପରର କୁଳଧର୍ମ ଶ୍ରେଷ୍ଠ ହେଲେ ମଧ୍ୟ ତାହା ଗ୍ରହଣ କରିବା ଦୋଷଯୁକ୍ତ ଅଟେ ।

ଧର୍ମ ନିରପେକ୍ଷତା ଅର୍ଥ ନୁହେଁ ଅନ୍ୟ ଧର୍ମାବଲମ୍ବୀ ପରିବାରରୁ କନ୍ୟା ଗ୍ରହଣ କରିବା । ମୁଁ ତାର ପକ୍ଷପାତୀ ନୁହେଁ । ଶୃଗାଳ ଶାବକ କେବେହେଲେ ସିଂହ ଶିଶୁ ହୋଇପାରେ ନାହିଁ । ମିଥ୍ୟା, ଦ୍ୱେଷ, ଈର୍ଷା, ପରଶ୍ରୀକାତରତା ଓ ପରନିନ୍ଦା ହେଲା ପାପ । ତେଣୁ ମନୁଷ୍ୟର ଯାହା ଶ୍ରେଷ୍ଠ କର୍ତ୍ତବ୍ୟ ତାହାହିଁ ଧର୍ମ । ଧର୍ମର ଅର୍ଥ ଅନେକ । କିନ୍ତୁ ତାହାର ପ୍ରଧାନ ଅର୍ଥ ହେଲା କର୍ତ୍ତବ୍ୟ ।

"ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାମ୍ ।"



ଇହୈବ ତୈର୍ଜିତଃ ସର୍ଗୋ,
ଯେଷାଂ ସାମ୍ୟେ ସ୍ଥିତଂ ମନଃ ।
ନିର୍ଦୋଷଂ ହି ସମଂ ବ୍ରହ୍ମ,
ତସ୍ମାତ୍ ବ୍ରହ୍ମଣି ତେ ସ୍ଥିତାଃ ।
ନ ପ୍ରହୃଷ୍ୟେତ୍ପ୍ରିୟଂ ପ୍ରାପ୍ୟ,
ନୋଦ୍ୱିଜେତ୍ପ୍ରାପ୍ୟ ଚାପ୍ରିୟଂ ।
ସ୍ଥିରବୁଦ୍ଧିରସଂମୂଢ଼ୋ,
ବ୍ରହ୍ମବିଦ୍ବ୍ରହ୍ମଣି ସ୍ଥିତଃ ॥

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୨୦)

ଯା ମନ ସମଭାବେ ଥାଇ ।
ସଂସାରେ ଜୟୀ ସେ ବୋଲାଇ ॥



ସମାନ ଜ୍ଞାନ ଦୋଷ ହୀନ ।
ଏ ଭାବେ ପରଂବ୍ରହ୍ମେ ଲୀନ ॥
ଭେଦ ଭାବ ଯା ଚିତ୍ତେ ନାହିଁ ।
ସମାନ ଭାବ ଦୃଷ୍ଟି ଥାଇ ॥
ଏ ଭାବେ ଥିଲେ ସେହି ଜନ ।
ପରଂବ୍ରହ୍ମରେ ପାଏ ସ୍ଥାନ ॥
ଯେ ବ୍ରହ୍ମନିଷ୍ଠ ଜ୍ଞାନୀ ଧୀର ।
ବୁଦ୍ଧି ତାହାଙ୍କ ଅଟେ ସ୍ଥିର ॥
ଆତ୍ମାଭିମାନ ଅହଙ୍କାର ।
ନ ଥାଏ ମନରେ ତାଙ୍କର ॥
ପ୍ରିୟ ପଦାର୍ଥେ ହର୍ଷ ନୁହେଁ ।
ଅପ୍ରିୟେ ଦୁଃଖିତ ସେ ନୋହେ ॥

# ଗୁରୁ ଭକ୍ତି

ଗୁରୁ ବୋଲି କହିଲେ ଯେଉଁମାନେ ବୟୋବୃଦ୍ଧ, ନମସ୍ୟ ସେମାନଙ୍କୁ ବୁଝାଯାଏ । କିନ୍ତୁ ଗୁରୁ ମାନଙ୍କ ମଧ୍ୟରେ ୬ ଜଣ ପ୍ରଧାନ । ପିତା, ମାତା, ଶ୍ୱଶୁର , ଶାଶୂ, ଶିକ୍ଷାଗୁରୁ ଓ ମନ୍ତ୍ର ଗୁରୁ ।

ପିତା ଧର୍ମଃ, ପିତା ସ୍ୱର୍ଗଃ ପିତାହି ପରମଂ ତପଃ
ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତାଃ ।

ଯେ ପିତୃସେବକ ଜୀବନରେ ପିତୃ ସେବାକରେ ତା'ର ଜୀବନ ଧନ୍ୟ । ଏହା ମୁଁ ଅନୁଭୂତିରେ ଆଣିଛି । ପିତା ପୁତ୍ରର ନୀରୋଗ ଦୀର୍ଘ ଜୀବନ କାମନା କରେ । ଅକୁଣ୍ଠିତ ଚିତ୍ତରେ ତାକୁ ଉପଯୁକ୍ତ ମନୁଷ୍ୟ କରି ଗଢ଼େ । ମାତା ପିତା ଠାରୁ ଅଧିକ ଆଦରଣୀୟା । ଦୀର୍ଘ ଦଶମାସ ଗର୍ଭରେ ଧାରଣ କରି ଶିଶୁର ଲାଳନ ପାଳନର ଦାୟିତ୍ୱ ବହନ କରେ । ତେଣୁ ଲୋକମାନେ ରୋଗାକ୍ରାନ୍ତ ହେଲେ ସେମାନଙ୍କ ମୁଖରେ 'ବୋଉଲୋ' ଶବ୍ଦ ଶୁଣାଯାଏ । ପିତା ଗୋଟିଏ ପିଣ୍ଡର ଅଧିକାରୀ କିନ୍ତୁ, ମାତା ୧୬ ପିଣ୍ଡର ଅଧିକାରିଣୀ । ସନ୍ତାନର ସର୍ବାଙ୍ଗୀନ ଉନ୍ନତି ପିତାମାତାଙ୍କ ଉପରେ ନିର୍ଭର କରେ । ପୁତ୍ର ପିତୃମାତୃ ସେବକ ନହେଲେ ମଧ୍ୟ ପିତାମାତା ପୁତ୍ରର ମଙ୍ଗଳ କାମନା କରନ୍ତି । ପିତା ପ୍ରତ୍ୟକ୍ଷ ଦେବତା ସଦୃଶ । ତେଣୁ ଅବିସ୍ମରଣୀୟ । ପିତା ମାତାଙ୍କର ନିନ୍ଦା ପୁତ୍ରକନ୍ୟା ସହ୍ୟ କରିପାରନ୍ତି ନାହିଁ ।

ପିତା ମାତାଙ୍କ ପରି ଶାଶୁ ଶ୍ୱଶୁର ମଧ୍ୟ ବରେଣ୍ୟ ଓ ପୂଜ୍ୟ । କନ୍ୟାଦାନ ଠାରୁ ବଳି ଶ୍ରେଷ୍ଠ ଦାନ ଆଉ ପୃଥିବୀରେ ନାହିଁ । ଶ୍ୱଶୁର ଜାମାତାକୁ ଦେବତା ରୂପେ ବରଣ କରି ବୟୋବୃଦ୍ଧ ତଥା ଜ୍ଞାନବୃଦ୍ଧ ହେଲେ ମଧ୍ୟ ଜାମାତାର ପଦଧୌତ

ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା,
ବିନ୍ଦତ୍ୟାତ୍ମନି ଯତ୍ସୁଖଂ ।
ସ ବ୍ରହ୍ମଯୋଗଯୁକ୍ତାତ୍ମା,
ସୁଖମକ୍ଷୟମଶ୍ନୁ ତେ ॥
ଯେ ହି ସଂସ୍ପର୍ଶଜା ଭୋଗା,
ଦୁଃଖଯୋନୟ ଏବ ତେ ।
ଆଦ୍ୟନ୍ତବନ୍ତଃ କୌନ୍ତେୟ,
ନ ତେଷୁ ରମତେ ବୁଧଃ ॥

(ପଞ୍ଚମୋଦ୍ଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୨୦ଓ୨୧)



ଯା ଚିତ୍ତ ବିଷୟାରେ ରତ ।
ସନ୍ତୋଷ ନୁହେ ତାର ଚିତ୍ତ ॥
ନିତ୍ୟ ସେ ନୂଆ ଲୋଡୁଥାଇ ।
ତାହାର ଶାନ୍ତି ଅବା କାହିଁ ॥
ସେ ବାହ୍ୟ ବିଷୟେ ଆସକ୍ତ ।
ନୋହିଣ ଆତ୍ମା ସୁଖ ମାତ୍ର ॥
ଚିନ୍ତଇ ମହା ସୁଖ ସେହି ।
ଅକ୍ଷୟ ମୁକ୍ତି ସେ ଲଭଇ ॥
ରୂପ ରସାଦି ବିଷୟରେ ।
ଯା ମନ ରସେ ନିରନ୍ତରେ ॥
ଏ ସବୁ ଦୁଃଖର କାରଣ ।
ଜ୍ଞାନୀ ନ ଦିଏ ଏଥି ମନ ॥
ଅନିତ୍ୟ ଏ ସୁଖ ଅଟଇ ।
ଅଜ୍ଞାନୀ ମୋହରେ ଭ୍ରମଇ ॥

କରନ୍ତି । ସେମାନେ ରକ୍ତ ସମ୍ପର୍କୀୟ । ନାତି ନାତୁଣୀଙ୍କର ଲାଳନ ପାଳନ ଦାୟିତ୍ୱ ବହନ କରନ୍ତି । ତେଣୁ ଶାଶୁ ଶ୍ୱଶୁର ପିତାମାତାଙ୍କ ପରି ନମସ୍ୟ ଓ ପୂଜ୍ୟ । ପିତା ମାତାଙ୍କ ପରି ସେମାନେ ମଧ୍ୟ ପିଣ୍ଡର ଅଧିକାରୀ ।

ଶିକ୍ଷାଗୁରୁ ଛାତ୍ରକୁ ଉପଯୁକ୍ତ ଶିକ୍ଷା ଦେଇ ତାହାକୁ ଉପଯୁକ୍ତ ମନୁଷ୍ୟ କରନ୍ତି । ତେଣୁ ଶିକ୍ଷକର ସ୍ଥାନ ଅତି ଉଚ୍ଚରେ । ଅର୍ଥ ଲିପ୍ସୁ ଶିକ୍ଷକ ଶିକ୍ଷକ ପଦବାଚ୍ୟ ନୁହେ, ତେଣୁ ଶିକ୍ଷକ ନମସ୍ୟ ଓ ପୂଜ୍ୟ ।

"ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁରୁନ୍ମୀଳିତଂ ଯେନ, ତସ୍ମୈ ଶ୍ରୀ ଗୁରବେ ନମଃ ।"

**ଅନ୍ୱୟ :** ଅଜ୍ଞାନରୂପକ ଅନ୍ଧକାରରେ ଜ୍ଞାନରୂପକ ଅଞ୍ଜନ ପ୍ରଲେପକାରୀ ତଥା ଦିବ୍ୟଦୃଷ୍ଟିଦାତା ସେହି ଶ୍ରୀଗୁରୁଙ୍କୁ ମୋର ପ୍ରଣିପାତ ।

ଦୀକ୍ଷାଗୁରୁ ଲୋକର କର୍ଣ୍ଣରେ ମନ୍ତ୍ର ଦାନ କରନ୍ତି । ମନୁଷ୍ୟ ମନ୍ତ୍ର ଗ୍ରହଣ କଲାପରେ ସେହି ମନ୍ତ୍ର ପ୍ରତ୍ୟହ ଜପକରି ଭଗବାନଙ୍କର ଆଶିଷ ଗ୍ରହଣ କରେ । ଯେଉଁ ବ୍ୟକ୍ତି ମନ୍ତ୍ର ଗ୍ରହଣ କରିନଥାଏ ସେ କୌଣସି ଧର୍ମାନୁଷ୍ଠାନ କରିପାରେ ନାହିଁ । ପ୍ରତ୍ୟେକ ପରିବାରର କୌଳିକ ଗୁରୁ ଅଛନ୍ତି । କିନ୍ତୁ ଦୀକ୍ଷାଗୁରୁ ବୟୋଜ୍ୟେଷ୍ଠ, ଧାର୍ମିକ ଓ ସଚ୍ଚରିତ୍ର ହେବା ଉଚିତ୍ । ଯଦି ଦୀକ୍ଷା ଗୁରୁଙ୍କ ପରିବାରରେ ସେପରି ଉପଯୁକ୍ତ ବ୍ୟକ୍ତି ନଥାନ୍ତି ତାହାହେଲେ ଅନ୍ୟ ଜ୍ଞାନୀ ଲୋକଙ୍କ ଠାରୁ ମନ୍ତ୍ର ନେବା ଉଚିତ୍ । ମନ୍ତ୍ର ଗ୍ରହଣ ସମୟରେ ଗୁରୁଙ୍କୁ ନୂତନ ବସ୍ତ୍ର ଓ ଦକ୍ଷିଣା ଦେଇ ବିଦାୟ କରିବ ।

•••



ଯୋଽନ୍ତଃସୁଖୋଽନ୍ତରାରାମ,
ସ୍ତଥାନ୍ତର୍ଜ୍ୟୋତିରେବ ଯଃ ।
ସ ଯୋଗୀ ବ୍ରହ୍ମନିର୍ବାଣଂ,
ବ୍ରହ୍ମଭୂତୋଽଧିଗଚ୍ଛତି ॥

(ପଞ୍ଚମୋଽଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୨୪)

ବିଷୟ ସୁଖ ପରିହରି ।
ଆତ୍ମା ସୁଖକୁ ମନେ ଧରି ॥
ବାହ୍ୟକ୍ରୀଡ଼ାକୁ ବ୍ରୀଡ଼ା ଧରେ ।
ଆତ୍ମାରେ ସଦା କ୍ରୀଡ଼ାକରେ ॥
ସର୍ବଦା ଆତ୍ମାକୁ ଦେଖଇ ।
ବ୍ରହ୍ମମୟ ସୃଷ୍ଟି ଭାବଇ ॥
ନିର୍ବାଣ ମୁକ୍ତି ଏ ଯୋଗୀର ।
ଏଥେଁ ତୁ ସନ୍ଦେହ ନ କର ॥

# ଆଚରଣ

ଆତ୍ମଚରିତରେ କୌଣସି ବିଷୟ ଗୁପ୍ତ ରଖାଯାଏ ନାହିଁ । ସଂସାରରେ ଗାର୍ହସ୍ଥ୍ୟ ଜୀବନରେ କୌଣସି ଲୋକ ନିଷ୍ପାପ ନୁହେଁ । ତେବେ ଶିକ୍ଷା ବିଭାଗରେ ଦୀର୍ଘ ୫୦ ବର୍ଷ ଧରି କାର୍ଯ୍ୟ କରିଥିବାରୁ ସେପରି ଗୁରୁତର ଅପରାଧରେ ମୋତେ ଅପରାଧୀ ହେବାକୁ ପଡ଼ି ନାହିଁ । ଶିକ୍ଷକ ଜୀବନରେ Private - tuition କଳଙ୍କ ବୋଲି ମୋର ଧାରଣା ଥିଲା । Private Tuition କଲେ ପିଲା କିପରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବ ସେଥିପାଇଁ ଅବୈଧ ଉପାୟ ଅବଲମ୍ବନ କରିବାକୁ ପଡ଼େ । ମୁଁ ଏହାର ଦୃଷ୍ଟାନ୍ତ ଦେଖିଛି । ତେଣୁ ସେପରି Private Tuition ଜୀବନରେ କରିନାହିଁ । ଶାଗ ଭାତ ଖାଇ ବଞ୍ଚିରହିବାକୁ ମୁଁ ପସନ୍ଦ କରୁଥିଲି । ଜୀବନରେ ଜୋତା, ମୋଜା, ପ୍ୟାଣ୍ଟ୍, ଘଣ୍ଟା ଓ Bi-Cycle ବ୍ୟବହାର କରିନାହିଁ । Cinema ଦେଖିବାରେ ମୋର ଆଗ୍ରହ ନଥିଲା । ମିଷ୍ଟାନ୍ନ ଦୋକାନରୁ ବହୁ ମୂଲ୍ୟ ପଦାର୍ଥ କିଣି ଖାଇ ନାହିଁ । "ମିଥ୍ୟା ପାତକଂ ପରମ୍" । କିନ୍ତୁ ସ୍ଥଳ ବିଶେଷରେ ମୋତେ ମିଥ୍ୟା କହିବାକୁ ପଡ଼ିଛି । ଚୋରୀ ନାରୀ ମନୁଷ୍ୟ ଜୀବନରେ କଳଙ୍କ । ଜୀବନରେ କାହାକୁ ଠକି ନାହିଁ । ବାଲ୍ୟକାଳରେ ନନାଙ୍କ ଅଜ୍ଞାତରେ ତାଙ୍କ ହାତବାକ୍ସରୁ କେତେଥର ପଇସା ଅପହରଣ କରିଛି । ଶିକ୍ଷକ ଥିବା ସମୟରେ ଛାତ୍ରମାନଙ୍କୁ ଶାରୀରିକ ଦଣ୍ଡ ଦେଇ ନାହିଁ । ସେପରି ଗୁରୁତର ମୋକଦ୍ଦମା କରିନାହିଁ । ମୋକଦ୍ଦମାରେ କାହାପାଇଁ ମିଥ୍ୟା ସାକ୍ଷୀ ଦେଇନାହିଁ । ସାଧାରଣ ଜୀବନ ଯାପନ କରି ଭବିଷ୍ୟତରେ ସ୍ୱାବଲମ୍ବୀ ହେବା ମୋ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା ।

ଲଭନ୍ତେ ବ୍ରହ୍ମନିର୍ବାଣ,
ମୃଷୟଃ କ୍ଷୀଣକଳ୍ମଷାଃ ।
ଛିନ୍ନଦ୍ୱୈଧା ଯତାତ୍ମାନଃ,
ସର୍ବଭୂତହିତେ ରତାଃ ॥
କାମକ୍ରୋଧବିମୁକ୍ତାନାଂ,
ଯତୀନାଂ ଯତଚେତସାଂ ।
ଅଭିତୋବ୍ରହ୍ମନିର୍ବାଣଂ,
ବର୍ତ୍ତତେ ବିଦିତାତ୍ମନାଂ ॥

(ପଞ୍ଚମୋଽଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୨୫ଓ୨୬)

ନିଷ୍ପାପୀ ଯେ ସଂଶୟଶୂନ୍ୟ ।
ଏକାଗ୍ର ଚିତ୍ତ ଯେହୁ ଜନ ॥
ଏମାନେ ସର୍ବ ପ୍ରାଣୀଙ୍କର ।
ମଙ୍ଗଳ କରନ୍ତି ସତ୍ୱର ॥



ସର୍ବ ପ୍ରାଣୀରେ ଦୟା ଥାଇ ।
ବ୍ରହ୍ମ ନିର୍ବାଣ ସେ ଲଭଇ ॥
କାମ କ୍ରୋଧ ଯା ହୃଦୟରେ ।
ଜାତ ନ ହୁଅଇ ବିଧିରେ ॥
ସଂଯତ ଚେତା ସାଧୁ ଧୀର ।
ଉଭୟ ଲୋକେ ସୁଖ ତାର ॥
ସଂସାରେ ସୁଖେ ବୁଲୁଥାଇ ।
ବ୍ରହ୍ମରେ ଲୟକୁ ରଖଇ ॥
ଶତ୍ରୁ ମିତ୍ର ଭୋଗ ବାସନା ।
ନ ଥାଏ ସୁଖୀ ତେଣୁ ସିନା ॥
ଦେହାନ୍ତେ ବ୍ରହ୍ମେ ଲୀନହୋଇ ।
ନିର୍ବାଣ ମୁକତି ଲଭଇ ॥

# ମୃତ୍ୟୁ

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ, ଧ୍ରୁବଂ ଜନ୍ମମୃତସ୍ୟ ଚ ।
ତସ୍ମାଦ୍ ପରିହାର୍ଯ୍ୟେଽର୍ଥେ, ନ ତ୍ୱଂ ଶୋଚିତୁମର୍ହସି

- ଗୀତା - ସାଂଖ୍ୟଯୋଗଃ ଶ୍ଳୋକ - ୨୭

**ଅନ୍ୱୟ :** ଏ ଭବସଂସାରରେ ପ୍ରାଣୀ ଜାତ ହୁଏ ଓ ମୃତ ହୁଏ, ପୁଣି ଜନ୍ମ ହୁଏ । ତେଣୁ ମୃତ୍ୟୁ ପାଇଁ ଶୋକ କରନାହିଁ । ମୃତ୍ୟୁ ହେଉଛି ଜୀବନର ପ୍ରକୃତ ସତ୍ୟ ।

ବାଲ୍ୟ, କୈଶୋର, ଯୌବନ ଓ ବାର୍ଦ୍ଧକ୍ୟ ପରେ ମନୁଷ୍ୟର ମୃତ୍ୟୁ ହୁଏ । ମନୁଷ୍ୟର ଚାରିଗୋଟି ଅବସ୍ଥା ମଧ୍ୟରେ ବାର୍ଦ୍ଧକ୍ୟ ବିଶେଷ କଷ୍ଟଦାୟକ । ବାର୍ଦ୍ଧକ୍ୟର ଯନ୍ତ୍ରଣାକୁ କେହି ଉପେକ୍ଷା କରି ପାରେ ନାହିଁ । ତେଣୁ ବାର୍ଦ୍ଧକ୍ୟ ଯନ୍ତ୍ରଣାରୁ ରକ୍ଷା ପାଇବା ପାଇଁ ଭଗବାନଙ୍କର ଆଶ୍ରୟ ନିଏ । ଯେଉଁ ଲୋକ ତା'ର ଜୀବନ କାଳ ମଧ୍ୟରେ ସେପରି ପାପ କର୍ମ କରି ନଥାଏ ସେହି ଲୋକ ବାର୍ଦ୍ଧକ୍ୟ ଯନ୍ତ୍ରଣାରୁ ରକ୍ଷା ପାଏ । ତେଣୁ କଥାରେ ଅଛି-

"ପ୍ରାଣୀର ଭଲ ମନ୍ଦବାଣୀ,
ମରଣକାଳେ ତାହା ଜାଣି ।"

ମୃତ୍ୟୁ ଅବଶ୍ୟମ୍ଭାବୀ, କିନ୍ତୁ କେତେବେଳେ ମୃତ୍ୟୁ ହେବ ତାହା କେହି ଜାଣିପାରନ୍ତି ନାହିଁ । ବାର୍ଦ୍ଧକ୍ୟ ପୂର୍ବରୁ ମନୁଷ୍ୟର ମୃତ୍ୟୁ ହେଲେ ତାକୁ ଅକାଳ ମରଣ କୁହାଯାଏ । ଅକାଳ ମୃତ୍ୟୁ ଘଟିଲେ ପରିବାରର ବିଶେଷ କ୍ଷତି ହୁଏ ଓ ପରିବାରସ୍ଥ ନିର୍ଭରଶୀଳ ଲୋକମାନଙ୍କର ଦୁଃଖର ସୀମା ରହେ ନାହିଁ । ତେଣୁ ଜ୍ଞାନୀ ଲୋକ ଯୌବନରେ ଅର୍ଥ ଉପାର୍ଜନ କରି ଭବିଷ୍ୟତ ବଂଶଧରଙ୍କ ପାଇଁ ରଖି ଦେଇ ଯାଇଥାନ୍ତି । ତାହା ନକରିଥିଲେ ତା'ର ସନ୍ତାନ ମାନେ ଅନାଥ ହୁଅନ୍ତି ଓ ସେମାନଙ୍କର ଉନ୍ନତି ବାଧାପ୍ରାପ୍ତ ହୁଏ । ଅନ୍ୟଲୋକର ଆଶ୍ରୟ ନେଇ ଚଳନ୍ତି କିମ୍ବା ଭିକ୍ଷା ବୃତ୍ତି ଅବଲମ୍ବନ କରିଥାଆନ୍ତି ।

"ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହେଲେ ବି ମରଇ" ।

ମୃତ୍ୟୁ ମାନବ ଜୀବନର ଗୋଟିଏ ଅବସ୍ଥା । ଶରୀର ବିନାଶଶୀଳ କିନ୍ତୁ ଜୀବାତ୍ମା ଅବିନାଶୀ । ପୁଣ୍ୟାତ୍ମା ଲୋକମାନଙ୍କର ଜୀବାତ୍ମା ପରମାତ୍ମାରେ ଲୀନ ହୁଏ । କିନ୍ତୁ ଯେ ନିଷ୍ପାପ ନୁହେଁ ମାୟାବଦ୍ଧତାର ଜନ୍ମାନ୍ତର ହୁଏ । ଆକସ୍ମିକ ମୃତ୍ୟୁ କିମ୍ବା ଯୁଦ୍ଧ ସମୟରେ

ଭୋକ୍ତାରଂ ଯଜ୍ଞତପସାଂ,
ସର୍ବଲୋକମହେଶ୍ୱରଂ ।
ସୁହୃଦଂ ସର୍ବଭୂତାନାଂ,
ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି ॥



(ପଞ୍ଚମୋଽଧ୍ୟାୟଃ - ସନ୍ନ୍ୟାସଯୋଗ - ଶ୍ଳୋକ - ୨୯)

ଏ ଭାବେ ଯେ ସନ୍ନ୍ୟାସୀ ଥାଏ ।
ତାର ଏ ଭାବ ଜାତ ହୁଏ ॥

ଭଗବାନଙ୍କ ମୋ ସହିତ ।
ମିଳନ ଅଟଇ ନିୟତ ॥
ସକଳ ଯଜ୍ଞ ତପ କର୍ମ ।
ମୋହରି ମୋପାଇଁ ଏମାନ ॥
ସର୍ବ ଭୂତରେ ବାସ ମୋର ।
ଚଳାଏ ଜଗତ ସକଳ ॥
ପ୍ରାଣୀର ମୋ ବ୍ୟତୀତ ଅନ୍ୟ ।
ଉପାୟ ନାହିଁ ଭବେ ଜାଣ ॥
ଏହି ଭାବନା ଜାତ ହେଲେ ।
ପରମ ଶାନ୍ତି ଲଭେ ହେଲେ ॥

ଯେଉଁମାନଙ୍କର ମୃତ୍ୟୁ ହୁଏ ତାହା ମଧ୍ୟ ଅକାଳ ମୃତ୍ୟୁ । ତେଣୁ ମୃତ୍ୟୁ ନିଶ୍ଚିତ ଜାଣି ମନୁଷ୍ୟ ପାରିବାରିକ ସ୍ୱଚ୍ଛଳତା ପାଇଁ ପୂର୍ବରୁ ସାବଧାନ ହେବା ଉଚିତ୍ ।

ଲୋକର ମୃତ୍ୟୁପରେ ଆତ୍ମୀୟ, ସ୍ୱଜନ ମାନେ କ୍ରନ୍ଦନ କରନ୍ତି, କିନ୍ତୁ ତାହା କ୍ଷଣିକ । ସେ ସମୟରେ ସାନ୍ତ୍ୱନା ଦେବା ମଧ୍ୟ ନିରର୍ଥକ । ଭଗବାନଙ୍କ ସୃଷ୍ଟି ରହସ୍ୟମୟ । ତେଣୁ ଭଗବାନ ମୃତବ୍ୟକ୍ତି ମାନଙ୍କର ପୁତ୍ର କନ୍ୟାଙ୍କୁ ସାନ୍ତ୍ୱନା ଦିଅନ୍ତି ଓ ସେମାନେ ପିତା ମାତାଙ୍କର ମୃତ୍ୟୁଜନିତ ଦୁଃଖ ଭୁଲିଯାଆନ୍ତି ।

ଆମ୍ଭମାନଙ୍କ ସମାଜରେ ଶବଦାହ ପ୍ରଥା ପ୍ରଚଳିତ ଅଛି । ଲୋକର ମୃତ୍ୟୁପରେ ତାହାକୁ ପ୍ରେତ କୁହାଯାଏ । ପ୍ରେତକର୍ମ ବା ଅନ୍ତ୍ୟେଷ୍ଟି କ୍ରିୟା ୧୨ ଦିନ ପର୍ଯ୍ୟନ୍ତ ଲାଗି ରହେ । ଦ୍ୱାଦଶ ଶ୍ରାଦ୍ଧରେ ପ୍ରେତ ଦେବତାରେ ପରିଣତ ହୁଏ । ପ୍ରତ୍ୟେକ ଲୋକର ମୃତ୍ୟୁ ଦିବସରେ ପିଣ୍ଡ ଦାନ କରାଯାଏ ।

ହିନ୍ଦୁମାନଙ୍କର ବିଶ୍ୱାସ ପୁତ୍ର ଦତ୍ତ ପିଣ୍ଡ ପିତୃ ପୁରୁଷମାନେ ପାଆନ୍ତି । ପିତା ମାତା ପୁତ୍ରର ଯେଉଁ ଉପକାର କରିଥାନ୍ତି ତା'ର ପ୍ରତିଦାନ ପାଇଁ ଶ୍ରାଦ୍ଧ କରଣୀୟ । ଶ୍ରାଦ୍ଧ ଦୁଇ ପ୍ରକାର । ପାର୍ବଣ ଶ୍ରାଦ୍ଧ ଓ ଏକୋଦ୍ଦିଷ୍ଟ ଶ୍ରାଦ୍ଧ । ପାର୍ବଣ ଶ୍ରାଦ୍ଧରେ ୩ ପୁରୁଷଙ୍କୁ ପିଣ୍ଡ ଦିଆଯାଏ ଓ ବିଶ୍ୱ ଦେବତାଙ୍କୁ ଆବାହନ କରାଯାଏ । ଏକୋଦ୍ଦିଷ୍ଟ ଶ୍ରାଦ୍ଧରେ ଯେଉଁ ମୃତବ୍ୟକ୍ତି ଉଦ୍ଦେଶ୍ୟରେ ଶ୍ରାଦ୍ଧ କରାଯାଏ କେବଳ ତାହାଙ୍କୁ ପିଣ୍ଡାର୍ପଣ କରାଯାଏ । ଶ୍ରାଦ୍ଧ ଶେଷରେ ବ୍ରାହ୍ମଣ ଭୋଜନ କରଣୀୟ । ପ୍ରଥମ ବାର୍ଷିକ ଶ୍ରାଦ୍ଧ ନିଶ୍ଚିତ । ପିତାର ଜ୍ୟେଷ୍ଠପୁତ୍ର ପିଣ୍ଡଦାନର ଅଧିକାରୀ । ଅପୁତ୍ରିକ ବ୍ୟକ୍ତିମାନେ ପିଣ୍ଡ ପାଇବା ଆଶାରେ ପୋଷ୍ୟପୁତ୍ର ଗ୍ରହଣ କରିଥାନ୍ତି । ଲୋକର ମୃତ୍ୟୁ ଦିବସରେ ସମୟ ଜାଣି କେବଳ ମାସ ଓ ତିଥି ମନେରଖିବା ଉଚିତ୍ । ନକ୍ଷତ୍ର ଭିନ୍ନ ହୋଇପାରେ । ଅପରାହ୍ନ ପର୍ଯ୍ୟନ୍ତ ସେହି ତିଥି ଥିଲେ ପାର୍ବଣ ଶ୍ରାଦ୍ଧ ହୁଏ । ଏକୋଦ୍ଦିଷ୍ଟ ଶ୍ରାଦ୍ଧରେ ମଧ୍ୟାହ୍ନ ପର୍ଯ୍ୟନ୍ତ ତିଥି ଧରାଯାଏ । ମହାଳୟା ଓ ପୟାଶ୍ରାଦ୍ଧରେ ମାତାମହଙ୍କର ୩ ପୁରୁଷଙ୍କୁ ଆବାହନ କରାଯାଏ ଓ ମହାଳୟାରେ ମାତାମହ, ପ୍ରମାତାମହ ଓ ବୃଦ୍ଧ ପ୍ରମାତାମହଙ୍କୁ ପିଣ୍ଡ ଦିଆଯାଏ । ସେପରି ଅସୁବିଧା ହେଲେ ଶ୍ରାଦ୍ଧ ଦିବସରେ କେବଳ ବ୍ରାହ୍ମଣ ଭୋଜନ କରଣୀୟ ।

ଯଂ ସନ୍ନ୍ୟାସମିତି ପ୍ରାହୁ,
ର୍ଯୋଗଂ ତଂ ବିଦ୍ଧି ପାଣ୍ଡବ ।
ନ ହ୍ୟସଂନ୍ନ୍ୟସ୍ତସଙ୍କଳ୍ପୋ,
ଯୋଗୀ ଭବତି କଶ୍ଚ ନ ।।
ଆରୁରୁକ୍ଷୋର୍ମୁନେର୍ଯୋଗଂ,
କର୍ମ କାରଣମୁଚ୍ୟତେ ।
ଯୋଗାରୂଢ଼ସ୍ୟ ତସ୍ୟୈବ,
ଶମଃ କାରଣମୁଚ୍ୟତେ ।।
(ଷଷ୍ଠୋଽଧ୍ୟାୟଃ - ଧ୍ୟାନ ଯୋଗଃ - ଶ୍ଳୋକ - ୨ ଓ ୩)
ଯୋଗ ସନ୍ନ୍ୟାସ ଏକମତ ।
ବିଭିନ୍ନ ନୁହଇ ଏହି ତ ।।



ସଂକଳ୍ପ ନ ମାରେ ଯାବତ ।
ତାବତ ଯୋଗୀ ନୁହେ ସେତ ।।
ମୋକ୍ଷ ବିଷୟ ଶତ୍ରୁ କର୍ମ ।
ସଂକଳ୍ପ ଯୋଗରେ ଦମନ ।।
ମନୋବୃତ୍ତିକୁ କଲେ ନାଶ ।
ତେବେତ ଜନ୍ମଇ ସନ୍ନ୍ୟାସ ।।
ଜ୍ଞାନ ଗୋଚରେ ଦୃଢ଼ ମନ ।
ଶ୍ରେଷ୍ଠ ତା କର୍ମ ଅନୁଷ୍ଠାନ ।।
କର୍ମରେ ଯୋଗ ସିଦ୍ଧ ହୁଏ ।
ସଂସାରେ ମାୟା ଯେ ନ ଛୁଏଁ ।।
ଜ୍ଞାନ ଯୋଗ ଯେ ଅଭ୍ୟାସଇ ।
କର୍ମନିବୃତ୍ତି ତାର ହୋଇ ।।

# ହିତୋପଦେଶ

## ବିଦ୍ୟା

ବିଦ୍ୟା ହିଁ ମନୁଷ୍ୟର ଶ୍ରେଷ୍ଠ ସମ୍ପଦ । ପ୍ରକୃତ ବିଦ୍ୱାନ ବ୍ୟକ୍ତି ଜୀବନରେ ଅନାବିଳ ସୁଖ ସମ୍ପଦର ଅଧିକାରୀ ହୋଇଥାଏ । ଧନ ବଳରେ ଲୋକ ସମାଜରେ ଆଦର ସମ୍ମାନ ଲାଭ କରିଥାଏ' ସତ୍ୟ କିନ୍ତୁ ତାହା ଅସ୍ଥାୟୀ । ବିଦ୍ୟା ସମ୍ପଦକୁ କେହି ଅପହରଣ କରିପାରେ ନାହିଁ । ବିଦ୍ୟା ଲାଭକରି ତାର ସଦ୍ ବ୍ୟବହାର କଲେ ଲୋକ ମନୁଷ୍ୟତା ଅର୍ଜନ କରିବା ସଙ୍ଗେ ଧନ ଅର୍ଜନ କରିବାକୁ ସମର୍ଥ ହୁଏ ଓ ସେହି ଉପାର୍ଜିତ ଧନରେ ଧର୍ମ କାର୍ଯ୍ୟରେ ପ୍ରବୃତ୍ତ ହୁଏ ।

ଏଣୁ ଭାଗବତରେ ଅଛି –

ଧନ ଅର୍ଜିବ ଧର୍ମକରି, ଧର୍ମେ ପ୍ରାପତ ନରହରି ।

ବିଦ୍ୟା ଅର୍ଜନକରି ଯଦି ଲୋକ କୁପଥଗାମୀ ହୁଏ ଓ ଦୁର୍ନୀତିଗ୍ରସ୍ତ ରହେ ତାହାହେଲେ ତାର ସମାଜରେ ସ୍ଥାନ ରହେନାହିଁ ।

ବିଦ୍ୟା ଦଦାତି ବିନୟଂ ବିନୟାତ୍ ଯାତି ପାତ୍ରତାଂ
ପାତ୍ରତ୍ୱାତ୍ ଧନମାପ୍ନୋତି, ଧନାତ୍ ଧର୍ମ, ତତଃ ସୁଖଂ

ଅନ୍ୱୟ : ବିଦ୍ୟା ଅଧ୍ୟୟନ ଫଳରେ ମନୁଷ୍ୟ ବିନୟୀ ହୁଏ । ବିନୟ ହେତୁରୁ ସେ ସୁପାତ୍ର ବୋଲି ଗଣ୍ୟ ହୁଏ । ଉତ୍ତମ ପାତ୍ର ହେବାରୁ ସେ ଧନଲାଭ କରେ । ଧନଲାଭ ହେତୁ ସେ ଧର୍ମକାର୍ଯ୍ୟ କରିବାକୁ ସମର୍ଥ ହୁଏ । ଧର୍ମକାର୍ଯ୍ୟ ଦ୍ୱାରା ପୁଣ୍ୟ ଅର୍ଜନ ଫଳରେ ସେ ସୁଖ ଭୋଗ କରେ ।

ଯେଉଁ ପିତା ନିଜର ସନ୍ତାନମାନଙ୍କୁ ଉପଯୁକ୍ତ ବିଦ୍ୟାଧ୍ୟୟନ କରିବାକୁ ସମର୍ଥ ହୁଅନ୍ତି ସେହିମାନେ ହିଁ ପିତୃପଦବାଚ୍ୟ ।

ବିଦ୍ୟାର ଦାନ ଅସୀମ । ଅନ୍ୟ କୌଣସି ପାର୍ଥିବ ଧନ ତା' ସହିତ ସମାନ ନୁହେଁ । ଦୟା, କ୍ଷମା, ପ୍ରୀତି, ସୌଜନ୍ୟ ଓ ସହିଷ୍ଣୁତା ବିଦ୍ୟାର ଅନୁଗାମୀ । ବିଦ୍ୱାନବ୍ୟକ୍ତି ପରୋପକାର କରିବାକୁ ସମର୍ଥ ହୁଏ ।

ପରୋପକାରାୟ ସୁଖାୟ ନ ଦୁଃଖାୟ କଦାଚନ ।

(ପରୋପକାରରେ ସୁଖ ପ୍ରାପ୍ତି ହୁଏ ଓ କଦାପି ଦୁଃଖ ପ୍ରାପ୍ତ ହୁଏ ନାହିଁ)

ବନ୍ଧୁରାତ୍ମାତ୍ମନସ୍ତସ୍ୟ,
ଯେନାତ୍ମୈବାତ୍ମନା ଜିତଃ ।
ଅନାତ୍ମନସ୍ତୁ ଶତ୍ରୁତ୍ୱେ,
ବର୍ତ୍ତେତାତ୍ମୈବ ଶତ୍ରୁବତ୍ ।।
ଜିତାତ୍ମନଃ ପ୍ରଶାନ୍ତସ୍ୟ,
ପରମାତ୍ମା ସମାହିତଃ ।
ଶୀତୋଷ୍ଣ-ସୁଖ-ଦୁଃଖେଷୁ,
ତଥା ମାନାପମାନୟୋଃ ।।
(ଷଷ୍ଠୋଽଧ୍ୟାୟଃ - ଧ୍ୟାନ ଯୋଗଃ - ଶ୍ଲୋକ - ୬ ଓ ୭)



ସଂଯତ ମନ ଅଟେ ଯାର ।
ସର୍ବଦା ଶୁଭ ହୁଏ ତାର ।।
ଯଥେଚ୍ଛାଚାରୀ ମନ ଯାର ।
ସର୍ବ ଅଶୁଭ ହୁଏ ତାର ।।
ତେଣୁ ଆତ୍ମାର ଆତ୍ମା ମିତ୍ର ।
ସେ ଆତ୍ମା ଅଟେ ଆତ୍ମଜିତ ।।
ଯେ ଆତ୍ମା ଆତ୍ମାକୁ ନ ଜିଣେ ।
ଶତ୍ରୁତାକୁ ସେ ଖୋଜିଆଣେ ।।
ମନ ଯେ କରେ ବଶୀଭୂତ ।
ସର୍ବଦା ଯାର ଶାନ୍ତ ଚିତ୍ତ ।।
ମାନ ଯେ ଅପମାନ ହେଲେ ।
ନ ଟଳିଆଏ ସମାଧିରେ ।।
ଶୀତୋଷ୍ଣେ ଦୁଃଖ ସୁଖ ନାହିଁ ।
ହର୍ଷ ବିଷାଦ ନ ଜନ୍ମଇ ।।

# ଅର୍ଥ

ଅର୍ଥ ଅନର୍ଥର ହେତୁ । ଅର୍ଥବଳରେ ଲୋକ ଧନୀ ହୋଇପାରେ କିନ୍ତୁ, ଅର୍ଥର ସଦ୍ ବ୍ୟବହାର ନକଲେ ତାକୁ ଅତି ଦରିଦ୍ର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଧନର ମୂଲ୍ୟ ଅଛି । ନିର୍ଦ୍ଧନ ବ୍ୟକ୍ତି ଜୀବନରେ ଦୁଃଖ ଭୋଗକରେ । ସର୍ବଦା ପରଦ୍ୱାରସ୍ଥ ହୁଏ । ଅର୍ଥହୀନ ଲୋକ ନିଜର ସନ୍ତାନ ମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ପାରେନାହିଁ ।

ହିତୋପଦେଶର ବାଣୀ:

**ତାନୀନ୍ଦ୍ରୟାଣି ତଦେବ ନାମ**
**ସା ବୁଦ୍ଧିରପ୍ରତିହତା ବଚନଂ ତଦେବ**
**ଅର୍ଥୋଷ୍ମଣାଂ ବିରହିତଃ ପୁରୁଷଃ ସଏବ**
**ବାହ୍ୟ କ୍ଷଣେନ ଭବତି ଇତି ବିଚିତ୍ରମେତତ୍ ।**

ତେଣୁ ଧନ ଅପରିହାର୍ଯ୍ୟ କିନ୍ତୁ ଧନର ସଦ୍ ବ୍ୟବହାର କରିପାରିଲେ ମନୁଷ୍ୟ ଶାନ୍ତି, ସୁଖ ଲାଭ କରିଥାଏ । ପ୍ରକୃତ ଅନାହାର କ୍ଲିଷ୍ଟ ଲୋକଙ୍କୁ ଦାନ କଲେ ପୁଣ୍ୟ ହୁଏ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ **'ଦରିଦ୍ରାୟ ଭର କୌନ୍ତେୟ'** ପରୋପକାର ଠାରୁ ବଳି ଆଉ ପୁଣ୍ୟ ନାହିଁ । ଯେଉଁ ଦାତା ଦାନ ଦେଇ ଗ୍ରହୀତା ଠାରୁ ପ୍ରତିଦାନ ପାଇବାକୁ ଇଚ୍ଛା ପୋଷଣ କରେ, ସେପରି ଦାନରେ କିଛି ମୂଲ୍ୟ ରହେନାହିଁ । ଯେଉଁ ବ୍ୟକ୍ତି ଅନ୍ୟକୁ ଋଣ ଦେଇ ସୁଧ ଆଦାୟ କରେ, ତାହା ମଧ୍ୟ ପାପ ।

ସାଧାରଣତଃ ଦେଖାଯାଏ ଧନିକମାନେ କ୍ଷମତା ବଳରେ ଅନ୍ୟର ଅପକାର କରିଥାଆନ୍ତି, କିନ୍ତୁ ତାହା କରଣୀୟ ନୁହେଁ । ଧନ-ଅର୍ଜନ କରିବା ମନୁଷ୍ୟର କର୍ତ୍ତବ୍ୟ କିନ୍ତୁ ଅନ୍ୟଲୋକର ଅପକାର କରି

ଜ୍ଞାନବିଜ୍ଞାନତୃପ୍ତାତ୍ମା,
କୂଟସ୍ଥୋବିଜିତେନ୍ଦ୍ରିୟଃ ।
ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ,
ସମଲୋଷ୍ଟାଶ୍ମକାଞ୍ଚନଃ ।।
ସୁହୃନ୍ମିତ୍ରାର୍ଯ୍ୟୁଦାସୀନ,
ମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।
ସାଧୁଷ୍ୱପି ଚ ପାପେଷୁ,
ସମବୁଦ୍ଧିର୍ବିଶିଷ୍ୟତେ ।।

(ଷଷ୍ଠୋଦ୍ଧ୍ୟାୟଃ - ଧ୍ୟାନ ଯୋଗଃ - ଶ୍ଳୋକ - ୮ ଓ ୯)



ଶାସ୍ତ୍ରାଧ୍ୟୟନ ଗୁରୁବାଣୀ ।
ଜ୍ଞାନ ବୋଲିଣ ତାକୁ ଜାଣି ।।
ଶାସ୍ତ୍ରୋକ୍ତ ବସ୍ତୁ ଅନୁଭବ ।
ବିଜ୍ଞାନ ଅଟଇ ପାର୍ଥିବ ।।
ଜ୍ଞାନ ବିଜ୍ଞାନେ ତୋଷ ଚିତ୍ତ ।
କୀଟାଦି ଇନ୍ଦ୍ରିୟ ବର୍ଜିତ ।।
ସ୍ୱର୍ଣ୍ଣ ମୃତ୍ତିକା ଯେ ପାଷାଣ ।
ଏଥିରେ ଯାର ସମଜ୍ଞାନ ।।
ଶତ୍ରୁ ମିତ୍ର ପ୍ରିୟ ଅପ୍ରିୟ ।
ଶିଷ୍ଟ ପାପିଷ୍ଠ ନରଚୟ ।।
ସମାନ ମଣେ ଯେହୁ ଜନ ।
ସେ ଅଟେ ନରଙ୍କ ଉତ୍ତମ ।।

ଧନ ଅର୍ଜନ କରିବା ଉଚିତ ନୁହେଁ । ନିଜର ଉପକାର କର କିନ୍ତୁ ନିଜର ଉପକାର ପାଇଁ ଅନ୍ୟର ଅପକାର କରନାହିଁ । ଧନୀ ଲୋକମାନଙ୍କର ଜୀବନରେ ଶାନ୍ତି ନଥାଏ । **କାହାଠାରୁ ଉତ୍କୋଚ ଗ୍ରହଣ କରିବା ମଧ୍ୟ ମହାପାପ ।** ପ୍ରତ୍ୟୁପକାରର ଆଶା ପୋଷଣ କରି କାହାର ଉପକାର କରିବା ବିଧେୟ ନୁହେଁ ।

ଧନହୀନ ବ୍ୟକ୍ତିକୁ ସମାଜରେ କେହି ଆଦର କରନ୍ତି ନାହିଁ । ସ୍ୱାର୍ଥପରତା ଜୀବନର କଳଙ୍କ । ସେହିପରି ହିଂସା, ଦ୍ୱେଷ ଓ ପରଶ୍ରୀକାତରତା ମଧ୍ୟ ବର୍ଜନୀୟ । କାହାରି ପ୍ରଶଂସା ନକରିପାର କିନ୍ତୁ **ଅନ୍ୟର ନିନ୍ଦା କରିବ ନାହିଁ ବା ଶୁଣିବ ନାହିଁ ।** ଧନ ବଳରେ ଲୋକର ବଡ଼ିମା ଓ ଆତ୍ମାଭିମାନ ବଢିଥାଏ । ଅନେକ ଧନୀଲୋକ ଧନ ବା ଧାନ କରଜ ସୂତ୍ରରେ ଦେଇ ଲୋକମାନଙ୍କୁ ବିନା ପଇସାରେ ସେମାନଙ୍କର ନିଜ କାମରେ ଲଗାଇଥାଆନ୍ତି । କିନ୍ତୁ ସେମାନଙ୍କର ଏପରି କାର୍ଯ୍ୟରେ ଲୋକମାନେ ତାଙ୍କର ଅପ୍ରତ୍ୟକ୍ଷରେ ନିନ୍ଦାକରନ୍ତି । ତେଣୁ ମନେ ରଖିବା ଉଚିତ ସତ୍ ଉପାୟରେ ଧନ ଅର୍ଜନ କରିବା ଦ୍ୱାରା ଲୋକ ନିଜର ପାରିବାରିକ ସ୍ୱଚ୍ଛଳତା ଆଣିବା ସହ ଅର୍ଥାଭାବର ସମ୍ମୁଖୀନ ହୁଏ ନାହିଁ ।

•••

ଯୁକ୍ତାହାର ବିହାରସ୍ୟ,
ଯୁକ୍ତଚେଷ୍ଟସ୍ୟ କର୍ମସୁ ।
ଯୁକ୍ତସ୍ୱପ୍ନାବବୋଧସ୍ୟ,
ଯୋଗୋ ଭବତି ଦୁଃଖହା ॥
ଯଦା ବିନିୟତଂ ଚିତ୍ତ,
ମାତ୍ମନ୍ୟେବାବତିଷ୍ଠତେ ॥
ନିସ୍ପୃହଃ ସର୍ବକାମେଭ୍ୟୋ,
ଯୁକ୍ତଇତ୍ୟୁଚ୍ୟତେ ତଦ ॥



ଭୋଜନ ଶୟନ ଭ୍ରମଣ ।
କର୍ମର ଚେଷ୍ଟା ଜାଗରଣ ॥
ନିୟମ ମୋତେ ଯେ ସାଧଇ ।
ଦୁଃଖ ନାଶି ଯୋଗ ଲଭଇ ॥
ସଂଯମ ଚିତ୍ତ ଯେ କାଳରେ ।
ଅବସ୍ଥିତ ହୁଏ ଆତ୍ମାରେ ॥
ବାହ୍ୟ ବିଷୟ ଶ୍ରଦ୍ଧା ହୀନ ।
ଯୋଗ ସିଦ୍ଧିର ଏ ଲକ୍ଷଣ ॥

(ଷଷ୍ଠୋଽଧ୍ୟାୟଃ - ଧ୍ୟାନ ଯୋଗଃ - ଶ୍ଳୋକ - ୧୭ ଓ ୧୮)

# ସ୍ୱାସ୍ଥ୍ୟ

**ସ୍ୱାସ୍ଥ୍ୟ ହିଁ ସମ୍ପଦ । ସ୍ୱାସ୍ଥ୍ୟଠାରୁ ଶ୍ରେଷ୍ଠ ସମ୍ପଦ ନାହିଁ ।**

Health is Wealth

ମୂଲ୍ୟବାନ ଖାଦ୍ୟ ବା ବିଳାସ ବ୍ୟସନ ଦ୍ୱାରା ମନୁଷ୍ୟ ସ୍ୱାସ୍ଥ୍ୟ ଅର୍ଜନ କରିନଥାଏ । ସ୍ୱାସ୍ଥ୍ୟର ଶ୍ରେଷ୍ଠ ଉପାଦାନ ସଂଯତ ଜୀବନ ଯାପନ । ମନୁଷ୍ୟ ଆହାର, ବିହାର, ଶୟନ ଓ ବ୍ୟାୟାମରେ ସଂଯତ ହେଲେ ସୁସ୍ଥ, ସବଳ ରହି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହେ । ସ୍ୱାସ୍ଥ୍ୟ ରକ୍ଷାର କେତେକ ନିୟମ ଅଛି । ସେ ସମ୍ବନ୍ଧରେ ଲେଖିବା ଅନାବଶ୍ୟକ । ମାଦକ ଦ୍ରବ୍ୟ ମନୁଷ୍ୟକୁ କ୍ଷଣିକ ଆନନ୍ଦ ଦେଇଥାଏ, କିନ୍ତୁ ଏହାର ପରିଣାମ ହଳାହଳ ସଦୃଶ । ସାଧାରଣତଃ ଦେଖାଯାଏ ଲୋକମାନେ ଯୌବନରେ ମାଦକ ଦ୍ରବ୍ୟ ବ୍ୟବହାର କରିଥାଆନ୍ତି । ଆଉ କେତେକ ବ୍ୟକ୍ତି ସଙ୍ଗ ଦୋଷରୁ ମାଦକ ଦ୍ରବ୍ୟର ବଶବର୍ତ୍ତୀ ହୁଅନ୍ତି । ପାନମଧ ମାଦକ ଦ୍ରବ୍ୟର ଅନ୍ତର୍ଭୁକ୍ତ । ତେବେ ଆହାର ପରେ ଖଣ୍ଡେ ସାଦାପାନ ଖାଇଲେ କ୍ଷତି ହୁଏନାହିଁ । ଚୂନ, ପାନ ଓ ଖଇରରେ ଦ୍ରବ୍ୟଗୁଣ ରହିଛି । କିନ୍ତୁ ଅତି ମାତ୍ରାରେ ପାନ ଖାଇଲେ ଶରୀରସ୍ଥ ପାକରସର ଅପଚୟ ଘଟିଥାଏ । ମାଦକଦ୍ରବ୍ୟ ଶରୀରକୁ ଦୁର୍ବଳ କରିବା ସଙ୍ଗେ ସଙ୍ଗେ ଅର୍ଥାଭାବ ଘଟାଇଥାଏ  ଓ ତାହା ଫଳରେ ମନୁଷ୍ୟ ଅନ୍ୟାୟ ଉପାୟରେ ଅର୍ଥ ଉପାର୍ଜନ କରେ । ମାଦକ ଦ୍ରବ୍ୟ ମାନଙ୍କ ମଧ୍ୟରେ ଧୂମପାନ, ଗଞ୍ଜେଇ, ଅଫିମ ଓ ମଦ୍ୟ ବିଶେଷ କ୍ଷତିକାରକ । ତେଣୁ ମାଦକଦ୍ରବ୍ୟକୁ  ସ୍ୱାସ୍ଥ୍ୟର ପ୍ରଧାନ ଶତ୍ରୁ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ସର୍ବଭୂତସ୍ଥମାତ୍ମାନଂ,<br>
ସର୍ବଭୂତାନି ଚାତ୍ମନି ।<br>
ଈକ୍ଷତେ ଯୋଗଯୁକ୍ତାତ୍ମା,<br>
ସର୍ବତ୍ର ସମଦର୍ଶନଃ ।।<br>
ଯୋମାଂ ପଶ୍ୟତି ସର୍ବତ୍ର,<br>
ସର୍ବଂ ଚ ମୟି ପଶ୍ୟତି ।<br>
ତସ୍ୟାହଂ ନ ପ୍ରଣଶ୍ୟାମି,<br>
ସ ଚ ମେ ନ ପ୍ରଣଶ୍ୟତି ।।

(ଷଷ୍ଠୋଦ୍ଧ୍ୟାୟଃ - ଧ୍ୟାନ ଯୋଗଃ - ଶ୍ଳୋକ - ୨୯ ଓ ୩୦)

ଆତ୍ମାର ସର୍ବଭୂତ ସ୍ଥିତ ।<br>
ଆତ୍ମା ସକଳ ଭୂତେ ସ୍ଥିତ ।।



ପିମ୍ପୁଡିଠାରୁ ଧାତା ଯାଏ ।<br>
ସମସ୍ତେ ଥାନ୍ତି ବ୍ରହ୍ମ ଦେହେ ।।<br>
ଜଗତେ ଯେତେ ଜୀବ ଜାତ ।<br>
ବ୍ରହ୍ମ ସମସ୍ତ ଦେହେ ସ୍ଥିତ ।।<br>
ତେଣୁ ସମସ୍ତେ ଏକ ସମ ।<br>
ଦେଖଇ ଯେ ଯୋଗୀ ଉତ୍ତମ ।।<br>
ଯେ ମୋତେ ପବିତ୍ର ଦେଖଇ ।<br>
ସର୍ବତ୍ର ମୋଠାରେ ଦେଖଇ ।।<br>
ସେ ନୋହେ ଅଦୃଶ୍ୟ ମୋହର ।<br>
ମୁଁ ନୋହେ ଅଦୃଶ୍ୟ ତାହାର ।।<br>
ଯେ ଯୋଗୀ ଆତ୍ମଜ୍ଞାନ ପାଇ ।<br>
ସର୍ବତ୍ର ମୋତେ ସେ ଦେଖଇ ।।<br>
ଶ୍ରୁତି ବୋଲଇ ଏ ବଚନ ।<br>
ଭଗବାନ ଏ ତ୍ରିଭୁବନ ।।

# ପତ୍ନୀ

ପ୍ରତ୍ୟେକ ଲୋକ ବିବାହ ବନ୍ଧନରେ ଆବଦ୍ଧ ରହେ । ଏପରିକି ରାଜର୍ଷି ଓ ମହର୍ଷିମାନେ ବିବାହ କରିଥିବା କଥା ପୁରାଣରେ ବର୍ଣ୍ଣିତ ଅଛି । ରାଜାମାନେ ସେମାନଙ୍କର କନ୍ୟାମାନଙ୍କୁ ଆଶ୍ରମ ନିବାସୀ ସନ୍ନ୍ୟାସୀ ମାନଙ୍କୁ ବିବାହ ଦେଉଥିଲେ ।

ପତ୍ନୀର ଅନ୍ୟନାମ ହେଲା ସହଧର୍ମିଣୀ ଓ ଅର୍ଦ୍ଧାଙ୍ଗିନୀ । ଅବିବାହିତ ବ୍ୟକ୍ତିର ଜୀବନ ବିଶୃଙ୍ଖଳ ହୋଇଥାଏ । ପତିବ୍ରତା ରମଣୀ ପଥପ୍ରଦର୍ଶକ ସ୍ୱରୂପ ପଥ ଦେଖାଏ । ଗୃହର ସମସ୍ତ ଦାୟିତ୍ୱ ବହନ କରେ । ବଂଶବୃଦ୍ଧିରେ ସାହାଯ୍ୟ କରେ । ତେଣୁ ବୈବାହିକ ଜୀବନ ଅପରିହାର୍ଯ୍ୟ । ପତ୍ନୀ ବିଳାସର ସାମଗ୍ରୀ ନୁହେଁ । ପତ୍ନୀ ପତିର ଅବିଚ୍ଛେଦ୍ୟ ଅଙ୍ଗ । ପତ୍ନୀର ଅଭାବରେ ମନୁଷ୍ୟ ବିକଳାଙ୍ଗ ହୁଏ । ମୃତଦାର ବ୍ୟକ୍ତି ଜୀବନରେ ଦୁଃଖଭାଗୀ ହୁଏ । ଉପଯୁକ୍ତ ଶିକ୍ଷିତ ପରିବାରରୁ କନ୍ୟା ଗ୍ରହଣ କଲେ ସେ ସ୍ୱେଚ୍ଛାଚାରିଣୀ ହୋଇ ନଥାଏ । ଅଶିକ୍ଷିତା ନାରୀ ସନ୍ତାନ ମାନଙ୍କୁ ଉପଯୁକ୍ତ ଶିକ୍ଷା ଦାନ କରିବାକୁ ଅସମର୍ଥ ହୁଏ । ପତ୍ନୀ ସୁଗୃହିଣୀ ହେଲେ ଗୃହର ସମସ୍ତ ଭାର ବହନ କରେ । ପ୍ରତ୍ୟେକ କାର୍ଯ୍ୟରେ ସଂଯତ ହୁଏ । ପରାଙ୍ମୁଖୀ ନହୋଇ ଗୃହର ସମସ୍ତ କାର୍ଯ୍ୟ କରିବାକୁ ସମର୍ଥ ହୁଏ । ତେଣୁ ସ୍ତୀର ସ୍ୱାସ୍ଥ୍ୟ ଯେପରି ଭଲ ରହିବ ସେଥିପ୍ରତି ସ୍ୱାମୀର କର୍ତ୍ତବ୍ୟ ରହିଛି । ପତ୍ନୀ ସାଧ୍ୱୀ , ପତିବ୍ରତା ହେଲେ ପରିବାରରେ ଅଶାନ୍ତିର କାରଣ ନଥାଏ ।

•••

ସର୍ବଭୂତସ୍ଥିତଂ ଯୋ ମାଂ,
ଭଜତ୍ୟେକତ୍ୱମାସ୍ଥିତଃ ।
ସର୍ବଥା ବର୍ତ୍ତମାନୋଽପି,
ସ ଯୋଗୀ ମୟି ବର୍ତ୍ତତେ ।।
ଆତ୍ମୌପମ୍ୟେନ ସର୍ବତ୍ର,
ସମଂ ପଶ୍ୟତି ଯୋଽର୍ଜୁନ ।
ସୁଖଂ ବା ଯଦି ବା ଦୁଃଖଂ,
ସ ଯୋଗୀ ପରମୋମତଃ ।।

(ଷଷ୍ଠୋଽଧ୍ୟାୟଃ - ଧ୍ୟାନ ଯୋଗଃ - ଶ୍ଳୋକ - ୩୧ ଓ ୩୨)

ସମୟେ ଉଦୟ ହୁଅନ୍ତି ।
ଯୁଗ କ୍ଷୟରେ ଲୟ ପ୍ରାପ୍ତି ।।



ଯାହାର ଉତ୍ପତ୍ତି ଯହିଁରେ ।
ପ୍ରଳୟ ତାହାର ତହିଁରେ ।।
ମୋତେ ଯେ ସର୍ବବ୍ୟାପୀ ମଣେ ।
ଏକାନ୍ତେ ଭଜେ ମନପ୍ରାଣେ ।।
ସେ ଯୋଗୀ ଯୋଗାବସ୍ଥା ପାଇ ।
ମୋଠାରେ ଯୁକ୍ତ ଥାଇ ସେହି ।।
ଦେଖ ବିଶ୍ୱ ପ୍ରପଞ୍ଚ ଯାହା ।
ମୋ ଛଡ଼ା ଅନ୍ୟ ନୁହେଁ ତାହା ।।
ଏମନ୍ତ ଜ୍ଞାନୀ ଯେହୁ ହୋଇ ।
ସାଯୁଜ୍ୟ ମୁକ୍ତି ସେ ଲଭଇ ।।
ନିଷ୍କାମ କର୍ମ ଅକର୍ମରେ ।
ଥିଲେ ନିଶ୍ଚୟ ସେ ହିତରେ ।।
ନିଜର ଦୁଃଖ ସୁଖ ପରି ।
ଅନ୍ୟ ଦୁଃଖ ସୁଖ ସେପରି ।।

# ପୁତ୍ର

ପୁତ୍-ତ୍ରୈ+ଅ = ପୁତ୍ର । ହିନ୍ଦୁ ଶାସ୍ତ୍ର ମତରେ ପୁତ୍ ନାମକ ନରକରୁ ତ୍ରାଣ କରେ ବୋଲି ତାହାର ନାମ ପୁତ୍ର । ଯେଉଁମାନେ ଅପୁତ୍ରକ ସେମାନେ ପୋଷ୍ୟପୁତ୍ର ଗ୍ରହଣ କରିଥାଆନ୍ତି । ଅପୁତ୍ରିକ ବ୍ୟକ୍ତିର ମୁକ୍ତି ହୁଏ ନାହିଁ ।

ହିନ୍ଦୁ ଶାସ୍ତ୍ର ମତରେ ପୁତ୍ର ଚାରି ପ୍ରକାର । ଯଥା- ମିତ୍ର, ଶତ୍ରୁ, ଋଣ ଦାତା ଓ ଋଣ ଗ୍ରହୀତା । ପୂର୍ବ ଜନ୍ମରେ ଯେଉଁ ବ୍ୟକ୍ତି ଅନ୍ୟର ଉପକାର କରିଥାଏ ସେହି ଲୋକ ପୁତ୍ର ରୂପେ ଜନ୍ମ ଗ୍ରହଣ କରି ଆଜୀବନ ପିତାମାତାଙ୍କର ସେବା କରିଥାଏ । ଯେଉଁ ବ୍ୟକ୍ତି ପୂର୍ବ ଜନ୍ମରେ ଅନ୍ୟର ଅନିଷ୍ଟ ସାଧନ କରିଥାଏ, ସେ ପୁତ୍ର ରୂପେ ଜାତ ହୋଇ ପିତାର ଅନିଷ୍ଟସାଧନ କରିଥାଏ । ନନା ପ୍ରକାର କୁକର୍ମ କରି ପିତାର ସୁନାମରେ ବାଧା ସୃଷ୍ଟିକରେ । ପୂର୍ବ ଜନ୍ମରେ ଯଦି କେହି କାହାଠାରୁ ଋଣ ଗ୍ରହଣ କରି ଋଣମୁକ୍ତ ହୋଇନଥାଏ ସେ ତାର ପରବର୍ତ୍ତୀ ଜୀବନରେ ଋଣ ପରିଶୋଧ କରିବା ପାଇଁ ପୁତ୍ର ରୂପେ ଜାତ ହୋଇ ଋଣ ପରିଶୋଧ କରିବା ପରେ ଚାଲିଯାଏ । ଋଣ ଦାତା ପୁତ୍ର ପିତାଠାରୁ ଋଣ ଆଦାୟ କରିବା ପରେ ଚାଲିଯାଏ । ଏହି ଚାରିପ୍ରକାର ପୁତ୍ର ମାନଙ୍କ ମଧ୍ୟରେ ମିତ୍ର ହିଁ ପ୍ରକୃତ ପୁତ୍ର ।

**ପୁତ୍ରକୁ ପୁତ୍ର ରୂପେ ଗଢ଼ିବା ପିତାମାତାଙ୍କର ପ୍ରଧାନ କର୍ତ୍ତବ୍ୟ । ପୁତ୍ରର ସ୍ୱାସ୍ଥ୍ୟ, ଶିକ୍ଷା ଓ ସଦାଚରଣ ପିତାମାତାଙ୍କର ଶିକ୍ଷା ଓ ସଦାଚାର ଉପରେ ନିର୍ଭର କରିଥାଏ । ଶିଶୁମାନେ ଅନୁକରଣ ପଟୁ ।**

ଯେଉଁ ପିତା ଧୂମପାନ ବା ଅନ୍ୟ କୌଣସି କୁଅଭ୍ୟାସର ବଶବର୍ତ୍ତୀ ହୋଇଥାଏ ତା'ର ପୁତ୍ରମାନଙ୍କର ତଦନୁରୂପ ପ୍ରକୃତି ଦେଖାଯାଏ ।

ମନୁଷ୍ୟାଣାଂ ସହସ୍ରେଷୁ,
କଶ୍ଚିଦ୍‌ଯତତି ସିଦ୍ଧୟେ ।
ଯତତାମପି ସିଦ୍ଧାନାଂ କଶ୍ଚି,
ନ୍ମାଂ ବେତ୍ତି ତତ୍ତ୍ୱତଃ ॥

(ସପ୍ତମୋଦ୍ଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୩)



ସହସ୍ର ଜୀବ ମଧ୍ୟେ ନର ।
ଶ୍ରେଷ୍ଠ ସେ ଶକ୍ତି ଅଛି ଯାର ॥
ଭକ୍ତିରେ ଶକ୍ତି ବ୍ୟବହାରେ ।
ପରମେଶ୍ୱର ଲାଭ କରେ ॥
ବ୍ରହ୍ମରେ ଚିତ୍ତାର୍ପଣ କରି ।
ଭକ୍ତି ସହିତ ପୂଜା କରି ॥
ତାଙ୍କ ବ୍ୟତୀତ ଅନ୍ୟ ନାହିଁ ।
ଏ ଭାବେ ସିଦ୍ଧିକି ଲଭଇ ॥

ତେଣୁ ସୁପୁତ୍ର ହିଁ ପ୍ରକୃତ ପୁତ୍ର । କୁପୁତ୍ର ପିତାର ଶତ୍ରୁତା ସାଧନ କରେ । ତେଣୁ ଯଥାର୍ଥରେ ଉକ୍ତି ରହିଛି ।

"ଅଜାତ ମୃତ ମୂର୍ଖାଣାଂ
ବରଂ ଆଦ୍ୟୌ ନ ଚାନ୍ତିମଃ
ସକୃତ୍ ଦୁଃଖକରୌ ଆଦ୍ୟୌ
ଅନ୍ତିମ ସ୍ତୁ ପଦେ ପଦେ ।"

ସୁପୁତ୍ର ପିତାର ସୁନାମ ପ୍ରଚାର କରେ ଓ ପରକାଳରେ ମୁକ୍ତିର ସହାୟକ ହୋଇଥାଏ । ତେଣୁ ସମସ୍ତେ ପୁତ୍ର କାମନା କରନ୍ତି । କନ୍ୟାଦାନ ପୃଥିବୀରେ ଶ୍ରେଷ୍ଠ ଦାନ । ତେଣୁ ପିତାମାତା କନ୍ୟା ଇଚ୍ଛା କରନ୍ତି । କନ୍ୟା ତୁଳନାରେ ପୁତ୍ରର ସ୍ଥାନ ଉଚ୍ଚରେ । ତେଣୁ ପିତାମାତା ପୁତ୍ର କାମନା କରି ଦେବାରାଧନା କରିଥାଆନ୍ତି । ଅବଶ୍ୟ କେତେକ କନ୍ୟା ପୁତ୍ରର କାର୍ଯ୍ୟ କରିଥାନ୍ତି । କିନ୍ତୁ ସେମାନଙ୍କର ସଂଖ୍ୟା କମ୍ । ଯେଉଁ ବ୍ୟକ୍ତି ମାନେ ଦୁର୍ନୀତି ପରାୟଣ ସେମାନଙ୍କର ଅଧିକ ସଂଖ୍ୟାରେ କନ୍ୟା ହୋଇଥାଆନ୍ତି । ଜନ୍ମ ନିୟନ୍ତ୍ରଣ ପିତାମାତାଙ୍କର ସଂଯତ ଜୀବନ ଉପରେ ନିର୍ଭର କରେ । ଗ୍ରୀଷ୍ମ ପ୍ରଧାନ ଦେଶରେ ଜନ୍ମ ନିୟନ୍ତ୍ରଣ ପାଇଁ ଅସ୍ତ୍ରୋପଚାରର ପ୍ରଚଳନ ବିଶେଷତଃ ଅନୁଭୂତ ହୁଏ ।

"ବରମେକୋ ଗୁଣୀ ପୁତ୍ରଃ ନ ଚ ମୂର୍ଖ ଶତୈରପି
ଏକଶ୍ଚନ୍ଦ୍ରସ୍ତମୋହନ୍ତି ନଚ ତାରା ଗଣୈରପି ।"

**ଅନ୍ୱୟ :** ଶହେ ମୂର୍ଖ ପୁତ୍ର ଅପେକ୍ଷା ଏକ ଗୁଣବାନ ପୁତ୍ର, ଅସଂଖ୍ୟ ତାରାଗଣଙ୍କ ମଧ୍ୟରେ ଗୋଟିଏ ଚନ୍ଦ୍ର ସଦୃଶ ଅଟେ ।

●●●

ରସୋଽହମପ୍ସୁ କୌନ୍ତେୟ,
ପ୍ରଭାସ୍ମି ଶଶିସୂର୍ଯ୍ୟୟୋଃ ।
ପ୍ରଣବଃ ସର୍ବବେଦେଷୁ,
ଶବ୍ଦଃ ଖେ ପୌରୁଷଂ ନୃଷୁ ॥
ପୁଣ୍ୟୋଗନ୍ଧଃ ପୃଥିବ୍ୟାଂ ଚ,
ତେଜଶ୍ଚାସ୍ମି ବିଭାବସୌ ।
ଜୀବନଂ ସବଭୂତେଷୁ,
ତପଶ୍ଚାସ୍ମି ତପସ୍ୱିଷୁ ॥

(ସପ୍ତମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୮ ଓ ୯)



ରସ ସ୍ୱରୂପ ଜଳେ ମୁହିଁ ।
ଚନ୍ଦ୍ର ସୂର୍ଯ୍ୟେରେ ପ୍ରଭା ହୋଇ ॥
ବେଦରେ ମୁହିଁ ଯେ ଓଁକାର ।
ଆକାଶେ ଶବ୍ଦ ରୂପ ମୋର ॥
ମନୁଷ୍ୟେ ପୌରୁଷ ଅଟଇ ।
ଜାଣ ଅର୍ଜୁନ ଚିତ୍ତେଧାଇ ॥
ଶବଦ ସ୍ପର୍ଶ ରୂପ ଗନ୍ଧ ।
ରୂପ ସ୍ୱରୂପ ପୃଥ୍ୱୀ ମଧ୍ୟ ॥
ଅଗ୍ନିରେ ତେଜରୂପ ମୁହିଁ ।
ପ୍ରାଣୀରେ ଜୀବନ ବୋଲାଇ ॥
ତପୀଙ୍କ ତପସ୍ୟା ରୂପରେ ।
ବ୍ରହ୍ମ ବିହରେ ଜଗତରେ ॥

# ଖାଦ୍ୟ ଓ ପାନୀୟ

ଖାଦ୍ୟ ହିଁ ମାନବର ପ୍ରାଣ । ଜଳର ଅନ୍ୟନାମ ଜୀବନ । ସୁଷମ ଖାଦ୍ୟ କହିଲେ ଯେଉଁ ଖାଦ୍ୟରେ ଖାଦ୍ୟପ୍ରାଣ (Vitamin) ଥାଏ - ଯଥା- ଦୁଗ୍ଧ , ଦୁଗ୍ଧଜାତ ଦ୍ରବ୍ୟ, ମାଛ, ମାଂସ, ଅଣ୍ଡା, ଫଳ ଓ ସବୁଜ ପରିବା । ସଂଯତ ଓ ନିୟମିତ ଭାବରେ ଖାଦ୍ୟ ଖାଇଲେ ମନୁଷ୍ୟ କ୍ବଚିତ୍ ରୋଗାକ୍ରାନ୍ତ ହୁଏ । ଅନେକ ଲୋକ ଜିହ୍ୱାଲାଳସାରେ ହୋଟେଲ ଓ ମିଷ୍ଟାନ୍ନ ଦୋକାନ ମାନଙ୍କରେ ଖାଇଥାନ୍ତି । ସେପରି ଖାଦ୍ୟ ବିଷ ସଦୃଶ । ବ୍ୟବସାୟୀମାନେ ଅଧିକ ଲାଭ ଆଶାରେ ନାନା ପ୍ରକାର ଅଖାଦ୍ୟ ପଦାର୍ଥ ରନ୍ଧନ କରି ଗ୍ରାହକ ମାନଙ୍କଠାରୁ ଅଧିକା ଦାମ ନିଅନ୍ତି । ଆଜି କାଲି ଖାଦ୍ୟପଦାର୍ଥରେ ଅପମିଶ୍ରଣ ଦେଖାଗଲାଣି । ତେଣୁ ଖାଦ୍ୟ ପାନୀୟରେ ସାବଧାନତା ଅବଲମ୍ବନ କରିବା ଉଚିତ୍ । ସୁଷମ ଖାଦ୍ୟ ଖାଇବା ଫଳରେ ଶିଶୁର ଶାରୀରିକ ତଥା ମାନସିକ ଅବସ୍ଥା ଉନ୍ନତ ହୁଏ ଓ ସେମାନେ ମେଧାବୀ ହୁଅନ୍ତି । ଅବଶ୍ୟ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରି ଉଚ୍ଚଶିକ୍ଷା ଲାଭ କରି ଲୋକ ସେମାନଙ୍କର ଭାବୀ ଜୀବନକୁ ଉନ୍ନତ କରିପାରିଛନ୍ତି, କିନ୍ତୁ ସେମାନଙ୍କର ସଂଖ୍ୟା କମ୍ । ଉପଯୁକ୍ତ ପରିବେଶ ଲୋକଙ୍କୁ ଉଚ୍ଚଶିକ୍ଷା ଦେଇଥାଏ । କେତେକ ଗରିବ ବାଳକ କଠୋର ପରିଶ୍ରମ କରି ଜୀବନରେ ଉଚ୍ଚପଦବୀ ଲାଭକରି ଅଛନ୍ତି ।

ଶିଶୁର ପ୍ରାଥମିକ ଶିକ୍ଷା ଶିକ୍ଷିତ ଅଭିଭାବକମାନଙ୍କ ଉପରେ ନ୍ୟସ୍ତ । ତେଣୁ ଉପଯୁକ୍ତ ପରିବେଶ ନପାଇଲେ ଶିଶୁ ଉପଯୁକ୍ତ ଜ୍ଞାନଲାଭରୁ ବଞ୍ଚିତ ହୁଏ । ଧନୀ ପରିବାରର ସନ୍ତାନମାନେ ଧନର

ଦୈବୀ ହ୍ୟେଷା ଗୁଣମୟୀ,
ମମ ମାୟା ଦୂରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ,
ମାୟାମେତାଂ ତରନ୍ତି ତେ ।।
ନ ମାଂ ଦୁଷ୍କୃତିନୋମୂଢ଼ାଃ,
ପ୍ରପଦ୍ୟନ୍ତେ ନରାଧମାଃ ।
ମାୟୟାପହୃତଜ୍ଞାନା,
ଆସୁରଂ ଭାବମାଶ୍ରିତାଃ ।।

(ସପ୍ତମୋଦ୍ଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୧୪ଓ୧୫)



ଅଲୌକିକ ମାୟା ମୋହର ।
ତ୍ରିଗୁଣ ସ୍ୱରୂପ ତାହାର ।।
ତାକୁ କରିବା ସହଜରେ ।
ସମର୍ଥ ନ ଦେଖଇ କାରେ ।।
ଯେ ଭକ୍ତିଭାବେ ଭଜେ ମୋତେ ।
ସେ ମାୟାସ୍ରୋତରେ କିଞ୍ଚିତେ ।।
ସାହସ ଦମ୍ଭ ଗର୍ବେ ବୁଡ଼ି ।
ବିବେକ ପଥମାନ ଛୁଡ଼ି ।।
ସଂସାର କାର୍ଯ୍ୟେ ମତ୍ତ ଥାନ୍ତି ।
ଅସୁର ପ୍ରକୃତି ଲଭନ୍ତି ।।
ସେ ପାପୀ ଅତି ମୂଢ଼ ଜନ ।
ଯେ ମୋତେ ନ କରେ ଭଜନ ।।

ଅପବ୍ୟବହାର କରନ୍ତି ଓ କୁସଂସର୍ଗ ଦୋଷରୁ ନିଜର ଭାବୀ ଜୀବନକୁ କଳୁଷିତ କରିଥାଆନ୍ତି । କିନ୍ତୁ ଧନୀ ଶିକ୍ଷିତ ପରିବାରରେ ସେପରି ସନ୍ତାନ ଦେଖାଯାଆନ୍ତି ନାହିଁ । ୧୯୩୭ ମସିହାରେ ଭାରତର ଶିକ୍ଷିତ ସଂଖ୍ୟା ଶତକଡା ୬ ଥିଲା ଦୀର୍ଘ ୩୨ ବର୍ଷ ପରେ ସ୍ୱାଧୀନ ଭାରତରେ ସହସ୍ରାଧିକ ସଂଖ୍ୟାରେ ଶିକ୍ଷାନୁଷ୍ଠାନ ହୋଇ ମଧ୍ୟ ବର୍ତ୍ତମାନ ଶିକ୍ଷିତ ସଂଖ୍ୟା ଶତକଡ଼ା ୨୨ କୁ ବୃଦ୍ଧି ପାଇଛି । ତେଣୁ ପିତା ମାତା ସନ୍ତାନର ଭାଗ୍ୟ ବିଧାତା ।

ଖାଦ୍ୟପରି ପାନୀୟ ଜଳ ପରିଷ୍କୃତ ହେବା ଉଚିତ୍ । ଜଳ ନାନା ଜାତୀୟ ଭୟାନକ ରୋଗର କୀଟାଣୁର ପରିବାହକ । ତେଣୁ ନଦୀ, କୂପ ଓ ପୁଷ୍କରିଣୀ ଜଳକୁ ବିଶୁଦ୍ଧ କରି ପାନ କରିବା ଉଚିତ୍ । ବିଶୁଦ୍ଧ ବାୟୁ ମଧ୍ୟ ସୁସ୍ଥ ଶରୀର ପାଇଁ ଆବଶ୍ୟକ । ବିଶୁଦ୍ଧ ବାୟୁରେ ଅମ୍ଳଜାନ ଅଧିକ ପରିମାଣରେ ଥିବାରୁ ବିଶୁଦ୍ଧ ବାୟୁ ଗୃହ ମଧ୍ୟକୁ ପ୍ରବେଶ କରିବା ଉଚିତ୍ । ତେଣୁ ଶାରୀରିକ ବ୍ୟାୟାମ ପରି ପ୍ରତ୍ୟହ ସକାଳ ଓ ଅପରାହ୍ନରେ କିଛି ସମୟ ପାଇଁ ଭ୍ରମଣ କରିବା ଉଚିତ୍ ।

ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ,
ଏକଭକ୍ତିର୍ବିଶିଷ୍ୟତେ ।
ପ୍ରିୟୋହି ଜ୍ଞାନିନୋଽତ୍ୟର୍ଥ,
ମହଂ ସ ଚ ମମ ପ୍ରିୟଃ ॥



(ସପ୍ତମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୧୭)

ଆର୍ତ୍ତ ଜିଜ୍ଞାସୁ ଅର୍ଥ ପ୍ରାର୍ଥୀ ।
ଜ୍ଞାନୀ ଏ ଚାରୋଟିର ମତି ॥
ପୁଣ୍ୟବନ୍ତ ଏ ଭଜେ ମୋତେ ।
ଶୁଣ ଅର୍ଜୁନ ତୋଷଚିତ୍ତେ ॥

ଆର୍ତ୍ତରେ ଗଜ ଡାକ ଦେଲା ।
ଉଦ୍ଧବ ଜିଜ୍ଞାସା କରିଲା ॥
ସୁଦାମା କଲା ଅର୍ଥେ ମନ ।
ଶୁକ ସନକ ପୁଛି ଜ୍ଞାନ ॥
ଆର୍ତ୍ତ ଜିଜ୍ଞାସୁ ଅର୍ଥପ୍ରାର୍ଥୀ ।
ସକାମୀ ଏମାନେ ଅଟନ୍ତି ॥
ଜ୍ଞାନୀ ଯେ ନିଷ୍କାମୀ ଅଟଇ ।
ମୋ ପ୍ରିୟ ଏହି ଶ୍ରେଷ୍ଠ ହୋଇ ॥
ଅପ୍ରିୟ ମୋ ସକାମ ଜ୍ଞାନ ।
ଅର୍ଜୁନ ଏହା ଭଲେ ଜାଣ ॥

•••

# ସଞ୍ଚୟଶୀଳତା

ଅର୍ଥାର୍ଜନ କରିବା ଯେପରି ମନୁଷ୍ୟର କର୍ତ୍ତବ୍ୟ ସଞ୍ଚୟଶୀଳତା ମଧ୍ୟ ସେହିପରି ପ୍ରତ୍ୟେକ ଲୋକର କର୍ତ୍ତବ୍ୟ । ଲୋକ ସଞ୍ଚୟଶୀଳ ନହେଲେ ଭାବୀ ଜୀବନରେ ଅର୍ଥାଭାବ ଅନୁଭବ କରେ ଓ ବିପଦ ସମୟରେ ଋଣଗ୍ରସ୍ତ ହୁଏ । ତା'ଫଳରେ ନିଜେ ଦୁଃଖ ପାଏ ଓ ପରିବାରସ୍ଥ ଲୋକମାନେ ମଧ୍ୟ ଦୁଃଖ ଭୋଗ କରନ୍ତି । ଏଣୁ ସଞ୍ଚୟଶୀଳତା ଅପରିହାର୍ଯ୍ୟ । ସ୍ୱଳ୍ପବେତନ ଭୋଗୀ କର୍ମଚାରୀ ମାନେ ସଂଯତ ଜୀବନ ଯାପନ କରି ସଞ୍ଚୟଶୀଳ ହୋଇପାରିଛନ୍ତି । ଲୋକ ପ୍ରତ୍ୟେକ କର୍ମରେ ସଂଯତ ହେଲେ ଅର୍ଥ ସଞ୍ଚୟ କରିପାରିବ । ତେଣୁ ଆଜିକାଲି ସ୍ୱଳ୍ପ ସଞ୍ଚୟର ଯୋଜନା ଉପରେ ସରକାର ଲୋକମାନଙ୍କୁ ସଚେତନ କରାଉଛନ୍ତି । ବିଳାସ ବ୍ୟସନ ସଞ୍ଚୟଶୀଳତାର ପ୍ରଧାନ ଶତ୍ରୁ । ସଞ୍ଚୟଶୀଳ ବ୍ୟକ୍ତି ଅର୍ଥାଭାବ ଅନୁଭବ କରେ ନାହିଁ ଓ ସନ୍ତାନ ମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇପାରେ । ସଞ୍ଚୟଶୀଳତା ସରକାରୀ ବା ବେସରକାରୀ କର୍ମଚାରୀମାନଙ୍କ ପକ୍ଷରେ ସହଜସାଧ୍ୟ । ମୁଁ ଜୀବନ କାଳ ମଧ୍ୟରେ ଦେଖିଛି ସତ୍ୟବାଦୀ ସ୍କୁଲ୍‌ର ମୋର ଜଣେ ସହକର୍ମୀ ଶିକ୍ଷକ ମାସିକ ଟ୩୦ଙ୍କା ବେତନ ପାଇ ବେତନ ପ୍ରାପ୍ତ ଦିବସରେ ମାତ୍ର ଟ୨/-ଙ୍କା ଡାକଘରେ ଜମା ଦେଇ ଟ୬୦୦/-ଙ୍କା ରଖି ପାରିଥିଲେ । ବର୍ତ୍ତମାନ ସମୟରେ ସେହି ଛଅ ଶହ ଟଙ୍କାର ମୂଲ୍ୟ ଟ୧୨୦୦୦ଙ୍କା । ବର୍ତ୍ତମାନ ହରିଜନ ଶ୍ରମିକ ମାନେ ମଧ୍ୟ ଡାକ ଘରେ ପାସ୍‌ବହି ଖୋଲି ଅର୍ଥ ସଞ୍ଚୟ କରୁଛନ୍ତି । ବର୍ତ୍ତମାନ ବ୍ୟୟ ବହୁଳ ସମୟରେ ବ୍ୟୟ ସଙ୍କୋଚ କରି ସଞ୍ଚୟଶୀଳ ହେବା ଉଚିତ୍ ।

ଅଧିକ ଲୋକ ଥିଲେ ପରିବାରରେ ସଞ୍ଚୟଶୀଳ ହେବା କଷ୍ଟକର । ତଥାପି ଲୋକ ସଂଯତ ହେଲେ ସଞ୍ଚୟ କରିପାରିବ । ନିୟମିତ ଭାବରେ ବ୍ୟାଙ୍କ ବା ଡାକଘରେ ଟଙ୍କା ଜମା ନଦେଲେ ତାହାକୁ ସଞ୍ଚୟଶୀଳତା କୁହାଯାଏ ନାହିଁ । ବର୍ତ୍ତମାନ ଯୁଗରେ ଅନେକ ଲୋକ ଦୀର୍ଘ କାଳୀନ ଭିତ୍ତିରେ ଅର୍ଥ ସଞ୍ଚୟ କରୁଛନ୍ତି । ସେପରି ସଞ୍ଚିତ ଧନ ପୁତ୍ର

ବହୂନାଂ ଜନ୍ମନାମନ୍ତେ,
ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ॥
ବାସୁଦେବଃ ସର୍ବମିତି,
ସ ମହାତ୍ମା ସୁଦୁର୍ଲ୍ଲଭଃ ॥

(ସପ୍ତମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଲୋକ - ୧୯)



ନିଷ୍କାମୀ ଆତ୍ମଜ୍ଞାନ ଲଭେ ।
ପରଂଗତି ସେ ମୋତେ ଭାବେ ॥
ବହୁତ ଜନ୍ମ ଜନ୍ମାନ୍ତରେ ।
ଲଭଇ ଜ୍ଞାନବଳେ ମୋରେ ॥
ଜଗତ ବାସୁଦେବ ମୟ ।
ଏ ଜ୍ଞାନ ହୋଇଲେ ଉଦୟ ॥
ଏ ଅଟେ ମହାତ୍ମା ଦୁର୍ଲ୍ଲଭ ।
ବହୁତ ପୁଣ୍ୟ ତାର ଲାଭ ॥

କନ୍ୟାମାନଙ୍କର ଉଚ୍ଚଶିକ୍ଷା ଓ ବ୍ରତ ବିବାହ ପ୍ରଭୃତି ବ୍ୟୟ ବହୁଳ କାର୍ଯ୍ୟରେ ସହାୟକ ହୋଇଥାଏ । ସଞ୍ଚୟଶୀଳତା ବିଶେଷତଃ ସୁଗୃହିଣୀ ମାନଙ୍କ ଦ୍ୱାରା ସହଜ ସାଧ୍ୟ । ଆଗେ ସ୍ତ୍ରୀ ମାନେ ରୋଷେଇ କରିବା ସମୟରେ ମୁଠେ ଚାଉଳ ନିୟମିତ ଭାବରେ ଗୋଟିଏ ପାତ୍ରରେ ରଖି ମାସ ଶେଷରେ ତାହା ବିକ୍ରି କରି ଗୃହର ଆବଶ୍ୟକ ଖର୍ଚ୍ଚ ଚଳାଉଥିଲେ । ଦେଖା ଶିଖା ଓଡିଶା । ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ଧନୀ ମାନଙ୍କୁ ଅନୁକରଣ କରୁଛନ୍ତି । ତା' ଫଳରେ ସେମାନଙ୍କର ଦାରିଦ୍ର୍ୟର ସୀମା ରହୁନାହିଁ ।

## ସଞ୍ଚୟଶୀଳତା ଗାର୍ହସ୍ଥ୍ୟ ଜୀବନରେ ଅପରିହାର୍ଯ୍ୟ ।

ଦରିଦ୍ର ପରିବାରରେ ସଞ୍ଚୟଶୀଳତା ଅପରିହାର୍ଯ୍ୟ ହେଲେହେଁ ମୋ ଜୀବନରେ ମୁଁ କିନ୍ତୁ ଅର୍ଥ ସଞ୍ଚୟ କରିପାରି ନଥିଲି । ଜୀବନ କାଳ ମଧ୍ୟରେ ଡ଼ାକ ଘରେ ପାସ୍‌ବହି ଖୋଲି ନାହିଁ । ମୋର ଧାରଣା ଥିଲା ଟଙ୍କା ପାଖରେ ରହିବ ନାହିଁ । ବାଲ୍ୟ ଜୀବନରେ ଅନ୍ୟର ଦ୍ୱାରସ୍ଥ ହୋଇ ଧାନ କିଣିବାକୁ ପଡୁଥିଲା । ତେଣୁ ଧାନ ଜମି କିଣିବା ଆଗ୍ରହ ମୋର ଥିଲା । ଜୀବନରେ ବାସ ଗୃହର ସଂସ୍କାର କଲି । ଆମର ମାତ୍ର ୭ ହାତ ମାଟି ଘର ଥିଲା । କଥାରେ ଅଛି ପ୍ରଥମେ ବାସ ତାପରେ ଗ୍ରାସ । ଆଜିକାଲି ଯୁଗରେ ସଞ୍ଚୟଶୀଳତା ଅପରିହାର୍ଯ୍ୟ । ବିପଦ ସମୟରେ ଏହାର ଆବଶ୍ୟକତା ଦେଖାଯାଏ । ଆଗେ ବାସନ ବନ୍ଧାଦେଇ ଲୋକେ ଟଙ୍କା ଧାର କରୁଥିଲେ କିନ୍ତୁ ବର୍ତ୍ତମାନ କେବଳ ସୁନା ରଖି ଧନୀ ଲୋକମାନେ ଟଙ୍କା ଋଣସୂତ୍ରରେ ଦେଉଛନ୍ତି । କିନ୍ତୁ ସୁନା ବିରଳ ହେଲାଣି । ଏହାକୁ ଘରେ ରଖିବା ମଧ୍ୟ ନିରାପଦ ନୁହେ ।

ଶିକ୍ଷା ବିଭାଗରେ କାର୍ଯ୍ୟକରି ସ୍ୱଳ୍ପବେତନ ଭୋଗୀ କର୍ମଚାରୀ ଥିବାରୁ ବିଶେଷତଃ ଘରୋଇ ସ୍କୁଲରେ କାମ କରୁଥିବାରୁ ମୋର ମାସିକ ବେତନ ପରିବାର ପୋଷଣ ପାଇଁ ଯଥେଷ୍ଟ ନଥିଲା । ତାପରେ ମୁଁ ଆଜୀବନ ଋଣଗ୍ରସ୍ତ ରହୁଥିଲି । ପିତାମହଙ୍କର ଶୁଦ୍ଧକ୍ରିୟା, ନାନୀମାନଙ୍କର ବିବାହ, ବୋଉର ବେମାର ଓ ଭାଇନା ଆଜୀବନ ରୋଗୀ ଥିବାରୁ ମୋତେ ସର୍ବଦା ଋଣ କରିବାକୁ ପଡୁଥିଲା । ୧୯୫୬ ରୁ ୧୯୭୧ ପର୍ଯ୍ୟନ୍ତ ସମବାୟ ସମିତିରୁ ଋଣ ଆଣିବାକୁ ପଡୁଥିଲା ।

ଇଚ୍ଛା-ଦ୍ୱେଷ-ସମୁତ୍‌ଥେନ,
ଦ୍ୱନ୍ଦ୍ୱମୋହେନ ଭାରତ ।
ସର୍ବଭୂତାନି ସମ୍ମୋହଂ,
ସର୍ଗେ ଯାନ୍ତି ପରନ୍ତପ ॥

(ସପ୍ତମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୨୭)



ମିଶିଲେ ହୁଏ ସ୍ଥୁଳ ଘଟ ।
ତହିଁରୁ ଦ୍ୱିଭାଗ ପ୍ରଘଟ ॥
ତତ୍ ଅନୁକୂଳ ଇଚ୍ଛା ନାମ ।
ପ୍ରତିକୂଳ ଯେ ଦ୍ୱେଷ ଜାଣ ॥
ଇଚ୍ଛା ଦ୍ୱେଷଙ୍କଠାରୁ ଜାତ ।
ଦ୍ୱନ୍ଦ୍ୱ ମୋହକୁ ହୁଏ ପ୍ରାପ୍ତ ॥
ମାୟାରେ ଆଚ୍ଛନ୍ନ ସେ ହୋଇ ।
ମୋର ଭାବକୁ ନ ଜାଣଇ ॥

# ଋଣ

ଋଣ ଓ ବ୍ୟାଧି ସହୋଦର ଭାଇ ସଦୃଶ । ପ୍ରଥମରୁ ସାବଧାନତା ଅବଲମ୍ବନ ନକଲେ ଯେପରି ସଂକ୍ରାମକ ରୋଗ ପରିବାରର ସୁସ୍ଥ ଲୋକମାନଙ୍କୁ ରୋଗାକ୍ରାନ୍ତ କରି ଦୁର୍ବଳ କରିଥାଏ ସେହିପରି ଋଣୀ ହୋଇ ଋଣ ମୁକ୍ତ ନହେଲେ ପରିବାରର ଲୋକମାନେ ଦୁଃଖ ଭୋଗ କରନ୍ତି । ଏପରିକି ଲକ୍ଷାଧିପତି ମାନେ ଦାରିଦ୍ର୍ୟ ବରଣ କରିଛନ୍ତି । ଏହାର ଦୃଷ୍ଟାନ୍ତ ପୃଥିବୀରେ ବିରଳ ନୁହେଁ । ଆଜିକାର ଧନିକ ଘରର ଲୋକମାନେ ଅଧିକମାତ୍ରାରେ ଋଣଗ୍ରସ୍ତ । ଶ୍ରମିକ ପରିବାରରେ ଋଣଗ୍ରସ୍ତ ଲୋକମାନଙ୍କର ସଂଖ୍ୟା କମ୍ । କାରଣ ସେମାନେ ସ୍ୱଉପାର୍ଜିତ ଅର୍ଥରେ ଜୀବିକା ନିର୍ବାହ କରନ୍ତି । ଧର୍ମବକ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଥିଲେ ସଂସାରରେ ପ୍ରକୃତ ସୁଖୀ କିଏ ? ଯୁଧିଷ୍ଠିର୍ କହିଥିଲେ

'ଦିବସ୍ୟାଷ୍ଟମେ ଭାଗେ ଶାକଂ ପଚତି ଯୋ ନରଃ
ଅଋଣୀ ଅପ୍ରବାସୀ ଚ ସଃ ବାରିଚର ମୋଦତେ'

ଏହା ଅକ୍ଷରେ ଅକ୍ଷରେ ସତ୍ୟ । ସଂଯତ ଜୀବନ ଯାପନ ଲୋକକୁ ଋଣରୁ ରକ୍ଷା କରେ । ଜୀବନରେ ଋଣଠାରୁ ବଳି ବଡ ଶତ୍ରୁ ଆଉ କେହି ନାହିଁ । ଆଜିକାଲି ସମବାୟ ସମିତି ମାଧ୍ୟମରେ ଋଣ ନେଇ ତାକୁ ଲାଭଜନକ ବ୍ୟବସାୟରେ ଲଗାଇ ଲାଭବାନ ହେଉଛନ୍ତି । କିନ୍ତୁ ଯେଉଁମାନେ ଅନ୍ୟ ଉଦ୍ଦେଶ୍ୟରେ ଖର୍ଚ୍ଚ କରନ୍ତି ସେମାନେ ସର୍ବସ୍ୱାନ୍ତ ହୁଅନ୍ତି । ତେଣୁ ସଂଯତ ଜୀବନ ଯାପନ ଋଣଗ୍ରସ୍ତ ନହେବାର ଏକମାତ୍ର ପନ୍ଥା ।

"ଋଣଂ କୃତ୍ୱା ଘୃତଂ ପିବେତ୍"
(ଋଣ କରି ଘୃତ ପାନ କରିବା)

ଯେଷାଂ ତ୍ୱନ୍ତଗତଂ ପାପଂ,
ଜନାନାଂ ପୁଣ୍ୟକର୍ମଣାଂ ।
ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତା,
ଭଜନ୍ତେ ମାଂ ଦୃଢ଼ବ୍ରତାଃ ॥
ଜରାମରଣମୋକ୍ଷାୟ,
ମାମାଶ୍ରିତ୍ୟ ଯତନ୍ତି ଯେ ।
ତେ ବ୍ରହ୍ମ ତଦ୍‌ବିଦୁଃ କୃତ୍ସ୍ନ,
ମଧ୍ୟାତ୍ମଂ କର୍ମଂ ଚାଖିଳଂ ॥

(ସପ୍ତମୋଦ୍ଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୨୮ଓ୨୯)



ଯେ ସବୁ ପୁଣ୍ୟକର୍ମୀ ଜନ ।
ନାଶି ଅଛନ୍ତି ପାପମାନ ॥
ଦ୍ୱନ୍ଦ୍ୱ ମୋହରେ ନ ପଡ଼ନ୍ତି ।
ମୋତେ ଆଶ୍ରୟ କରିଥାନ୍ତି ॥
ଦ୍ୱନ୍ଦ୍ୱ ମୋହକୁ ଛାଡ଼ି ସେହି ।
ଦୃଢ଼ଭାବରେ ମୋତେ ପାଇ ॥
ମରଣ ଜରା ମୋକ୍ଷ ଇଚ୍ଛା ।
କରଇ ମୋ ଆଶ୍ରୟ ବାଞ୍ଛା ॥
ସେହି ଯେ ପରମାତ୍ମା ଜାଣେ ।
ଅଧ୍ୟାତ୍ମ ମାହାତ୍ମ୍ୟ ବର୍ଣ୍ଣନେ ॥

ଏହା ନିର୍ବୋଧର କାର୍ଯ୍ୟ । ଅବଶ୍ୟ ସମାଜରେ ଚଳିବାକୁ ହେଲେ ସାମୟିକ ଋଣ ଗ୍ରହଣ କରିବାକୁ ପଡିଥାଏ । କିନ୍ତୁ ଯଥାଶୀଘ୍ର ସେଥିରୁ ଅବ୍ୟାହତି ପାଇବା ବିଧେୟ । ଅଯଥା ଋଣଗ୍ରସ୍ତ ହେବା ଯେପରି ଅନ୍ୟାୟ ସେହିପରି ଅତିମାତ୍ରାରେ କୃପଣ ହେବା ମଧ୍ୟ ସୁନ୍ଦର ନୁହେଁ । କଥାରେ ଅଛି

"କୃପଣସ୍ୟ ଧନଂ ଯାତି ବୈଦ୍ୟ, ତସ୍କର, ବହ୍ନିଷୁ" ।

ଆଗେ ବୈଦ୍ୟ ସ୍ଥାନରେ 'ରାଜା' ଶବ୍ଦ ବ୍ୟବହୃତ ହେଉଥିଲା । ଯାହା ଖାଇଥିବ ପେଟକୁ, ଯାହା ଦେଇଥିବ ବାଟକୁ, ଯାହା ସଞ୍ଚିଥିବ ଖଣ୍ଡକୁ ।

ବ୍ୟୟ ସଂକୋଚ ଲୋକକୁ ଋଣଗ୍ରସ୍ତ କରାଏ ନାହିଁ । ସଭ୍ୟ ସମାଜରେ ଚଳିବାକୁ ହେଲେ କାର୍ପଣ୍ୟ ଯେପରି ପରିହାର୍ଯ୍ୟ ଋଣଗ୍ରସ୍ତ ହେବା ମଧ୍ୟ ସେହିପରି ଦୋଷାବହ । ଋଣଗ୍ରସ୍ତ ବ୍ୟକ୍ତି ଜୀବନରେ ଆତ୍ମ ସମ୍ମାନ ହରାଇ ଥାଏ । ମହାଜନମାନଙ୍କର ଦ୍ୱାରସ୍ଥ ହୋଇ ଅପମାନିତ ହୁଏ ।

ଅକ୍ଷରଂ ପରମଂ ବ୍ରହ୍ମ,
ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ ।
ଭୂତଭାବୋଦ୍ଭବକରୋ,
ବିସର୍ଗଃ କର୍ମସଂଜ୍ଞିତଃ ॥



ଯେହୁ ଅଖଣ୍ଡ ବିଶ୍ୱଜୀବ ।
ବ୍ରହ୍ମ ନାମଟି ସେହୁ ହେବ ॥
ତାଙ୍କର ଅଧ୍ୟାତ୍ମ ସ୍ୱଭାବ ।
ଅଂଶସ୍ୱରୂପୀ ଜାଣ ଜୀବ ॥

(ଅଷ୍ଟମୋଽଧ୍ୟାୟଃ - ତାରକବ୍ରହ୍ମ ଯୋଗଃ - ଶ୍ଲୋକ - ୩)

ଅନ୍ତକାଳେ ଚ ମାମେବ,
ସ୍ମରନ୍ମୁକ୍ତ୍ୱା କଳେବରଂ ।
ଯଃ ପ୍ରୟାତି ସ ମଦ୍ଭାବଂ,
ଯାତି ନାସ୍ତ୍ୟତ୍ର ସଂଶୟଃ ॥



ପ୍ରାଣୀମାନଙ୍କ ଦେହେ ମୁହିଁ ।
ଅଧିଯଜ୍ଞ ରୂପେ ରହଇ ॥
ମରଣ ସମୟ ପ୍ରବେଶେ ।
ଯେ ମୋର ନାମ ଚିତ୍ତେ ଘୋଷେ ॥
ଦେହ ଛାଡ଼ି ଉତ୍ତରାୟଣ ।
ଗଲେ ମୋ ଦେହେ ପାଏ ସ୍ଥାନ ॥
ଯେବେ ସଦ୍‌ଗୁଣଭାବେ ସ୍ମରେ ।
ମିଳେ ଯେ ହିରଣ୍ୟ ଗର୍ଭରେ ॥

(ଅଷ୍ଟମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଲୋକ - ୫)

●●●

# ପ୍ରକୃତ ବନ୍ଧୁ

ବନ୍ଧୁହୀନ ହୋଇ ସମାଜରେ ବାସ କରିବା କଷ୍ଟକର । ମନୁଷ୍ୟ ମାତ୍ରେ ହିଁ ସାମାଜିକ ପ୍ରାଣୀ । ସେ ପିଞ୍ଜରାବଦ୍ଧ ପକ୍ଷୀ ନୁହେ । କିନ୍ତୁ କିଏ ପ୍ରକୃତ ବନ୍ଧୁ ତାହା ଠିକ୍ କରିବା ମଧ୍ୟ ଅତୀବ କଠିନ । ବିଷକୁମ୍ଭ ପରି କପଟବନ୍ଧୁଙ୍କୁ ପରିହାର କରିବା ଉଚିତ୍ । କୁସଂସର୍ଗରେ ପଡିଲେ ମନୁଷ୍ୟ କୁପଥଗାମୀ ହୁଏ । ଚାହା ଦୋକାନରେ ବସିଲେ ଲୋକ ଚାହା ଖାଇଥାଏ । ପାନ ଦୋକାନରେ ବସିଲେ, ପାନ, ସିଗାରେଟ୍ ଖାଏ । ମଦ ଦୋକାନରେ ବସିଲେ ମଦ୍ୟପାନ କରେ । ସଂସାରରେ କପଟବନ୍ଧୁ ଅନେକ କିନ୍ତୁ ପ୍ରକୃତ ବନ୍ଧୁ (A true friend) ବିରଳ । କଳାମୁଣ୍ଡିଆକୁ ବିଶ୍ୱାସ ନାହିଁ । ତୁମ୍ଭର ଧନ, ସମ୍ମାନ ଓ କ୍ଷମତା ଥିବା ପର୍ଯ୍ୟନ୍ତ ଅନେକ କପଟ ବନ୍ଧୁ ମିଳିପାରନ୍ତି । ସବୁ ଚିହ୍ନି ହେବ କିନ୍ତୁ ମନୁଷ୍ୟର ଚରିତ୍ର ଜାଣିବା ଦୁଃସାଧ୍ୟ । ଆଚରଣ ଭଲ ହୋଇପାରେ କିନ୍ତୁ ଯାହାର ଅନ୍ତର ନିର୍ମଳ ନୁହେ ସେ ପ୍ରକୃତ ମନୁଷ୍ୟ ନୁହେ । ତାକୁ ଘୃଣା ନକରି ପାର କିନ୍ତୁ ସର୍ବଦା ସେପରି ଲୋକଠାରୁ ଦୂରରେ ରହିବା ଉଚିତ୍ ।

ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନଂ
ବର୍ଜୟେତ୍ ତାଦୃଶଂ ବନ୍ଧୁଂ ବିଷକୁମ୍ଭଂ ପୟୋମୁଖଂ

-(ଚାଣକ୍ୟ)

ଅତିକମରେ ୧ବର୍ଷ ଧରି ଜଣେ ଲୋକର ସାନିଧ୍ୟ ଲାଭ କଲାପରେ ତାହାର Character Study କଲାପରେ ତାକୁ ବନ୍ଧୁ ବା ଶତ୍ରୁ ରୂପେ ଗ୍ରହଣକରିପାର ।

ତସ୍ମାତ୍ ସର୍ବେଷୁ କାଳେଷୁ,
ମାମନୁସ୍ମର ଯୁଧ୍ୟ ଚ ।
ମର୍ଯ୍ୟର୍ପିତ ମନୋବୁଦ୍ଧି,
ର୍ମାମେବୈଷ୍ୟସ୍ୟସଂଶୟଃ ।।

(ଅଷ୍ଟମୋଦ୍ଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୭)



ଦେହାନ୍ତେ ସେହି ଭାବମତେ ।
ଲାଭ କରେ ସେହି ନିଶ୍ଚିନ୍ତେ ।।
ସ୍ୱଧର୍ମେ ମନ ଦିଅ ତୁହି ।
ଅନ୍ତଃକରଣ ଶୁଦ୍ଧ ହୋଇ ।।
ତେଣୁ ସ୍ୱଧର୍ମେ ଯୁଦ୍ଧ କର ।
ବୁଦ୍ଧି ବିବେକ ମନ ତୋର ।।
ଏକାଗ୍ରେ ମୋତେ ସମର୍ପଣ ।
ନିଶ୍ଚୟ ମୁକ୍ତି ତୋର ଜାଣ ।।

ଆଜିପର୍ଯ୍ୟନ୍ତ କଥା ରହିଛି ଭଗବାନ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କର ଓ ସୁଗ୍ରୀବ, ବିଭୀଷଣ ଶ୍ରୀରାମଙ୍କର ବନ୍ଧୁଥିଲେ। ବନ୍ଧୁ ବନ୍ଧୁକୁ ସତ୍‌ପଥ ଦେଖାଏ, ବିପଦରେ ସାହାଯ୍ୟ କରେ ଓ ଆମୋଦ ପ୍ରମୋଦରେ ଅଂଶୀଦାର ହୁଏ। ସେପରି ବନ୍ଧୁ ଅବଶ୍ୟ ଦୁର୍ଲଭ। କେତେକ ଉଚ୍ଚଶିକ୍ଷିତ ବ୍ୟକ୍ତି ଲୋକର ଚରିତ୍ର study ନକରି ତା ସହିତ ଘନିଷ୍ଠତା ସ୍ଥାପନ କରି ବିପନ୍ନ ହୋଇ ଅଛନ୍ତି ।

ମୋ ମତରେ **ପତ୍ନୀ ହିଁ ମନୁଷ୍ୟର ଏକମାତ୍ର ବନ୍ଧୁ।** ପତ୍ନୀ ପତିର ପ୍ରତ୍ୟେକ କାର୍ଯ୍ୟରେ ଅଂଶ ଗ୍ରହଣ କରେ। ପତିର ବଂଶରକ୍ଷା କରେ। ପତିର ସେବା କରେ। ତାର ଧନ ଲାଳସା ନଥାଏ। ପତି ତା'ର ଜୀବନର ସର୍ବସ୍ୱ ବୋଲି ମନେକରେ। **ଦଶରଥଙ୍କ ବିୟୋଗରେ ରାମଚନ୍ଦ୍ର ଯେତେ କ୍ଷୁଣ୍ଣ ହୋଇନଥିଲେ ସୀତାଙ୍କ ବିଚ୍ଛେଦରେ ମ୍ରିୟମାଣ ହୋଇପଡିଥିଲେ।** ତେଣୁ ଶିକ୍ଷିତ ପରିବାରରୁ କନ୍ୟା ଗ୍ରହଣ କରିବା ଉଚିତ୍। ସ୍ୱେଚ୍ଛାଚାରିଣୀ ପତ୍ନୀ ପତିକୁ ସଂଯତ ଜୀବନ ଯାପନ କରିବାରେ ସାହାଯ୍ୟ କରେନାହିଁ। ଯେଉଁ ବ୍ୟକ୍ତି ଉପଯୁକ୍ତ ପତ୍ନୀ ପାଇଅଛି ତା'ର ଜୀବନ ଧନ୍ୟ। **ଧନାର୍ଜନ କରିବା ପତ୍ନୀର କର୍ତ୍ତବ୍ୟ ନୁହେ। ଧନ ସଂରକ୍ଷଣ, ସନ୍ତାନ ମାନଙ୍କର ସେବା ଶୁଶ୍ରୂଷା ତା'ର ପ୍ରଧାନ କାର୍ଯ୍ୟ।** ପତ୍ନୀ ସୁଗୃହିଣୀ ଓ ଶିକ୍ଷିତା ଥିଲେ ମନୁଷ୍ୟର ଭାବୀ ଜୀବନ ସୁଖମୟ ହୋଇଥାଏ।

ସର୍ବଦ୍ୱାରାଣି ସଂଯମ୍ୟ,
ମନୋହୃଦି ନିରୁଧ ଚ।
ମୂର୍ଦ୍ଧ୍ନ୍ୟାଧାୟାତ୍ମନଃ ପ୍ରାଣ,
ମାସ୍ଥିତୋଯୋଗଧାରଣାଂ ॥

(ଅଷ୍ଟମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୧୨)



ଯେ ଉପାୟରେ ତାଙ୍କୁ ପାଇ।
ତାହାର ମର୍ମ ଶୁଣ ତୁହି ॥
ଅଳ୍ପ ବହୁତେ ସାଧ କଲେ।
ଏ ମାୟାସିନ୍ଧୁ ତରେ ଭଲେ ॥
ଇନ୍ଦ୍ରିୟ ପ୍ରଥମେ ଜିଣିବ।
ମନକୁ ନିରୋଧେ ରଖିବ ॥
ପ୍ରାଣ ପବନ କରି ରୋଧ।
ସୁଷୁମ୍ନା ପଥେ ଦେଇ ସାଧ ॥

ଅନନ୍ୟଚେତାଃ ସତତଂ,
ଯୋମାଂ ସ୍ମରତି ନିତ୍ୟଶଃ।
ତସ୍ୟାହଂ ସୁଲଭଃ ପାର୍ଥ,
ନିତ୍ୟଯୁକ୍ତସ୍ୟ ଯୋଗିନଃ ॥

(ଅଷ୍ଟମୋଽଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୧୪)



ମୋତେ ସୁମରି କରେ ଯୋଗ।
ପାଏ ଅନ୍ତିମେ ମୁକ୍ତିମାର୍ଗ ॥
ସମସ୍ତ ଆଶା ତ୍ୟାଗ କରି।
ମୋର ଚରଣେ ଆଶ୍ରା କରି ॥
ଭଜଇ ଯୋଗପଥେ ମୋତେ।
ସୁଖ ଦୁଃଖ ନ ଭଜେ ଚିତ୍ତେ ॥
ଏ ନିତ୍ୟଯୋଗୀ ମୋ ଦୁର୍ଲ୍ଲଭ।
ପକ୍ଷେ ମୁଁ ଅଟଇ ସୁଲଭ ॥

# ଅନ୍ତିମ ଅଭିଳାଷ

୧- ପିତାର ଅସମ୍ପୂର୍ଣ୍ଣ କାମନା ସୁପୁତ୍ର ସମ୍ପୂର୍ଣ୍ଣ କରେ । ଅର୍ଥର ସଚ୍ଛଳତା ଆସିଲେ ମତ୍ ପ୍ରଣୀତ ରାମାୟଣ ଛପାଇବାକୁ ଚେଷ୍ଟା କରିବୁ । ଫାଇଲରେ ବାନ୍ଧି ରଖି ଦେଇ ଯାଇଛି ।

୨- ଆମର ଧାନ ଜମି ୩୦ମାଣ ଅଛି । ୨ଟି ପୁତ୍ରର ପିତା ହେଲୁଣି । ପାରିଲେ ଆଉ ୧୦ମାଣ ଧାନ ଜମି କରିପାରୁ । ଚଳିବା ପାଇଁ ପ୍ରତ୍ୟେକ ଲୋକର ଅତିକମ୍ ୫ ଏକର ଧାନ ଜମି ରହିବା ଉଚିତ୍ ।

୩- ବନା ବାଡ଼ି ପାଖ ୨୦ଡ଼ିସ୍‌ମିଲ୍ ଧାନ ଜମିରେ ମାଟି ପୋତି ବଗିଚା କରିବା ସର୍ବାଦୌ କର୍ତ୍ତବ୍ୟ । ସେଥିରେ ଯାହା ଖର୍ଚ୍ଚ ହେବ କଦଳୀରୁ ୨ ଗୁଣ ଟଙ୍କା ମିଳିଯିବ ।

୪- କଣ୍ଡିଆ, ଘନ ଓ ଭାବନାଙ୍କୁ ବିଲରୁ ଉଚ୍ଛେଦ କରିବୁ ନାହିଁ । ସେମାନେ ଅଭାବ ଗ୍ରସ୍ତ ହେଲେ ମଧ ସଙ୍କୋଚ ।

ମୋର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ ପରେ ପ୍ରଥମ ବାର୍ଷିକ ଶ୍ରାଦ୍ଧ ପରେ ଆଉ ଶ୍ରାଦ୍ଧ କରିବ ନାହିଁ । ଭାଇନା କରିପାରିବ ନାହିଁ । ତୁ ମଧ ଘରକୁ ଆସି ପାରିବୁ ନାହିଁ । ପୁରୀ ଆସି ଶ୍ରୀମନ୍ଦିରରେ କରିପାରୁ କିମ୍ବା ଯେଉଁ ସ୍ଥାନରେ ଥିବୁ ମୋର ମୃତାହ ଦିବସରେ ଅତିକମ୍ ୫ ଜଣ ବ୍ରାହ୍ମଣ ଭୋଜନ କରାଇବୁ ।

ମାମୁପେତ୍ୟ ପୁନର୍ଜନ୍ମ,
ଦୁଃଖାଳୟମଶାଶ୍ୱତଂ ।
ନାପ୍ନୁ ବନ୍ତିମହାତ୍ମାନଃ,
ସଂସିଦ୍ଧିଂ ପରମାଂ ଗତାଃ ।।
ଆବ୍ରହ୍ମଭୁବନାଲ୍ଲୋକାଃ,
ପୁନରାବର୍ତ୍ତିନୋଦ୍ଧର୍ଜ୍ଜୁନ ।
ମାମୁପେତ୍ୟ ତୁ କୌନ୍ତେୟ,
ପୁନର୍ଜନ୍ମ ନ ବିଦ୍ୟତେ ।।

(ଅଷ୍ଟମୋଦ୍ଧଧ୍ୟାୟଃ - ବିଜ୍ଞାନ ଯୋଗଃ - ଶ୍ଳୋକ - ୧୫ଓ୧୬)



ଯେ ମୋତେ ଅନ୍ତିମେ ଭଜଇ ।
ଜନ୍ମ ମରଣ ଦୁଃଖ ନାହିଁ ।।
ଏ ଭବେ ନୁହଇ ସେ ଜାତ ।
ପରମ ଗତି ହୁଏ ପ୍ରାପ୍ତ ।।
ଯେ ପୁଣ୍ୟଫଳ ଆଶ୍ରେ ଧରି ।
ସ୍ୱର୍ଗାଦି ସୁଖ ଭୋଗ କରି ।।
ପୁଣ୍ୟ ସରିଲେ ମର୍ତ୍ତେ ଜାତ ।
ମୋ ଭକ୍ତେ ନୁହନ୍ତି ଏମନ୍ତ ।।
ମୋତେ ଭଜିଣ ଅନ୍ତେ ସ୍ମରେ ।
ପରମ ବ୍ରହ୍ମରେ ବିହରେ ।।
ଏ ଭବେ ନୁହଇ ତା ଜାତ ।
ସୁମନେ ଶୁଣ କୁନ୍ତୀସୁତ ।।

●●●

## ପ୍ରାତଃ ଉତ୍ଥାୟ ସ୍ମରେତ୍

ଓଁ ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।

କିମ୍ବା

ଓଁ ଶ୍ରୀ ରାମଃ ଶ୍ରୀ ଜଗନ୍ନାଥଃ ଶ୍ରୀ ମଧୁସୂଦନ ହରି
ଶ୍ରୀକୃଷ୍ଣଃ ଶ୍ରୀ ଜଗନ୍ନାଥଃ ଶ୍ରୀ ମଧୁସୂଦନ ହରି ।

### ମୃତ୍ୟୁପରେ କ୍ରିୟାକର୍ମ :

ସାଧାରଣତଃ ଦେଖାଯାଏ ବୃଦ୍ଧବ୍ୟକ୍ତିମାନେ ମରିଗଲେ ସେମାନଙ୍କର ସଜକ୍ରିୟା ଧରାଯାଏ । କିନ୍ତୁ ସେପରି ଅସୁବିଧା ଥିଲେ ୪ର୍ଥ ଦିନ କ୍ରିୟା ଧରିଲେ କ୍ଷତି ନାହିଁ । ହବିଷ୍ୟ କଲେ, ତୁ, ଭାଇନା, ବୋଉ ଓ ଦୁଇ ନାନୀ ୧୦ ଦିନ ପାଳିବ । ତୋର ପିତାମହ ତାଙ୍କର ମୃତ୍ୟୁ ପୂର୍ବରୁ ମୋତେ ସବୁ ବୁଝାଇ କହିଥିଲେ । ସେ ସମୟକୁ ମୋତେ ୫୦ବର୍ଷ ହୋଇଥିଲା । କିନ୍ତୁ ତୁମ୍ଭେମାନେ ପିଲା । ବିଷୟ ଜ୍ଞାନ ନାହିଁ । ଆମର କୁଟୁମ୍ବରେ ପିତାନ୍ନ ଖାଇବାକୁ କେହି ନାହାନ୍ତି । ୪ର୍ଥ ଦିନ ୩ହାଣ୍ଡି ମହାପ୍ରସାଦ, ୧୫ କୁଡୁଆ ତରକାରି କରିବ ।

୭ମ ଦିନ - ୬ ହାଣ୍ଡି, ୩୦ କୁଡୁଆକରି ଖଣ୍ଡି ଡ଼ାକରା କରିବ ।

୧୦ ମ ଦିନ- ୮ହାଣ୍ଡି ୪୦କୁଡୁଆକରି ଖଣ୍ଡି ଡ଼ାକରା ଓ ଦ୍ୱିତୀୟ ଖଣ୍ଡିରୁ ଉଦୟନାଥ ମିଶ୍ର ଓ ବନ୍ଧୁ ମିଶ୍ର, ନରିରଥଙ୍କୁ ଡାକିପାର ।

ମୃତ୍ୟୁ ପୂର୍ବରୁ ମୋତେ ୫ ଦାନ ଦେବ ନାହିଁ । ୧୧ ଦିନ ରାତିରେ ଦେବ ।

ନବମ ଶୀତଳରେ କେବଳ ମାଲଭାଇ (ଶବଦାହକାରୀ)ଙ୍କୁ ଡ଼ାକିପାର । (ଶେଷ ବକ୍ତବ୍ୟ) ବିଦାୟ ।

ଚିର ଶୁଭେଚ୍ଛୁ
ଦୀର୍ଘ ଜୀବନକାମୀ
**ପିତା**

●●●

# ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ସ୍ୱରଚିତ ଗୀତି ରାମାୟଣର କାବ୍ୟିକ ମଧୁରିମା








ଡ. ମାନସ ରଞ୍ଜନ ଦେବତା

ଯସ୍ୟାଙ୍କେଚ ବିଭାତି ଭୂଧରସୁତା ଦେବା ପରା ମସ୍ତକେ
ଭାଲେ ବାଳବିଧୁ ର୍ଗଳେଚ ଗରଳଂ ଯସ୍ୟୋରସି ବ୍ୟାଳରାଟ
ସ୍ୱୟଂ ଭୂତି ବିଭୂଷଣଃ ସୁରବରଃ ସର୍ବାଧିପଃ ସବଦା
ସର୍ବଃ ସର୍ବଗତଃ ଶିବଃ ଶଶିନିଭଃ ଶ୍ରୀ ଶଙ୍କରଃ ପାତୁତାମ ।

କବି ତୁଳସୀ ଦାସଙ୍କ ରଚିତ ରାମଚରିତ ମାନସ
ଅଯୋଧ୍ୟା କାଣ୍ଡ. ଶ୍ଳୋକ-୧

ଯେଉଁ ଦେବ ଦେବ ମହାଦେବଙ୍କର ଅଙ୍କରେ ଗିରିରାଜ ନନ୍ଦିନୀ ପାର୍ବତୀ ବିଦ୍ୟମାନ, ଯାହାଙ୍କର ଜଟାରେ ପୂତ ସଲିଳ କୂଳ ପ୍ଲାବିନୀ ପତିତପାବନୀ ଗଙ୍ଗା ବିରାଜମାନ, ଲଲାଟରେ ଶୁକ୍ଳ ଦ୍ୱିତୀୟା ତିଥିର ବାଳ ଚନ୍ଦ୍ରମା ସୁଶୋଭିତ, କଣ୍ଠରେ ମହୀଧର ଭୁଜଙ୍ଗ, ସେହି ଭସ୍ମବିଲୋପନ ଦେବାଧିଦେବ ଶଶୀକର ସଦୃଶ ଶୁଭ୍ର ଶ୍ରୀ ଶଙ୍କରଙ୍କୁ ଭକ୍ତିପୂତ ପ୍ରଣାମ କରୁଅଛୁ ।

ବେଦ, ଉପନିଷଦ, ବ୍ରାହ୍ମଣ, ଆରଣ୍ୟକ ଆଦି ବୈଦିକ ସାହିତ୍ୟ ଭାରତୀୟ ସଂସ୍କୃତିକୁ ପରିପୁଷ୍ଟ କରିଥିଲେ ମଧ୍ୟ ଆଧ୍ୟାତ୍ମିକ, ନୈତିକ, ସାଂସ୍କୃତିକ, ରାଜନୈତିକ, ସାମାଜିକ ରୀତିନୀତିରେ ଭାରତୀୟ ଜନ ଜୀବନର ଆଦର୍ଶ ଆଦିକବି ବାଲ୍ମୀକିଙ୍କ ଦ୍ୱାରା ରଚିତ ରାମାୟଣରେ ଋଦ୍ଧିମନ୍ତ ।

"ନାହାନ୍ତି ବାଲ୍ମୀକି ମହର୍ଷି ସତ୍ତମ
ନାହିଁ ସେ ତମସା-ତଟ-ସିଦ୍ଧାଶ୍ରମ ।"
ରହିଛି ତାଙ୍କର ଗ୍ରନ୍ଥ ରାମାୟଣ
ଅମୂଲ୍ୟ ସମ୍ପଦ ସୁଧା-ପ୍ରସ୍ରବଣ ।"

- ଗୀତି ରାମାୟଣ - ପୃଷ୍ଠା - ୧୯

## 'ଗୀତି ରାମାୟଣ' ଏକ ସାରସ୍ୱତ ସୃଜନ

■ ଭକ୍ତି ରସାପ୍ଲୁତ ରାମାୟଣର ଭାବଧାରା ଉପରେ ଆଧାରିତ ସ୍ୱର୍ଗତ ନାରାୟଣ ମହାପାତ୍ରଙ୍କର ସ୍ୱରଚିତ "ଗୀତି ରାମାୟଣ" ସୃଜନଶୀଳ ସାରସ୍ୱତ ସାଧନାର ଏକ ଅନବଦ୍ୟ ସୃଷ୍ଟି । ଉପାଦାନର ଉପାଦେୟତା ମଧ୍ୟରେ ମର୍ଯ୍ୟାଦା ପୁରୁଷୋତ୍ତମଙ୍କର ଆଦର୍ଶ ପିତୃଭକ୍ତି, ସତ୍ୟ, ନ୍ୟାୟ, ତ୍ୟାଗପୂତ ରାଜଧର୍ମ, ଲୋକଧର୍ମର ପ୍ରତିକାତ୍ମ କାବ୍ୟିକ ରୂପାନ୍ତର ତଥା ସାମାଜିକ ବିଧି ଶୃଙ୍ଖଳା ସ୍ୱର୍ଗତ ମହାପାତ୍ରଙ୍କର ଭାଷା ଭାବ, ଶୈଳୀ, ଦାର୍ଶନିକ ପରିଭାଷା, ବିଭିନ୍ନ ରାଗ ରାଗିଣୀର ପଦଲାଳିତ୍ୟ ତଥା ଭକ୍ତିଭାବ ସହଜ, ସରଳ, ସୁବୋଧ ଓ ସାବଲୀଳତାରେ ରସାବିଷ୍ଟ ।

ଏହି ସାରସ୍ୱତ କୃତି ରଘୁକୁଳ ତିଳକ ପୁଣ୍ୟଶ୍ଳୋକ ଶ୍ରୀ ରାମଚନ୍ଦ୍ରଙ୍କର ସୂର୍ଯ୍ୟ ବଂଶ, ପିତା ଦଶରଥଙ୍କର ତେଜୋଦୀପ୍ତ ପ୍ରତିଭା, ଶ୍ରୀ ରାମଙ୍କର ବାଲ୍ୟ ଜୀବନ, ଅସ୍ତ୍ର ଶିକ୍ଷା, ସୀତା ବିବାହ, ପର୍ଶୁରାମଙ୍କ ଦର୍ପ ଦଳନ, ପିତୃ ସତ୍ୟ ପାଳନ, ବନବାସ, ଭରତଙ୍କର ଅନାବିଳ ଭ୍ରାତୃ ପ୍ରେମ ଓ ଭକ୍ତିଭାବ, ସୀତା ହରଣ, ବାଳୀ ନିଧନ, ଶ୍ରୀରାମଙ୍କର ଲକ୍ଷ୍ମଣଙ୍କୁ ଶରତକାଳୀନ ଶୋଭା ବର୍ଣ୍ଣନ, ଭକ୍ତ ହନୁମାନଙ୍କ ସହ ମିଳନ, ସୀତାଙ୍କ ଅନ୍ୱେଷଣ, ଲକ୍ଷ୍ମଣଙ୍କ ଶକ୍ତିଭେଦ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ ବଧ, ରାବଣର ଅହଙ୍କାର ଦମନ, ବିଭୀଷଣର ଅଭିଷେକ, ରାମଚନ୍ଦ୍ରଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ରାମରାଜ୍ୟ ପ୍ରତିଷ୍ଠା, ସୀତା ନିର୍ବାସନ, ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ, ମାତା ସୀତାଙ୍କର ପାତାଳ ପ୍ରବେଶ, ଶ୍ରୀରାମଙ୍କର ସ୍ୱର୍ଗାରୋହଣ ଆଦି ବହୁବିଧ ଦାୟିତ୍ୱବୋଧ, ମୂଲ୍ୟବୋଧ, ଦିଗ୍‌ଦର୍ଶନ, ପ୍ରଗତିଶୀଳ ସମାଜ ଗଠନର ପ୍ରତିବଦ୍ଧତା, ବିଭିନ୍ନ ରାଗରେ ଛନ୍ଦାୟିତ ।

ଏହି କାବ୍ୟିକ ତତ୍ତ୍ୱ ସମାରୋହ ତଦୀୟ ରସ ପିପାସୁ ଭକ୍ତ ଜନ ମାନସରେ ଶାରଦୀୟ ବିଭାବରୀର ଚନ୍ଦ୍ର ଭାବେ ପ୍ରତିଭାତ ।

## ରଘୁବଂଶର ଐତିହ୍ୟ

ରାଜା ଦିଲ୍ଲୀପଙ୍କର ପୁତ୍ର ଭଗୀରଥ ନିଜର ବଂଶଧରମାନଙ୍କୁ ରକ୍ଷା କରିବା ପାଇଁ ପତିତପାବନୀ

ଗଙ୍ଗାଙ୍କୁ ପୃଥିବୀ ପୃଷ୍ଠକୁ ଆଣିଥିଲେ । ଭାଗୀରଥଙ୍କର ପୁତ୍ର କକୁସ୍ଥଙ୍କ ପୁତ୍ର ରଘୁ ଜଣେ ତେଜସ୍ୱୀ ଓ ପରାକ୍ରମୀ ରାଜା ହୋଇଥିବାରୁ ତାଙ୍କର ନାମାନୁସାରେ ତାଙ୍କର ବଂଶ ଓ ରଘୁବଂଶ ନାମରେ ପ୍ରତିଷ୍ଠିତ ହୋଇଥିଲା । ସେହି ରଘୁବଂଶର ରାଜା ଅଜଙ୍କର ପୁତ୍ର ଦଶରଥ ଅଯୋଧ୍ୟାର ନରପତି ଥିଲେ । ଜଣେ ଅସାଧାରଣ ନରପତି ଭାବେ ବିଶ୍ୱବନ୍ଦିତ ଦଶରଥ ଜଣେ ପ୍ରଜାବତ୍ସଳ ତଥା ଧର୍ମାନୁରାଗୀ ରାଜା ଥିଲେ । ତାଙ୍କର କୌଶଲ୍ୟା, କୈକେୟୀ ଓ ସୁମିତ୍ରା ନାମ୍ନୀ ତିନି ରାଣୀ ଥିଲେ ମଧ୍ୟ କୌଣସି ପୁତ୍ର ସନ୍ତାନ ନଥିବାରୁ ରଘୁବଂଶର କୁଳଗୁରୁ ବଶିଷ୍ଠଙ୍କ ପରାମର୍ଶରେ ବିଭାଣ୍ଡକ ନନ୍ଦନ ଋଷ୍ୟଶୃଙ୍ଗ ମହର୍ଷି ଦୁର୍ବାସା, ଅଗସ୍ତି, ଭରଦ୍ୱାଜ, ଗୌତମ, ଭୃଗୁ, ପରାଶର, ବଶିଷ୍ଠ ଆଦି ମହର୍ଷିମାନଙ୍କ ଗହଣରେ ପୁତ୍ରେଷ୍ଟି ଯଜ୍ଞ କରି ଯଜ୍ଞୋଦ୍ଭବ ଚରୁ ଅନ୍ନ ତିନି ରାଣୀ ସେବନ କରିଥିଲେ । ପୁତ୍ରେଷ୍ଟି ଯଜ୍ଞର ଫଳ ସ୍ୱରୂପ କୌଶଲ୍ୟାଙ୍କ ଗର୍ଭରୁ ଶ୍ରୀରାମ, କୈକେୟୀଙ୍କ ଗର୍ଭରୁ ଭରତ ଏବଂ ସୁମିତ୍ରାଙ୍କ ଗର୍ଭରୁ ଯମଜ ଭ୍ରାତା ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜନ୍ମ ହୋଇଥିଲେ ।

## ବାଲ୍ୟ ଜୀବନ ଓ ଅସ୍ତ୍ର ଶିକ୍ଷା

ରାଜା ଦଶରଥ କୁଳ ପରମ୍ପରା ଅନୁଯାୟୀ ତାଙ୍କର ପୁତ୍ରମାନଙ୍କୁ ଦେବର୍ଷି ବଶିଷ୍ଠଙ୍କ ଆଶ୍ରମରେ ଶିକ୍ଷାଲାଭ ନିମନ୍ତେ ପ୍ରେରଣ କରିଥିଲେ । ଗୁରୁକୁଳ ଆଶ୍ରମରେ ଧନୁର୍ବିଦ୍ୟା ଶିକ୍ଷା ଲାଭ ପୂର୍ବକ ସାଧୁ ସଜ୍ଜନ ରକ୍ଷଣ, ଦୁଷ୍ଟ ଦୈତ୍ୟ ଦଳନ ସହ ସତ୍ୟ, ସେବା, ତ୍ୟାଗ, ପ୍ରୀତି, ଗୁରଜନେ ଭକ୍ତି ଆଦି ଗୁଣାବଳୀରେ ବିଭୂଷିତ ହୋଇଥିଲେ ।

ବ୍ରହ୍ମର୍ଷି ବିଶ୍ୱାମିତ୍ର ତପସ୍ୟା ବଳରେ ପ୍ରଭୁ ପରମେଶ୍ୱର ଅଯୋଧ୍ୟାରେ ରାମ ରୂପେ ଅବତରିତ ହୋଇ ରାବଣ ସମେତ ସମସ୍ତ ଦୁଷ୍ଟ ଅସୁର ମାନଙ୍କୁ ବିନାଶ କରିବା ଜାଣି ପାରି ମୁନି ଋଷିମାନଙ୍କ ତପସ୍ୟାରେ ବିଘ୍ନ କରୁଥିବା ରାକ୍ଷସମାନଙ୍କ କବଳରୁ ରକ୍ଷା କରିବା ପାଇଁ ରାମ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇଯାଇଥିଲେ । ପ୍ରଭୁ ଶ୍ରୀରାମ ତାଡକା, ମହାବାହୁ ଓ ତାଡକାର ପୁତ୍ର ସୁବାହୁକୁ ବଧ କରି ମୁନି ଋଷିମାନଙ୍କୁ ରକ୍ଷା କରିବା ହେତୁ ରାମ ଲକ୍ଷ୍ମଣଙ୍କର ବୀରତ୍ୱରେ ମୁଗ୍ଧ ହୋଇ ତପସ୍ୱୀ ବିଶ୍ୱାମିତ୍ର ତାଙ୍କୁ ସମର ନୀତି କୌଶଳ, ରାଜଧର୍ମ, ରାଜ୍ୟ ଶାସନ ଶିକ୍ଷାଦାନ କରି ଦିବ୍ୟ ପାଶୁପତ ଅସ୍ତ୍ର ଏବଂ ଅନ୍ୟ ଦିବ୍ୟାସ୍ତ୍ର ମାନ ପ୍ରଦାନ କରିଥିଲେ ।

ମିଥିଳାରାଜ୍ୟରେ ରାଜା ରାଜର୍ଷି ଜନକଙ୍କର ଦୁହିତା ସୀତାଙ୍କର ସ୍ୱୟମ୍ବର ନିମନ୍ତ୍ରଣ ପାଇ ବ୍ରହ୍ମର୍ଷି ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କ ସହ ମିଥିଳା ନଗରୀରେ ପ୍ରବେଶ କଲେ । ଗୌତମ ଋଷିଙ୍କ ଦ୍ୱାରା ଶାପଗ୍ରସ୍ତା ପତ୍ନୀ ଅହଲ୍ୟା ଶ୍ରୀରାମଙ୍କର ଚରଣଧୂଳି ପ୍ରାପ୍ତ ହୋଇ ମୁକ୍ତିଲାଭ କରିଥିଲେ ।

## ଶିବଧନୁ ଭଗ୍ନ

ଦେବ ଦେବ ମହାଦେବଙ୍କର ଦିବ୍ୟ ଧନୁ ଭଗ୍ନ ଜନକ ନନ୍ଦିନୀ ସୀତାଙ୍କର ସ୍ୱୟମ୍ବରର ପ୍ରତୀକ ଥିଲା । କିନ୍ତୁ ସ୍ୱୟମ୍ବର ସଭାରେ ଉପସ୍ଥିତ ଅମିତ ପରାକ୍ରମଶାଳୀ ରାଜାମାନେ ଉକ୍ତ ଧନୁ ଭଗ୍ନ କରିବାରେ ଅସଫଳ ହେବାରୁ ରାଜର୍ଷି ଜନକ କହିଥିଲେ 'ଲିଖା ନ ବିଧି ବୈଦେହୀ ବିବାହୂ' ଅର୍ଥାତ ମୋର କନ୍ୟା ଅବିବାହିତ ରହିବାକୁ ବୋଧହୁଏ ବିଧି ନିର୍ଦ୍ଦେଶ ଅଟେ ।

ବିଶ୍ୱାମିତ୍ର ସମୟ ଶୁଭ ଜାନୀ,<br>ବୋଲେ ଅତି ସନେହମୟ ବାନୀ

ଉଠହୁ ରାମ ଭଂଜହୁ ଭବବାପା,
ମେଟହୁ ଗତ ଜନକ ପରିତାପା ।

ବ୍ରହ୍ମର୍ଷି ବିଶ୍ୱାମିତ୍ର ଶୁଭ ସମୟ ଜାଣି ମହର୍ଷି ଜନକଙ୍କର ବିଷାଦମୋଚନ ନିମନ୍ତେ ଶ୍ରୀରାମଙ୍କୁ ଧନୁ ଭଗ୍ନ କରିବା ପାଇଁ ପରାମର୍ଶ ଦେଲେ ।

ତେହିଛନ ରାମ ମଧ୍ୟ ଧନୁ ତୋରା,
ଭରେ ଭୁବନ ଧ୍ୱନି ଘୋର କଠୋରା

ପ୍ରଭୁ ଦୋଉ ଚାପଖଣ୍ଡ ମହି ଡାରେ,
ଦେଖି ଲୋଗ ସବ ଭଏ ସୁଖାରେ ।

ଗୁରୁଦେବଙ୍କୁ ପ୍ରଣାମ କରି ଶ୍ରୀରାମ ଧନୁ ଉଠାଇବା ସମୟରେ ସାରା ଭୁବନ ପ୍ରକମ୍ପିତ ହୋଇ ଦୁଇଖଣ୍ଡ ହୋଇ ଭାଙ୍ଗି ଗଲା । ଲାବଣ୍ୟମୟୀ ମାତା ଜନକ ନନ୍ଦିନୀ ହାତରେ ଜୟମାଳା ଧରି ରାମଙ୍କର ଗଳାରେ ବରଣମାଳା ଦେଲେ ।

## ପର୍ଶୁରାମଙ୍କ ଦର୍ପଦଳନ

ଶ୍ରୀରାମଙ୍କ ଧନୁଭଙ୍ଗ ଶବ୍ଦ ସାରା ବ୍ରହ୍ମାଣ୍ଡରେ ଗୁଞ୍ଜରିତ ହୋଇଥିଲା । ଧନୁର୍ଭଙ୍ଗ ଶବ୍ଦ ଶୁଣି କ୍ରୋଧ ଜର୍ଜରିତ ଭଗବାନ ପର୍ଶୁରାମ ଧନୁର୍ଭଙ୍ଗ ମଣ୍ଡପରେ ଉପସ୍ଥିତ ହୋଇ କିଏ ତାଙ୍କର ଆରାଧ୍ୟ ପ୍ରଭୁ ଶିବଙ୍କର ଧନୁ ଭଗ୍ନ କରିବା ପ୍ରଶ୍ନ ଶୁଣି ବିଶ୍ୱାମିତ୍ରଙ୍କ ଆଜ୍ଞାରେ ରାମ ବିନମ୍ରତା ଓ ସରଳତା ପୂର୍ଣ୍ଣ ମଧୁର ବଚନ କହିଲେ:-

"ନାଥ ସଂଭୁ ଧନୁ ଭଂଜ ନିହାରା,
ହୋଇଲି କୋଉ ଏକ ଦାସ ତୁହ୍ମାରା"

ଶ୍ରୀରାମ ନିଜକୁ ଜଣେ ସେବକ ଭାବେ ପ୍ରତିପାଦିତ କରିଥିଲେ ଓ ବିନମ୍ର ଭାବରେ ଧନୁ ଭଗ୍ନ କରିଥିବା କହିଥିଲେ ।

ପର୍ଶୁରାମ ରାମଙ୍କ ବକ୍ଷରେ ଭୃଗୁଙ୍କର ପଦଚିହ୍ନ ଦେଖି ରାମଙ୍କର ଈଶ୍ୱରତ୍ୱ ଜାଣିପାରି ବିଷ୍ଣୁଙ୍କ ଧନୁ ନିଜ କାନ୍ଧରୁ ବାହାର କରି ରାମଙ୍କୁ ଗୁଣ ଦେବାକୁ କହିଥିଲେ । ବିଷ୍ଣୁଙ୍କ ଧନୁ ଆପେ ଆପେ ଶ୍ରୀରାମଙ୍କ ହାତକୁ ଆସିଯିବାରେ ପର୍ଶୁରାମ ବିସ୍ମିତ ହେବା ସଙ୍ଗେ ସଙ୍ଗେ ତାଙ୍କର ଅବତାର ସମୟ ଶେଷ ହେବା ଜାଣି ରାମଙ୍କୁ ସ୍ତୁତି କଲେ ।

"ବଢ଼ାଇ ଦେଲେ ଶ୍ରୀକର ଭାବଗ୍ରାହୀ ରଘୁବୀର
ଦେଲେ ବୈଷ୍ଣବ କାର୍ମୁକ ଋଷି ସତ୍ତମ
ଚଢ଼ାଇ ଧନୁରେ ଗୁଣ କଲେ ସାୟକ ସନ୍ଧାନ
ଦେଖି ସ୍ୱର୍ଗେ ଦେବଗଣ ହେଲେ ପ୍ରସନ୍ନ
ପର୍ଶୁରାମ ଦର୍ପ ଦଳନ
କଲେ ବୀର ରଘୁମଣି ଗର୍ବଗଞ୍ଜନ ।"
- ଗୀତିରାମାୟଣ - ପୃଷ୍ଠା - ୫୩

"ଜୟ ରଘୁବଂଶ ବନଜ ବନ ଭାନୁ,
ଗହନ ଦନୁଜ କୁଲ ଦହନ କୃପାନୁ
ଜୟ ସୁର ବିପ୍ର ଧେନୁ ହିତକାରୀ,
ଜୟ ମଦ, ମୋହ କୋହ ଭ୍ରମ ହାରୀ ।"

ରଘୁବଂଶ କମଳକୁ ପ୍ରସ୍ଫୁଟିତ କରିବାରେ ତୋଜୋଦୀପ୍ତ ଭାସ୍କର ପରି ରାମଙ୍କର ଜୟ ହେଉ । କାମ, କ୍ରୋଧ ମଦାଦିର ବିନାଶକାରୀ ରାମଙ୍କର ଜୟ ହେଉ । ଏହିପରି ଜୟ ଜୟକାର କରି ପର୍ଶୁରାମ ବନଗମନ କରିଥିଲେ ।

"ଦେଖି ରାମ ଭୁଜବଳ ଜାଣିଲେ ଋଷି ଶେଖର
ଅଟନ୍ତି ରଘୁନନ୍ଦନ ରମାରଞ୍ଜନ
ନର ରୂପେ ଅବତରି ଧରାପୃଷ୍ଠେ ନରହରି
ନାଶିବେ ଦୁଷ୍ଟ ଦାନବ ବିଂଶ ଲୋଚନ
କଲେ ଋଷି ଶ୍ରମ ସାର୍ଥକ
କଲେ ଧନ୍ୟ ନେତ୍ର ଦେଖି ରଘୁବଂଶିକ ।"
ଗୀତି ରାମାୟଣ - ପୃଷ୍ଠା - ୫୩

## ସୀତା ବିବାହ

ମାତା ସୀତାଙ୍କର ବିବାହ ସମ୍ପନ୍ନ ପରେ ରାଜା ଜନକଙ୍କର ଅନୁରୋଧ କ୍ରମେ ତାଙ୍କର ଅନ୍ୟ ତିନି ଜଣ କନ୍ୟା ମାଣ୍ଡବୀଙ୍କ ସହ ଭରତ, ଉର୍ମିଳାଙ୍କ ସହ ଲକ୍ଷ୍ମଣ ଓ ଶ୍ରୁତକୀର୍ତ୍ତିଙ୍କ ସହ ଶତ୍ରୁଘ୍ନଙ୍କର ଶୁଭ ପରିଣୟ ଅନୁଷ୍ଠିତ ହେଲା । ରାଜା ଦଶରଥ ତାଙ୍କ ଚାରିପୁତ୍ର ଓ ପୁତ୍ରବଧୂମାନଙ୍କ ସହ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରିଥିଲେ ।

"ମନୋଭିରାମଂ ନୟନାଭିରାମଂ
ବାଚେଭିରାମଂ ଶ୍ରବଣାଭିରାମମ୍ ।

ସଦାଭିରାମଂ ସତତାଭିରାମଂ
ବନ୍ଦେ ସଦା ଦାଶରଥିମ୍ ଚ ରାମମ୍ ।

ପ୍ରଭୁ ଶ୍ରୀରାମଙ୍କର ସୌନ୍ଦର୍ଯ୍ୟ କୋଟି କନ୍ଦର୍ପକୁ ଲଜ୍ଜିତ କରୁଥିଲା । ରାମଙ୍କର ବରବେଶ ଦର୍ଶନ କରିବା ପାଇଁ ଦେବତାମାନେ ମର୍ତ୍ତ୍ୟ ଆସିଥିଲେ । ଇନ୍ଦ୍ର ନିଜର ସହସ୍ର ନୟନରେ ରାମରୂପ ଦେଖିଲେ । ବ୍ରହ୍ମାଙ୍କୁ ସବୁ ଅଲୌକିକ ଲାଗିଲା ।

## ଶ୍ରୀରାମଙ୍କର ପିତୃସତ୍ୟ ପାଳନ

ଗୁରୁ ବଶିଷ୍ଠଙ୍କର ପରାମର୍ଶ କ୍ରମେ ରାଜା ଦଶରଥ ରାମଙ୍କର ଅଭିଷେକ ପାଳନ କରିବାକୁ ନିଷ୍ପତ୍ତି ନେଇଥିଲେ । ସମଗ୍ର ଅଯୋଧ୍ୟା ନଗରବାସୀ ହର୍ଷ ଓ ଉଲ୍ଲାସରେ ଆମୋଦିତ ହୋଇଥିଲେ ।

ରାମାଭିଷେକେ ମଦ ବିହ୍ୱଳୟାଃ,
କରଚ୍ୟୁତ ହେମ ଘଟସ୍ତରୁଣ୍ୟାଃ

ସୋପାନମାସାଦ୍ୟ ଚକାର ଶବ୍ଦଂ
ଠଠଂଠଠଠଂଠ ଠଠଂଠ ଠଂଠଃ ।

ଅଭିଷେକ ସମ୍ବାଦରେ ଆନନ୍ଦିତ ଏକ ତରୁଣୀ ସୁନାର କଳସୀଟିଏ ଧରି ଆସୁଥିବା ସମୟରେ ଉଲ୍ଲସିତ ହୋଇ ପାହାଚରେ ଚଢୁଥିବା ସମୟରେ ତାଙ୍କର ହାତରୁ କଳସୀଟି ପାହାଚ ଉପରେ ପଡି ଚଟାଣରେ ଠଣ ଠଣ ଶବ୍ଦ କରିଥିଲା ।

ରାମାଭିଷେକ ହୋଇ ରାମଚନ୍ଦ୍ର ଅଯୋଧ୍ୟାର ରାଜା ହେଲେ ରାମ ରାଜ୍ୟ ପ୍ରତିଷ୍ଠା ହେବ କିନ୍ତୁ ଲଙ୍କାର ରାଜା ରାବଣର ଅତ୍ୟାଚାରରୁ ପୃଥିବୀକୁ ରକ୍ଷା କରିବା ପାଇଁ ରାମଙ୍କ ଅବତାରର ଉଦ୍ଦେଶ୍ୟ ଫଳପ୍ରସୂ ହୋଇ ନପାରିବା ଭାବି ଦେବତାମାନେ ବ୍ୟସ୍ତ ହୋଇ ମାତା ସରସ୍ୱତୀଙ୍କର ଶରଣାଗତ ହେଲେ । ସରସ୍ୱତୀ ଚିନ୍ତା କଲେ ରାମ ବନଗମନ କଲେ ଭୂଭାର ହରଣ ହେବ । ମଙ୍ଗଳସ୍ୱରୂପା ମାତା ସରସ୍ୱତୀଙ୍କ ମାୟାବଳରେ ମନ୍ଥରା ଦାସୀର ପ୍ରରୋଚନାରେ ରାଜା ଦଶରଥଙ୍କର ପ୍ରିୟ ରାଣୀ କୈକେୟୀ ସଂକଳ୍ପ ଅନୁଯାୟୀ ତାଙ୍କ ପୁଅ ଭରତ ଅଯୋଧ୍ୟାର ରାଜା ହେବ ଏବଂ ରାମ ଚଉଦବର୍ଷ ବନବାସ ଯିବା ଭଳି ଦୁଇ ବର ମାଗି ସତ୍ୟରକ୍ଷା କରିବା ପାଇଁ ରାଜା ଦଶରଥଙ୍କ ଆଗରେ ଉପସ୍ଥାପନ କରିଥିଲେ ।

"ରଘୁକୁଳ ରୀତି ସଦା ଚଲି ଆଈ,
ପ୍ରାନ ଜାହୁ ବରୁ ବଚନୁ ନ ଜାଈ । "

ରଘୁକୁଳର କେହି ସତ୍ୟପଥରୁ ବିଚ୍ୟୁତ ହୁଅନ୍ତି ନାହିଁ । ସତ୍ୟଠାରୁ ପୁଣ୍ୟ ନାହିଁ । ପ୍ରାଣ ବିନିମୟରେ ବଚନ ରକ୍ଷା କରିବା ରାଜାଙ୍କର ଧର୍ମ ଅଟେ । ରାମାଭିଷେକ ମନୋରଥ କ୍ଷଣକ ମଧ୍ୟରେ କୈକେୟୀଙ୍କର ବର ଯୋଗୁଁ ରାଜାଙ୍କୁ ଅତ୍ୟନ୍ତ ମର୍ମାହତ କରିଥିଲା ।

## ଶ୍ରୀରାମଙ୍କର ପିତୃ ସତ୍ୟ ପାଳନ

(ରାଗ - ରସକୁଲ୍ୟା)

"ରାମ ନିର୍ବାସନ ବଜ୍ର ପ୍ରହାର
କଲା ସଂଜ୍ଞାହୀନ ନୃପ ଶେଖର
ହୃଦ ଦମ୍ଭ ସ୍ତମ୍ଭ ପଡ଼ିଲା ଟଳି
ଟଳିଲେ ଭୂତଳେ ନୃପ କେଶରୀ
କମ୍ପିଉଠିଲା ଶରୀର ଯେ
ଘନ ଘନ ଅଶ୍ରୁ ବହିଲା ନୟନୁଁ ଯେସନେ ଗିରି ନିର୍ଝର ।"

- ଗୀତି ରାମାୟଣ - ପୃଷ୍ଠା-୫୬

ପ୍ରଭୁ ଶ୍ରୀରାମ ମାତା କୈକେୟୀଙ୍କ ଅନ୍ତଃପୁରରେ ପିତାଙ୍କୁ ମ୍ରିୟମାଣ ଥିବା ଦେଖି କୈକେୟୀଙ୍କ ଠାରୁ ରାଜା ଦଶରଥଙ୍କର ପୁତ୍ର ପ୍ରେମ ଓ ସତ୍ୟ ବଚନ ରକ୍ଷାର ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତି ଶୁଣି ମୃଦୁ ହସି କହିଥିଲେ ସତ୍ୟ ଓ ପିତାଙ୍କ କୀର୍ତ୍ତି ରକ୍ଷା କରିବା ସୂର୍ଯ୍ୟ ବଂଶର ରୀତି । ପିତାଙ୍କ ଆଜ୍ଞା ପାଳନ କରିବା ପୁତ୍ରର ଶ୍ରେଷ୍ଠ ଧର୍ମ । ମାତା ପିତାଙ୍କ ବଚନରେ ଯେଉଁ ସନ୍ତାନର ଅନୁରାଗ ସିଏ ବଡ ଭାଗ୍ୟବାନ ଅଟେ ।

"ସୁଧୀର ଧାର୍ମିକ ପିତୃ ସେବକ
ସତ୍ୟସନ୍ଧ ରାମ କୁଳ ତିଳକ
ପିତୃ ସତ୍ୟରକ୍ଷା କରିବା ଆଶେ
ଚଳିଲେ ସ୍ଥବିର ପିତାଙ୍କ ପାଶେ
କରି ଚରଣ ବନ୍ଦନ ଯେ
ପିତୃ ପଦରଜ ଲଗାଇ ମସ୍ତକେ ବରିନେଲେ ନିର୍ବାସନ ।"

ଗୀତି ରାମାୟଣ - ପୃଷ୍ଠା-୫୮

'ସୁନୁ ଜନନୀ ସୋଇ ସୁତୁ ବଡ ଭାଗୀ,
ଜୋ ପିତୁ ମାତୁ ବଚନ ଅନୁରାଗୀ
ତନୟ ମାତୁ ପିତୁ ତୋଷ ନିହାରା,
ଦୁର୍ଲଭ ଜନନୀ ସକଲ ସଂସାରା ।'

ରାମଚନ୍ଦ୍ର କହିଲେ, ମାତା, ପିତୃସତ୍ୟ ପାଳନ ପାଇଁ ମୁଁ ଚଉଦବର୍ଷ ବନବାସ ଯିବି । ତୁମେ ମୋର ବହୁତ ଉପକାର କରିଛ ! ବଣରେ ମୁନି ଋଷି ମାନଙ୍କର ମୋର ମିଳନ ହେବ । ପିତାଙ୍କ ଆଜ୍ଞା ଓ ଜନନୀଙ୍କ ଅଭିଳାଷ ମଧ୍ୟ ପାଳିତ ହେବ । ମୋର ପ୍ରିୟ ଭ୍ରାତା ଭରତ ରାଜା ହେବା ମୋ ପାଇଁ ଏକ ଗୌରବ ।

ସମୁଦ୍ର ମନ୍ଥନରୁ ଜାତ ହଳାହଳକୁ ସଂସାରର ହିତ ପାଇଁ ଦେବଦେବ ମହାଦେବ ପାନ କରି ନୀଳକଣ୍ଠ ହୋଇଥିଲେ । ସେହିପରି ଜଗତର ମଙ୍ଗଳ ପାଇଁ ଦୈବୀକୃତ ଉଦ୍‌ଭବ ରାମ ବନବାସ ଜନିତ ଅଯୋଧ୍ୟା ବାସୀଙ୍କ ଅସନ୍ତୋଷ ଓ ଅପବାଦ ରୂପକ ହଳାହଳକୁ ପାନ କରିଥିଲେ ମାତା କୈକେୟୀ ।

ମାତା କୌଶଲ୍ୟାଙ୍କୁ ରାମ ବୁଝାଇଥିଲେ:-

ପିତା ଦୀହ୍ନ ମୋହି କାନନ ରାଜୁ ।
କହଁ ସବ ଭାଁତି ମୋର ବଡ କାଜୁ ।

ହେ ମାତା । ପିତା ମୋତେ ବନରାଜ୍ୟ ପ୍ରଦାନ କରିଅଛନ୍ତି । ପିତାଙ୍କ ବଚନ ଧର୍ମ ଓ ସତ୍ୟ ଉପରେ ପ୍ରତିଷ୍ଠିତ । ମହାରାଣୀ କୌଶଲ୍ୟା ପତିଙ୍କ ଆଦେଶ ପାଳନ ପତ୍ନୀ ଧର୍ମ । ପତିବ୍ରତା ଧର୍ମ ପାଳନ କରି ରାମଙ୍କୁ ଅଶ୍ରୁସିକ୍ତ ନୟନରେ ପିତୃ ଆଜ୍ଞା ପାଳନ କରିବାକୁ ପରାମର୍ଶ ଦେଇଥିଲେ । ସୀତା ମାତା କୌଶଲ୍ୟାଙ୍କୁ ପ୍ରଣାମ କରି ସ୍ୱାମୀଙ୍କ ସହ ବନକୁ ଯିବାକୁ ଅନୁମତି ମାଗିଥିଲେ ।

ଜିଅ ବିନୁ ଦେହ ନଦୀ ବିନୁ ବାରୀ ।
ତୈସିଅ ନାଥ ପୁରୁଷ ବିନୁ ନାରୀ
ନାଥ ସକଳ ସୁଖ ସାଥ ତୁହ୍ମାରେ ।
ସରଦ ବିମଲ ବିଧୁବଦନ ନିହାରେ ।

- ଜଳ ବିନା ନଦୀ ଅଧୁରା, ସେଭଳି ପୁରୁଷ ବିନା ନାରୀ ଅଶୋଭିତ । ଶରୀର, ଧନ, ଘର, ପୃଥିବୀ, ନଗର ଓ ରାଜ୍ୟ ସବୁ ପତିହୀନା ନାରୀ ପାଇଁ ଶୋକ ସମାନ । ତେଣୁ ଜଣେ ପତିବ୍ରତା ନାରୀ ହିସାବରେ ସ୍ୱାମୀଙ୍କର ଧର୍ମ ପାଳନରେ ସହଭାଗିନୀ ହୋଇ ବନକୁ ଯିବାକୁ ଅନୁମତି ପ୍ରଦାନ କରିବାକୁ ଅନୁରୋଧ କରୁଥିଲେ ।
- ଅନୁଜ ଲକ୍ଷ୍ମଣ ଶ୍ରୀରାମଙ୍କୁ ନିବେଦନ କରିଥିଲେ

ମୈଂ ସିସୁ ପ୍ରଭୁ ସନେହ ପ୍ରତିପାଲା,
ମନ୍ଦରୁ ମେରୁକି ଲେହିଁ ମରାଲା ।

ହେ ପ୍ରଭୁ । ଆପଣ ପ୍ରଭୁ, ମୁଁ ଆପଣଙ୍କର ସେବକ । ମନ, କର୍ମ, ବଚନରେ ମୁଁ ଆପଣଙ୍କର ଅନୁରାଗୀ । ମୁଁ ଆପଣଙ୍କ ସ୍ନେହରେ ପ୍ରତିପାଳିତ । ହଂସ କ'ଣ ମନ୍ଦରାଚଳ ବା ସୁମେରୁ ପର୍ବତକୁ ଉଠାଇ ପାରିବ । ମୋତେ ସେବକର ଧର୍ମ ପାଳନ କରିବାକୁ ଆଦେଶ ଦିଅନ୍ତୁ ।

ଲକ୍ଷ୍ମଣ ମାତା ସୁମିତ୍ରାଙ୍କୁ ରାମଙ୍କ ସହ ବନଗମନ କରିବାକୁ ଅନୁମତି ମାଗନ୍ତେ ସୁମିତ୍ରା କହିଥିଲେ ହେ ପୁତ୍ର ଯେଉଁଠି ଶ୍ରୀରାମଙ୍କର ବାସ, ସେହି ସ୍ଥାନ ହିଁ ଅଯୋଧ୍ୟା । ଯେଉଁଠାରେ ସୂର୍ଯ୍ୟ ପ୍ରକାଶ ସେଠାରେ ଦିବସ । ସେହି ଶ୍ରୀରାମ ତୋହର ଗୁରୁ, ପିତା, ମାତା, ବନ୍ଧୁ, ଦେବତା ଓ ସ୍ୱାମୀ । ତେଣୁ ସହାସ୍ୟ ବଦନରେ ପୁତ୍ର ଲକ୍ଷ୍ମଣଙ୍କୁ ରାମଙ୍କ ସହ ବନଗମନ ପାଇଁ ସମ୍ମତି ପ୍ରଦାନ କରିଥିଲେ ।

ଲକ୍ଷ୍ମଣ ପତ୍ନୀ ଉର୍ମିଳାଙ୍କ ଠାରୁ ବିଦାୟ ନେବା ପାଇଁ ସମ୍ମତି ପ୍ରଦାନ କରିବାକୁ ନିବେଦନ କରିଥିବା ସମୟରେ ଉର୍ମିଳା କହିଥିଲେ, ପ୍ରଭୁ ରାମଙ୍କର ସେବା କରିବା ପାଇଁ ମୁଁ ସାରାଜୀବନ ତ୍ୟାଗ କରିବାକୁ ପ୍ରସ୍ତୁତ । ବଣରେ ସୀତା ରାମଙ୍କର ସୁରକ୍ଷା ପ୍ରତି ଯତ୍ନବାନ ହେବ ।

"ନାରୀ ଜୀବନ ହାୟ ତୁହ୍ମାରୀ ଯହ କହାନୀ
ଆଁଚଲ ମେ ହେ ଦୁଧ ଔର ଆଁଖୋମେ ପାନୀ"

ନାରୀ ଦୁନିଆଁକୁ କ୍ଷୀର ଦିଏ । ନାରୀ ମା' ପତ୍ନୀ ଓ ଭଗ୍ନୀ ଭାବରେ ଦାୟିତ୍ୱ ନିର୍ବାହ କରେ ଜଗତର ମଙ୍ଗଳ କରେ । ଆଖିରେ ତା'ର ଲୁହ କିନ୍ତୁ ହୃଦୟରେ ଅମୃତ । ଏହା କହି ଲକ୍ଷ୍ମଣଙ୍କୁ ବିଦାୟ ଦେଇଥିଲେ ।

ରାମ, ଲକ୍ଷ୍ମଣ ଓ ସୀତା ପିତା ଦଶରଥ ଓ ମାତା କୈକେୟୀଙ୍କ ଠାରୁ ଆଶୀର୍ବାଦ ନେଇ ବନକୁ ପ୍ରସ୍ଥାନ କରିଥିଲେ । ଅଯୋଧ୍ୟାବାସୀ ରାମଲକ୍ଷ୍ମଣ ଓ ସୀତାଙ୍କ ପଛେ ପଛେ ବିଳାପ କରି ଯାଉଥିଲେ ।

"ଧନ୍ୟ ଦଶରଥ ସତ୍ୟ ରକ୍ଷକ
ଧନ୍ୟ ରାମଚନ୍ଦ୍ର ପିତୃସେବକ
ଧନ୍ୟ ଭ୍ରାତୃଭକ୍ତ ବୀର ସୌମିତ୍ରୀ
ଧନ୍ୟ ପତିବ୍ରତେ ବୈଦେହୀ ସତୀ
ଧନ୍ୟ ଭାରତ ଜନନୀ ଗୋ,
ଅବିନାଶୀ କୀର୍ତ୍ତି ବହିଛୁ ବକ୍ଷରେ
ହୋଇ ବୀର ପ୍ରସବିନୀ ଗୋ ।"

- ଗୀତି ରାମାୟଣ - ପୃଷ୍ଠା - ୫୯

ଭାଗୀରଥୀ ତଟରେ ଉପସ୍ଥିତ ହୋଇ ନିଷାଦରାଜର ଅଭ୍ୟର୍ଥନା ସହ ପ୍ରଭୁ କୈବର୍ତ୍ତର ଡଙ୍ଗାରେ ଗଙ୍ଗାନଦୀ ପାର ହୋଇଥିବା ସମୟରେ କୈବର୍ତ୍ତର ଅନୁରୋଧକ୍ରମେ ପ୍ରଭୁଙ୍କର ପଦ ଧୌତ କରିଥିଲା ଏବଂ ମାତା ଗଙ୍ଗା ମଧ୍ୟ ପ୍ରଭୁଙ୍କର ଦର୍ଶନ ପାଇ ମୁଗ୍ଧ ହୋଇଥିଲେ । ରାମ, ଲକ୍ଷ୍ମଣ, ସୀତା

ବନରେ ବୃକ୍ଷରାଜି, ମୟୂର ଓ ପ୍ରକୃତିର ମନୋରମ ଦୃଶ୍ୟ ଦେଖି ଦେଖି ମହର୍ଷି ବାଲ୍ମୀକିଙ୍କ ଆଶ୍ରମରେ ଉପନୀତ ହେଲେ । ଶ୍ରୀରାମ ମୁନିଙ୍କୁ ପ୍ରଣିପାତ କରି କହିଲେ ପିତୃସତ୍ୟ ପାଳନ, ମାତାଙ୍କ ହିତ ଓ ଆପଣଙ୍କ ପରି ସାଧୁସନ୍ଥଙ୍କ ଦର୍ଶନ ପାଇଁ ମୁଁ ବନବାସ କଲି । ବାଲ୍ମୀକି କହିଲେ ହେ ରାମ, ଆପଣ ବେଦ ମାର୍ଗର ପାଳକ, ସାକ୍ଷାତ ବ୍ରହ୍ମ । ସୀତା ଆଦିଶକ୍ତି ସେ ଆପଣଙ୍କ ଆଦେଶରେ ଜଗତ ସୃଜନ, ପାଳନ ଓ ସଂହାର କରନ୍ତି । ଲକ୍ଷ୍ମଣ ଶେଷନାଗ । ଦେବକାର୍ଯ୍ୟ ପାଇଁ ଆପଣ ନର ଶରୀର ଧାରଣ କରିଛନ୍ତି ।

ରାମ ସ୍ୱରୂପ ମନ ବଚନ
ଅଗୋଚର ବୁଦ୍ଧି ପାର
ଅବଗତି ଅକଥ ଅପାର ନେତି
ନେତି ନିତି ନିତି ନିଗମ କହେ ।

ହେ ରାମ । ଆପଣଙ୍କ ସ୍ୱରୁପ, ମନ, ବୁଦ୍ଧି, ବାଣୀର ଅଗୋଚର । ବ୍ରହ୍ମା, ମହେଶ୍ୱର ଆପଣଙ୍କର ମର୍ମ ଜାଣି ପାରିନାହାଁନ୍ତି । ଆପଣ ସଚ୍ଚିଦାନନ୍ଦମୟ ।

ଦଶରଥ ଶ୍ରୀରାମଙ୍କର ବନଗମନର ଷଷ୍ଠ ଦିବସରେ କୌଶଲ୍ୟା, ସୁମିତ୍ରା ଓ ସୁମନ୍ତଙ୍କ ଉପସ୍ଥିତିରେ ଛଅ ଥର ରାମନାମ ଉଚ୍ଚାରଣ କରି ପ୍ରାଣତ୍ୟାଗ କଲେ ।

ହା ରଘୁନନ୍ଦନ ପ୍ରାନ ପିରୀତେ,
ତୁହ୍ମ ବିନୁ ଜିଅତ ବହୁତ ଦିନ ବୀତେ
ହା ଜାନକୀ ଲକ୍ଷନି ହା ରଘୁବର,
ହା ପିତୁ ହିତକ ଚାତକ ଜଳଧର ।

ଶ୍ରବଣକୁମାର ବଧ ହେତୁ ଅନ୍ଧକ ମୁନିଙ୍କର ଅଭିଶାପ ଯୋଗୁଁ ଦଶରଥଙ୍କର ମୃତ୍ୟୁ ସମୟରେ ପୁତ୍ର ମୁଖ ଦର୍ଶନ ପାଇ ନପାରି ସ୍ୱର୍ଗାବାସ କରିଥିଲେ ।

## ଭରତଙ୍କର ଅନାବିଳ ଭ୍ରାତୃପ୍ରେମ ଓ ଆତ୍ମୋତ୍ସର୍ଗ

ରାମାୟଣରେ ଭରତ ଚରିତ୍ର ଅନୁପମ ଭକ୍ତି ଓ ଭ୍ରାତୃପ୍ରୀତିର ଏକ ସ୍ନିଗ୍ଧ ପାରାବାର । ଗୁରୁଦେବ ବଶିଷ୍ଠଙ୍କ ଆଦେଶରେ ଭରତ ଅଯୋଧ୍ୟାରେ ପହଞ୍ଚି ଅଯୋଧ୍ୟା ଶ୍ରୀହୀନ ହୋଇ ପଡିଥିବା, ଉପବନରେ କୋଇଲିର କୁହୁତାନ ତଥା ସରଯୂନଦୀ ତଟରେ ଲଳନା ମାନଙ୍କର ନୂପୁର ଧ୍ୱନି ନ ଶୁଣି ବ୍ୟଥିତ ହୋଇଥିଲେ । ପିତାଙ୍କର ସ୍ୱର୍ଗାବାସ ସମାଚାର ଶୁଣି ଶୋକାଭିଭୂତ ହୋଇପଡିଥିଲେ ।

### ଗୋ ସ୍ୱାମୀଙ୍କ ଭାଷାରେ :-

"ତାତ ତାତ ହା ତାତ ପୂକାରୀ ।
ପରେଉ ଭୂମିତଲ ବ୍ୟାକୁଲଭାରୀ"

ହେ ପିତା, ଆପଣ ମୋତେ ଶ୍ରୀରାମଙ୍କ ପାଖେ ସମର୍ପଣ ନକରି ସ୍ୱର୍ଗାରୋହଣ କଲେ । ଆପଣଙ୍କୁ ନଦେଖି ମୋର ହୃଦୟ ବିଦୀର୍ଣ୍ଣ ହୋଇଯାଉଛି ।

"ଚଲତ ନ ଦେଖନ ପାୟଉଁ ତୋହୀ ।
ତାତ ନ ରାମହି ସୌପେହୁ ମୋହୀ ।"

କିନ୍ତୁ ମାତା କୈକେୟୀଙ୍କ ଠାରୁ ରାମ ବନଗମନ କରିଥିବା ଜାଣି ମାତାଙ୍କୁ କଠୋର ଭାଷାରେ କହିଲେ ତୁମେ ଧର୍ମାତ୍ମା ରାମଙ୍କୁ ବନକୁ ପ୍ରେରଣ କରି ମୋତେ ପିତୃହୀନ, ଭ୍ରାତୃହୀନ ଓ ସର୍ବଜନ ନିନ୍ଦିତ କଲ ।

ରାମ ବିରୋଧୀ ହୃଦୟତେଁ
ପ୍ରଗଟ ଜୀହ୍ନ ବିଧି ମୋହି
ମୋ ସମାନ କୋ ପାତକୀ ବାଦୀ
କହଁଇ କଛୁ ତୋହି" ଗୋ ସ୍ୱାମୀ ...

ବିଧାତା ମୋତେ ତୁମ ଭଳି ଶ୍ରୀରାମ ବିରୋଧୀ ମାତାଙ୍କ ହୃଦୟରୁ ଜନ୍ମ ଦେଇଚି, ତେଣୁ ମୋ ସମାନ ପାପୀ କେହି ନାହିଁ ବୋଲି ନିଜକୁ ଧିକ୍‌କାର କରିଛନ୍ତି ।

ପିତୁ ସୁରପୁର ବନ ରଘୁବର କେତୁ,
ମୈଁ କେବଲ ସବ ଅନରଥ ହେତୁ

ଧିଗ୍ ମୋହି ଭୟଉଁ ବେନୁବନ ଆଗୀ,
ଦୁଃସହ ଦାହ ଦୁଃଖ ଦୂଷନ ଭାଗୀ ।

ପିତା ସ୍ୱର୍ଗପୁରରେ, ରଘୁକୁଳ ତିଳକ ରାମଚନ୍ଦ୍ର ବନବାସରେ । ମୁଁ ଗୋଟେ ବାଉଁଶ ବନରେ ଅଗ୍ନିରୂପେ ନିଜ ବଂଶ ପୋଡିବାକୁ ଜନ୍ମ ହୋଇଥିଲି । ଦୁଃସହ ଅନ୍ତର୍ଦାହ ଦାରୁଣ ଦୁଃଖ ଅସହନୀୟ ଦୂଷଣର ଭାଗୀଦାର ହେବା ପାଇଁ ମୋର ଜନ୍ମ ହୋଇଥିଲା ବୋଲି ନିଜକୁ ଧିକ୍‌କାର କରିଛନ୍ତି ।

ଗୁରୁଦେବଙ୍କ ପରାମର୍ଶରେ ନିଷ୍ପାର ସହ ପିତୃକ୍ରିୟା ସମ୍ପନ କରି ନିଜର ଭ୍ରାତାଙ୍କୁ ଫେରାଇ ଆଣିବା ପାଇଁ ଭରତଙ୍କ ଚିତ୍ରକୂଟ ଯାତ୍ରା ଭକ୍ତି ମାର୍ଗର ଯାତ୍ରା ଥିଲା । ଗୁରୁଦେବ, ମାତୃବୃନ୍ଦ, ପାରିଷଦଗଣ ଏବଂ ଅଯୋଧ୍ୟାବାସୀଙ୍କ ସହ ଭରତଙ୍କର ଯାତ୍ରା ଶ୍ରୀରାମଙ୍କ ପ୍ରତି ଅନୁପମ ଭକ୍ତିର ଯାତ୍ରା ଥିଲା । ବାଟରେ ଭାଗୀରଥୀ ନଦୀରେ ସ୍ନାନ କରି ଗଙ୍ଗାମାତାଙ୍କର ଆଶିଷ ଲାଭ କରି ସିଦ୍ଧତପା ଭରଦ୍ୱାଜ ମୁନିଙ୍କୁ ଦର୍ଶନ କରି ଆଶୀର୍ବାଦ ନେଇଥିଲେ ।

ଭକ୍ତିପଥର ଅବିଚଳିତ ପଥିକ ଭରତଙ୍କ ନୟନରୁ ପ୍ରେମାଶ୍ରୁ ଅବିରତ ଝରି ପଡୁଥାଏ । ସେ ରାମ ନାମ ଜପ କରି ଯାଉଥିବାରୁ ସମସ୍ତେ ତାଙ୍କ ଦର୍ଶନରେ ମୁଗ୍ଧ ହୋଇପଡିଥିଲେ ।

ପରମାନୁରାଗୀ ଲକ୍ଷ୍ମଣ ଭରତଙ୍କର ଆଗମନକୁ ଭିନ୍ନ ରୂପରେ ଦେଖି ଭରତର ରାଜପଦ ଲୋଭ ଅନୁମାନ କରି ଭରତ ଓ ଶତ୍ରୁଘ୍ନଙ୍କୁ ବଧ କରିବାକୁ ନିଷ୍ପତ୍ତି ନେଲେ । ଭରତ ଜଣେ ନିଷ୍ପାପ ଭକ୍ତ । ତାଙ୍କ ଜୀବନରେ ଐଶ୍ୱରୀୟ କୃପା ଓ ସାଧନାର ସମନ୍ୱୟ ଘଟିଛି । ଭରତ ପ୍ରଭୁ ଶ୍ରୀରାମଙ୍କର ଚରଣ ପାଦୁକାକୁ ଆଶ୍ରୟ କରିଥିବା ତପସ୍ୱୀ । ଭରତଙ୍କ ଭାବନା ଭକ୍ତ ହୃଦୟର ଅମୂଲ୍ୟ ରତ୍ନ । ଏହା ଭକ୍ତି ପ୍ରେମ ରସର ସାର ସର୍ବସ୍ୱ ଓ ପ୍ରେମ ଦର୍ଶନର ମଙ୍ଗଳମୟ ଗମ୍ଭୀର ସୂତ୍ର । ଚିତ୍ରକୂଟ ପର୍ବତର ମନୋରମ ଶୋଭା, ପାଦ ଦେଶରେ କୁଳୁକୁଳୁ ନାଦରେ ବହିଯାଉଥିବା ଶ୍ୱେତ ସଲିଳ ପୟସ୍ୱିନୀ ନଦୀ ଦେଇ ଅତ୍ୟନ୍ତ ଭାବ ବିହ୍ୱଳ ହୋଇପଡିଥିଲେ । ଗନ୍ତବ୍ୟ ପଥରେ ପ୍ରଭୁଙ୍କର ପାଦ ଚିହ୍ନ ଦେଖି ପ୍ରଭୁଙ୍କର ପାବନ ପଦଧୂଳିକୁ ନେଇ ମସ୍ତକ, ହୃଦୟ ଓ ନେତ୍ରରେ ଲଗାଇ ରଘୁନାଥଙ୍କର ମିଳନର ଦିବ୍ୟ ଆନନ୍ଦ ଉପଲବ୍ଧି କଲେ ।

**ଗୋସ୍ୱାମୀଙ୍କ ଭାଷାରେ:-**

"ରଜ ଶିର ଧରି ହିୟଁ ନୟନହ୍ନି ଭାଓ୍ୱହିଁ,
ରଘୁବର ମିଲନ ସରିସ ସୁଖ ପାଓ୍ୱହିଁ ।"

ପ୍ରଭୁ ଶ୍ରୀରାମ ବେଦୀ ଉପରେ ବସି ମୁନି ଋଷିମାନଙ୍କ ସହ ବସି ଶାସ୍ତ୍ର ଆଲୋଚନାରେ ନିମଗ୍ନ ହୋଇ ମଧ୍ୟ ଅତି ଅଧୀରତାର ସହ ଭକ୍ତ ଓ ଭଗବାନଙ୍କର ମିଳନକୁ ପ୍ରତୀକ୍ଷା କରିଥିଲେ ।

ପାହିନାଥ କହି ପାହି ଗୋସାଈ,
ଭୁତଲ ପରେ ଲକୁଟକୀ ନାଈ ।

ଭରତ ପାହିନାଥ, ପାହିନାଥ କହି ଭୂମିରେ ଲୋଟିପଡିଲେ । ଲକ୍ଷ୍ମଣ ଭରତଙ୍କ ପ୍ରେମ ପ୍ରବାହରେ ପ୍ଲାବିତ ହୋଇଗଲେ ।

ବରବସ ଲିଏ ଉଠାଇ ଉର ଲାଏ କୃପାନିଧାନ
ଭରତ ରାମଜୀ ମିଲନ୍ ଲଖି ବିସରେ ସବହି ଅପାନ ।

ପ୍ରଭୁ ଦୌଡିଆସି ଭରତଙ୍କୁ ଉଠାଇ ପ୍ରେମମୟ ହୋଇଗଲେ । ଚିତ୍ରକୂଟରେ ଭରତ ଓ ରାମଙ୍କ ମିଳନରେ ଭେଦ ଓ ଦୂରତ୍ୱର ବିସ୍ମୃତି ଘଟିଥିଲା । ଚିତ୍ରକୂଟର ସମସ୍ତ ବାତାବରଣ ମହନୀୟ ହୋଇ ଉଠିଥିଲା ଭକ୍ତିରସର ଭାବଧାରାରେ । ରାମ ଭରତଙ୍କ ମିଳନରେ ଦେବତାମାନେ ପୁଷ୍ପ ବୃଷ୍ଟି କରିଥିଲେ । ପ୍ରଭୁ ଶ୍ରୀରାମ ଗୁରୁଦେବଙ୍କୁ ପ୍ରଣାମ ଓ ମାତାମାନଙ୍କୁ ପ୍ରଣିପାତ କରି ପିତାଙ୍କର ସ୍ୱର୍ଗ ଗମନ ଶୁଣି ବ୍ୟାକୁଳ ହୋଇପଡିଥିଲେ । ଭରତ ଓ ଶତ୍ରୁଘ୍ନ ଜାନକୀ ମାତାଙ୍କର ପାଦତଳେ ମଥାନତ କରି କ୍ଷମା ଯାଚନା କଲେ । ମାତା ଜାନକୀ ଭରତଙ୍କୁ ତଳୁ ଉଠାଇ ତାଙ୍କର ବରଦହସ୍ତ ମସ୍ତକରେ ବୁଲାଇନେଲେ ।

ଚିତ୍ରକୂଟ ସଭାରେ ଗୁରୁଦେବ ବଶିଷ୍ଠ ଓ ଭରତ ରାମଚନ୍ଦ୍ରଙ୍କୁ ଅଯୋଧ୍ୟା ଫେରିଯିବା ପାଇଁ ବିନମ୍ର ଭାବରେ ନିବେଦନ କରିଥିଲେ ।

ଜାନହୁଁ ତାତ ତରନି କୁଲରୀତି,
ସତ୍ୟସନ୍ଧ ପିତୁ କିରତି ପ୍ରୀତି
ସମୟୁ ସମାଜ ଲାଜ ଗୁରୁଜନକୀ,
ଉଦାସୀନ ହିତ ଅନହିତ ମନକୀ ।

ରାମଚନ୍ଦ୍ର ଭରତଙ୍କୁ କହିଲେ ହେ ଭ୍ରାତା, ପିତାଙ୍କର ସ୍ୱର୍ଗବାସ ! ପିତା ଆଜ୍ଞା ପାଳନ ସମସ୍ତ ସମାଧାନର ଏକମାତ୍ର ସିଦ୍ଧି । ତାହା କୀର୍ତ୍ତି, ଗତି ଓ ଐଶ୍ୱର୍ଯ୍ୟ ରୂପେ ତ୍ରିବେଣୀର ପାବନ ପ୍ରଦାନ କରିପାରେ ।

"ପିତା ଅଟନ୍ତି ସ୍ୱର୍ଗ; ପିତା ଦେବତା,
ଜନକ ସନ୍ତାନର ପରମ ପିତା ।"

ପିତୃ ଆଦେଶ ଶିରେ କରି ଧାରଣ
କରିବି ବନବାସ କରିଛଇ ପଣ ।

ଗୀତି ରାମାୟଣ - ପୃଷ୍ଠା - ୭୪

ଚିତ୍ରକୂଟ ପରିଭ୍ରମଣରେ ମଧୁର, ଶୀତଳ ଓ ସୌରଭଯୁକ୍ତ ବାୟୁ, ସଘନ ବନର ପାଦପଶ୍ରେଣୀ ଫଂଳପୁଷ୍ପରେ ବିମଣ୍ଡିତ, କୋକିଳର କମନୀୟ କଣ୍ଠରେ କୁହୁକୁହୁ ତାନରେ ଭରତ ଅତ୍ୟନ୍ତ ଆହ୍ଲାଦିତ ହୋଇ ଶ୍ରୀରାମଙ୍କୁ ବିନୀତ ଭାବରେ ଆଦେଶ ପ୍ରଦାନ କରିବାକୁ ନିବେଦନ କରିଥିଲେ । ଶ୍ରୀରାମ କହିଲେ, ହେ ଭରତ ତୁମେ ଚଉଦ ବର୍ଷ ପର୍ଯ୍ୟନ୍ତ ଅଯୋଧ୍ୟା ରାଜ୍ୟ ଗୁରୁଦେବଙ୍କ ଆଦେଶ ଅନୁସାରେ ପାଳନ କର । ପ୍ରଭୁ କୃପାକରି ଭରତଙ୍କ ବିନତି ଅନୁସାରେ ତାଙ୍କ ପାଦୁକା ଯୋଡିକ ପ୍ରଦାନ କଲେ ।

ପ୍ରଭୁ କରି କୃପା ପାଓ୍ୱରୀ ଦିହ୍ନୀ,
ସାଦର ଭରତ ସିସ ଧରି ଲିହ୍ନୀ

ଶ୍ରୀରାମଙ୍କ ଆଦେଶ ଅନୁଯାୟୀ ଭରତ ପାଦୁକା ଦୁଇଟି ମହାନନ୍ଦରେ ମସ୍ତକରେ ଧାରଣ କଲେ ।

ଚରନ ପୀଠ କରୁନାନିଧାନକେ,
ଜୁଗ ଜାମିକ ପ୍ରଜା ପ୍ରାନକେ
ସଂପୁଟ ଭରତ ସନେହ ରତନକେ,
ଆଖର ଯୁଗ ଜନୁ ଜୀବ ଜତନ କେ ।

ରଘୁନାଥ ପିତାଙ୍କ ଆଦେଶରେ ବନବାସ କଲେ ଏବଂ ଭରତ ପ୍ରଭୁ ଶ୍ରୀରାମଙ୍କର ପାଦୁକା ଦ୍ୱୟ ମୁଣ୍ଡରେ ଧରି ଚିତ୍ରକୂଟରୁ ଗୁରୁଦେବ ଓ ମାତା, ତଥା ଅଯୋଧ୍ୟାବାସୀଙ୍କ ସହ ଫେରି ନନ୍ଦୀଗ୍ରାମରେ ସିଂହାସନ ଉପରେ ପାଦୁକା ଥୋଇ ବୈରାଗ୍ୟ ଭାବନା ଓ ତ୍ୟାଗପୂତ ଜୀବନ ପୂର୍ବକ କଠୋର ଋଷିଧର୍ମ

ପାଳନ କରି ଚଉଦବର୍ଷ ଅତିକ୍ରାନ୍ତ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ । ରାମପ୍ରେମକୁ ନିତ୍ୟ ସ୍ମରଣ କରି ସେ ତଲ୍ଲୀନ ହୋଇଯାଇଥିଲେ ।

## ରାମ ବନବାସ

ସାଦରଂ ଶବରୀଦତ୍ତଫଳମୂଳାଭିଳାଷିଣେ
ସୌଲଭ୍ୟ ପରିପୂର୍ଣ୍ଣାୟ ସତ୍ତ୍ୱାଦ୍ରିକାୟ ମଙ୍ଗଳମ୍ ।

(ଶ୍ରୀରାମ ସ୍ତୋତ୍ରମାଳା ପ୍ରଫେସର ଡକ୍ଟର ଅନନ୍ତ ମିଶ୍ର)

ରାମଙ୍କର ବନବାସ ସମୟରେ ଶବରୀ ସ୍ୱାଦଚାଖି ଦେଇଥିବା ଫଳମୂଳ ଅତି ଆଦରର ସହିତ ଗ୍ରହଣ କରିଥିଲେ । ସେହି ଫଳାହାର ସଶ୍ରଦ୍ଧ ସହ ପ୍ରାପ୍ତ ହୋଇଥିବା ହେତୁ ପ୍ରଭୁ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ବନବାସ ସମୟରେ ରାବଣର ଭଗ୍ନୀ ସୂପର୍ଣଖା ମାୟାରେ ରୂପ ପରିବର୍ତ୍ତନ କରି ରାମଙ୍କୁ ବିବାହ କରିବା ପାଇଁ ପ୍ରୟାସ କରିଥିଲା କିନ୍ତୁ ପ୍ରଭୁ ତାହାର କୁବୁଦ୍ଧି ଜାଣିପାରି ଲକ୍ଷ୍ମଣଙ୍କ ଦ୍ୱାରା ନାସିକା ଛେଦନ କରିବାରୁ ଲଙ୍କାର ରାଜା ରାବଣ ଖର ଓ ଦୂଷଣଙ୍କ ଭଳି ଦୁର୍ଦ୍ଧାନ୍ତ ଅସୁରଙ୍କୁ ରାମ ଓ ଲକ୍ଷ୍ମଣଙ୍କୁ ବଧ କରିବାକୁ ନିର୍ଦ୍ଦେଶ ଦେଇଥିଲା । କିନ୍ତୁ ପ୍ରଭୁ ଖର ଓ ଦୂଷଣଙ୍କୁ ବଧ କରିଥିଲେ ।

କୋଟି ଚନ୍ଦ୍ରମା ନିନ୍ଦିତ ରୂପ ମନୋହର
ଶାରଦ ସୁଧାଂଶୁ ଗୁଞ୍ଜିତ ବଦନ ମଣ୍ଡଳ
ଦେଖି ବିଶ୍ରବା କୁମର
କାମବାଣେ ଜର୍ଜରିତ ହେଲା ତା ଶରୀର ।

- ଗୀତି ରାମାୟଣ - ପୃଷ୍ଠା - ୬୭

ଦଶଶିର ରାବଣ ବୈଦେହୀଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ହରଣ କରିବାର ଚକ୍ରାନ୍ତ କରି ମାୟାରୂପୀ ମାରିଚକୁ ସ୍ୱର୍ଣ୍ଣମୃଗ ରୂପ ଧରି ରାମଙ୍କର ପର୍ଣ୍ଣକୁଟୀର ଚତୁର୍ପାର୍ଶ୍ୱରେ ବୁଲିବାକୁ ନିର୍ଦ୍ଦେଶ ଦେଲା ।

ମାରୀଚ ରାବଣଙ୍କୁ କହିଥିଲା ହେ ଦଶଶିର:-

## ତୁଳସୀ ଦାସଙ୍କ ଭାଷାରେ:-

ତେହିଁ ପୁନି କହା ସୁନହୁ ଦସ ସୀସା,
ତେ ନର ରୂପ ଚରାଚର ଇସା

ତାସୋଁ ତାତ ବୟରୁ ନହିଁ କୀଜୈ,
ମାରେଁ ମରିଅ ଜିଆଏଁ ଜୀଜେ ।

ରାମ ମନୁଷ୍ୟ ରୂପୀ ହେଲେ ମଧ୍ୟ ଚରାଚର ବିଶ୍ୱର ଈଶ୍ୱର ଅଟନ୍ତି । ତାଙ୍କ ସହ ଶତ୍ରୁତା କରନାହିଁ । ଅଭିମାନୀ ରାବଣ ମାରୀଚକୁ ବଧ କରିବାକୁ ଧମକ ଦେବାରୁ ମାରୀଚ ଶ୍ରୀରାମଙ୍କ ହାତରେ ମୃତ୍ୟୁ ବରଣ କରିବାକୁ ଶ୍ରେୟସ୍କର ମନେ କରିଥିଲା ଏବଂ ରାବଣର ଆଦେଶ ମତେ ମାୟା ସ୍ୱର୍ଣ୍ଣମୃଗ ରୂପ ଧରି କୁଟୀର ଚାରିପାଖେ ବିଚରଣ କରିବା ଦେଖି ସ୍ୱର୍ଣ୍ଣମୃଗ ମାୟାରେ ମୋହିତ ହୋଇ ସୀତା ରାମଙ୍କୁ ସ୍ୱର୍ଣ୍ଣମୃଗ ଆଣିବା ପାଇଁ ପ୍ରରୋଚିତ କରିଥିଲେ ।

## ଗୋ ସ୍ୱାମୀଙ୍କ ଭାଷାରେ:-

ପ୍ରଭୁହି ବିଲୋକି ଚଲା ମୃଗ ଭାଜୀ,
ଧାଏ ରାମୁ ସରାସନ ସାଜୀ
ନିଗମ ନେତି ସିବ ଧ୍ୟାନ ନ ପାୱା,
ମାୟା ମୃଗ ପାଛେଁ ସୋ ଧାୱା ।

ପ୍ରଭୁଙ୍କୁ ଦେଖି ମାୟାମୃଗ ଦୌଡ଼ିଲା । ରାମ ଶରାସନ ସାଜି ମୃଗ ପଛରେ ଅନୁଧାବନ କଲେ । ବେଦ ଯାହାଙ୍କୁ ସ୍ଥିର କରିପାରେ ନାହିଁ, ଶିବ ଯାହାଙ୍କୁ ଧ୍ୟାନ କରିପାରନ୍ତି ନାହିଁ, ସେହି ଗୁଣାତୀତ ନିରାକର ପରଂବ୍ରହ୍ମ ମାୟା ମୃଗ ପଛରେ ଅନୁସରଣ କରୁଅଛନ୍ତି ।

ରାମଙ୍କର ଶରାଘାତରେ ମାରୀଚ ତ୍ରାହି ଲକ୍ଷ୍ମଣ ବୋଲି ଡାକିବାରୁ ସୀତାଙ୍କର ଆଦେଶରେ ଲକ୍ଷ୍ମଣ ଅନିଚ୍ଛା ସତ୍ତ୍ୱେ କୁଟୀର ସମ୍ମୁଖରେ ଶରମୁନରେ ତିନି ଗାର କାଟି ମାତା ଜାନକୀଙ୍କୁ ଉକ୍ତ ଗାର କୌଣସି ପରିସ୍ଥିତିରେ ଅତିକ୍ରମ ନକରିବାକୁ ପରାମର୍ଶ ଦେଇ ପ୍ରଭୁ ରାମଙ୍କ ସନ୍ଧାନରେ ବାହାରିଥିଲେ । ଏହି ସୁଯୋଗରେ ଦଶଶିର ରାବଣ ମାୟା ଋଷି ରୂପରେ ଭିକ୍ଷାମାଗିବା ଆଳରେ ସୀତାଙ୍କୁ ଲକ୍ଷ୍ମଣ କାଟିଥିବା ତିନି ଗାର ଅତିକ୍ରମ କରିବା ପରେ ତାଙ୍କୁ ଅପହରଣ କରି ପୁଷ୍ପକ ଯାନରେ ଲଙ୍କା ଗମନ କରିଥିଲା ।

ନ ନିର୍ମିତା କେନ ନ ଦୃଷ୍ଟପୂର୍ବା,
ନ ଶ୍ରୁୟତେ ହେମମୟୀ କୁରଙ୍ଗୀ
ତଥାସ୍ୟପି ତୃଷ୍ଣା ରଘୁନନ୍ଦନସ୍ୟ,
ବିନାଶ କାଳେ ବିପରୀତ ବୁଦ୍ଧି ।

- ଚାଣକ୍ୟ ନୀତି

ସୁବର୍ଣ୍ଣ ହରିଣ ପୂର୍ବରୁ କେବେ ନିର୍ମାଣ ହୋଇନଥିଲା କିମ୍ବା ପୂର୍ବରୁ ଶୁଣା ଯାଇନଥିଲା । ତଥାପି ପୁଣ୍ୟଶ୍ଳୋକ ପରଂବ୍ରହ୍ମ ରାମଚନ୍ଦ୍ରଙ୍କୁ ଦୃଶ୍ୟମାନ ହୋଇଥିଲା କାରଣ ବିନାଶ କାଳ ଉପସ୍ଥିତ ହେଲେ ବୁଦ୍ଧି ବିପରୀତ ହୋଇଥାଏ ।

ରାବଣ ସୀତାଙ୍କୁ ଅପହରଣ କରି ନେଉଥିବା ସମୟରେ ରାଜା ଦଶରଥଙ୍କର ମିତ୍ର ଜଟାୟୁ ରାବଣ ସହ ଯୁଦ୍ଧ କରିଥିଲା କିନ୍ତୁ ରାବଣ ଜଟାୟୁର ଦୁଇ ଡେଣା ଖଡ୍ଗ ସାହାଯ୍ୟରେ କାଟି ଦେବାରୁ ସେ ଭୂମିରେ ନିପତିତ ହେଲା । ଜାନକୀ ତାଙ୍କର କିଛି ଭୂଷଣ ବସ୍ତ୍ରରେ ବାନ୍ଧି ଋଷ୍ୟମୂକ ପର୍ବତକୁ ଫିଙ୍ଗି ଦେଇଥିଲେ ଯାହା ବାନର ରାଜ ସୁଗ୍ରୀବ ପ୍ରାପ୍ତ ହୋଇଥିଲେ । ମାରୀଚ ଅସୁରକୁ ବଧ କରି ରାମଚନ୍ଦ୍ର ଫେରିବା ସମୟରେ ବନମଧରେ ଲକ୍ଷ୍ମଣଙ୍କୁ ଦେଖି ବିସ୍ମିତ ହେଲେ ଏବଂ କୁଟୀରକୁ ଫେରି ସୀତାଙ୍କୁ ନ ପାଇ ବିଳାପ କରିଥିଲେ । ବନରେ ଖୋଜି ଖୋଜି ପକ୍ଷାଘାତ ଜଟାୟୁଃ ଠାରୁ ରାବଣ ଅପହରଣ କରି ନେଇଥିବା ଜାଣି ଅତ୍ୟନ୍ତ କାତର ହୋଇ ପଡିଥିଲେ ।

"ଖେଦ ପାରାବାର ହୋଇଲା ଉଛଳ
ବିବେକ ମନ୍ଦର ପଡିଲା ଢଳି
ହେଲେ ହତଜ୍ଞାନ ଦାରୁଣ ଦୁଃଖରେ
ପତ୍ନୀ ବିଚ୍ଛେଦରେ ରଘୁ କେଶରୀ ।"

- ଗୀତି ରାମାୟଣ - ପୃଷ୍ଠା - ୭୫

ଅରଣ୍ୟରେ ଭ୍ରମଣ କରୁଥିବା ସମୟରେ ରୁଦ୍ରାବତାର ହନୁମାନଙ୍କ ସହ ପ୍ରଭୁଙ୍କର ସାକ୍ଷାତ ହୋଇଥିଲା ।

## ସୁନ୍ଦରାକାଣ୍ଡ ଶ୍ଳୋକ ୩ ରେ ଉଲ୍ଲିଖିତ:-

ଅତୁଳିତ ବଳଧାମଂ ହେମ ଶୈଳାଭ ଦେହଂ
ଦନୁଜ ବନ କୃଶାନୁଂ ଜ୍ଞାନୀନାମ୍‌ଗ୍ରଗଣ୍ୟମ୍
ସକଳ ଗୁଣ ନିଧାନଂ ବାନରାଣାମଧୀଶଂ
ରଘୁପତି ପ୍ରିୟ ଭକ୍ତଂ ବାତଜାତି ନମାମି ।

ଯାହାଙ୍କର କାୟିକ ଶକ୍ତି ଅତୁଳନୀୟ, ସ୍ୱର୍ଣ୍ଣଗିରି ସୁମେରୁ ତୁଲ୍ୟ ଯାହାଙ୍କର ଆକୃତି, ରାକ୍ଷସଗର୍ଣ୍ଣଙ୍କୁ ଦାହ କରିବାକୁ ଯେ ଦାବାଗ୍ନି, ଜ୍ଞାନୀଗଣଙ୍କ ମଧରେ ଅଗ୍ରଗଣ୍ୟ, ସର୍ବଗୁଣସମ୍ପନ୍ନ, କପିବୃନ୍ଦଙ୍କର ଅଧୀଶ୍ୱର ସେହି ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ଶ୍ରେଷ୍ଠ ଭକ୍ତ ଶ୍ରୀହନୁମାନ ବନ୍ଦନୀୟ ଓ ପୂଜ୍ୟ ।

ହନୁମାନ ରାମଙ୍କୁ ତପସ୍ୱୀ ବେଶରେ ଧନୁର୍ଦ୍ଧର ରୂପେ ଦେଖି ତାଙ୍କର ପରିଚୟ ପଚାରିବାରୁ ପ୍ରଭୁ କହିଥିଲେ:-

କୋସଲେସ ଦଶରଥ କେ ଜାଏ ।
ହମ ପିତୁ ବଚନ ମାନି ବନ ଆଏ ।

ଆମେ ଅଯୋଧ୍ୟାର ରାଜା ଦଶରଥଙ୍କର ଦୁଇ ପୁତ୍ର ରାମ ଓ ଲକ୍ଷ୍ମଣ ପିତୃ ଆଦେଶ ପାଳନ ନିମନ୍ତେ ବନକୁ ଆସିଲୁ । ପଞ୍ଚବଟୀରୁ ମୋର ପତ୍ନୀଙ୍କୁ ରାକ୍ଷସ ରାବଣ ଚୋରି କରି ନେଇଛି । ଆମେ ସୀତାଙ୍କୁ ଅନ୍ୱେଷଣ କରୁଛୁ । ହନୁମାନ ପ୍ରଭୁଙ୍କର ପରିଚୟ ପାଇ ତାଙ୍କ ପାଦ ତଳେ ପଡିଗଲେ ।

ପ୍ରଭୁ ପହିଚାନି ପରେଉ ଗହି ଚରନା,
ସୋ ସୁଖ ଉମା ଜାଇ ନହିଁ ବରନା ।

- ଗୋସ୍ୱାମୀ

ଶିବ ପାର୍ବତୀଙ୍କୁ କହୁଛନ୍ତି ହେ ଭବାନୀ, ହନୁମାନ ଏକାଦଶ ରୁଦ୍ର । ଏ ସମୟର ସୁଖ ବର୍ଣ୍ଣନା କରିବା କଠିନ । ପ୍ରଭୁ ରାମ ହନୁମାନଙ୍କୁ ଉଠାଇ ହୃଦୟାଲିଙ୍ଗନ କଲେ ।

ହନୁମାନଙ୍କ ପରାମର୍ଶରେ ବାନର ରାଜ ସୁଗ୍ରୀବଙ୍କୁ ସାକ୍ଷାତ କରି ପ୍ରଭୁ ରାମ ସୀତାଙ୍କର ଭୂଷଣ ଦେଖି ତାହା ଜାନକୀଙ୍କର ଜାଣିପାରିଲେ ଏବଂ ସୁଗ୍ରୀବଙ୍କ ସହ ମିତ୍ରତା ସୂତ୍ରରେ ଆବଦ୍ଧ ହେଲେ । ସୁଗ୍ରୀବଙ୍କ ଭାଇ ବାଳୀର ଦୌରାତ୍ମ୍ୟ ଜାଣି ବାଳୀ ବଧ କରିବାକୁ ପ୍ରତିଶ୍ରୁତି ଦେଲେ । ପ୍ରତିଶ୍ରୁତି ଅନୁଯାୟୀ ବାଳୀ ଓ ସୁଗ୍ରୀବଙ୍କ ଯୁଦ୍ଧରେ ବାଳୀଙ୍କୁ ସପ୍ତତାଳଭେଦୀ ବାଣ ମାରି ବଧ କରି ମିତ୍ରତାର ବନ୍ଧନକୁ ସୁଦୃଢ଼ କରିଥିଲେ ।

## ବାଳି ନିଧନ

(ରାଗ - ରାମକେରୀ)

"ରଘୁପତି ହୃଦେ ଉଠିଲା ଶୋକଚ୍ଛ୍ୱାସ ପ୍ରବଳ
ପୂର୍ଣ୍ଣିମା ନିଶାରେ ସାଗର ଯଥା ହୁଏ ଉତ୍ତଳ ।"

ବହିଲା କମଳ ନୟନୁ ଖେଦ ଲୋତକ ବାରି
ଜାନକୀ ବିଚ୍ଛେଦ କଷଣ ଦେଲା ଅନ୍ତର ଘାରି ।

- ଗୀତି ରାମାୟଣ - ପୃଷ୍ଠା-୮୦

କୁରଙ୍ଗମୁକ୍ତିସାୟକଂ ଜଟାୟୁମୋକ୍ଷଦାୟକମ୍
ପ୍ରବୀଦ୍ଧକୀଶନାୟକଂ ନମାମି ରାମମୀଶ୍ୱରମ୍ ।

ରାମାଷ୍ଟକମ - ପ୍ରଫେସର ଡ. ଅନନ୍ତ ମିଶ୍ର

ମାୟାମୃଗ ମାରୀଚକୁ ମୁକ୍ତି ପ୍ରଦାନ କରିଥିବା, ଜଟାୟୁଃ ପକ୍ଷୀକୁ ମୋକ୍ଷ ପ୍ରଦାନ କରିଥିବା ଏବଂ ମହାପରାକ୍ରମୀ ବାଳୀକୁ ବଧ କରିଥିବା ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଣିପାତ କରୁଅଛି ।

ହନୁମତ୍ସମବେତାୟ ହରୀଶାଭୀଷ୍ଟଦାୟିନେ
ବାଳି ପ୍ରମଥନାୟାସ୍ତୁ ମହାଧୀରାୟ ମଙ୍ଗଳମ୍ ।

ଶ୍ରୀରାମ ମଙ୍ଗଳା ଶାସନମ୍

ଯେଉଁ ରଘୁନାଥ ରୁଦ୍ରାବତାର ହନୁମାନଙ୍କ ସାହଚର୍ଯ୍ୟ ପାଇଥିଲେ ଏବଂ ସୁଗ୍ରୀବ ତାଙ୍କୁ ଅଭିଷ୍ଟ ପ୍ରଦାନ କରିଥିଲେ, ବାନରରାଜ ବାଳୀକୁ ବଧକରି ସୁଗ୍ରୀବଙ୍କ ମିତ୍ରତା ରକ୍ଷା କରିଥିଲେ ସେହି କୋଦଣ୍ଡଧାରୀ ପ୍ରଭୁ ରାମଚନ୍ଦ୍ର ସଂସାରର ଦୁଃଖ ଲାଭ କରିବା ପାଇଁ ଅବତରିତ ହୋଇଛନ୍ତି ।

ଅମିତ ପରାକ୍ରମଶାଳୀ ରାବଣକୁ ପରାଭୂତ କରିଥିବା ବାନର ରାଜ ବାଳୀର ନିଧନ ପରେ ସମସ୍ତ ମୁନି ଋଷିମାନେ ଆନନ୍ଦିତ ହୋଇ ରାବଣର ମୃତ୍ୟୁ ନିଶ୍ଚିତ ହେବା ଜାଣିପାରିଥିଲେ ।

"ବାଲ୍ୟେ ଯଃ ପେଟ୍ୟୋମାଣୋ
ଜନକ ପଣ ଧନୁ ଦ୍ରାକ ଉଙ୍ଗେ କ୍ଷୁଭଙ୍ଗୋ
ଯସ୍ୟାଳାନ୍ ସପ୍ତୟିତ୍ୱା ବିଜୟୀ
ବିଜୟୀ ନୋ ବାଳୀନଂ ନିର୍ଜଘାନଃ

ନୈନଂ ସାଧାରଣତ୍ୱଂ ଧ୍ରୁବ ମନୁ
ମନୁଥା ଶ୍ରୀରାମଚନ୍ଦ୍ର ବଳିଷ୍ଟଂ
ହେ ଲଙ୍କାଧୀଶ ଗର୍ବ ପରିହରି ମହତି
ବୀରଭୂମି ଗତୋୟମ ।"

ଯେଉଁ ରଘୁପତି ଜନକଙ୍କର ପଣ ଧନୁ ଅନାୟାସରେ ଭଙ୍ଗ କରିଥିଲେ, ଯିଏ ସପ୍ତତାଳ ଭେଦୀ ବାଣ ମାରି ମହା ପରାକ୍ରମଶାଳୀ ବାଳୀକୁ ବଧ କରିଥିଲେ ତାଙ୍କୁ ସାଧାରଣ ମନୁଷ୍ୟ ବୋଲି ଭାବିବା ଉଚିତ୍ ନୁହେଁ । ରାମଚନ୍ଦ୍ର ସର୍ବଶକ୍ତିମାନ, ପରମେଶ୍ୱର ଅଟନ୍ତି, ଏହା ଧ୍ରୁବ ସତ୍ୟ । ତେଣୁ ହେ ଲଙ୍କାଧିଶ ତୁମର ଅଂହକାର ପରିହାର କର, ତୁମର ବୀରଭୂମି ଲଙ୍କାକୁ ରକ୍ଷା କରିବା ସମ୍ଭବ ନୁହେଁ । ତୁମର ଅହମିକା ଚୂର୍ଣ୍ଣୀଭୂତ ହେବ ।

## ଶ୍ରୀରାମଙ୍କର ଶାରଦୀୟ ଶୋଭାବର୍ଣ୍ଣନ

ପ୍ରବର୍ଷଣ ପର୍ବତରେ ଅବସ୍ଥାପିତ ଥିବା ସମୟରେ ପ୍ରକୃତିର କମନୀୟ ରୂପ ସମ୍ଭାର ଶାରଦୀୟ ଚନ୍ଦ୍ରାତପ ରଜନୀ ତଥା ବିଭାବରୀର ଅନୁଚିନ୍ତାରେ ନିମଗ୍ନ ହୋଇ ଲକ୍ଷ୍ମଣଙ୍କୁ ବସନ୍ତ ଋତୁର ଆଗମନ ପାଇଁ ବିକଶିତ ନୀଳୋତ୍ପଳ, ଗଙ୍ଗଶିଉଳି, ଅପରାଜିତା, ମଧୁମାଳତୀ, ମନ୍ଦାର, କନିଅର, ହେନା ଆଦି ପୁଷ୍ପ ବିମଣ୍ଡିତ ଶରତ ଋତୁ ପ୍ରୀତିସମ୍ଭାର ନେଇ ଆବାହନୀ ସଂଗୀତ ଗାନ କରୁଥିଲା । ମୃଦୁ ସମୀରଣରେ ବିଚ୍ଛୁରିତ ଜ୍ୟୋସ୍ନା ଓ ପୁଷ୍ପାଭରଣରେ ସୁରଭିତ ପ୍ରଭୁ ଶ୍ରୀରାମଙ୍କ ଅନ୍ତରରେ ସୀତାଙ୍କର ବିଚ୍ଛେଦ ବିରହର ରାଗିଣୀ ଗାନ କରୁଥିଲା ।

(ରାଗ - କଳହଂସ କେଦାର)

ଜ୍ୟୋସ୍ନାପୂତ ରଜନୀ ଚନ୍ଦ୍ର କିରଣ
ବିରହୀ ଜନ ହୃଦେ କରେ ମନ୍ଥନ ।
"ଶଇଳ ଶିରେ ଶୋଭେ ଜାହ୍ନବୀ ଧାର
ଶଙ୍କର ଶିରେ ଯଥା ଜାହ୍ନବୀ ନୀର ।
- ଗୀତି ରାମାୟଣ - ପୃଷ୍ଠା - ୮୩

ବିକଶିତ କୁମୁଦ ନୀଳଉତ୍ପଳ
ହରଇ ଜନମନ ସୁମନୋହର
ଗଙ୍ଗ ଶିଉଳି ବୃକ୍ଷ ଦିଶେ ଶୋଭନ
କରି ପୁଷ୍ପାଭରଣେ ଶାଖା ମଣ୍ଡନ
ଅପରାଜିତା ମଞ୍ଜୁ ମଧୁ ମାଳତୀ
ମନ୍ଦାର କନିଅର ହେନା ଅଗସ୍ତି
ଗନ୍ଧବାହୀ ସମୀର ମନ୍ଦେ ସଞ୍ଚରି
କ୍ଳାନ୍ତ ପଥିକ କ୍ଲେଶ ନିଅଇ ହରି ।
- ଗୀତି ରାମାୟଣ - ପୃଷ୍ଠା - ୮୪-୮୫

## ସୀତା ଅନ୍ୱେଷଣ

ବାନର ରାଜ ସୁଗ୍ରୀବଙ୍କର ନେତୃତ୍ୱରେ ସମସ୍ତ ବାନର ସମୁଦ୍ର କୂଳରେ ଏକତ୍ରିତ ହେଲେ କିନ୍ତୁ ସପ୍ତ ସାଗର ଲଂଘନ କରି ମାତା ସୀତାଙ୍କୁ ଠାବ କରିବାକୁ କେହି ସାହସ କଲେ ନାହିଁ । ଗୋସ୍ୱାମୀଙ୍କ ଭାଷାରେ ଜାମ୍ବବାନଙ୍କର ହନୁମାନଙ୍କୁ ପ୍ରେରଣା:-

"ଭବ ଭେଷଜ ରଘୁନାଥ ଜସୁ
ସୁନହିଁ ଜେ ନର ଅରୁ ନାରି
ତିହ୍ନକର ସକଳ ମନୋରଥ
ସିଦ୍ଧ କରହିଁ ତ୍ରିସିରାରି ।"

ହେ ହନୁମାନ ! ରାମଙ୍କ କାର୍ଯ୍ୟ ପାଇଁ ତୁମର ଅବତାର । ତୁମେ ହିଁ କେବଳ ଦେହାଭିମାନ ସମୁଦ୍ରକୁ ପାର ହୋଇପାରିବ । ଏହି ସାଗରକୁ ପାର ହେଲେ ଭକ୍ତି ଶାନ୍ତି ଓ ଜଗତ୍‌ଜନନୀ ମାଆଙ୍କର କୃପାଲାଭ କରିପାରିବ ।

ଜାମ୍ବବାନଙ୍କର ପ୍ରେରଣାଦାୟୀ ବାଣୀ ଶୁଣି ପ୍ରଭୁ ଭକ୍ତ ହନୁମାନ ରଘୁପତିଙ୍କ ଆଜ୍ଞାରେ ରାମନାମ ସ୍ମରଣ କରି ସମୁଦ୍ର ପାର ହେବା ପାଇଁ ଅଗ୍ରସର

ହୋଇଥିଲେ । ଉତ୍ତୁଙ୍ଗ ମୈନାକ ପର୍ବତ୍ର ସର୍ପମାତା ସୁରସା, ସିଂହିକା ରାକ୍ଷସୀ ତଥା ଲଙ୍କାଦେବୀଙ୍କ ପ୍ରତିବନ୍ଧକ ସତ୍ତ୍ୱେ ରାମ ନାମ ସ୍ମରଣ କରି ସପ୍ତସମୁଦ୍ର ପାର ହୋଇ ଲଙ୍କାରେ ପହଞ୍ଚିଥିଲେ ।

କିନ୍ତୁ ଲଙ୍କାରେ ପ୍ରବେଶ କରି ମାତା ଜାନକୀଙ୍କର ଅବସ୍ଥିତି ଜାଣିବା ପାଇଁ ଚାରି ଆଡେ ବୁଲିଲେ ଏବଂ ପରିଶେଷରେ ସୁନ୍ଦର ଘର ପାଖରେ ଏକ ବିଷ୍ଣୁ ମନ୍ଦିର ଦେଖି ଆନନ୍ଦିତ ହେଲେ । ଏହି ମନ୍ଦିରରେ ରାମନାମ ଜପ ଶୁଣି ହନୁମାନ ଏହା ରାବଣର ଅନୁଜ ବିଭୀଷଣର ଘର ବୋଲି ଜାଣିପାରି ବିଷ୍ଣୁଭକ୍ତ ବିଭୀଷଣଙ୍କ ଠାରୁ ମାତାଙ୍କର ସନ୍ଦେଶ ପାଇବ ପାଇଁ ପ୍ରୟାସୀ ହୋଇଥିଲେ ।

ବିଭୀଷଣଙ୍କ ମନରେ ରାମ ଦର୍ଶନର ଅଭିଳାଷ ଓ ହନୁମାନଙ୍କର ସୀତା ଦର୍ଶନ ମନୋଭାବ ଭିତରେ ଦୁଇ ଜଣ ଭ୍ରାତୃତ୍ୱ ଭାବରେ ବନ୍ଧା ହୋଇ ବିଭୀଷଣ ସୀତାଙ୍କ ରହଣି ସ୍ଥାନ ବିଷୟରେ ଅବଗତ କରିଥିଲେ ଏବଂ ହନୁମାନ ବିଭୀଷଣଙ୍କୁ ରାମଙ୍କ ଦର୍ଶନର ମାର୍ଗ ବତାଇଦେଇଥିଲେ ।

ଅଶୋକ ବାଟିକାରେ ବିଭୀଷଣର ଭଗ୍ନୀ ତ୍ରିଜଟାର ତତ୍ତ୍ୱାବଧାନରେ ଜନକ ନନ୍ଦିନୀ ଅବସ୍ଥାନ କରୁଥିଲେ । ତ୍ରିଜଟା ପରମ ସାଧ୍ୱୀ ନାରୀ । ତା'ର ରାମ ଚରଣେ ଭକ୍ତି ଥାଏ । ଶିଶପା ବୃକ୍ଷରେ ଗୋପନରେ ହନୁମାନ ବସିଥିବା ସମୟରେ ବିରହାନଳରେ ଦଗ୍ଧୀଭୂତ ମାତା ଜାନକୀ ଶରୀର ତ୍ୟାଗ କରି ପ୍ରେମନିଷ୍ଠା ପ୍ରତିପାଦିତ କରିବାକୁ ଚାହିଁଥିଲେ । ନୈରାଶ୍ୟର ଚରମ ବିନ୍ଦୁରେ ପହଞ୍ଚି ସୀତା ଶରୀର ତ୍ୟାଗ କରିବାକୁ ସଂକଳ୍ପ କରିଥିଲେ । ହନୁମାନ ମାତା ଜାନକୀ ଅନୁମାନ କରି ରାମନାମ ଅଙ୍କିତ ମୁଦ୍ରା ତଳକୁ ପକାଇ ମଧୁର ବଚନରେ ରାମଙ୍କର ଗୁଣ ଗାନ କରିଥିଲେ ।

## ରାବଣର ଯୁଦ୍ଧଯାତ୍ରା

(ରାଗ - ବଙ୍ଗଳାଶ୍ରୀ)

"ନିଜେ ଉମାପତି କିବା ଶଚୀପତି  
ଆସି କହିଲେ ଗୁହାରି  
ନ ଦେବି ଫେରାଇ କହେ ଦୈତ୍ୟ ସାଇଁ  
ଜନକ ରାଜ କୁମାରୀ ।  
ଖାଇ ଫଳମୂଳ ପିନ୍ଧିଛି ବଲ୍‌କଳ  
ବନବାସୀ ରଘୁରାଣ  
ବୀର ଦଶାନନ ସଙ୍ଗେ କଲେ ରଣ  
ଫେରି ନ ପାଇବ ପ୍ରାଣ ।"

- ଗୀତି ରାମାୟଣ - ୯୫

"ରାମଚନ୍ଦ୍ର ଗୁନ ବରନେଁ ଭାଗା ।  
ଶୁନତହିଁ ସୀତାକର ଦୁଃଖ ଲାଗା"

ରାମନାମ ମୁଦ୍ରିକା ପାଇଥିବାରୁ ଓ ରାମ କଥା ଶୁଣିବାରୁ ସୀତାଙ୍କର ଦୁଃଖ ଚାଲିଯାଇ ଆନନ୍ଦାଶ୍ରୁ ବିଗଳିତ ହେଲା ।

ହନୁମାନ ମାତାଙ୍କ ଆଗରେ ଉପସ୍ଥିତ ହୋଇ ପଡିଥିବା ମୁଦ୍ରିକା ସେ ଆଣିଥିବା କଥା କହିବାରୁ ସୀତା ବିଶ୍ୱାସ କରିନଥିଲେ ।

ରାମ ଦୂତ ମୈଂ ମାତୁ ଜାନକୀ ।  
ସତ୍ୟ ଶପଥ କରୁନାନିଧାନକୀ  
ୟହ ମୁଦ୍ରିକା ମାତୁ ମୈଂ ଆନୀ ।  
ଦୀହ୍ନି ରାମ ତୁହ୍ମ କହଁ ସହିଦାନୀ ।

ହନୁମାନ ସବୁବେଳେ ରଘୁନାଥଙ୍କର ଗୁଣଗାନ କରିଥିଲେ । କରୁଣାନିଧାନ ଶବ୍ଦ ଶୁଣି ସୀତାଙ୍କର ହନୁମାନଙ୍କ ଉପରେ ବିଶ୍ୱାସ ଆସିଲା । ହନୁମାନ କହିଲେ ହେ ମାତା ଆପଣ ରଘୁପତିଙ୍କର ପ୍ରଭୁତ୍ୱକୁ

ହୃଦୟରେ ଚିନ୍ତା କରନ୍ତୁ ଓ ମନରୁ ଶୋକ ତ୍ୟାଗ କରନ୍ତୁ । ରଘୁନାଥଙ୍କ ବାଣ ଅଗ୍ନିସମ, ଦୈତ୍ୟଗଣ ପତଙ୍ଗସମ । ଅଚିରେ ସେମାନେ ଅଗ୍ନିରେ ଝାସ ଦେଇ ମୃତ୍ୟୁବରଣ କରିବେ । ମାତାଙ୍କ ଆଜ୍ଞା ନେଇ ହନୁମାନ ଅଶୋକ ବାଟିକାରେ ଫଳମୂଳ ଖାଇ ବୃକ୍ଷରାଜି ଧ୍ୱସ୍ତବିଧ୍ୱସ୍ତ କରି ରାକ୍ଷସ ମାନଙ୍କୁ ମୃତାହତ କରି ବାଟିକାରେ ବିଭୀଷିକା ସୃଷ୍ଟି କରିବା ଜାଣି ରାବଣର ପୁତ୍ର ମେଘନାଦ ହନୁମାନଙ୍କୁ ମାୟା ଯୁଦ୍ଧରେ ପରାସ୍ତ ନକରିପାରି ବ୍ରହ୍ମାସ୍ତ୍ର ପ୍ରୟୋଗ କରି ମୂର୍ଚ୍ଛିତ କରିଥିଲେ ଏବଂ ନାଗଫାଶ ବନ୍ଧନରେ ବାନ୍ଧି ରାବଣଙ୍କ ସମ୍ମୁଖରେ ଉପସ୍ଥିତ କରାଇଥିଲେ । ହନୁମାନ ରାବଣଙ୍କୁ କହିଲେ ହେ ରାବଣ । ତୁମେ ଅଭିମାନ ତ୍ୟାଗ କରି ନିଜର କୁଳରକ୍ଷା କରିବା ପାଇଁ ଶ୍ରୀରାମଙ୍କୁ ଭଜନ କର ଏବଂ ତାଙ୍କ ସହ ଶତ୍ରୁତା କରନାହିଁ । ଋଷି ପୁଲସ୍ତ୍ୟ ବଂଶଜ ତୁମେ ରାମନାମ ଜପ କରି ସୀତାଙ୍କୁ ତାଙ୍କୁ ସମର୍ପଣ କର । ଅଭିମାନୀ ରାବଣ କ୍ରୋଧିତ ହୋଇ ହନୁମାନଙ୍କୁ ବଧ କରିବାକୁ ନିର୍ଦ୍ଦେଶ ଦେବାରୁ ବିଭୀଷଣ ତାଙ୍କୁ ମୃତ୍ୟୁଦଣ୍ଡ ନଦେଇ ଅନ୍ୟ ଦଣ୍ଡ ଦେବାକୁ ବିନତି କରିଥିଲେ । ରାବଣଙ୍କ ଆଦେଶରେ ହନୁମାନଙ୍କ ପୁଚ୍ଛରେ ଅଗ୍ନି ସଂଯୋଗ କରାଗଲା । ରୁଦ୍ରାବତାର ହନୁମାନ ଅଣଚାଶ ପବନ ସହାୟତାରେ ଲଙ୍କା ଦହନ କରି ବିଭୀଷଣଙ୍କ ଗୃହ ବ୍ୟତୀତ ସମଗ୍ର ଲଙ୍କା ନଗରୀ ଧ୍ୱଂସ କରି ସମୁଦ୍ରରେ ସ୍ନାନ କରି ମାତା ସୀତାଙ୍କ ପାଶେ ଉପସ୍ଥିତ ରହି ପ୍ରଭୁ ରାମଙ୍କ ପାଇଁ କିଛି ସ୍ମାରକୀ / ସଂକେତ ଦେବାକୁ କହିଥିଲେ । ମାତା ସୀତା ହନୁମାନଙ୍କୁ ଅଜର ଅମର ବର ପ୍ରଦାନ ସହ ପ୍ରଭୁଙ୍କ ପାଦପଙ୍କଜରେ ସର୍ବଦା ସ୍ଥିତ ହେବା ବର ପ୍ରଦାନ କରିଥିଲେ ।

ଚୂଡ଼ମଣି ଉତାରି ତବ ଦୟଉ ହରଣ
ସମେତ ପବନ ସୁତ ଦୟଉ ।

ଚୂଡ଼ାମଣି ରାମ ଭକ୍ତିର ମଣି । ଚୂଡ଼ାମଣି ପ୍ରାପ୍ତି ଚରମ ସିଦ୍ଧିର ପ୍ରତୀକ । ମାତା ସୀତାଙ୍କର ଚୂଡ଼ାମଣି ଧରି ହନୁମାନ ସମୁଦ୍ର ପାର ହୋଇ ପ୍ରଭୁ ଶ୍ରୀରାମଙ୍କୁ ମାତା ଜାନକୀଙ୍କର ସନ୍ଧାନ ସହ ଚୂଡ଼ାମଣି ପ୍ରଦାନ କରିଥିଲେ । ହେ ପ୍ରଭୁ ଆପଣଙ୍କ ଅପାର କରୁଣାରୁ ସିନ୍ଧୁଲଂଘନ କରି ରାକ୍ଷସ ବଧ, ଅଶୋକ ବାଟିକା ଧ୍ୱଂସ, ଲଙ୍କା ଦହନ ଓ ମାତା ଜାନକୀଙ୍କର ସନ୍ଧାନ ସମ୍ଭବ ହୋଇଛି ।

## ପ୍ରଭୁ ଶ୍ରୀରାମଙ୍କ ପାଖରେ ବିଭୀଷଣଙ୍କର ଶରଣାଗତି

ଆଦର୍ଶାନୁରାଗୀ ବିଷ୍ଣୁଭକ୍ତ ବିଭୀଷଣଙ୍କର ଭଗବତ୍ ଭକ୍ତି ପ୍ରାପ୍ତି ଜୀବନର ଅଭିଷ୍ଟ ଥିଲା । ଭଗବାନ ବ୍ରହ୍ମା ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଭଗବାନ ବିଷ୍ଣୁଙ୍କର ପାଦପଦ୍ମରେ ନିତ୍ୟ ଅନୁରାଗ ରହିବା ବର ପ୍ରଦାନ କରିଥିଲେ ।

ନିଜର ପିତୃ ତୁଲ୍ୟ ଭ୍ରାତା ରାବଣଙ୍କୁ ମାତା ଜାନକୀଙ୍କୁ ସମର୍ପଣ କରିବା ପାଇଁ ପରାମର୍ଶ ଦେଇ କହିଥିଲେ ହେ ଭ୍ରାତା:-

ତାତ ରାମ ନହିଁ ନର ଭୂପାଲା !
ଭୁବନେଶ୍ୱର କାଲହୁ କର କାଲା
ବ୍ରହ୍ମ ଅନାମୟ ଅଜ ଭଗଓ୍ୱନ୍ତା ।
ବ୍ୟାପକ ଅର୍ଜିତ ଅନାଦି ଅନନ୍ତା ॥

ଶ୍ରୀରାମଚନ୍ଦ୍ର ମନୁଷ୍ୟ ବା ରାଜା ନୁହଁନ୍ତି । ସେ ସକଳ ଭୁବନର ଅଧୀଶ୍ୱର ଅଟନ୍ତି । ଜ୍ଞାନୀଗଣ ଯାହାକୁ ବ୍ରହ୍ମ କହନ୍ତି, ଭକ୍ତ ଯାହାଙ୍କୁ ଭଗବାନ କୁହେ ସେ ପରମବ୍ରହ୍ମ ସର୍ବବ୍ୟାପକ ପରମେଶ୍ୱର ଅଟନ୍ତି ।

## ସୀତା ବିଳାପ

(ରାଗ - ଚିନ୍ତା ଭୈରବ)

"କରି ଶ୍ରୀରାମ ଗୁଣ କୀର୍ତ୍ତନ,
ସ୍ମରି ହୃଦେ ରାଜୀବ ଲୋଚନ,
କୁରଙ୍ଗ ନୟନା କୁରଙ୍ଗ ସମାନ,
କଲେ କରୁଣ ସ୍ୱରେ କ୍ରନ୍ଦନ, ସେ ସୁନ୍ଦରୀ ।"

- ଗୀତି ରାମାୟଣ - ପୃଷ୍ଠା - ୧୦୧

ରାବଣ ରାମଙ୍କର ସ୍ତୁତି ଶୁଣି ବିଭୀଷଣଙ୍କୁ ପଦାଘାତ କରି ଲଙ୍କାରୁ ବହିଷ୍କାର କରିଥିଲେ । ବିଭୀଷଣ ଅନୁଭବ କରିଥିଲେ ଭ୍ରାତୃଭକ୍ତି ଓ ଦେଶଭକ୍ତିର ଅର୍ଥ ନୁହେଁ ଅନ୍ୟାୟ କାର୍ଯ୍ୟକୁ ସମର୍ଥନ କରିବା । ସେ ହୃଦୟଙ୍ଗମ କଲେ ଯେ ତାଙ୍କର ଭ୍ରାତା କାମ, କ୍ରୋଧ, ଲୋଭର ବଶବର୍ତ୍ତୀ ହୋଇ ବିବେକ ଶୂନ୍ୟ ହୋଇ ଅନ୍ୟାୟ ପଥରେ ପରିଚାଳିତ ।

"ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ
କାମଃ କ୍ରୋଧସ୍ତଥା ଲୋଭ ସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ ॥"

- ଶ୍ରୀମଦ୍ ଭଗବଦ୍ ଗୀତା

କାମ, କ୍ରୋଧ ଓ ଲୋଭ ନରକର ଦ୍ୱାର ଓ ବିନାଶର କାରଣ ।

ରାବଣର ପଦାଘାତ ଓ କଟୁବଚନ ଶୁଣି ବିଭୀଷଣ ପ୍ରଭୁଙ୍କ ସହ ମିଳିତ ହେବା ପାଇଁ ଅଗ୍ରସର ହୋଇ କହିଥିଲେ ।

ରାମ ସତ୍ୟ ସଂକଳ୍ପ ପ୍ରଭୁ,
ସଭା କାଲବଶ ତୋରି
ମୈ ରଘୁବୀର ଶରନ ଅବ,
ଜାଉଁ ଦେହୁ ଜନି ଖୋରି ।

ହେ ଭ୍ରାତା । ମୁଁ ଏବେ ସତ୍ୟ ସଂକଳ୍ପ ପ୍ରଭୁ ରାମଚନ୍ଦ୍ରଙ୍କ ଶରଣାଗତ, ତୁମେ ତ କାଳବଶ ହେଲଣି, ତୁମର ଭଲ ଗତି ନାହିଁ । ଦୂରରୁ ବିଭୀଷଣ ରାମ ଲକ୍ଷ୍ମଣଙ୍କୁ ଦେଖି ପ୍ରଭୁଙ୍କର ମନୋହର ରୂପ ମାଧୁରୀରେ ମୋହିତ ହୋଇଗଲେ । ତାଙ୍କର ଚକ୍ଷୁରୁ ଆନନ୍ଦାଶ୍ରୁ ବିଗଳିତ ହେଲା । ବିଭୀଷଣ ଶ୍ରୀରାମଙ୍କୁ ପ୍ରଣିପାତ କରି ରାବଣର ଭାଇ ବୋଲି ପରିଚୟ ଦେଇ ନିଜର ଭ୍ରାତା, ଦେଶ, ପତ୍ନୀ, ପରିବାର ତ୍ୟାଗ କରି ଶରଣାଗତ ହୋଇଥିଲେ । ବିଭୀଷଣଙ୍କର ପ୍ରତ୍ୟେକ ବ୍ୟବହାର, କାର୍ଯ୍ୟକଳାପ ଓ ବଚନ ରଚନା କୌଶଳ ସୌଜନ୍ୟ ଓ ଶିଷ୍ଟାଚାରର ପରିଚାୟକ । ବିଭୀଷଣ ସମସ୍ତ ଧର୍ମ ପରିତ୍ୟାଗ କରି ଶ୍ରୀରାମଙ୍କ ଶରଣରେ ଆସିଥିବାରୁ ପ୍ରଭୁ ତାଙ୍କୁ ଶରଣ ଦେବା ସହ ତାଙ୍କର ପ୍ରତୀକାତ୍ମକ ଅଭିଷେକ କରି ତାଙ୍କୁ ଲଙ୍କାର ରାଜା ଘୋଷଣା କରିଥିଲେ । ବିଶୁଦ୍ଧ ପ୍ରେମ ଓ ପୂର୍ଣ୍ଣ ବିଶ୍ୱାସର ସହ ଆସିଥିବାରୁ ଭଗବାନ ଶ୍ରୀରାମଙ୍କର ଶରଣାଗତି ଲାଭ କରିଥିଲେ ।

## ସେତୁବନ୍ଧ ନିର୍ମାଣ

ଅନେକ ଚିନ୍ତନ ପରେ ବିଭୀଷଣଙ୍କର ପରାମର୍ଶ ଅନୁଯାୟୀ ପ୍ରଭୁ ଶ୍ରୀରାମ ସମୁଦ୍ର ତଟରେ ତିନିଦିନ ଧରି ପ୍ରାର୍ଥନା କଲେ । ସମୁଦ୍ର ଦେବତା ପ୍ରାର୍ଥନା କର୍ଣ୍ଣପାତ ନ କରିବାରୁ ଶ୍ରୀରାମ ଶରାସନ ମାଧ୍ୟମରେ ସମୁଦ୍ରକୁ ଶୁଷ୍କ କରିବାକୁ ଧନୁରେ ଗୁଣ ଚଢ଼ାଇବାକୁ ଉଦ୍ୟତ ହୁଅନ୍ତେ ଏକ ବ୍ରାହ୍ମଣ ବେଶରେ ସମୁଦ୍ର ଆସି ପ୍ରଭୁଙ୍କୁ ବିନମ୍ରତାର ସହ କହିଲେ ଆପଣଙ୍କ ସେନାନୀରେ ନଳ ଓ ନୀଳ ନାମକ ଦୁଇଜଣ ବାନର ଯେଉଁ ବସ୍ତୁକୁ ସ୍ପର୍ଶ କରିବେ ତାହା ଜଳରେ ଭାସମାନ ହେବା ମୁନିଋଷିଙ୍କ ଠାରୁ ଶାପ ଗ୍ରସ୍ତ ହୋଇଛନ୍ତି । ବାନରମାନେ ଶିଳାଖଣ୍ଡ ଆଣି ନଳ ଓ ନୀଳଙ୍କ ହାତ ସ୍ପର୍ଶ କରି ସମୁଦ୍ର ବକ୍ଷରେ ଗୋଟିଏ ଶିଳାଖଣ୍ଡରେ 'ରା' ଓ ଅନ୍ୟଟିରେ 'ମ' ଲେଖି

ପକାଇବାରୁ ତାହା ଯୋଡି ହୋଇ ସମୁଦ୍ରରେ ଏକ ପ୍ରକାଣ୍ଡ ସେତୁ ନିର୍ମାଣ ହୋଇଥିଲା । ଶିଳାଖଣ୍ଡରେ ନିର୍ମିତ ସେତୁ କର୍ମ ମାର୍ଗର ସେତୁ ।

## ରାମେଶ୍ୱର ସ୍ଥାପନ

ଶ୍ରୀରାମଙ୍କର ଇଚ୍ଛାନୁଯାୟୀ ସମସ୍ତ ମୁନିଋଷିଙ୍କୁ ଡକାଇ ବିଧି ପୂର୍ବକ ବାଲିର ଶିବଲିଙ୍ଗ ସ୍ଥାପନ କରିଥିଲେ । ଏଠାରେ ପ୍ରଭୁ ରାମେଶ୍ୱରଙ୍କର ଆବିର୍ଭାବ ହୋଇଥିଲା । ଏହା ଭାରତୀୟ ସଂସ୍କୃତିର ଏକ ପୁଣ୍ୟ ତୀର୍ଥ । ଏହି ଶିବଲିଙ୍ଗରେ ଗଙ୍ଗାଜଳ ଅର୍ପଣ କଲେ ଜୀବ ମୋକ୍ଷ ପ୍ରାପ୍ତି ହୁଏ ।

ଓଁ କାରଂ ବିନ୍ଦୁ ସଂଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗିନଃ
କାମଦଂ ମୋକ୍ଷଦଂ ଚୈବ ଓଁ କାରାୟ ନମୋ ନମଃ।।

ଓଁ କାର ବୀଜ ମନ୍ତ୍ର ଯାହାଙ୍କ ଠାରୁ ସୃଷ୍ଟ, ଯାହାଙ୍କୁ ଯୋଗୀମାନେ ସର୍ବଦା ଧ୍ୟାନ କରନ୍ତି, ଯେ ମନସ୍କାମନା ପୂର୍ଣ୍ଣ କରନ୍ତି ଓ ମୋକ୍ଷ ପ୍ରଦାନ କରନ୍ତି ସେହି ଓଁ କାରଙ୍କ ପଦାରବିନ୍ଦରେ ଶତ ବିନମ୍ର ପ୍ରଣାମ ।

ପ୍ରଭୁ ରାମେଶ୍ୱର ମହାଦେବଙ୍କର ଆଶିଷ ଲାଭ କରି ପ୍ରଭୁ ଶ୍ରୀରାମ ବାନର ସେନାଙ୍କ ସହ ଲଙ୍କାରେ ପ୍ରବେଶ କରିଥିଲେ ।

ଦଶଶିର ରାବଣ ବାନର ସେନାନୀ ସହ ରାମ ଓ ଲକ୍ଷ୍ମଣ ଲଙ୍କାରେ ପ୍ରବେଶ ଜାଣି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲା ସମୟରେ ରାବଣର ପତ୍ନୀ ତାଙ୍କୁ କହିଲେ ହେ ନାଥ:-

ଯେ ଅତି ବଳଶାଳୀ ମଧୁକୈଟଭଙ୍କୁ ବଧ କରିଛନ୍ତି, ମହାବୀର ହିରଣାକ୍ଷ୍ୟ ଓ ହିରଣ କଶ୍ୟପଙ୍କୁ ସଂହାର କରିଛନ୍ତି, ପରାକ୍ରମଶାଳୀ ବାଳୀକୁ ବଧ କରିଛନ୍ତି, ସହସ୍ରବାହୁ କାର୍ତ୍ତବୀର୍ଯ୍ୟାର୍ଜୁନଙ୍କୁ ବଧ କରିଛନ୍ତି, ସେହି ବିଷ୍ଣୁ ରାମ ରୂପରେ ମହୀଭାର ବରଣ କରିବାକୁ ଅବତାର ଗ୍ରହଣ କରିଛନ୍ତି । ତେଣୁ ତାଙ୍କୁ ବିରୋଧ ନକରି ତାଙ୍କର ପତ୍ନୀ ତାଙ୍କୁ ସମର୍ପଣ କରି ପରଂବ୍ରହ୍ମଙ୍କ ପାଖରେ ମଥାନତ କର । କିନ୍ତୁ ରାବଣ ସ୍ୱାଧ୍ୱୀ ପତ୍ନୀଙ୍କର ପରାମର୍ଶକୁ କର୍ଣ୍ଣପାତ କରିନଥିଲେ ।

ରାବଣକୁ ଧର୍ମ ମାର୍ଗରେ ପରିଚାଳିତ ହେବାପାଇଁ ସୁଯୋଗ ଦେବାକୁ ବାଳୀର ପୁତ୍ର ଅଙ୍ଗଦକୁ ଦୂତ ଭାବରେ ପ୍ରେରଣ କରାଯାଇ ରାମଙ୍କୁ ଜାନକୀ ଫେରାଇ ତାଙ୍କର ଶରଣାଗତ ହେବାକୁ ସନ୍ଦେଶ ଦେଇଥିଲେ । ଅଂହକାରୀ ରାବଣ ଉମାପତି ମହେଶ୍ୱର କିମ୍ବା ଶଚୀପତି ଇନ୍ଦ୍ର କହିଲେ ମଧ ସୀତାଙ୍କୁ ପ୍ରତ୍ୟର୍ପଣ କରିବାକୁ ପ୍ରତ୍ୟାଖ୍ୟାନ କରିଥିଲା । ବିଶ୍ରବା ନନ୍ଦନ ଯୁଦ୍ଧର ଘୋଷଣା କରି ସମ୍ମୁଖ ସଂଗ୍ରାମରେ ରଘୁପତିଙ୍କୁ ବିନାଶ କରିବାକୁ ପ୍ରୟାସ କରିଥିଲା । କିନ୍ତୁ ଦୈତ୍ୟାସୁର କୁମ୍ଭ, ନିକୁମ୍ଭ, ଧୂମ୍ରାକ୍ଷ, ବଜ୍ର, ପ୍ରତପନ, ଜମ୍ବୁମାଳି, ବିରୁପାକ୍ଷ ଆଦି ମହାନ ପରାକ୍ରମୀ ଅସୁରଗଣ ବାନର ସେନାନୀଙ୍କ ଦ୍ୱାରା ନିହତ ହୋଇଥିଲେ । ବ୍ରହ୍ମାବରେ ବଳୀୟାନ ଇନ୍ଦ୍ରଜିତ ରାମଲକ୍ଷ୍ମଣଙ୍କୁ ନାଗଫାଶରେ ବନ୍ଧନ କରିଥିଲେ କିନ୍ତୁ ବିନତାଙ୍କର ନନ୍ଦନ ଗରୁଡ ଏହି ବନ୍ଧନରୁ ମୁକ୍ତ କରିଥିଲେ । ରାମଚନ୍ଦ୍ରଙ୍କର ପ୍ରବଳ ପରାକ୍ରମ ଆଗରେ ଭୟଭୀତ ହୋଇ ରାବଣ ତାର ଭ୍ରାତା କୁମ୍ଭକର୍ଣ୍ଣଙ୍କୁ ଅର୍ଦ୍ଧନିଦ୍ରାରୁ ଉଠାଇ ଯୁଦ୍ଧ କରିବାକୁ ପ୍ରରୋଚିତ କରିଥିଲା । କୁମ୍ଭକର୍ଣ୍ଣ ଭ୍ରାତା ରାବଣଙ୍କୁ ସୀତାଙ୍କୁ ପ୍ରଭୁଙ୍କ ପାଖରେ ପତ୍ୟର୍ପଣ କରିବାକୁ ପରାମର୍ଶ ଦେଇଥିଲେ ମଧ ଭ୍ରାତୃ ପ୍ରୀତିକୁ ଗୁରୁତ୍ୱ ଦେଇ ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହେଲା । ଅତ୍ୟନ୍ତ ପରାକ୍ରମଶାଳୀ କୁମ୍ଭକର୍ଣ୍ଣ

ଯୁଦ୍ଧ କ୍ଷେତ୍ରରେ ବିଭୀଷିକା ସୃଷ୍ଟି କରିଥିଲା । ରଘୁପତି ବ୍ରହ୍ମମନ୍ତ୍ରରେ ସୁତୀକ୍ଷ୍ଣ ଶାୟକେ ତାର ମସ୍ତକ ଦୁଇଫାଳ କରି ବଧ କରିଥିଲେ । ବାନର ସେନାନୀର ଦୁର୍ଜୟ ଆକ୍ରମଣରେ ଷଡ଼ରଥୀ ମାନଙ୍କର ମୃତ୍ୟୁ ଓ କୁମ୍ଭକର୍ଣ୍ଣ ବଧର ଅନଳରେ ଚିନ୍ତାଗ୍ରସ୍ତ ରାବଣ ବିଭୀଷଣର ପୁତ୍ର ତରଣୀସେନକୁ ଯୁଦ୍ଧ ପାଇଁ ପ୍ରେରଣ କଲା । ତରଣୀସେନର ପରାକ୍ରମରେ ବାନରସେନା ଛତ୍ରଭଙ୍ଗ ଦେଇଥିଲେ, ଲକ୍ଷ୍ମଣ ମଧ୍ୟ ପରାଭୂତ ହୋଇଥିଲେ । କିନ୍ତୁ ପିତା ବିଭୀଷଣ ଧର୍ମ ପଥର ପଥିକ ରାମଚନ୍ଦ୍ରଙ୍କୁ ବ୍ରହ୍ମଶର ମାରି ତରଣୀସେନକୁ ବଧ କରିବାକୁ ପରାମର୍ଶ ଦେଇଥିଲେ ।

## ତରଣିସେନର ଯୁଦ୍ଧଯାତ୍ରା ଓ ମୃତ୍ୟୁ

(ରାଗ - ବଙ୍ଗଳାଶ୍ରୀ)

"ନ କରିଲେ ଚିନ୍ତା ହୋଇ ଜନ୍ମଦାତା
ଇଚ୍ଛିଲେ ପୁତ୍ର ନିଧନ
ସୀତା ବୀରାଙ୍ଗନା ଅସହ୍ୟ ଯାତନା
କଲା ବିବେକ ଦଂଶନ ।"

(ଗୀତି ରାମାୟଣ - ପୃଷ୍ଠା - ୧୩୨)

ହେଲି ପୁତ୍ରଘାତୀ ଆହେ ରଘୁପତି
କରିଛି ଘୋର ପାତକ
ଘେନ ନିବେଦନ କଳୁଷ ନାଶନ
ଛେଦ ଏ ପାପୀ ମସ୍ତକ ।

(ଗୀତି ରାମାୟଣ - ପୃଷ୍ଠା - ୧୩୪)

ତରଣୀ ସେନର ମୃତ୍ୟୁରେ ଶୋକାଭିଭୂତ ବିଭୀଷଣ ପ୍ରଭୁ ଶ୍ରୀରାମଙ୍କୁ ତରଣୀସେନର ମୃତ୍ୟୁ ପରେ ତାଙ୍କର ପୁତ୍ର ବୋଲି ପରିଚୟ କରିଥିଲେ । ତରଣୀସେନ ପିତାଙ୍କ ଭଳି ଧର୍ମପ୍ରାଣ ଥିଲା କିନ୍ତୁ ରାଜା ରାବଣର ଆଦେଶରେ ଯୁଦ୍ଧ କରିଥିଲା ।

କରି ଆଲିଙ୍ଗନ କୌଶଲ୍ୟା ନନ୍ଦନ
ଭାଷିଲେ କୋମଳ ବାଣୀ
ନୁହେଁ ସେ ତୁମ୍ଭର ସେ ଅଟେ ମୋହର
ସୁଯୋଗ୍ୟ କୁମର ମଣି ।

- ଗୀତି ରାମାୟଣ (ପୃଷ୍ଠା - ୧୩୫)

ରାବଣ ଅତ୍ୟନ୍ତ ଭୟଭୀତ ହୋଇ ନିଜର ପୁତ୍ର ଇନ୍ଦ୍ରଜିତକୁ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ରାମଲକ୍ଷ୍ମଣଙ୍କୁ ବଧ କରିବାକୁ ଆଦେଶ ଦେଇଥିଲା । ବ୍ରହ୍ମାବଳରେ ବଳୀୟାନ ଇନ୍ଦ୍ରଜିତ ଶକ୍ତିବାଣ ଦ୍ୱାରା ଲକ୍ଷ୍ମଣଙ୍କୁ ଅଚେତ କରିଥିଲେ ।

## ଲକ୍ଷ୍ମଣଙ୍କ ଶକ୍ତିଭେଦରେ ଶ୍ରୀରାମଙ୍କ ଶୋକ

(ରାଗ - ରାମକେରୀ)

"ସତୀ ଶିରୋମଣି କଷଣ ଦିଏ ଯେଉଁ ଯାତନା
ତା'ଠାରୁ ଅଧିକ ତୋହର ବ୍ୟଥା ଦିଏ ବେଦନା ।"
ତୋପରି ସେବକ ସୁଧୀର ବୀର ଦାମ୍ଭିକ ବର
ନଥିବେ ଟି ସାରା ସଂସାରେ ଆରେ ଭ୍ରାତୃ ବତ୍ସଳ ।

(ପୃଷ୍ଠା -୧୫୫)

"ରଖି ନ ପାରିଲେ ତୋହର-ପ୍ରାଣ, ଜାଣ ସୁଧୀର
ତେଜିବି ନିଶ୍ଚୟ ଜୀବନ ସାକ୍ଷୀ ଦେବ ଭାସ୍କର ।"

(ପୃଷ୍ଠା - ୧୫୬)

ରାବଣର ବୈଦ୍ୟ ସୁଷେଣର ପରାମର୍ଶ ଅନୁଯାୟୀ ଓ ଶ୍ରୀରାମଙ୍କ ଆଦେଶରେ ପବନପୁତ୍ର ହନୁମାନ ଗନ୍ଧମାର୍ଦ୍ଦନ ପର୍ବତ ଆଣିଥିଲେ ଏବଂ ବିଶଲ୍ୟକରଣୀ ପତ୍ରରୁ ଔଷଧ କରାଯାଇ ଲକ୍ଷ୍ମଣଙ୍କୁ ସଚେତନ କରାଯାଇଥିଲା ।

ଚଉଦବର୍ଷ ରାତ୍ରି ଉଜାଗର ରହି ଉପାସନା କରିଥିବା ଶେଷନାଗଙ୍କ ଅବତାର ହସ୍ତରେ ଇନ୍ଦ୍ରଜିତ ବଧ ହେବା ଶୁଣି ରାବଣ ଶୋକାଭିଭୂତ ହୋଇ ପଡିଥିଲେ ମଧ୍ୟ ଅହଂକାରର ବଶବର୍ତ୍ତୀ ହୋଇ ଆତ୍ମ ସମର୍ପଣ କରିବା ପରିବର୍ତ୍ତେ ମହୀରାବଣଙ୍କୁ ଯୁଦ୍ଧକୁ ପ୍ରେରଣ କରିଥିଲା ।

ଦୁର୍ଦ୍ଦାନ୍ତ ବୀର ମହୀରାବଣ ମାୟା ବଳରେ ରାମ ଓ ଲକ୍ଷ୍ମଣଙ୍କୁ ପାତାଳ ପୁରକୁ ନେଇଯାଇଥିଲା । କିନ୍ତୁ ହନୁମାନ ସୂକ୍ଷ୍ମରୂପ ଧରି ପାତାଳ ପୁରରେ ପ୍ରବେଶ କରି ଜାଣି ପାରିଲେ ଯେ ମହୀରାବଣ ଦୁର୍ଗାଦେବୀଙ୍କ ପାଖରେ ବଳି ଦେବାକୁ ଚିନ୍ତା କରିଛି । ଦେବୀଙ୍କ ପଛପଟେ ଲୁଚି ରହି ମହୀରାବଣ ପ୍ରଭାତରେ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରୁଥିବା ସମୟରେ ହନୁମାନ ଦେବୀଙ୍କ ହାତରୁ ଖଡ୍‌ଗ ନେଇ ମହୀରାବଣଙ୍କୁ ବଧ କରି ରାମ ଲକ୍ଷ୍ମଣଙ୍କୁ ମୁକ୍ତ କରିଥିଲେ ।

ମହୀରାବଣର ବଧ ପରେ ରାବଣ ଅସହାୟ ହୋଇ ପ୍ରତ୍ୟକ୍ଷ ସମରରେ ଅବତୀର୍ଣ୍ଣ ହୋଇ ସାତଦିନ ଯୁଦ୍ଧ କରିଥିଲା ।

## ରାମ ରାବଣ ଯୁଦ୍ଧ ଓ ରାବଣ ବଧ

ସପ୍ତ ନିଶିଦିନ ଲାଗିଲା
ଭୀଷଣ ସଂଗ୍ରାମ ସମର ପ୍ରାଙ୍ଗଣେ
ନହୋଇ କାତର ବୀର ଦଶଶିର
କଲା ରଣ ବସି ସ୍ୟନ୍ଦନେ
ରଘୁନନ୍ଦନ, ପ୍ରଶଂସିଲେ ବିଂଶଲୋଚନେ
ବୀର ଜାଣେସିନା ବୀରର ମହତ୍ତ୍ୱ
ରଣାଙ୍ଗନେ ବୀର ବିକ୍ରମ ।

- ଗୀତି ରାମାୟଣ - ପୃଷ୍ଠା - ୧୮୧

ପ୍ରଭୁ ଶ୍ରୀରାମ ଜଗଦ୍ଧାତ୍ରୀ ଜନନୀ ମାତା ଦୁର୍ଗାଦେବୀ ମାହେଶ୍ୱରୀଙ୍କ ଆଶିଷ ବଳରେ ବ୍ରହ୍ମାସ୍ତ୍ର ମାରି ରାବଣଙ୍କୁ ବଧ କରିଥିଲେ ।

ଶ୍ରୀମତେ ରଘୁବୀରାୟ ସେତୁଲଂଘିତ ସିନ୍ଧବେ
ଜିତ ରାକ୍ଷସ ରାଜାୟ ରଣଧୀରାୟ ମଙ୍ଗଳମ୍ ।

- ପ୍ରଫେସର ଅନନ୍ତ ମିଶ୍ର

ଶ୍ରୀ ରାମଚନ୍ଦ୍ର ସମୁଦ୍ରରେ ସେତୁ ନିର୍ମାଣ କରି, ସମୁଦ୍ରକୁ ଲଂଘନ କରି ରାକ୍ଷସ ରାଜ ରାବଣଙ୍କୁ ବଧ କରି ଦୁର୍ଜନ ରାକ୍ଷସ ମାନଙ୍କୁ ବିନାଶ କରି ସଂସାରର ମଙ୍ଗଳ କରିଥିଲେ ।

ବିଭୀଷଣେକୃତେ ପ୍ରୀତ୍ୟା ଲଙ୍କାଭୀଷ୍ଟପ୍ରଦାୟିନେ
ସର୍ବଲୋକେଶରଣାୟ ଶ୍ରୀରାଘବାୟ ମଙ୍ଗଳମ୍ ।

- ଶ୍ରୀରାମ ସ୍ତୋତ୍ରମାଳା - ପ୍ର. ଅନନ୍ତ ମିଶ୍ର

ରାବଣଙ୍କୁ ବଧ କରି ବିଷ୍ଣୁଭକ୍ତ ବିଭୀଷଣଙ୍କୁ ଲଙ୍କା ନଗରୀର ରାଜାଭିଷେକ କରାଇ ତାଙ୍କର ଅଭୀଷ୍ଟ ପୂରଣ କରିଥିଲେ । ସଂସାରର ଦୁଃଖ ଲାଘବ କରିବା ସହ ଶ୍ରୀ ରଘୁନାଥ ସମସ୍ତ ଲୋକଙ୍କୁ ଶରଣ ପ୍ରଦାନ କରିବା ସହ ସମସ୍ତଙ୍କର ମଙ୍ଗଳ କାମନା କରିଥିଲେ ।

## ଶ୍ରୀରାମଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ବିଭୀଷଣର ଅଭିଷେକ ପରେ ସୀତାଙ୍କୁ ଉଦ୍ଧାର କରି ପ୍ରଭୁ ଶ୍ରୀରାମ ପୁଷ୍ପକ ଯାନରେ ବିଭୀଷଣ, ସୁଗ୍ରୀବ, ହନୁମାନ, ଜାମ୍ବବାନ, ଅଙ୍ଗଦ ଆଦି କପି ଶ୍ରେଷ୍ଠ ମାନଙ୍କୁ ଧରି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ । ନନ୍ଦି ଗ୍ରାମରୁ ଭରତ ଅଯୋଧ୍ୟାରେ ପହଞ୍ଚିଲେ ।

ରାଜା ସସି ରଘୁପତି ପୁର
ସିନ୍ଧୁ ଦେଖେ ହରଷାନ

ବଢ଼ୟୋ କୋଳାହଳ କରତ
ଜନୁ ନାରି ତରଙ୍ଗ ସମାନ ।

ପ୍ରଭୁଙ୍କ ଆଗମନରେ ଅଯୋଧ୍ୟାରେ ମନ୍ଦ, ସୁଗନ୍ଧ, ଶୀତଳ ବାୟୁ ପ୍ରବହମାନ ହେଲା । ଶ୍ରୀରାମ ରୂପୀ ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ଅଯୋଧ୍ୟା ସାଗର ହର୍ଷିତ ହେଲା । ନାରୀମାନେ ତରଙ୍ଗ ଭଳି ଅଯୋଧ୍ୟା ସମୁଦ୍ରରେ କ୍ରୀଡାରତ ଥିଲେ ।

(ରାଗ - ରସକୁଲ୍ୟା)

"ବୀର ପ୍ରସବିନୀ ଅଯୋଧ୍ୟାରାଣୀ
ରାମ ଆଗମନ ସମ୍ବାଦ ଜାଣି
ମଣ୍ଡି ହେଲା ଅଙ୍ଗେ ବେଶ ସୁନ୍ଦର
ଧରିବାକୁ କୋଳେ ଯୋଗ୍ୟ କୁମର ।
ଛୁଟିଲା ଜନ ସମୁଦ୍ର ଯେ
ଭେଟିବାକୁ ବୀର ଅଯୋଧ୍ୟା ଈଶ୍ୱର
କୃପାନିଧି ରାମଚନ୍ଦ୍ର ଯେ ।"

- ଗୀତି ରାମାୟଣ - ପୃଷ୍ଠା - ୧୯୩

ଭରତ ଭକ୍ତିପୂତ ପ୍ରଣିପାତ କରନ୍ତେ ଶ୍ରୀରାମଚନ୍ଦ୍ର ତାଙ୍କୁ ଉଠାଇ ବକ୍ଷରେ ଆଲିଙ୍ଗନ କରିଥିଲେ । ଭରତ ରାମ ପ୍ରାପ୍ତିରେ ଆନନ୍ଦ ଅନୁଭବ ପୂର୍ବକ ବୁଦ୍ଧି, ଚିତ୍ତ ବ୍ରହ୍ମମୟ ହୋଇଯାଇଥିଲା । ଗୁରୁ ବଶିଷ୍ଠଙ୍କୁ ଶ୍ରୀରାମ ପ୍ରଣାମ କରି ଶତ୍ରୁଘ୍ନଙ୍କୁ ହୃଦପଦ୍ମରେ ଲଗାଇଲେ ।

ବନବାସରୁ ଫେରି ପ୍ରଥମେ ମାତା କୈକେୟୀଙ୍କ ପାଖକୁ ଯାଇ ତାଙ୍କର ଗ୍ଲାନି ଓ ସଂକୋଚ ଦୂର କରିଥିଲେ । କୈକେୟୀ ନିଜ ମଥାରେ କଳଙ୍କର ଟୀକା ପିନ୍ଧି ଜଗତର ଉପକାର କରିଥିଲେ । କୈକେୟୀଙ୍କର ଅନୁତାପ ଅନଳ ଆନନ୍ଦାଶ୍ରୁରେ ପରିଣତ ହୋଇଥିଲା । ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଦେଖି କୌଶଲ୍ୟା ଓ ସୁମିତ୍ରା ବିଶେଷ ଆନନ୍ଦିତ ହୋଇଥିଲେ ।

## ଶ୍ରୀରାମଙ୍କର ରାଜ୍ୟାଭିଷେକ

ଗୁରୁ ବଶିଷ୍ଠଙ୍କ ପରାମର୍ଶରେ ପଣ୍ଡିତମାନେ ମହାସମାରୋହରେ ଶ୍ରୀରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ କରାଇଲେ । ବ୍ରାହ୍ମଣମାନଙ୍କୁ ପ୍ରଣାମ କରି ଶ୍ରୀରାମ ସିଂହସନରେ ଉପବିଷ୍ଟ ହେଲେ । ଏହି ସିଂହାସନ ବ୍ରହ୍ମା ମନୁଙ୍କୁ ଦେଇଥିଲେ ଏବଂ ଏହି ସିଂହାସନରେ ବସି ରଘୁବଂଶୀଙ୍କ ତିଳକ ହେଉଥିଲା । କପିମାନେ ବ୍ରହ୍ମାନନ୍ଦରେ ମଗ୍ନ ହୋଇ ଯାଇଥିଲେ । ଭଗବାନ ଶ୍ରୀରାମ ସସ୍ନେହେ ସମସ୍ତଙ୍କୁ ଡାକି କହିଥିଲେ ତୁମ୍ଭେମାନେ ମୋର ବହୁତ ସେବା କଲ । ମୋର ହିତ ପାଇଁ ତୁମେ ଗୃହ ସୁଖ ତ୍ୟାଗ କଲ । ଭାଇ, ରାଜ୍ୟ, ବୈଦେହୀ, ସମ୍ପଦ, ନିଜ ଶରୀର ଘର, କୁଟୁମ୍ବ ଓ ମିତ୍ର ସମସ୍ତେ ମୋର ପ୍ରିୟ କିନ୍ତୁ ତୁମ୍ଭେମାନେ ଏମାନଙ୍କଠାରୁ ଅଧିକ ପ୍ରିୟ । ତୁମ୍ଭମାନଙ୍କୁ ମୁଁ ସଶ୍ରଦ୍ଧ ସ୍ନେହ ସହ ବିଦାୟ ଦେଉଛି । ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କର । ସମସ୍ତେ ପ୍ରଭୁଙ୍କୁ କୃତଜ୍ଞତା ଜଣାଇ ଅଯୋଧ୍ୟାରୁ ଫେରିଲେ କିନ୍ତୁ ହନୁମାନ ସୁଗ୍ରୀବଙ୍କ ଅନୁମତି ନେଇ ଅଯୋଧ୍ୟାରେ ପ୍ରଭୁଙ୍କ ସେବା ପାଇଁ ରହିଲେ ।

**ଅସାଦ୍ୟ ନଗରୀଂ ଦିବ୍ୟାମଭିଷିକାୟ ସୀତୟା**
**ରାଜାଧିରାଜ ରାଜାୟ ରାମଭଦ୍ରାୟ ମଙ୍ଗଳମ୍ ।**

ଶ୍ରୀରାମ ସ୍ତୋତ୍ର ମାଳା (ପ୍ରଫେସର ଅନନ୍ତ ମିଶ୍ର)

ବନବାସରୁ ଅଯୋଧ୍ୟା ନଗରୀକୁ ପ୍ରତ୍ୟାବର୍ତ୍ତନ ପରେ ରାଜସିଂହାସନ ଆରୋହଣ କରି ମାତା ଜାନକୀଙ୍କ ସହ ରାଜାଭିଷେକ ହୋଇଥିଲେ । ସେହ ରଘୁକୁଳ ତିଳକ ପୁଣ୍ୟ ଶ୍ଳୋକ ରାମଚନ୍ଦ୍ର ସମଗ୍ର ସଂସାରର ମଙ୍ଗଳ କରନ୍ତୁ ।

## ରାମ ରାଜ୍ୟ ପ୍ରତିଷ୍ଠା

ଜଣେ ଧର୍ମପ୍ରାଣ, ପ୍ରଜାବତ୍ସଳ ତଥା ସତ୍ୟାନୁରାଗୀ ରାଜା ଭାବେ ପ୍ରଭୁ ଶ୍ରୀରାମଙ୍କ ରାଜ୍ୟରେ ସତ୍ୟ, ଶାନ୍ତି ଓ ମୈତ୍ରୀ ପ୍ରତିଷ୍ଠିତ ଥିଲା । ଅଯୋଧ୍ୟାର ସବୁ ପ୍ରଜା ବୈଦିକ ମାର୍ଗରେ ପରିଚାଳିତ ହେଉଥିଲେ । ନିଜ ନିଜର ବର୍ଣ୍ଣାଶ୍ରମ ଧର୍ମ ମଧ୍ୟ ପାଳନ କରୁଥିଲେ । ସମସ୍ତ ବେଦୋକ୍ତ ବର୍ଣ୍ଣ ଓ ଆଶ୍ରମ ଧର୍ମ ପାଳନ କରି ସୁଖରେ କାଳାତିପାତ କରୁଥିଲେ ।

ବ୍ରହ୍ମାଦିଦେବସେବ୍ୟାୟ ବ୍ରହ୍ମଣ୍ୟାୟ ମହାତ୍ମନେ
ଜାନକୀ ପ୍ରାଣନାଥାୟ ରଘୁନାଥାୟ ମଙ୍ଗଳମ୍ ।

- ଶ୍ରୀରାମ ସ୍ତୋତ୍ର ମାଳା

ଯେଉଁ ଶ୍ରୀରାମ ବ୍ରହ୍ମାଦି ଦେବତାମାନଙ୍କୁ ସେବା କରନ୍ତି, ଯେ ବ୍ରାହ୍ମଣମାନଙ୍କର ଅତି ପ୍ରିୟ ସେବକ ଓ ବେଦକୁ ରକ୍ଷା କରନ୍ତି ସେହି ଜାନକୀଙ୍କ ପ୍ରାଣନାଥ ରଘୁକୁଳ ଭୂଷଣ ଶ୍ରୀରାମଚନ୍ଦ୍ରଙ୍କର ଆଶିଷରେ ସମଗ୍ର ସଂସାରର ମଙ୍ଗଳ ହେଉ ।

ପ୍ରଜାନୁରଞ୍ଜନର ବୈଶିଷ୍ଟ୍ୟ ଅନୁଯାୟୀ ସମସ୍ତ ପାତ୍ରମନ୍ତ୍ରୀ ବୁଦ୍ଧିଜନ ଓ ଜ୍ଞାନୀଗୁଣୀଙ୍କର ଶାସନର ପ୍ରଜାଙ୍କ ଉପରେ ପ୍ରତିଫଳନ ଜାଣିବାକୁ ଇଚ୍ଛୁକ ଥିବାରୁ ସମସ୍ତ ଉପସ୍ଥିତ ବ୍ୟକ୍ତି ଶ୍ରୀରାମଙ୍କର ଗୁଣଗାନ କରିଥିଲେ । କିନ୍ତୁ ଜଣେ ଗୁପ୍ତଚର କ୍ଷମାଭିକ୍ଷା ପୂର୍ବକ ପ୍ରଣାମ କରି କହିଥିଲା ହେ ପ୍ରଭୁ, ଜଣେ ସର୍ବୋତମୁଖୀ ପ୍ରଜାନୁରଞ୍ଜନ ଶାସକ ହେଲେ ମଧ୍ୟ ଚଉଦ ବର୍ଷ ଧରି ଦୈତ୍ୟ ମାନଙ୍କ ଗହଣରେ ରହିଥିବା ମାତା ଜାନକୀଙ୍କୁ କିଭଳି ଗ୍ରହଣ କରିଛନ୍ତି ବୋଲି କେତେକ ପ୍ରଜା ସଂଶୟ ବ୍ୟକ୍ତ କରିଥିବା ସେ ଛଦ୍ମ ବେଶରେ ଶୁଣିଥିଲେ ।

ସତ୍ୟାନୁରାଗୀ, ଧର୍ମବନ୍ତ ରାଜା ଅଯୋଧ୍ୟା ଆଗମନ ପୂର୍ବରୁ ସୀତାଙ୍କର ଅଗ୍ନି ପରୀକ୍ଷା କରିଥିଲେ ମଧ୍ୟ ଲୋକମତକୁ ସମ୍ମାନ ଦେଇ ରାଜାଙ୍କୁ ଧର୍ମନିଷ୍ଠ ପ୍ରମାଣିତ କରିବା ପାଇଁ ନିଜର ପ୍ରାଣପ୍ରିୟା ପତ୍ନୀ ମାତା ଜାନକୀଙ୍କୁ ନିର୍ବାସିତ କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ଅନୁଜ ଲକ୍ଷ୍ମଣଙ୍କୁ କାଲି ପ୍ରତ୍ୟୁଷରେ ଜାନକୀଙ୍କୁ ନେଇ ତମସା ନଦୀ କୂଳରେ ବାଲ୍ମୀକି ଆଶ୍ରମ ନିକଟରେ ତ୍ୟାଗ କରି ଆସିବାକୁ ନିର୍ଦ୍ଦେଶ ଦେଲେ । ଅଶ୍ରୁସିକ୍ତ ନୟନରେ ଲକ୍ଷ୍ମଣ ମାତା ଜାନକୀଙ୍କୁ ରାଜାଙ୍କର ଆଦେଶରେ କାନନରେ ପରିତ୍ୟାଗ କରିଥିଲେ ।

## ସୀତା ନିର୍ବାସନ

(ରାଗ-ଆହାରୀ)

"ନ ଥିବା ଚାଳକ ହେ ରଘୁନାୟକ
ଚଳେ କି ସଲିଳେ ତରଣୀ
ବହିଲେ ଗଗନେ ଭୀମ ପ୍ରଭଞ୍ଜନ
ପାଏ କି ସାଗରେ ସରଣୀ
କୃପା ନିଧାନ, ହେଲ ଦାସୀ ପ୍ରତି ଦାରୁଣ
ଧରି ତୁମ୍ଭକର ଶରଣ ପଞ୍ଜର
ନେବ କାହାପଦେ ଶରଣ ।"

- ଗୀତି ରାମାୟଣ - ପୃଷ୍ଠା - ୨୧୧

ମାତା ଏଭଳି ନିଷ୍ଠୁର ସତ୍ୟକୁ ସମ୍ମୁଖୀନ ହୋଇ କ୍ରନ୍ଦନରତା ଥିବା ସମୟରେ ମହର୍ଷି ବାଲ୍ମୀକି ନିଜର ତପସ୍ୟା ବଳରେ ଲୋକଲଜ୍ଜା ଭୟରେ ପତ୍ନୀଙ୍କୁ ପରିତ୍ୟାଗ କରିଥିବା ଜାଣିପାରି ତାଙ୍କୁ ପ୍ରବୋଧନା ଦେଇ ମହର୍ଷି ନିଜ ତପୋବନରେ ଆଶ୍ରୟ ଦେଲେ ।

ଧରି ସତୀ କର ମହର୍ଷି ପ୍ରବର
ଚଳିଲେ ନିଜ ତପୋବନେ
ହୋଇ ତପସ୍ୱିନୀ ଜନକ ନନ୍ଦିନୀ
ରହିଲେ ବାଲ୍ମୀକି ଆଶ୍ରମେ

ଋଷି କୁମାରୀ, ଆଣିଲେ ହୃଦୟେ ସାନ୍ତ୍ୱନା
ଲଭିଲେ ସୁନ୍ଦରୀ ଶାନ୍ତି ସୁଧାବାରି
ଭୁଲିଲେ ବିଚ୍ଛେଦ ବେଦନା

- ଗୀତି ରାମାୟଣ - ପୃଷ୍ଠା - ୨୧୨

## ବାଲ୍ମୀକି ଆଶ୍ରମରେ ତପସ୍ୱିନୀ ସୀତା

ପ୍ରକୃତି କବି ଗଙ୍ଗାଧର ମେହେରଙ୍କର 'ତପସ୍ୱିନୀ' କବିତାର ବାଲ୍ମୀକିଙ୍କ ଆଶ୍ରମରେ ମାତା ଜାନକୀଙ୍କର ପ୍ରକୃତି ପ୍ରୀତି ଓ ବିରହର ପରିଭାଷା ଅତ୍ୟନ୍ତ ଉଚ୍ଚକୋଟୀର ଭାବେ ବର୍ଣ୍ଣିତ ।

(ରାଗ - ରାମକେରୀ)

"ମଧୁପାନ ଆଶେ ମଧୁପ, ମଧୁ ମକ୍ଷିକାଗଣ
ଦେଖି ସୀତା ମୁଖ ପଙ୍କଜ, ପାଶେ କଲେ ଗୁଞ୍ଜନ ।

ସମ୍ବୋଧି ଜାନକୀ ତମସା ଧୀରେ ଭାଷିଲା ବାଣୀ
ତୁହି ଅଟୁ ପରା ସୁନ୍ଦରୀ-ସତୀ ରମଣୀ ମଣି ।"

ଗୀତି ରାମାୟଣ - ପୃଷ୍ଠା - ୨୧୪

ଚାହିଁ ନବ ପ୍ରଣୟୀ ପ୍ରଫୁଲ୍ଲ ଉପନ
ବୈଦେହୀର ପ୍ରଣୟକୁ ମଣିବ ସ୍ୱପନ ।

ଲେଖୁଥାନ୍ତି ପତ୍ର ସତୀ ହୃଦୟ ବିକଳେ,
ପତ୍ର ଧୌତ ହେଉଥାଏ ନୟନର ଜଳେ ।

"ଆଉକି ଲେଖିବି ବୋଲି ଭାବୁଥିଲେ ବସି
ଆସିଗଲେ କୁଶଲବ ମୃଦେ ହସି ହସି ।"

ବୋଇଲେ ଗୋ ମାତଃ ଧନ୍ୟଧନ୍ୟ ରଘୁପତି
ଧନ୍ୟ ତାଙ୍କ ପ୍ରଣୟିନୀ ସତୀ ଭାଗ୍ୟବତୀ ।

- ଏକାଦଶ ସର୍ଗ - ତପସ୍ୱିନୀ

ପିତୃ ସତ୍ୟ ରକ୍ଷା ନିମନ୍ତେ ସତ୍ୟନିଷ୍ଠ ରାମଚନ୍ଦ୍ର ଓ ପତିବ୍ରତା ସୀତାଙ୍କର ବନବାସର ମାହାତ୍ମ୍ୟ ସୀତାଙ୍କର ନିର୍ବାସନରେ ତାଙ୍କର ପାତିବ୍ରତ୍ୟ ମହୀୟାନ ହୋଇଥିଲା । ସୀତାଙ୍କର ନିର୍ବାସନ ଏବଂ ଯଜ୍ଞାନୁଷ୍ଠାନରେ ଆବିର୍ଭାବ ତଥା ପତିବ୍ରତା ଧର୍ମ ରକ୍ଷା ନିମନ୍ତେ ପାତାଳ ପ୍ରବେଶ ଭଳି ଭାବୋଦ୍ଦୀପକ ଭାବନା ସ୍ୱଭାବକବି ଗଙ୍ଗାଧର ମେହେରଙ୍କର ତପସ୍ୱିନୀ କାବ୍ୟରେ ଋଦ୍ଧିମନ୍ତ ।

ମଙ୍ଗଳେ ଅଇଲା ଉଷା ବିକଚ ରାଜୀବ ଦୃଶା
ଜାନକୀ ଦର୍ଶନ ତୃଷା ହୃଦୟ ବହି
କରପଲ୍ଲବେ ନିହାର ମୁକ୍ତାଧରି ଉପହାର
ସତୀଙ୍କ ବାସ-ବାହାର ପ୍ରାଙ୍ଗଣେ ରହି
କଳକଣ୍ଠ କଣ୍ଠେ କହିଲା
ଦରଶନ ଦିଅ ସଖୀ ରାତି ପାହିଲା ।

- ତପସ୍ୱିନୀ - ଗଙ୍ଗାଧର ମେହେର, ଚତୁର୍ଥ ସର୍ଗ - ପୃଷ୍ଠା - ୧୦୫ (ଗଙ୍ଗାଧର ଗ୍ରନ୍ଥାବଳୀ)

ଉଷା ଆଗମନର ପହିଲି ପରଶରେ ବିକଶିତ ପଦ୍ମ ମାତା ସୀତାଙ୍କୁ ଦର୍ଶନ ଅଭିଳାଷ ହୃଦୟରେ ବହନ କରି କର ପଲ୍ଲବରେ ପଲ୍ଲବିତ କଅଁଳ ପତ୍ର ଉପହାର ଧରି ସୀତାଙ୍କର ପର୍ଣ୍ଣକୁଟୀର ପ୍ରାଙ୍ଗଣରେ ଥିବା ସମୟରେ କୋକିଳ / କଳକଣ୍ଠ କଣ୍ଠରେ ହେ ମାତା ରଜନୀ ଅତିକ୍ରାନ୍ତ ହେବାରୁ ଦର୍ଶନ ଦେବା ପାଇଁ ବିନତି କରିଥିଲେ ।

ଏକେ ତ ମଧୁର ବସନ୍ତକାଳ
ବାଳଭାନୁ ହେମ କିରଣ ଜାଳ
ପ୍ରସରି ଶିଶିର ଜର୍ଜର ପର୍ଣ୍ଣେ
ଲୀଳା କରୁଅଛି ବିବିଧ ବର୍ଣ୍ଣେ
ଶିଶିର ବିନ୍ଦୁରେ ପଡ଼ି,
ହୀରା ନୀଳା ମୋତି ମାଣିକ୍ୟ ପଟଳ
ବିଚିତ୍ର ଦେଉଛି ଗଢ଼ି ।

- ତପସ୍ୱିନୀ - ପଞ୍ଚମ ସର୍ଗ - ପୃଷ୍ଠା - ୧୦୮

ବସନ୍ତ ଋତୁର ମଧୁରିମାରେ ଉଦିତ ସୂର୍ଯ୍ୟଙ୍କର ସୁନେଲି କିରଣରେ ଶିଶିରାବୃତ ପତ୍ରରେ ବିଚିତ୍ର ବର୍ଣ୍ଣରେ ଲୀଳା କରି ହୀରା ନୀଳା ମୋତି ମାଣିକ୍ୟ ଭଳି ଜାଜ୍ୱଲ୍ୟମାନ ହୋଇ ପ୍ରକୃତିକୁ ମନୋରମ କରୁଥିଲା ।

ସତୀ ହୃଦ ଶ୍ୟାମ ଶ୍ରୀରାମମୟ,
ସେ ହୃଦୟ ହରି ପାଦପଚୟ
କ୍ରମେ ହେଲେ ଘନ ଶ୍ୟାମ ବରଣ
ପତି ଏକା ସତୀ ମତି ଶରଣ
ଅବୟବ କାନ୍ତିମାନ,
ଆକର୍ଷିତ ହୋଇ କୁସୁମେ କୁସୁମେ
କ୍ରମେ ଯାଇ କଲେ ସ୍ଥାନ ।

- ତପସ୍ୱିନୀ - ପୃଷ୍ଠା - ୧୦୮

ପତିବ୍ରତା ସୀତାଙ୍କର ହୃଦୟ ଶ୍ରୀରାମମୟ ହୋଇ ହୃଦୟ ପାଦପ ଭଳି ଶ୍ୟାମଳ ବର୍ଣ୍ଣବିଭା ହୋଇ ଶରୀର କାନ୍ତିଯୁକ୍ତ ହେବାରୁ ପୁଷ୍ପରାଜି ଆକର୍ଷିତ ହୋଇଥିଲେ ।

ବାଲ୍ମୀକି ଆଶ୍ରମରେ ମାତା ଜାନକୀଙ୍କର କୋଳମଣ୍ଡନ କରି ଲବ ଓ କୁଶ ଭଳି ଦୁଇ ଜାଆଁଳା ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ବାଲ୍ମୀକି ଲବ ଓ କୁଶଙ୍କୁ ବିଦ୍ୟାଦାନ ସହ ଅସ୍ତ୍ରଶସ୍ତ୍ର ଶିକ୍ଷା ଦେଇ ରାମାୟଣ ଚରିତ ବର୍ଣ୍ଣନା କରିଥିଲେ ।

## ଶ୍ରୀରାମଙ୍କ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ଓ ସୀତାଙ୍କର ପାତାଳ ପ୍ରବେଶ

ରାଜ୍ୟର ଯଶ ଓ କୀର୍ତ୍ତି ପରିବ୍ୟାପ୍ତ କରିବା ପାଇଁ ଶ୍ରୀରାମଙ୍କ ଆଦେଶରେ ଓ ମହର୍ଷି ବଶିଷ୍ଠଙ୍କ ପରାମର୍ଶରେ ଅନୁଜ ମାନେ ଅଶ୍ୱମେଧ ଯଜ୍ଞାନୁଷ୍ଠାନ ପାଇଁ ଗୋମତୀ ନଦୀକୂଳର ନୈମିଷ୍ୟ ଅରଣ୍ୟ ମଧ୍ୟରେ ଯଜ୍ଞଶାଳା ନିର୍ମାଣ କରିଥିଲେ । ମହର୍ଷି ବଶିଷ୍ଠଙ୍କ ବ୍ୟତୀତ ଋଷି ବାମଦେବ, ଭରଦ୍ୱାଜ, କଶ୍ୟପ, ଗୌତମ, ବିଶ୍ୱାମିତ୍ର ଆଦି ଅନେକ ସିଦ୍ଧତପା ମୁନି ଏହି ଯଜ୍ଞାନୁଷ୍ଠାନରେ ଉପସ୍ଥିତ ଥିଲେ । ମାତା କୌଶଲ୍ୟା, କୈକେୟୀ ଓ ସୁମିତ୍ରା, ଲଙ୍କାର ରାଜା ବିଭୀଷଣ, କିଷ୍କିନ୍ଧ୍ୟାର ରାଜା ସୁଗ୍ରୀବ, ହନୁମାନ, ଅଙ୍ଗଦ, ସୁଷେଣ ଆଦି କପିବର ମିଥିଳାର ରାଜା, ଜନକ, ନିଷାଦ ରାଜା ଗୁହକ ଆଦି ଉପସ୍ଥିତ ଥିଲେ । ଯଜ୍ଞାନୁଷ୍ଠାନ ପରେ ସ୍ୱର୍ଣ୍ଣାଳଙ୍କାର ଭୂଷିତ, ଯଜ୍ଞେପୂଜିତ ଅଶ୍ୱ ସୁମିତ୍ରା ନନ୍ଦନ ଲକ୍ଷ୍ମଣ ଓ ଶତ୍ରୁଘ୍ନ ନେଇ ସାରା ଭାରତରେ ଭ୍ରମଣ କଲେ । ପରିଶେଷରେ ତମସା ତୀର ନିବାସୀ ବାଲ୍ମୀକି ଆଶ୍ରମରେ ଯଜ୍ଞ ଅଶ୍ୱ ସହ ଉପସ୍ଥିତ ହେଲେ । ତପୋବନରେ ଅଶ୍ୱ ଦେଖି ଜାନକୀଙ୍କର ପୁତ୍ର ଲବ ଓ କୁଶ ଋଷି ଓ ମାତାଙ୍କର ଅଜ୍ଞାତରେ ଯଜ୍ଞ ଅଶ୍ୱକୁ ବନ୍ଧନ କରିଥିଲେ । ସୁମିତ୍ରାନନ୍ଦନ ଋଷି ପୁତ୍ର ଆଚରଣରେ କ୍ଷୁବ୍ଧ ହୋଇ ଲବ ଓ କୁଶଙ୍କ ସହ ଦୁର୍ବାର ସଂଗ୍ରାମ କରି ପରାଭୂତ ହୋଇଥିଲେ । ସମସ୍ତ ସୈନ୍ୟ ସାମନ୍ତ, କପିବର, ରାଜା ଋଷି ପୁତ୍ର ଦ୍ୱୟଙ୍କ ଦ୍ୱାରା ପରାଜୟ ବରଣ କରିଥିଲେ ।

## ସୀତାଙ୍କର ଯଜ୍ଞସ୍ଥଳକୁ ଆଗମନ ଓ ପାତାଳ ପ୍ରବେଶ (ରାଗ - ଚୋଖୀ)

"ଦେଖି ଆଶ୍ରମେ ଜାନକୀ ଭାଷିଲେ ଋଷି ବାଲ୍ମୀକି
ସହିଲୁ ମା' ଜୀବନରେ ଦୁଃଖ ଦାରୁଣ
ରାଜବାଳା ରାଜରାଣୀ ହୋଇ ହେଲୁ ତପସ୍ୱିନୀ
ରହି କାନନେ ଆଶ୍ରମେ କାଟିଲୁ ଦିନ ।

ଘୁଞ୍ଚିଗଲା ଏବେ ତୋ ଦୁଃଖ
ଦେଖିବୁ ଅଚିରେ ପତି-ପଙ୍କଜ ମୁଖ ।"

-ଗୀତି ରାମାୟଣ, ପୃଷ୍ଠା - ୨୩୧

ମହର୍ଷି ବଶିଷ୍ଠଙ୍କ ପରାମର୍ଶ ଅନୁଯାୟୀ ଶ୍ରୀରାମଚନ୍ଦ୍ର ସୈନ୍ୟ ସାମନ୍ତ ଧରି ତପୋବନରେ ପହଞ୍ଚି ଦୁଇ ଋଷି ପୁତ୍ରଙ୍କୁ ଦେଖି ବାତ୍ସଲ୍ୟ ପ୍ରେମରେ ବିଦଗ୍ଧ ହେଲେ । କିନ୍ତୁ କର୍ତ୍ତବ୍ୟାନୁରୋଧରେ ଯଜ୍ଞାନୁଷ୍ଠାନର ମାହାତ୍ମ୍ୟ ରକ୍ଷା କରିବାକୁ ଯାଇ ନିଜ ପୁତ୍ରଙ୍କ ସହ ଯୁଦ୍ଧ କରିଥିଲେ । କିନ୍ତୁ ବିଧିର ବିଧାନ ଓ ବୈଚିତ୍ର୍ୟ ଯୋଗୁଁ ନିଜ ପୁତ୍ରଙ୍କ ଦ୍ୱାରା ପରାଭୂତ ହୋଇଥିଲେ । ମହର୍ଷି ବାଲ୍ମୀକି ଏହା ଜାଣି ପାରି ଆଶୀର୍ବାଦ ଦେଇ ଶ୍ରୀରାମଙ୍କୁ ସକଳ ବୃତ୍ତାନ୍ତ ଶୁଣାଇଥିଲେ । ବଶିଷ୍ଠଙ୍କ ପରାମର୍ଶ କ୍ରମେ ଜନକ ନନ୍ଦିନୀ ସୀତାଙ୍କୁ ଯଜ୍ଞ ସ୍ଥଳକୁ ଆଣି ଯଜ୍ଞ ସମାପନ କରିବାକୁ ଶ୍ରୀରାମ ଆଦେଶ ଦେଇଥିଲେ । ସତୀ ସୀତାଙ୍କର ଉପସ୍ଥିତିରେ ଯଜ୍ଞସ୍ଥଳ ଚନ୍ଦ୍ରାତପ ନିଶିଥିନୀ ଭଳି ପ୍ରତୀୟମାନ ହେଲା । ବାଲ୍ମୀକି ଋଷି ରାମଚନ୍ଦ୍ରଙ୍କୁ ତାଙ୍କର ପ୍ରାଣପ୍ରିୟା ପତ୍ନୀଙ୍କୁ ଅର୍ପଣ କରି ତାଙ୍କୁ ଗ୍ରହଣ କରିବା ଅନୁରୋଧ କରନ୍ତେ ପ୍ରଭୁ ଶୁଦ୍ଧ ପବିତ୍ର ହୃଦୟରେ ସତୀତ୍ୱର ପରିଚୟ ଦେଇ ତ୍ରିଭୁବନେ ତାଙ୍କର ଯଶ ଓ କୀର୍ତ୍ତି ସିଦ୍ଧ କରନ୍ତୁ ବୋଲି ସୀତାଙ୍କୁ କହିଥିଲେ । ସତୀ ଶିରୋମଣି ଆକୁଳ କଣ୍ଠରେ ଧରିତ୍ରୀ ମାତାଙ୍କୁ ପ୍ରାର୍ଥନା କରିବାରୁ ବସୁଧା ବିଦୀର୍ଣ୍ଣ ହେଲା ଏବଂ ସତୀ ସୀତା ନିଜର ଶୁଦ୍ଧତା, ପତିବ୍ରତାର ମାହାତ୍ମ୍ୟ ଓ ସତୀତ୍ୱ ସିଦ୍ଧ କରି ପାତାଳଗାମିନୀ ହୋଇଥିଲେ ।

## ଅଶ୍ୱମେଧ ଯଜ୍ଞ ଶେଷରେ ଶ୍ରୀରାମଙ୍କର ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ

(ରାଗ - କଳଶା)

"ହେଲା ବସୁଧା ବିଦୀର୍ଣ୍ଣ କରି ଆଲିଙ୍ଗନ
ଚଳିଲେ ଧରଣୀ ରାଣୀ ନିଜ ପ୍ରାଣଧନ
ହେଲେ ଶୋକାକୁଳ ରାମ ଆସି ବେଦବର
ଭାଷିଲେ ଭବିଷ୍ୟବାଣୀ ଦେଖି ରଘୁବୀର ।"

- ଗୀତି ରାମାୟଣ - ପୃଷ୍ଠା - ୨୩୬

ଅଶ୍ୱମେଧ ଯଜ୍ଞ ସମାପନ ପରେ ଶ୍ରୀରାମ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ପତ୍ନୀ ବିଚ୍ଛେଦରେ ମ୍ରିୟମାଣ ଶ୍ରୀରାମ ଧରାଧାମ ତ୍ୟାଗ କରିବକୁ ବ୍ୟାକୁଳ ହୋଇ ଚିନ୍ତାମଗ୍ନ ଥିବା ସମୟରେ ତାଙ୍କ ସମ୍ମୁଖରେ କାଳ ଋଷିବେଶରେ ଆସି ବେଦବର ବ୍ରହ୍ମାଙ୍କର ଆଦେଶ ମତେ ଆପଣଙ୍କର ଧରା ବକ୍ଷରେ କର୍ମ ଶେଷ ହୋଇଥିବାରୁ ଆପଣ ବୈକୁଣ୍ଠପୁରକୁ ପ୍ରସ୍ଥାନ କରିବା ନିମନ୍ତେ ଅନୁରୋଧ କରିଥିଲେ । ଦୁର୍ବାସା ଋଷି ପହଁଞ୍ଚିବାରୁ ଲକ୍ଷ୍ମଣ ଶ୍ରୀରାମ ଓ କାଳଙ୍କ କଥୋପକଥନ ମଧ୍ୟରେ ଦୁର୍ବାସା ଋଷିଙ୍କ ଆଗମନ ବାର୍ତ୍ତା ଦେବାରୁ କାଳ ଅନ୍ତର୍ହିତ ହେଲେ । ଶ୍ରୀରାମ ଲକ୍ଷ୍ମଣଙ୍କୁ ତ୍ୟାଗ କରିବାକୁ ଆଦେଶ ଦେଇଥିଲେ ।

ଶ୍ରୀରାମଙ୍କର ଆଦେଶମତେ ଲକ୍ଷ୍ମଣ ସରଯୂ ନଦୀ ତଟରେ ତପସ୍ୟା କରିଲେ ଓ ସ୍ୱୟଂ ଇନ୍ଦ୍ରଦେବ ତାଙ୍କୁ ଅମରଭୁବନଙ୍କୁ ଦେବ ବିମାନରେ ନେଇ ଯାଇଥିଲେ । ଲକ୍ଷ୍ମଣଙ୍କର ବିଚ୍ଛେଦ ତାଙ୍କୁ ଦୁର୍ବିସହ ହେଲା । ଶ୍ରୀରାମ ନିଜ ପୁତ୍ର ଦ୍ୱୟଙ୍କୁ ସିଂହାସନ ଦେଇ ସରଯୂ ନଦୀ କୂଳକୁ ନିଜର ଭ୍ରାତା ଭରତ ଓ ଶତ୍ରୁଘ୍ନଙ୍କ ସହ ଗମନ କରିଥିଲେ ।

ପୂତ ସଲିଳ କୂଳ ପ୍ଲାବିନୀ ସରଯୂ ନଦୀ ମଧ୍ୟରେ ଋଷିଗଣଙ୍କୁ ବନ୍ଦନ କରି ରଘୁବୀର ବ୍ରହ୍ମାଣ୍ଡ

ପତି ପ୍ରବେଶ କରି ଦେବ ବିମାନରେ ସ୍ୱର୍ଗଧାମ ପ୍ରସ୍ଥାନ କରିଥିଲେ ।

## ଶ୍ରୀରାମଚନ୍ଦ୍ରଙ୍କର ସ୍ୱର୍ଗାରୋହଣ

(ରାଗ - ରସକୁଲ୍ୟା)

"ପ୍ରବେଶିଲେ ରାମ ସରଯୂ ତୀରେ
ଅବଗାହି ସ୍ୱଚ୍ଛ ପୂତ ସଲିଳେ
ଋଷି କଞ୍ଜପଦ କରି ବନ୍ଦନ
ଧ୍ୟାୟିଲେ ହୃଦୟେ ରଘୁନନ୍ଦନ
ସର୍ବବ୍ୟାପୀ ସନାତନ ଯେ
ଅଦୃଷ୍ଟ ଅଚିନ୍ତ୍ୟ ଅବ୍ୟକ୍ତ ଅଶ୍ରୁତ
ପରଂବ୍ରହ୍ମ ନାରାୟଣ ଯେ ।"
"ଧରି ନର ଦେହ କମଳାବର
କଲ ଧରାପୃଷ୍ଟେ ଦୈତ୍ୟ ସଂହାର
ସତ୍ୟ ପ୍ରେମ-ଶାନ୍ତି-ସୁଧା-ଚରିତ
ପ୍ଲାବନେ ଧରଣୀ ହେଲା ପ୍ଲାବିତ
ତୁମ୍ଭେ ତ୍ରିଭୁବନ ପତି ହେ
ଅଧମ ଅଜ୍ଞାନ ବିପ୍ର ନାରାୟଣ
ଡାକେ ଶ୍ରୀପଦେ ପ୍ରଣତି ହେ ।"

ଗୀତି ରାମାୟଣ - ପୃଷ୍ଠା - ୨୪୧

## 'ଗୀତି ରାମାୟଣ'ର ଏକ ତାତ୍ତ୍ୱିକ ଏବଂ ଦିଗ୍‌ଦର୍ଶୀ ଅନୁଶୀଳନ

ଦିବଂଗତ ନାରାୟଣ ମହାପାତ୍ରଙ୍କ ସ୍ୱରଚିତ 'ଗୀତି ରାମାୟଣ' ବିଭିନ୍ନ ରାଗରେ ଛନ୍ଦାୟିତ ଏବଂ ବନାନୀ, ନଦୀ, ପର୍ବତ, ସନ୍ଥ ଓ ପୃଥିବୀର ମାହାତ୍ମ୍ୟ ଉପରେ ପର୍ଯ୍ୟବସିତ । ବୃକ୍ଷ ମାନବ ସମାଜର ଜୀବନ ରକ୍ଷାକରେ ଏବଂ ଜନ୍ମ ଓ ମୃତ୍ୟୁ ସମୟରେ କାଷ୍ଠ ଦିଏ ଓ ଆଜୀବନ ଛାୟାପ୍ରଦାନ କରି ଆଶ୍ରୟ ଦିଏ । ନଦୀ ମଧୁର ଜଳ ପ୍ରଦାନ କରି ପୃଥିବୀର ପ୍ରତ୍ୟେକ ଜୀବଜନ୍ତୁଙ୍କ ତୃଷ୍ଣା ନିବାରଣ କରେ । ପର୍ବତ ସନ୍ଥଙ୍କୁ ଆଶ୍ରୟ ଦିଏ । ପୃଥିବୀ କ୍ଷମା ଗୁଣର ଓ ସହନଶୀଳତାର ପ୍ରତୀକ । ସନ୍ଥ ଦୁଃଖ ସହି ସମାଜର ହିତ ସାଧନ କରେ । ଏମାନେ ସମସ୍ତେ ଜନକଲ୍ୟାଣକାରୀ ଓ ନିରାଭିମାନୀ ।

ରାମାୟଣ କଥା ବସ୍ତୁ ଉପରେ ଆଧାରିତ ଉକ୍ତ 'ଗୀତି ରାମାୟଣ' ଜ୍ଞାନ, ଭକ୍ତି ବୈରାଗ୍ୟ ଓ ସତ୍‌ସଙ୍ଗ ଭଳି ଦେବୋପମ ବୈଶିଷ୍ଟ୍ୟ ତଥା ସତ୍ୟନିଷ୍ଠା, କର୍ତ୍ତବ୍ୟପରାୟଣତା, ଧର୍ମପାଳନ, ଭ୍ରାତୃପ୍ରେମ, ପତିବ୍ରତା ଭଳି ନୈତିକ ମୂଲ୍ୟବୋଧ ଓ ଚାରିତ୍ରିକ ଉତ୍କର୍ଷ ଉପରେ ପରିପୁଷ୍ଟ ।

ନିଷ୍କେଷିତ, ଜର୍ଜରିତ ଓ ନିପତିତ ମାନବସମାଜକୁ ରକ୍ଷା କରିବା ଏବଂ ଧର୍ମର ସ୍ରୋତସ୍ୱିନୀ ପ୍ରବହମାନ କରି ଏକ ନବୀନ, ସ୍ୱଚ୍ଛ, ସୁନ୍ଦରଶାଳିନୀ, ପ୍ରଗତିଶୀଳ ସମାଜ ଗଠନ କରିବା ପାଇଁ ତ୍ରେତା ଯୁଗରେ ଅବତରିତ ରାମ ଅବତାରରେ ମର୍ଯ୍ୟାଦା ପୁରୁଷୋତ୍ତମ ରାମ ସ୍ୱୟଂ ପରମବ୍ରହ୍ମ ହୋଇଥିଲେ ମଧ୍ୟ ଜଣେ ଆଦର୍ଶ ପୁତ୍ର, ପତି, ସ୍ନେହବତ୍ସଳ ସୁହୃଦ, ଆଜ୍ଞାନୁବର୍ତ୍ତୀ ଅନୁଗତ ଶିଷ୍ୟ, ପ୍ରଜାନୁରଞ୍ଜନ ଶାସକ, ଭ୍ରାତୃବତ୍ସଳ ଆଦି ବହୁବିଧ ମାନବୀୟ ଗୁଣାବଳୀର ସଂଯୋଗରେ ଏକ ଆଦର୍ଶ ମାନବ ପରି ଆଚରଣ କରିଥିବା ଉକ୍ତ କୃତିରେ ପରିସ୍ଫୁଟ ।

ସେ ସର୍ବଶକ୍ତିମାନ ହେଲେ ମଧ୍ୟ ତାଙ୍କର ପ୍ରତ୍ୟେକ ଆଚରଣରେ ଶୀଳ, ଶାନ୍ତି, ଗାମ୍ଭୀର୍ଯ୍ୟ, ଉଦାରତା, ମହାନୁଭବତା, ସହନଶୀଳତା, ପିତୃମାତୃ ଭକ୍ତି ଓ ସୌଜନ୍ୟର ଅଭୂତପୂର୍ବ ଦେବସୁଲଭ ଗୁଣ ପରିଲକ୍ଷିତ ହୋଇଅଛି ।

ଦୈବୀ ଜନ୍ମର ଉଦ୍ଦେଶ୍ୟକୁ ରୂପାୟିତ କରି ସମଗ୍ର ପୃଥିବୀରେ ରାମ ରାଜ୍ୟ ପ୍ରତିଷ୍ଠା ଏବଂ ଶାନ୍ତି, ମୈତ୍ରୀ, ପ୍ରଗତିର ଭାବଧାରା ସୃଷ୍ଟି କରି ଏକ ସରସ, ସୁନ୍ଦର ଓ ମୂଲ୍ୟବୋଧଭିତ୍ତିକ ସମାଜ ଗଠନ ଏହି ରାମକଥାରେ ସନ୍ନିବେଶିତ ।

ନିଜର ପ୍ରାଣପ୍ରିୟା ପତ୍ନୀଙ୍କ ଅଗ୍ନି ପରୀକ୍ଷା ସତ୍ତ୍ୱେ ଲୋକ କଥା ପ୍ରସଙ୍ଗରେ ଗର୍ଭବତୀ ଥିବା ଧର୍ମପତ୍ନୀଙ୍କୁ ନିର୍ବାସନ ଦଣ୍ଡ ଓ ଅସହାୟ ଅବସ୍ଥାରେ ବନରେ ଛାଡିବା ପାଇଁ ତାଙ୍କର ରାଜଧର୍ମ ସମାଲୋଚିତ ହୋଇଥିଲେ ମଧ୍ୟ ଜଣେ ଧର୍ମ ପରାୟଣ ରାଜା ସଂସାରରେ ନ୍ୟାୟ ପ୍ରତିଷ୍ଠା ଆଧାରରେ ଏଭଳି ଏକ ବଳିଷ୍ଠ ପଦକ୍ଷେପ ତଥା ଅନୁପମ ତ୍ୟାଗ ତାଙ୍କୁ ମହନୀୟ କରିରଖିଛି ।

- ତାଙ୍କର ଚିରବନ୍ଦନୀୟ ପିତା ଦଶରଥ ମାତା କୈକେୟୀଙ୍କୁ ବରଦାନ ପ୍ରସଙ୍ଗରେ ପିତୃସତ୍ୟ ପାଳନ କରି ବନବାସ ଗ୍ରହଣ, ପୁତ୍ରଶୋକରେ ମ୍ରିୟମାଣ ରାଜା ଦଶରଥଙ୍କର ମୃତ୍ୟୁ ହୋଇଥିଲେ ମଧ୍ୟ ଧର୍ମପ୍ରାଣ ପୁତ୍ରକୁ ପତ୍ନୀଙ୍କର କଥାରେ ରାଜା ହେବା ପରିବର୍ତ୍ତେ ବନକୁ ପ୍ରେରଣ ଭଳି ଏକ ମର୍ମାନ୍ତିକ ସତ୍ୟ ଦୈବୀ ଆଧାରରେ ସ୍ଥିରୀକୃତ ହୋଇଥିଲେ ମଧ୍ୟ ତାଙ୍କର ମୂଲ୍ୟବୋଧରେ ପ୍ରଶ୍ନବାଚୀ ଆସିଥିଲା । କିନ୍ତୁ ସତ୍ୟାନୁରାଗୀ ଦଶରଥ ଏଭଳି ନିଷ୍ଠୁର ସତ୍ୟର ସମ୍ମୁଖୀନ ହୋଇ ନିଜର ସତ୍ୟରକ୍ଷା ସହ କୈକେୟୀଙ୍କ ଭଳି ଆଦରଣୀୟ ପତ୍ନୀଙ୍କର ବଞ୍ଚିଥିବା ପର୍ଯ୍ୟନ୍ତ ମୁଖ ଦର୍ଶନ ନ କରିବା ଏବଂ ଚିତାନଳରେ ବିସର୍ଜିତ ହେବା ସମୟରେ କୈକେୟୀଙ୍କୁ ଉପସ୍ଥିତ ନରହିବା ଭଳି କଠୋର ଆଦେଶ ପ୍ରଦାନ କରିବା ଏକ ସତ୍ୟାନୁରାଗୀ ଓ ଧର୍ମାନୁରାଗୀ ରାଜଧର୍ମର ପରିଚାୟକ ଅଟେ ।

- ଦୈବୀ ବିଘଟନର ବଶବର୍ତ୍ତୀ ମାତା କୈକେୟୀ ପ୍ରାଣପ୍ରିୟ ରାମଙ୍କୁ ରାଜାଭିଷେକ ପୂର୍ବରୁ ତାଙ୍କର ପୁତ୍ର ଭରତ ରାଜା ହେବା ଏବଂ ରାମ ୧୪ ବର୍ଷ ବନବାସ କରିବା ଭଳି ମର୍ମାନ୍ତିକ ନିଷ୍ପତ୍ତି ସମାଜରେ ତାଙ୍କର ଚରିତ୍ରବତ୍ତାକୁ କଳଙ୍କିତ ଓ କଳୁଷିତ କରିଥିଲେ ମଧ୍ୟ ସଂସାରର ମଙ୍ଗଳ ପାଇଁ ପୃଥିବୀକୁ ଅତ୍ୟାଚାର ଓ ଅନ୍ୟାୟରୁ ରକ୍ଷା କରିବାର ସିଦ୍ଧାନ୍ତ ସମଗ୍ର ପୃଥିବୀରେ ରାମରାଜ୍ୟ ପ୍ରତିଷ୍ଠା କରିବାରେ ପଥ ପ୍ରଦର୍ଶକ ଥିଲା । ପ୍ରଭୁ ଶ୍ରୀରାମ ରାବଣ ଓ ରାକ୍ଷସ କୁଳର ବିନାଶ କରି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପରେ ପ୍ରଥମେ ତଥାକଥିତ ସମାଜ ଆଖିରେ ନିନ୍ଦିତା ଓ ନିଜ ପୁତ୍ର ଦ୍ୱାରା ପ୍ରତ୍ୟାଖ୍ୟାତ ଶୋକାଭିଭୂତା ମାତା କୈକେୟୀଙ୍କୁ ପ୍ରଥମେ ପ୍ରଣାମ କରି ତାଙ୍କ ଯୋଗୁଁ ରାମରାଜ୍ୟ ପ୍ରତିଷ୍ଠା ଏବଂ ନିଜ ଜନ୍ମର ସାର୍ଥକତା ଆଦି ପ୍ରବୋଧନା ଦେବା ଏକ ମହାନୁଭବ ଆତ୍ମାର ଦର୍ଶନର ପ୍ରଦର୍ଶନ କରିଥିଲେ ।

- ବାତ୍ସଲ୍ୟ ପ୍ରେମରେ ଉଦ୍‌ବୁଦ୍ଧ ମାତା କୌଶଲ୍ୟା ରାମାଭିଷେକ ଭାବନାରେ ଉଲ୍ଲସିତ ଥିବା ସମୟରେ ପ୍ରତ୍ୟୁଷରୁ କୈକେୟୀଙ୍କ ବରପ୍ରାପ୍ତି ଆଧାରରେ ରାମବନବାସ ତାଙ୍କୁ ଦାରୁଣ କଷ୍ଟ ଦେଇଥିଲେ ମଧ୍ୟ ପୁତ୍ର ରାମ, ବଧୂ ସୀତା ଓ ଲକ୍ଷ୍ମଣଙ୍କୁ ବିଦାୟ ଦେବା ସମୟରେ ଜଣେ ସତ୍ୟନିଷ୍ଠ ରାଜାଙ୍କର ଧର୍ମ ପତ୍ନୀ ଭାବରେ ପିତୃ ସତ୍ୟ ପାଳନ କରିବା, ଧର୍ମ ଆବେଗରେ

ବାତ୍ସଲ୍ୟ ପ୍ରେମକୁ ତ୍ୟାଗ କରିବା ତାଙ୍କୁ ଜଣେ ମହୀୟସୀ ମାତା ଭାବେ ଚିରବନ୍ଦିତା କରିବା ସହ କୈକେୟୀଙ୍କ ପ୍ରରୋଚନାରେ ପୁତ୍ରର ବନବାସ ଏକ ଦୈବୀକୃତ ନିଷ୍ପତ୍ତି ମାନି ରାଣୀ କୈକେୟୀଙ୍କୁ ଅବହେଳା ବା ତିରସ୍କାର ନକରିବା ତାଙ୍କର ମହନୀୟତା ପ୍ରତିପାଦିତ କରିଅଛନ୍ତି ।

- ମାତା ସୁମିତ୍ରାଙ୍କର ଲକ୍ଷ୍ମଣ ପ୍ରତି ଅନୁରାଗ ଓ ବାତ୍ସଲ୍ୟପ୍ରେମ, ଲକ୍ଷ୍ମଣଙ୍କର ଭ୍ରାତୃ ପ୍ରୀତି ଓ ଆତ୍ମୋତ୍ସର୍ଗ ମନୋଭାବରେ ପ୍ରୀତ ମାତା ରାମଙ୍କ ସେବାରେ ଆଜୀବନ ନିୟୋଜିତ ହେବା ପାଇଁ ସନ୍ଦେଶ ଦେଇ ରାମ ଓ ସୀତାଙ୍କର ଦାୟିତ୍ୱ ନେବାପାଇଁ ଅଶ୍ରୁଳ ନୟନରେ ବନବାସ ପ୍ରେରଣ କରିବା ପାଇଁ ସମ୍ମତି ଦେବା ତ୍ୟାଗର ଏକ ପରମ ନିଦର୍ଶନ ।

- ଜଗତ ଜନନୀ ମାତା ସୀତା ପତ୍ନୀ ଧର୍ମ ପାଳନ କରି ପତିଙ୍କର ପଦାନୁସରଣ କରି ସତ୍ୟାନୁରାଗୀ ରାମଚନ୍ଦ୍ରଙ୍କର ବନବାସ ଯଜ୍ଞରେ ସହଧର୍ମିଣୀ ଭାବେ ବନଗମନ ଭଳି କଠୋର ବ୍ରତ ଗ୍ରହଣ, ରାବଣ ଦ୍ୱାରା ଅପହୃତା ହୋଇ ଅଶୋକବାଟିକାରେ ବନାନୀ କୋଳେ ଅଶ୍ରୁପ୍ଲାବନ ସହ ଶ୍ରୀରାମ ଭକ୍ତି, ରାବଣ ବଧ ପରେ ସତୀତ୍ୱର ଅଗ୍ନି ପରୀକ୍ଷା, ରାମାଭିଷେକ ପରେ ଲୋକାଚାର ମତରେ ରାଜା ରାମଚନ୍ଦ୍ରଙ୍କର ଆଦେଶରେ ନିର୍ବାସନ ତଥା ଅଶ୍ୱମେଧ ଯଜ୍ଞରେ ସତୀତ୍ୱ ପରୀକ୍ଷା ପାଇଁ ଧରଣୀ ବକ୍ଷ ବିଦୀର୍ଣ୍ଣ ହୋଇ ପାତାଳ ଗମନ ଭଳି ଆଜୀବନ ପତିବ୍ରତା ଧର୍ମ ପାଳନ, ପତି ବିରହାନଳରେ ଜର୍ଜରିତା ଏବଂ ସର୍ବୋପରି ବିନା ପ୍ରତିବାଦରେ ରାଜଧର୍ମ ପାଳନ ପରିପ୍ରେକ୍ଷୀରେ ନିର୍ବାସନ ଓ ସତୀତ୍ୱର ପରୀକ୍ଷା ଦେଇ ଜଣେ ପରମ ସ୍ୱାଧ୍ୱୀ, ତପସ୍ୱିନୀ ନିଷ୍ଠାପର ପତ୍ନୀ ରୂପେ ପ୍ରତିପାଦିତ କରିବା ସହ ତଦୀୟ ଦେବୋପମ ଗୁଣର ଜାଜ୍ୱଲ୍ୟମାନ ସନ୍ଦେଶ ଦେଇ ସମାଜକୁ ନାରୀ ଶକ୍ତି ଓ ଭକ୍ତିର ମାହାତ୍ମ୍ୟର ସନ୍ଦେଶ ଦେଇଛନ୍ତି ।

- ଭରତଙ୍କର କର୍ତ୍ତବ୍ୟ ପରାୟଣତା, ଭକ୍ତିଭାବ ରସାଣିତ ଭ୍ରାତୃପ୍ରେମ, ବୈରାଗ୍ୟ, ନିର୍ମଳ ଜୀବନ ଯାପନ, କଠୋର ବାନପ୍ରସ୍ଥ ଜୀବନ ଯାପନ, ମାତାଙ୍କର ଅନୁଚିତ କାର୍ଯ୍ୟ ରାଜଧର୍ମ ପରିହିତ ହେତୁ ଚଉଦବର୍ଷ ପର୍ଯ୍ୟନ୍ତ ମାତୃ ସ୍ନେହ ତ୍ୟାଗ, ରାଜପଦ ତ୍ୟାଗ ତାଙ୍କର ଅନୁପମ ରାମଭକ୍ତି, ଅନାବିଳ ଭ୍ରାତୃପ୍ରୀତି ଓ ତ୍ୟାଗପୂତ ଜୀବନର ସନ୍ଦର୍ଶ ମାନବସମାଜକୁ ଧର୍ମ, ଭକ୍ତି ଓ ପ୍ରୀତିର ଭକ୍ତିପୂତ ଭାଗୀରଥୀ ଧାରାରେ ସ୍ନାନ କରିବାକୁ ସନ୍ଦେଶ ଦିଏ ।

- ଲକ୍ଷ୍ମଣଙ୍କର ଭ୍ରାତୃ ପ୍ରୀତି, ବୈରାଗ୍ୟ, କର୍ତ୍ତବ୍ୟ ନିଷ୍ଠା ଏବଂ ବନବାସ ସମୟରେ ୧୪ବର୍ଷ ରାତ୍ରି ଉଜାଗର ରହି ଧର୍ମବ୍ରତ ଓ କଠୋର ବ୍ରହ୍ମଚର୍ଯ୍ୟ ପାଳନ, ଅନ୍ୟାୟ ଓ ଅତ୍ୟାଚାରର ବିରୋଧ କରି ଧର୍ମପ୍ରାଣ ପରମବ୍ରହ୍ମ ଶ୍ରୀରାମଙ୍କୁ ସହଯୋଗ ପୂର୍ବକ ସାଧୁଜନ, ସିଦ୍ଧତପା ଋଷିଙ୍କୁ ରକ୍ଷା କରି ଦୈତ୍ୟମାନଙ୍କୁ ବିନାଶର ସହାୟକ ଏବଂ ସର୍ବୋପରି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ଯୋଗୁଁ ବ୍ରହ୍ମାବଳରେ ବଳୀୟାନ ଇନ୍ଦ୍ରଜିତକୁ ବଧ କରି ସୀତାମାତାଙ୍କ ଉଦ୍ଧାର

ଏବଂ ରାମରାଜ୍ୟର ପ୍ରତିଷ୍ଠାରେ ଅଙ୍ଗୀକାରବଦ୍ଧତା ତାଙ୍କର ଚାରିତ୍ରିକ ଔଜ୍ଜ୍ୱଲ୍ୟକୁ ମହୀୟାନ କରିରଖିଛି ।

- ଗୁରୁ ବଶିଷ୍ଠଙ୍କର ଗୁରୁକୁଳ ଆଶ୍ରମରେ ରାମ ଲକ୍ଷ୍ମଣଙ୍କୁ ଶିକ୍ଷାଦାନ, ଧର୍ମ, ସତ୍ୟ ଓ ନୈତିକ ମୂଲ୍ୟବୋଧ ଅନୁସରଣ; ମହର୍ଷି ବିଶ୍ୱାମିତ୍ରଙ୍କର ଅସ୍ତ୍ରଶିକ୍ଷା, ମନ୍ତ୍ର ଶିକ୍ଷା, ନିଷ୍ଠାପର ଜୀବନଶୈଳୀ ଏବଂ ସର୍ବୋପରି ମହର୍ଷି ବାଲ୍ମୀକିଙ୍କର ଆଶ୍ରମରେ ଈଶ୍ୱର ଭକ୍ତି, ସମର୍ପଣ ଭାବ ଜୀବନର ଲକ୍ଷ୍ୟ ଚରିତାର୍ଥ କରିବାର ପାଥେୟ ଆଦି ଗୁଣାବଳୀ ତଥା ରାଜାଭିଷେକ ପରି ନିର୍ବାସିତା ପତ୍ନୀ ସୀତାଙ୍କୁ ବାଲ୍ମୀକି ଆଶ୍ରମରେ ଆଶ୍ରୟ ଏବଂ ଲବ,କୁଶଙ୍କର ଲାଳନପାଳନ, ରାମଚରିତ ପଠନ ଏବଂ ଅସ୍ତ୍ର ଶସ୍ତ୍ର ଶିକ୍ଷା, ତପସ୍ୱିନୀ ସୀତାଙ୍କର ବିରହ ଜନିତ ଦୁଃଖ, ଗୁରୁମାନଙ୍କ ଆଦର୍ଶ, ରାମ ଲକ୍ଷ୍ମଣ ଓ ସୀତାଙ୍କ ଚରିତ୍ର ତ୍ୟାଗପୂତ ଜୀବନ ଏବଂ କର୍ତ୍ତବ୍ୟନିଷ୍ଠାରେ ଗରୀୟାନ ହୋଇ ସମାଜକୁ ଭକ୍ତି, ଧର୍ମାନୁରକ୍ତି ହେବା ଆଦି ଦୈବୀ ଗୁଣର ସନ୍ଦେଶ ଦେଇଅଛି ।

- ଏକାଦଶ ରୁଦ୍ରାବତାର ଶ୍ରୀହନୁମାନଙ୍କର ଅମଳିନ ରାମଭକ୍ତି, ମାତା ସୀତାଙ୍କର ସନ୍ଧାନ, ଅଶୋକ ବାଟିକା ଧ୍ୱଂସ, ଲଙ୍କା ଦହନ, ମହୀରାବଣ ବଧ, ପ୍ରଭୁ ଶ୍ରୀରାମଙ୍କ ଧର୍ମଯାତ୍ରାର ପ୍ରବୀଣ ସାରଥି, ଇନ୍ଦ୍ରଜିତ ବଧରେ ଲକ୍ଷ୍ମଣଙ୍କୁ ସହାୟତା ଏବଂ ସର୍ବୋପରି ରାବଣ ବଧ ପରେ ସୀତାମାତାଙ୍କ ଉଦ୍ଧାର, ରାମାଭିଷେକ ଏବଂ ରାମାଭିଷେକ ପରେ ପ୍ରଭୁଙ୍କର ସେବା କରିବା ପାଇଁ ଉତ୍ସର୍ଗୀକୃତ ମନୋଭାବ ତାଙ୍କର ପ୍ରଭୁ ଭକ୍ତି, ଭକ୍ତର ଭଗବାନଙ୍କ ପ୍ରତି କର୍ତ୍ତବ୍ୟ, ଭକ୍ତର ଧର୍ମ ସ୍ଥାପନ କରି ସାଧୁ ସନ୍ଥଙ୍କୁ ରକ୍ଷାକରି ଧର୍ମ ଧ୍ୱଜା ଉତ୍ତୋଳନ କରିବା, ଆଜୀବନ ରାମପ୍ରେମରେ ଉଦ୍‌ବୁଦ୍ଧ ଏବଂ ସମର୍ପିତ ମନୋଭାବ ସତ୍ୟ ଶଙ୍ଖରେ ତୂର୍ଯ୍ୟନାଦ କରିବା ସଂଗେ ସଂଗେ ଜନମାନସରେ ଏକ ଦିଗଦର୍ଶୀ ଦିଗନ୍ତ ରୂପେ ପ୍ରତୀୟମାନ ।

- ରାବଣ ରାକ୍ଷସ କୁଳରେ ଜାତ ହେଲେ ମଧ୍ୟ ପରମ ବିଦ୍ୱାନ ଓ ଦ୍ୱିଜ ଶ୍ରେଷ୍ଠ ଥିଲା । ଅହଂକାରର ବଶବର୍ତ୍ତୀ ହୋଇ ବ୍ରହ୍ମାଙ୍କ ବରରେ ବଳୀୟାନ ଓ ଶିବ କୃପା ଯୋଗୁଁ ତ୍ରିଭୁବନରେ ଆତଙ୍କ ସୃଷ୍ଟିକରିଥିଲେ । ରାମଚନ୍ଦ୍ର ଓ ଲକ୍ଷ୍ମଣ ଦ୍ୱାରା ନିହତ ସୁବାହୁ, ତାଡକା, ମାରିଚ ଭଳି ଦୁର୍ଦ୍ଦାନ୍ତ ଅସୁର ଏବଂ ସୂର୍ପଣଖାର ନାସିକା ଛେଦନରେ ଅତ୍ୟନ୍ତ ପ୍ରତିଶୋଧପରାୟଣ ହୋଇ ଦ୍ୱିଜ ଧର୍ମ ଭୁଲି ଆସୁରିକ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ମାତା ଜାନକୀଙ୍କୁ ଛଳନାରେ ଅପହରଣ କରିବା ଭଳି ଏକ ଧର୍ମ ଦ୍ରୋହୀ ଓ ଜଘନ୍ୟ ଅପରାଧ କରିଥିଲା । ନିଜର ପରାକ୍ରମ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ ଓ ମହୀରାବଣ ଭଳି ପରାକ୍ରମୀଙ୍କ ବଳରେ ମତ୍ତହସ୍ତୀ ଭଳି ଅଂହକାରୀ ହୋଇଥିଲେ । ବିଭୀଷଣ ଓ ମନ୍ଦୋଦରୀଙ୍କର ସୀତା ମାତାଙ୍କୁ ପ୍ରତ୍ୟର୍ପଣ କରି ରାମଙ୍କ ପାଖରେ ଶରଣାପନ୍ନ ହେବାକୁ ପରାମର୍ଶକୁ ପ୍ରତ୍ୟାଖ୍ୟାନ କରି ଯୁଦ୍ଧରେ ସ୍ୱୟଂ ପରଂବ୍ରହ୍ମଙ୍କ ସହ ଯୁଦ୍ଧ କରିବାକୁ ପ୍ରୟାସୀ ହୋଇଥିଲେ । ବିଶ୍ରବା ନନ୍ଦନ ରାବଣ ଶିବ ଭକ୍ତ ଥିବାରୁ ରାମଚନ୍ଦ୍ର ପରବ୍ରହ୍ମଙ୍କ ଅବତାର ବୋଲି ଜାଣି

ତାଙ୍କ ହସ୍ତରେ ମୃତ୍ୟୁ ଲଭି ମୋକ୍ଷ ପ୍ରାପ୍ତିହେବା ପାଇଁ ଇଚ୍ଛାକରିଥିଲା । ସେଥିପାଇଁ ସେ ମାତା ସୀତାଙ୍କର କୌଣସି ମର୍ଯ୍ୟାଦା ହାନି ନକରି ସମସ୍ତଙ୍କର ପରାମର୍ଶକୁ ଉପେକ୍ଷା କରି ତାଙ୍କୁ ଶ୍ରୀରାମଙ୍କୁ ପ୍ରତ୍ୟର୍ପଣ କରିନଥିଲା । ପ୍ରଭୁ ଶ୍ରୀରାମଙ୍କ ଦ୍ୱାରା ବ୍ରହ୍ମଶରରେ ବଧ ହୋଇ ମୋକ୍ଷ ପ୍ରାପ୍ତି ସହ ବୈକୁଣ୍ଠଧାମ ପ୍ରତ୍ୟାବର୍ତ୍ତନ କରିଥିଲେ ।

- କୁମ୍ଭକର୍ଣ୍ଣ ଭଳି ପରାକ୍ରମଶାଳୀ ଭ୍ରାତା ରାବଣଙ୍କୁ ମାତା ଜାନକୀଙ୍କୁ ଶ୍ରୀରାମଙ୍କୁ ଫେରାଇ ଦେବା ପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ରାବଣ ତାଙ୍କର ପରାମର୍ଶ ନମାନି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ନିର୍ଦ୍ଦେଶ ଦେଇଥିଲେ । ଧର୍ମ ପାଳନ ଓ ଭ୍ରାତୃ ଆଦେଶ ମଧ୍ୟରେ କୁମ୍ଭକର୍ଣ୍ଣ ରାମ ହସ୍ତେ ପରାଭବ ଜାଣି ମଧ୍ୟ ଭ୍ରାତୃ ଆଦେଶ ପାଳନ କରି ପ୍ରଭୁ ଶ୍ରୀରାମଙ୍କ ସହ ଯୁଦ୍ଧ କରି ମୃତ୍ୟୁବରଣ କରି ବୈକୁଣ୍ଠ ପ୍ରାପ୍ତି ହୋଇଥିଲା ।

  ରାବଣ ଓ କୁମ୍ଭକର୍ଣ୍ଣ ପ୍ରଭୁ ଶ୍ରୀ ବିଷ୍ଣୁଙ୍କର ଦ୍ୱାରପାଳ ଜୟ ଓ ବିଜୟ ଥିବା ସମୟରେ ଋଷିଙ୍କର ଅଭିଶାପରେ ରାବଣ ଓ କୁମ୍ଭକର୍ଣ୍ଣ ଭାବେ ରାକ୍ଷସ ଯୋନିରେ ଜନ୍ମଗ୍ରହଣ କରି ପ୍ରଭୁଙ୍କ ହାତରେ ମୃତ୍ୟୁ ଲଭି ଅମରଧାମ ପ୍ରସ୍ଥାନ କରିଥିଲେ ।

- ବିଷ୍ଣୁ ଭକ୍ତ ବିଭୀଷଣ ବ୍ରହ୍ମାବର ପ୍ରାପ୍ତ ହୋଇ ପ୍ରତ୍ୟହ ବିଷ୍ଣୁ ଆରାଧନା କରି ରାବଣର ଈର୍ଷାର ପାତ୍ର ହୋଇଥିଲେ ମଧ୍ୟ ରାମଚନ୍ଦ୍ରଙ୍କର ପ୍ରଭୁତ୍ୱ ଓ ଐଶ୍ୱରୀୟ ଅବତାର ବିଷୟରେ ରାବଣକୁ ଅବଗତ କରାଇ ମାତା ଜାନକୀଙ୍କୁ ପ୍ରଭୁଙ୍କୁ ସମର୍ପଣ ପୂର୍ବକ ରାମଙ୍କର ଶରଣାପନ୍ନ ହେବାକୁ ଅନୁରୋଧ କରି ରାବଣର ପଦାଘାତ ଓ ବହିଷ୍କାର ଭଳି ଆଦେଶରେ ମ୍ରିୟମାଣ ହୋଇପଡିଥିଲା । ଧର୍ମ ପାଳନ ଓ ପ୍ରଭୁଙ୍କର ପ୍ରଭୁତ୍ୱ ଏବଂ ବିପଥଗାମୀ ଭ୍ରାତାର ଆଦେଶପାଳନ ପରିବର୍ତ୍ତେ ପ୍ରଭୁ ଶ୍ରୀରାମଙ୍କ ପାଖରେ ଶରଣାଗତ ହୋଇ ଅନନ୍ୟ ରାମଭକ୍ତିର ପ୍ରଦର୍ଶନ କରିଥିଲେ । ଏପରିକି ନିଜର ପୁତ୍ର ମହାବଳୀ ତରଣୀସେନର ମୃତ୍ୟୁଭେଦ ଶ୍ରୀରାମଙ୍କୁ ଅବଗତ କରାଇ ପୁତ୍ର ନିଧନ ରୂପକ ଶୋକରେ ମର୍ମାହତ ହୋଇ ପଡିଥିଲେ ମଧ୍ୟ ବାତ୍ସଲ୍ୟ ପ୍ରେମ, ପୁତ୍ର ସ୍ନେହକୁ ଧର୍ମପାଳନ ଯଜ୍ଞ ବେଦୀର ଉତ୍ସର୍ଗ କରି ଏକ ଆଦର୍ଶ ପୁରୁଷ ଭାବେ ପ୍ରତିପାଦିତ କରିଥିଲେ ।

- ରାବଣର ପୁତ୍ର ଇନ୍ଦ୍ରଜିତ ବହୁ ଦିବ୍ୟାସ୍ତ୍ର ଲାଭକରି ବ୍ରହ୍ମାବରରେ ବଳୀୟାନ ହୋଇ ହନୁମାନଙ୍କୁ ବନ୍ଦୀ, ରାମଲକ୍ଷ୍ମଣଙ୍କୁ ନାଗଫାଶ ବନ୍ଧନ ଓ ଲକ୍ଷ୍ମଣର ଶକ୍ତିଭେଦ ଭଳି ଦୁର୍ବାର ସଂଗ୍ରାମ ପୂର୍ବକ ଯୁଦ୍ଧରେ ସଂହାରଲୀଳା ଓ ଆତଙ୍କ ସୃଷ୍ଟିକରି ପରିଶେଷରେ ଲକ୍ଷ୍ମଣଙ୍କ ହାତରେ ବଧ ହୋଇଥିଲେ । ବାସ୍ତବରେ ଲକ୍ଷ୍ମଣ ଓ ଇନ୍ଦ୍ରଜିତଙ୍କର ଯୁଦ୍ଧ ଲକ୍ଷ୍ମଣର ପତ୍ନୀ ଉର୍ମିଳା ଏବଂ ଇନ୍ଦ୍ରଜିତଙ୍କ ପତ୍ନୀ ସୁଲୋଚନାଙ୍କର ସତୀତ୍ୱ ଓ ପତିବ୍ରତା ଧର୍ମର ସଂଗ୍ରାମ ହୋଇଥିଲା । ଲକ୍ଷ୍ମଣଙ୍କ ବନବାସ ସମୟରେ ଉର୍ମିଳା ଚଉଦ ବର୍ଷ ଅଗଣାରେ ଠିଆ ହୋଇ ନିଷ୍ପାପର ଓ ନିଷ୍କାମ ପାତିବ୍ରତ୍ୟ ଧର୍ମ ପାଳନ କରିଥିବାରୁ ପୁଣ୍ୟଫଳ ପ୍ରାପ୍ତିସହ ଲକ୍ଷ୍ମଣଙ୍କର ଏକ ଧର୍ମ କବଚ ରୂପେ ବିଦ୍ୟମାନ ହୋଇଥିଲା ଯା' ଫଳରେ ସୁଲୋଚନାର ପାତିବ୍ରତ୍ୟ ଧର୍ମ ପରାଭୂତ ହୋଇଥିଲା ।

ସ୍ୱର୍ଗତ ମହାପାତ୍ରଙ୍କର ଭକ୍ତି ରସାମୃତ ଛନ୍ଦମୟ "ଗୀତି ରାମାୟଣ" ରଚନାଶୈଳୀ ମଧୁମିତ, ଶବ୍ଦାଳଙ୍କାର ପୁଷ୍ପିତ, ଲେଖନୀ ସ୍ରୋତସ୍ୱିନୀ, କାବ୍ୟିକ ପ୍ରତିଭା ଜ୍ୟୋସ୍ନାବିଧୌତ ରଜନୀ ଭଳି ଉଦ୍‌ଭାସିତ ତଥା ଜନମାନସରେ ଶ୍ରଦ୍ଧା, ଭକ୍ତି, ଜ୍ଞାନ ଓ ଆଦର୍ଶ ଅନୁରଣିତ । ମର୍ଯ୍ୟାଦା ପୁରୁଷୋତ୍ତମଙ୍କର ବାତ୍ସଲ୍ୟ, କାରୁଣ୍ୟ, କ୍ଷମା, ଶରଣରକ୍ଷଣ,ଦୟା, ସର୍ବଜ୍ଞତା, ସର୍ବଦର୍ଶିତ୍ୱ, ସର୍ବ ନିୟାମକ ଗୁଣାବଳୀ ସହ ଲୋକଧର୍ମର ଆଦର୍ଶ ପ୍ରଦର୍ଶନ ବର୍ତ୍ତମାନର ସମାଜ, ସୁଧୀ ପାଠକ, ପାଠିକାମାନଙ୍କୁ ହିଂସା, ଦ୍ୱେଷ କପଟତା ଯଜ୍ଞବେଦୀରେ ସ୍ନେହ, ପ୍ରେମ, ମୈତ୍ରୀ ଓ ଭକ୍ତିର ଭାବଧାରାକୁ ଜଳାଞ୍ଜଳି ନ ଦେଇ ଭକ୍ତି, ସେବା ଓ ସମାଜ କଲ୍ୟାଣରେ ଉଦ୍‌ବୁଦ୍ଧ ହୋଇ ପ୍ରଭୁ ଶ୍ରୀରାମଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ସହ ଏକ ଶାଶ୍ୱତ ଓ ଭିତ୍ତିପ୍ରଦ ସମାଜ ସୃଷ୍ଟି କରିବା ନିମନ୍ତେ ବଦ୍ଧପରିକର ହେବା ପାଇଁ ବିନୀତ ନିବେଦନ ।

ରାମ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତାପତି ସୁନ୍ଦରଂ
କାକୁତ୍‌ସ୍ଥ କରୁଣାର୍ଣ୍ଣବଂ ଗୁଣନିଧି
ବିପ୍ରପ୍ରିୟଂ ଧାର୍ମିକମ୍
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥ ତନୟଂ
ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକଭିରାମ ରଘୁକୁଳ ତିଳକ
ରାଘବଂ ରାବଣାରିମ୍ ॥

ଲକ୍ଷ୍ମଣଙ୍କର ଅଗ୍ରଜ, ରଘୁକୁଳ ଶ୍ରେଷ୍ଠ, ସୀତାପତି, ଅତ୍ୟନ୍ତ କମନୀୟ କାକୁତ୍‌ସ୍ଥ ବଂଶଜ କରୁଣା ସାଗର, ଗୁଣନିଧି, ବ୍ରାହ୍ମଣପ୍ରିୟ ପରମଧାର୍ମିକ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପଦାରବିନ୍ଦରେ ସଶ୍ରଦ୍ଧ ପୁଷ୍ପାଞ୍ଜଳି । ରାଜରାଜେଶ୍ୱର, ସତ୍ୟନିଷ୍ଠ, ଦଶରଥ ତନୟ, ଶ୍ୟାମ ସୁନ୍ଦର ଶାନ୍ତ ମୂର୍ତ୍ତି ରଘୁକୁଳତିଳକ ରାବଣର ଶତ୍ରୁ ଭଗବାନ ଶ୍ରୀରାମଙ୍କୁ ମୁଁ ବନ୍ଦନା କରୁ ଅଛି ।

**ରାମ ତାରକା ମନ୍ତ୍ର -**

**ଓଁ ରାଂ ରାମାୟ ନମଃ ।**
**ଓଁ ରାଂ ରାମାୟ ନମଃ ଶିବାୟ**

**ରାମ ଗାୟତ୍ରୀ -**

**ଓଁ ଦାଶରଥାୟ ବିଦ୍ମହେ ସୀତାବଲ୍ଲଭାୟ ଧୀମହି ତନ୍ନୋ ରାମଃ ପ୍ରଚୋଦୟାତ୍ ।**

●●●

ଉତ୍କଳର ରାଜପ୍ରତିଷ୍ଠିତ ପ୍ରତ୍ୟେକ ବ୍ରାହ୍ମଣଶାସନର ଗୌରବମୟ, ଇତିହାସ ରହିଅଛି ।

ରାମଚନ୍ଦ୍ର ଦେବଙ୍କ ନାତି 'ନରସିଂହଦେବ'ଙ୍କ ସମୟରେ ପ୍ରାୟ ୧୬୩୧ ଖ୍ରୀ.ଅରେ ବୀର ନରସିଂହପୁର ଶାସନ ବସିଥିଲା । ଏହି ଗ୍ରାମରେ ସ୍ପଷ୍ଟ ଭାବରେ ବଙ୍ଗାଳୀ ବ୍ରାହ୍ମଣଙ୍କ କୁଳୀନଧର୍ମ ଓ ତାନ୍ତ୍ରିକତା ଅନୁକୃତ ହୋଇଥିଲା । ବଙ୍ଗାଳୀ କୁଳୀନଙ୍କ ଅନୁକରଣରେ ଏହିଠାରେ ପ୍ରଥମେ 'ସାମନ୍ତ' ସୃଷ୍ଟି କରାଯାଇଥିଲା ଏବଂ ସାମନ୍ତମାନଙ୍କୁ ସମାଜରେ ପ୍ରତିଷ୍ଠା ଦେବାପାଇଁ ଏମାନଙ୍କ ସାଙ୍ଗକୁ 'ଭଞ୍ଜ' ସୃଷ୍ଟି କରାଯାଇଥିଲା ।

ଏହି ଶାସନର ପୁରୋଧାମାନେ ସମାଜର ଉପଦେଷ୍ଟା ଭାବେ ଚାରିଆଡ଼େ ଖ୍ୟାତି ଅର୍ଜନ କରିଥିଲେ । ସେହିସବୁ ଶାସନର ବ୍ୟକ୍ତି ବିଶେଷଙ୍କ ସମ୍ମୁଖରେ ତାର ପ୍ରାଚୀନ ଉଜ୍ଜ୍ୱଳ ଇତହାସର ଦୃଷ୍ଟାନ୍ତ ଉପସ୍ଥାପନ ଉଦ୍ଦେଶ୍ୟରେ ଏହି କ୍ଷୁଦ୍ର କବିତାଟି ରଚନା କଲି ।

- ଶ୍ରୀ ନାରାୟଣ ମହାପାତ୍ର

## ଜନ୍ମଭୂମି

ଜନ୍ମଭୂମି
ବୀରନରସିଂହପୁର

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

ପ୍ରଣେତା
ଶ୍ରୀଯୁକ୍ତ ନାରାୟଣ ମହାପାତ୍ର
ବୀରନରସିଂହପୁର, ପୁରୀ

ପ୍ରକାଶିକା
ଡଃ ଶ୍ରୀମତୀ ଉମାମଣି ମହାପାତ୍ର

ଅୟି ସୁଲକ୍ଷଣେ ମଧୁର ଭାଷିଣୀ
ପତିକୁଳ ପିତୃକୁଳ ଉଦ୍ଧାରିଣୀ ।
ମାତୃହୃଦ-ପଦ୍ମ ସୁରମ୍ୟ ପଦକ,
ପିତୃହୃଦ ସଦ୍ମ ଉଜ୍ଜ୍ୱଳ ଆଲୋକ । ୧ ।
ଭାବିଥିଲି ମନେ ଦିନେ ଶୁଭକ୍ଷଣେ
ଶୁଣାଇବି ବସି ତୋ ବେନି ଶ୍ରବଣେ,
ତୋର ଜନ୍ମଭୂମି ମଧୁର ସଙ୍ଗୀତ
ଶ୍ରବଣେ ପରାଣ ହେବ ପୁଲକିତ । ୨ ।
ଭାରତ ବିଖ୍ୟାତ ତୀର୍ଥ କିରୀଟିନୀ
ତ୍ରିଭୁବନ ପତି ଯୋଗ୍ୟ ରାଜଧାନୀ,
ବକ୍ଷଦେଶେ ଯା'ର, ରାଜଇ ରୁଚିର,
ନୀଳାଚଳ ପତି ବିଖ୍ୟାତ ମନ୍ଦିର । ୩ ।
ଅଛି ନୀଳାଚଳ ଅଛି ସେ ମନ୍ଦିର
ବିରାଜିତ ତହିଁ ବ୍ରହ୍ମାଣ୍ଡ ଠାକୁର,
ସାମ୍ୟ, ମୈତ୍ରୀ, ପ୍ରୀତି, ଶିକ୍ଷା ଦେବାପାଇଁ
ଅମୃତ ଦୃଷ୍ଟିରେ ରହିଛନ୍ତି ଚାହିଁ । ୪ ।

ଏହି ସେହି ଆର୍ଯ୍ୟ ଧର୍ମ ଲୀଳାସ୍ଥଳୀ,
ମୁକ୍ତି ସହାୟକ ଯାର ଦାଣ୍ଡଧୂଳୀ,
ସେ ମନ୍ଦିର ରାଜା, ପତିତ ପାବନ
'ଶ୍ମଶାନ' ଯାହାର ସ୍ୱର୍ଗର ସୋପାନ । ୫ ।
ବୈଷ୍ଣବ ଧର୍ମର ଶୁଭ୍ରବୈଜୟନ୍ତୀ
ଉଡ଼ାଇ ଭାରତେ ଲଭିଛନ୍ତି ଖ୍ୟାତି,
ଏହି ସେ ନଗରୀ ଦେବଲୀଳାଭୂମି,
ସନ୍ନିକଟେ ତାର ତୋର ଜନ୍ମଭୂମି । ୬ ।
କେତେ ଗୁଣୀଜ୍ଞାନୀ ଋଷିତତ୍ତ୍ୱଦର୍ଶୀ
ଦେଲେ ଧର୍ମ ଶିକ୍ଷା ନୀଳାଚଳେ ଆସି,
ଦାସ ଜଗନ୍ନାଥ, ଚୈତନ୍ୟ, ଶଙ୍କର,
ଧର୍ମ ବଳେ ସିନା ହୋଇଲେ ଅମର । ୭ ।
ପ୍ରାଚୀନ ଉତ୍କଳ ନରପତି ଗଣ
ଅନଙ୍ଗ, ମୁକୁନ୍ଦ, ସେ ପୁରୁଷୋତ୍ତମ,
ରଖି ଯାଇଛନ୍ତି କୀର୍ତ୍ତି ଅବିନାଶୀ,
ଘୋଷଇ ମାଦଳା-ପାଞ୍ଜି ଦିବାନିଶି । ୮ ।
ଶ୍ରୀକ୍ଷେତ୍ର ଅଦୂରେ ବହଇ ତଟିନୀ,
ଭୃଗୁ ଋଷି କନ୍ୟା ପତିତ ପାବନୀ,
ତଟ ଦେଶେ ଯାର ଚିରସୁଶ୍ୟାମଳ,
ଉପବନେ ଶୋହେ ପୁନ୍ନାଗ ରସାଳ । ୯ ।
ଉତ୍କଳର ମହା-ଯଶା ମହୀପତି,
ଗଙ୍ଗ ବଂଶୋଦ୍ଭବ, ପ୍ରଖ୍ୟାତ ନୃପତି ।
ସେ ନଦୀ ପୁଳିନେ ତୋଳିଲେ ନଗର,
ନାମ ଦେଲେ 'ବୀର ନରସିଂହପୁର' ।୧୦।
ଖୋଜି ନୃପବର ସୁଦକ୍ଷ ବିଜ୍ଞାଣି,
ସ୍ଥାପିଲେ ଶାସନ ଶୁଭ ଦିନ ଜାଣି ।
ଭାଷିଲେ ଏସନ ସୁଗମ୍ଭୀର ଗିର
'କୀର୍ତ୍ତି'ରେ କାଳିମା ନ ଲାଗିମ ମୋର ।୧୧।
ନୃପତି ନିର୍ଦ୍ଦେଶ ନ ହୁଏ ଅନ୍ୟଥା,
ସାମାନ୍ୟ ତ୍ରୁଟିରେ କଟିଯାଏ ମଥା ।

ତେଣୁ ଶିଳ୍ପୀ କୁଳ ବିବିଧ କୌଶଳେ,
ତୋଳିଲେ ନଗର ନୃପ ଆଦେଶରେ । ୧୨ ।
ଅର୍ଦ୍ଧ କ୍ରୋଶ ବ୍ୟାପୀ ସେ ଦ୍ୱିଜ ନଗର,
ବେନି ପାର୍ଶ୍ୱ ବେନି ଶିବଙ୍କ ମନ୍ଦିର ।
ମନ୍ଦିର ପାର୍ଶ୍ୱରେ ବିରାଜେ ସୁଦୀର୍ଘ
ସଦା ସ୍ୱଚ୍ଛ ନୀର ଗଭୀର ତଡ଼ାଗ । ୧୩ ।
ପ୍ରଭୁ ନୀଳକଣ୍ଠ ତୋ ଗ୍ରାମ ଈଶ୍ୱର
ଦିଅନ୍ତୁ ଆଶିଷ ସନ୍ତାନେ ତାଙ୍କର
ବଢ଼ାନ୍ତୁ ଗ୍ରାମର ଯଶ ନାମ ମାନ
ପ୍ରଭୁଙ୍କ ଆଶିଷେ ହୋଇ ଜ୍ଞାନବାନ । ୧୪ ।
ରାଜପଥ ସମ ଦୀର୍ଘ ଗ୍ରାମପଥ,
ପକ୍ଷୀ କଳରବେ ସଦା ମୁଖରିତ ।
ପଥ ବେନି ପାର୍ଶ୍ୱେ ବିଂଶ ହସ୍ତଦୂରେ
ଲୋକାଳୟ ମୁଣ୍ଡ ଟେକିଛି ଅମ୍ବରେ । ୧୫ ।
ଚତୁଃ ପାର୍ଶ୍ୱେ ରାଜେ ଶ୍ୟାମଳ କେଦାର
ଉପବନେ ଶୋହେ ଚୂତ, ନାରିକେଳ ।
ନିଦାଘ ସନ୍ତାପ କରଇ ହରଣ,
ଜଳକଣା ବାହୀ ମନ୍ଦ ସମୀରଣ । ୧୬ ।
ଜନପଦ ଶୋଭା ଦେଖି ନର ସାଇଁ
ବିରଜା ପୀଠରୁ ବିପ୍ରଙ୍କୁ ଅଣାଇ
ତାଙ୍କ କୁଳଗୁରୁ ଜ୍ଞାନୀ ଦ୍ୱିଜୋତ୍ତମେ,
ଅରପିଲେ ଗ୍ରାମ ବୈଦିକ ବିଧାନେ । ୧୭ ।
ବୈଦିକ ଧର୍ମର ଶୁଭ୍ର ବୈଜୟନ୍ତୀ,
ଉଡ଼ାଇ ଚୌଦିଗେ ରଖିଗଲେ କୀର୍ତ୍ତି,
ସମ୍ପଦେ କାଟିଲେ ନିର୍ଲିପ୍ତ ଜୀବନ,
ଜଳଭାଣ୍ଡେ ଭାସେ ଲବଣି ଯେସନ । ୧୮ ।
ନିଜ ସୁଖଲାଗି ନ ଥିଲେ ଆଶାୟୀ
ପର ଦୁଃଖ ନାଶେ ହେଉଥିଲେ ବାଇ ।
ସ୍ୱାର୍ଥ ମେଧ ଯଜ୍ଞ ଜୀବନେ ଆଚରି,
ବିଷୟ ଭୋଗରେ ଦେଲେ ଜଳାଞ୍ଜଳି ।୧୯।

ଘରେ ଘରେ ଥିଲା ଦେବ ନୀରାଜନା,
ପୂଜା ବୈଶ୍ୱଦେବ ଅତିଥି ଅର୍ଚ୍ଚନା ।
ବୈଦିକ ମନ୍ତ୍ରର ସୁମଧୁର ଧ୍ୱନି,
ପୂରି ରହିଥିଲା ଆକାଶ ଅବନୀ । ୨୦ ।
ଗ୍ରାମ ଦେବାଦେବୀଙ୍କର ପୁଣ୍ୟ ନାମ
ପ୍ରତି ଘରୁ ଶୁଭୁଥାଏ ଅନୁକ୍ଷଣ ।
ତାଙ୍କ ଶ୍ରୀପୟରେ ଦେଇ ମନଧ୍ୟାନ
କାଟୁଥାନ୍ତି ସଦା ସରଳ ଜୀବନ । ୨୧ ।
ବ୍ରହ୍ମ ତେଜୋଦୀପ୍ତ ଏ ଦ୍ୱିଜ ନଗର,
ଉତ୍କଳେ ଲଭିଲା ବିପୁଳ ଆଦର ।
ଭାର୍ଗବୀପୁଳିନେ ଦିଶିଲା ଶୋଭନ,
ଜାହ୍ନବୀ ପୁଳିନେ ଯଥାତପୋବନ । ୨୨ ।
କେତେ ଗୁଣୀଜ୍ଞାନୀ ପଣ୍ଡିତ ପ୍ରବର,
ଅଳଙ୍କୃତ କଲେ ରାଜ ଦରବାର ।
ଲଭିଲେ ଉପାଧି ଗଜପତି କରୁ
ସାମନ୍ତ, ବାହିନୀପତି, ରାଜଗୁରୁ । ୨୩ ।
ଏ ଜନ ପଦର ସୁଯୋଗ୍ୟ ମନୀଷୀ
ଚାନ୍ଦ, ରାୟଗୁରୁ ବିଶି ପାଟଯୋଷୀ ।
ଅଷ୍ଟାଦଶ ବିଦ୍ୟା, କରିଲେ ସାଧନ,
ଦେଶ ବିଦେଶରେ ଅର୍ଜିଲେ ସମ୍ମାନ । ୨୪ ।
ପାଞ୍ଚଶ ବରଷ ହୋଇଅଛି ଗତ,
ପୋଥି ପୁରାଣରେ ନାହିଁତ ଲିଖିତ ।
ଯାଇଛି କର୍ପୂର ରହିଅଛି କନା,
ବାୟକ ଗଲାଣି, ପଡ଼ିଅଛି ବୀଣା । ୨୫ ।
ତୋର ଜନ୍ମଭୂମି, ନୁହଇ ଊଷର,
ଅବା କଣ୍ଟକିତ ବିଜନ ପ୍ରାନ୍ତର
ଗୌରବ ମଣ୍ଡିତ ପୂର୍ବ ଇତିବୃତ୍ତ
ତାମ୍ର ଫଳକରେ ରହିଛି ଲିଖିତ । ୨୬ ।
ଏହି ଜନପଦ ଅମର ସଙ୍ଗୀତ,
କର୍ଣ୍ଣ କୁହରରେ ନିତ୍ୟନିନାଦିତ ।
ସେ ଦିନର କଥା ପଡ଼ିଲେ ଶ୍ରବଣେ,
ଦୁଃସହ ବେଦନା ଜାତହୁଏ ପ୍ରାଣେ । ୨୭ ।
ଯେଉଁ ଉପବନ ନନ୍ଦନ କାନନ,
ସମମଣ୍ଡୁ ଥିଲା ଉତ୍କଳ ଭୁବନ ।
କେଉଁ ଦେବତାର ଅଭିଶାପ ଫଳେ,
କର୍ମନାଶା ପରି ପଡ଼ିଛି ଉତ୍କଳେ । ୨୮ ।
ବସନ୍ତର ସ୍ନିଗ୍ଧ ମୃଦୁଳ ପବନ
ଯହିଁ କରୁଥିଲା ନିତ୍ୟ ସଞ୍ଚରଣ ।
ନିଦାଘ ସନ୍ତାପେ ହୋଇ ଜର୍ଜରିତ,
ତରୁଲତା ତହିଁ ନ ହୁଏ ପୁଷ୍ପିତ । ୨୯ ।
କୋକିଳର ବୀଣା ଜିଣା କଣ୍ଠସ୍ୱନ,
ମଧୁ ପାନରତ ମଧୁପ ଗୁଞ୍ଜନ
କର୍ଣ୍ଣ ପଟହରେ ନିନାଦିତ ହୋଇ
ଜନଗଣ ମନ ଏବେ ତୋଷୁ ନାହିଁ । ୩୦ ।
ଦାୟାଦ ସୂତ୍ରରେ ହୋଇ ଅଧିକାରୀ
ତାର ସୁତେ ଆଜି ପେଟ ପାଇଁ ଘାରି
ଭାବନ୍ତି ନିଜକୁ ଅତି ହୀନବଳ,
ପାସୋରି ତାଙ୍କର ଅତୀତ ସମ୍ବଳ । ୩୧ ।
ପୂର୍ବ ପୁରୁଷଙ୍କ ପବିତ୍ର ଶୋଣିତ
ଯାହାଙ୍କ ଶିରାରେ ହୁଏ ପ୍ରବାହିତ ।
ଆହା ଆଜି ସେତ ଦିଶନ୍ତି ମଳିନ,
ନିଶାକାଳେ ଯଥା ଦିଶଇ ନଳିନ । ୩୨ ।
ଯେ ଗ୍ରାମ କେଦାର ଚିର ସୁଶ୍ୟାମଳ
ଉପବନେ ଶୋହେ ରମ୍ଭା ନାରିକେଳ ।
ତାର ସୁତେ କିମ୍ପା କଟାନ୍ତି ଜୀବନ
ମରୁଦେଶବାସୀ ଯାଯାବର ସମ । ୩୩ ।
ଯେ ରାଜ୍ୟ ନୃପତି ବୀର ଗଜପତି
ରଖି ଯାଇଛନ୍ତି ଅମର କୀରତି ।
ସେହି ରାଜ୍ୟେ ପରା ଜନମ ତୁମ୍ଭର
ମଣୁଛ ନିଜକୁ କିମ୍ପା ହୀନବଳ । ୩୪ ।

ଯେ ରାଜ୍ୟର କବି ଦାସ ଜଗନ୍ନାଥ,
ଉପଇନ୍ଦ୍ର ଭଞ୍ଜ, ଜ୍ଞାନୀ ରାଧାନାଥ,
ସେ ରାଜ୍ୟର ଲୋକେ ନ ଜାଣନ୍ତି ଭାଷା,
ଭାଷିଲେ ହୁଅନ୍ତି ଲୋକେ ଲୋକ ହସା ।୩୫।
ନାହିଁ ତ୍ୟାଗ ନାହିଁ ଈଶ୍ୱର ବିଶ୍ୱାସ,
ମିଥ୍ୟା, କପଟତା କରିଅଛି ଗ୍ରାସ ।
ହିଂସା, ଅଭିମାନ, ବିଳାସ, ବ୍ୟସନ
ପାତିଛନ୍ତି ଚିନ୍ତା ରାଜ୍ୟେ ନିଜାସନ । ୩୬ ।
ଜନ୍ମଭୂମି ବଡ ସ୍ୱର୍ଗଠାରୁ ବଳି,
ଏ ଆର୍ଷ ବାକ୍ୟରେ ଦେଇ ଜଳାଞ୍ଜଳି,
ପାଶ୍ଚାତ୍ୟ ଶିକ୍ଷାର ତୁଙ୍ଗ ଅଭିମାନ,
ଶୃଙ୍ଗେ ଚଢ଼ି କିମ୍ପା କର ଆସ୍ଫାଳନ । ୩୭ ।
ଜନମ ଭୂମିର ପୂର୍ବ ସ୍ମୃତି ଭାଳି
ଚିନ୍ତାନଳେ ଆହା ହୃଦଯାଏ ଜଳି ।
କବିକଥା ମନେ ହୁଅଇ ଉଦିତ
'ଗଲାଣି ତ ଗଲା କଥାରେ ସଙ୍ଗାତ' । ୩୮।
ସେହି ଗ୍ରାମ ସେହି ବାଣୀ ନିକେତନ,
ତାହାର କ୍ରୋଡ଼ରେ ଲଭିଛୁ ଜନମ ।
ସେ ଦିନର ସେହି ମୃଦୁହାସ୍ୟ ରେଖା
ହୃଦ ଫଳକରେ ରହିଅଛି ଲେଖା । ୩୯ ।
ଶିଶୁ ଜୀବନର ମଧୁମୟ ସ୍ମୃତି
ହୃଦକୋଷେ ଯତ୍ନେ ରଖିବୁ ସାଇତି ।
ସତ୍ୟ ଅସି ଧାରେ ଚଳାଇ ବିବେକ,
ବଢ଼ାଇବୁ ନିଜ ଜନ୍ମଭୂମି ଟେକ । ୪୦ ।
ତୋ ଦେଶ ଅବଳା, ନ ଥିଲେ ଦୁର୍ବଳା,
ବୀର-ପ୍ରସବିନୀ ସନ୍ତାନ ବତ୍ସଳା ।
ଆର୍ଯ୍ୟ ସଂସ୍କୃତିର ନିବିଡ଼ ବନ୍ଧନ,
ମଧ୍ୟେ ରହି କଲେ ଜୀବନ ଯାପନ । ୪୧ ।
ମହାର୍ଘ ବସନ ସ୍ୱର୍ଣ୍ଣ ଆଭରଣ,
ଆର୍ଯ୍ୟ ଲଳନାର ନୁହଇ ଭୂଷଣ ।
ଦୟା, କ୍ଷମା, ପ୍ରୀତି, ସେବା, ସହିଷ୍ଣୁତା
ଗୁଣେ ହୁଏ ନାରୀ ଜଗତ ବନ୍ଦିତା । ୪୨ ।
ସହନଶୀଳତା ନ ଆଣେ ବିପଦ,
ନାରୀ ଜୀବନର ଅମୂଲ୍ୟ ସମ୍ପଦ ।
ସହି ବସୁନ୍ଧରା ସକଳ କଷଣ,
ସର୍ବଂସହା ନାମ କରିଛି ଧାରଣ । ୪୩ ।
ପତି ଅଟେ ନାରୀ ମସ୍ତକ ଭୂଷଣ,
ପତି ତା' ଈଶ୍ୱର, ପତି ତା' ଜୀବନ
ସକଳ ସୁଗୁଣେ ହୋଇ ବିମଣ୍ଡିତା
ପତିବ୍ରତା ନାରୀ ସର୍ବତ୍ର ପୂଜିତା । ୪୪ ।
ଲଳନା ଲଲାମ ଜନକ ନନ୍ଦିନୀ,
ମଦ୍ର ରାଜ ଜେମା ସତୀ ଶିରୋମଣି ।
ରଖି ଯାଇଛନ୍ତି ଅବିନାଶୀ ଯଶ,
ପୁରାଣ ଘୋଷଇ ଏହା ଅହର୍ନିଶ । ୪୫ ।
ସେହି ଗୌରବର ଅଧିକାର ଲାଗି,
ଶୟନେ ସ୍ୱପନେ ରହିଥିବୁ ଜାଗି,
ହୃଦ ପଦ କରେ ବିବେକ ବର୍ତ୍ତିକା
ଜଳାଇ ନାଶିବୁ ତମ ବିଭୀଷିକା । ୪୬ ।
ମନ୍ତ୍ରର ସାଧନ ଶରୀର ପାତନ,
ଆଚରିବୁ କର୍ମେ ଏ ଋଷି ବଚନ ।
ନଶ୍ୱର ଜୀବନ କୀର୍ତ୍ତି ଅନଶ୍ୱର
ରଖିବାକୁ ସଦା ହୋଇବୁ ତତ୍‌ପର । ୪୭ ।
ସଂସାର ଜଞ୍ଜାଳ ଗହନ କାନନେ,
ଯେବେ ପଥ ଭ୍ରଷ୍ଟ ହୋଇବୁ ଜୀବନେ ।
ତୋର ଜନ୍ମଭୂମି ଉଜ୍ଜ୍ୱଳ ଆଲୋକ,
ଗତି ପଥେ ହେବ ପଥ ପ୍ରଦର୍ଶକ । ୪୮ ।

●●●

॥ ୧ ॥

(ଗୀତ-ଗୋବିନ୍ଦ, ଦଶାବତାର ରାଗରେ)

ଜୟ ଜଗଦୀଶ ହରେ ॥ ଘୋଷା ॥

ହରି, ତ୍ରିଭୁବନ ପତି ବିଶ୍ୱ ଜୀବନ
ଗରୁଡାସନ ହେ, ସୃଷ୍ଟି-ସ୍ଥିତି-ସଂହାର-କାରଣ ॥ ୧ ॥

ହରି, ବୈକୁଣ୍ଠବିହାରୀ - ରମାରମଣ
ସୁର ବନ୍ଦନ ହେ, ଭୁବନ ମୋହନ ଦଇତାରି ॥୨॥

ହରି, ନବ ଦୁର୍ବାଦଳ - ଶ୍ୟାମ ସୁନ୍ଦର
କୋଦଣ୍ଡଧର ହେ; ରଘୁକୁଳ-ତିଳକ-ଶ୍ରୀରାମ ॥୩॥

ହରି, ଜାନକୀ ଜୀବନ ରଘୁନନ୍ଦନ,
ଦୈତ୍ୟନାଶନହେ, ଯୋଗୀଜନ-ମାନସ-ରଞ୍ଜନା॥୪॥

ହରି, ଯଶୋଦା ନନ୍ଦନ ଗୋପୀ ଜୀବନ
ଛନ୍ଦାଚରଣ ହେ, ବୃନ୍ଦାବନ-ବିପିନ-ବିହାରୀ ॥୫॥

ହରି, ପାଣ୍ଡବ ରକ୍ଷଣ ବଂଶୀ ବଦନ
କେଶି-ସୂଦନ ହେ, କଂସାସୁର - ଗରବ ଗଞ୍ଜନ ॥୬॥

ହରି, ନୀଳାଚଳ ପତି ପଦ୍ମଲୋଚନ
ଦୁଃଖଭଞ୍ଜନ ହେ, ପତିତତାରଣ ଲକ୍ଷ୍ମୀକାନ୍ତ ॥୭॥

॥ ୨ ॥

(ଯେବେ ନବଘନ ଶ୍ୟାମ ବଂଶୀ ସ୍ୱନ - ସ୍ୱରରେ)

ଅନାଥ ଶରଣ ଯେବେ ଜନାର୍ଦ୍ଦନ
ଦୀନଜନ ଡାକ ନଶୁଣ ହେ
ଦୀନବନ୍ଧୁ ବୋଲି କାହିଁକି ଡାକିବି
ବଳିପଡ଼ିଲା ମୋ କଷଣ ହେ ।

ହୋଇ କୃପାସିନ୍ଧୁ ଯେବେ କୃପାବିନ୍ଦୁ
ଦେବାକୁ ହୋଇବ କୃପଣ ହେ
ଦୟାନିଧି ନାମ କାହିଁକି ବହିଛ
ନୁହଁ ତୁମ୍ଭେ କୃପାନିଧାନ ହେ ।

ବଳିଆର ଭୁଜ ନାମ ଧରିଅଛ
ଟେକିଥିଲ ଗିରି ମନ୍ଦର ହେ
କରି ମୁଁ ଭରସା ହେଲି ଲୋକହସା
ଭୋଗିଲି କଷଣ ଅପାର ହେ ।

ହୋଇ ଜଳଧର ଯେବେ ଚାତକର
କଣ୍ଠେ ନଢ଼ାଳିବ ସଲିଳ ହେ
ମଶା ମାରି ସିଂହ ନାମ ଅର୍ଜିବାକୁ
ହୋଇଛ କି ବଡ ଠାକୁର ହେ ।

ଯାଉ ଏ ଜୀବନ ଗାଇ ତୁମ୍ଭ ନାମ
ମାଗେ ଭିକ୍ଷା ଦାସବତ୍ସଳ ହେ
ଭକତି-ସୁମନ-ମାଳାରେ ମଣ୍ଡନ
କରୁଛି ଶ୍ରୀପଦ-କମଳହେ ।

॥ ୩ ॥

(ମନ୍ଦର ଗିରିଧର - ସ୍ୱରରେ)

ମନ୍ଦର ଗିରିଧାରୀ, ନୀଳାଚଳ ବିହାରୀ ହେ
ହୋଇ କୃପାସିନ୍ଧୁ ଦେଲେ କୃପାବିନ୍ଦୁ
ସରିଯିବ ନାହିଁ କରୁଣା ବାରି ॥ ଘୋଷା ॥

ସତ୍ୟଯୁଗେ ହରି ସ୍ତମ୍ଭରୁ ବାହାରି
ହିରଣ୍ୟକଶିପୁ ଥିଲ ବିଦାରି
ବାମନାବତାରେ ଚାପିଲ ପାଦରେ
ଗଲା ବଳିରାଜା ପାତାଳପୁରୀ
ଦେଲା ସେ ଦାନ, ହେ ରଖିଲା ନାମ
କିନାମ ଅର୍ଜିଲ ତୁମ୍ଭେ ଶ୍ରୀହରି ॥୧॥

ତ୍ରେତାରେ ଶ୍ରୀରାମ ଦୂର୍ବାଦଳ ଶ୍ୟାମ
ଥିଲେ ରାଜା ଦଶରଥ ନନ୍ଦନ
ବିନା ଦୋଷେ ତାରା-ପତିଙ୍କୁ ନାଶିଲ
କଲ ସତୀ ଅଭିଶାପ ବରଣ
ନାଶି ରାବଣ, ସେ ସତୀ ରତନ
ମନ୍ଦୋଦରୀ ନେତ୍ରେ ଭରିଲ ବାରି ॥୨॥

ଜନ୍ମିଲା ଦ୍ୱାପରେ କଂସ ବନ୍ଦୀଘରେ
ବଢିଲ ଗୋପରେ ବଂଶୀବଦନ
ବୃଷଭାନୁ ଜେମା-କ୍ରୀତଦାସ ହୋଇ
ଗୋପୀଗଣ ମନ କଲ ହରଣ
କୁବୁଜାକୁ ତାରି, ହେ ମାତୁଳ ମାରି
ଧର୍ମନନ୍ଦନଙ୍କୁ କଲ ଭିକାରି ॥୩॥

କଳିରେ ଶ୍ରୀହରି ବୈକୁଣ୍ଠ ବିହାରୀ ରହି
ନୀଳାଚଳେ କରୁଛ କେଳି
ହୋଇ ଲକ୍ଷ୍ମୀଛଡ଼ା ଭ୍ରମିଲ ପଥରେ ଚାଣ୍ଡାଳୁଣୀ
ମୁଖୁଁ ଖାଇଲ ଗାଳି
ତୁମ୍ଭେ ଅଚଳ, ହେ ଦାସବତ୍ସଳ
ଶୁଣ ଭକ୍ତ ଡ଼ାକ ଶ୍ରବଣ ଡେରି ॥୪॥

॥ ୪ ॥

(କର କ୍ଷମାରେ, ଜଣା ନଥିଲା ମାଜଣା ହେବେ ବୋଲି ଜେମା)- କବିସୂର୍ଯ୍ୟ

ଜଗଦ୍‌ବନ୍ଧୁ ହେ,
ଜଗଦ୍‌ବାସୀ-ଜନ-ହୃଦ-
କୁମୁଦ-ଇନ୍ଦୁ ହେ ॥ ଘୋଷା ॥

ଜାଣି ନଥିଲି ବିଶ୍ୱମୋହନ,
ଦିନେ ଏ ଭବମାୟା ବନ୍ଧନ
ଜାଳିଦେବ ହୃଦ ପଦ୍ମବନ,
ହଳାହଳ ସମ ପ୍ରଭୁ କମଳାବନ୍ଧୁ ହେ ॥୧॥

ଯେବେ ମାଗିଥିଲି ନାରାୟଣ
ଧନ ଜନ ଯୌବନ ଜୀବନ
ଜାଣି ନଥିଲି ଧନ ଯୌବନ ହେବ
ଜୀବନ-କଣ୍ଟକ ବିପନ୍ନ ବନ୍ଧୁ ହେ ॥୨॥

ମଣିଲୋଭେ ଫଣୀକୁ ଆଶ୍ରୟ କରି
ହୋଇଅଛି ନିରାଶ୍ରୟ
ତୁମ୍ଭେ ନରଖିଲେ ଦୟାମୟ ଆସି
ଦେବ ଗ୍ରାସି କାଳ-କରାଳ ସିନ୍ଧୁ ହେ ॥୩॥

କରିନାହିଁ ପାଶେ କେବେ ଅଳି
ପାଇବାକୁ ତୁମ୍ଭ ପଦ-ଧୂଳି
ଗର୍ବ-ମନ୍ଦର ପଡିଛି ଟଳି,
ମାଜେ କୃପାବିନ୍ଦୁ ତୁମ୍ଭେ କରୁଣା-ସିନ୍ଧୁ ହେ ॥୪॥

|| ୫ ||

(କାଳିଆ କମଳ - ରାଗରେ)

ନୀଳାଚଳ ବାସି,
ନୀଳାଚଳେ ଆସି ଡାକେ
ସିଂହଦ୍ୱାରେ ଦୀନଜନ
ନଫେଡ଼ିଲେ ଦୁଃଖ ହେ ପଙ୍କଜ ମୁଖ
କିମ୍ପା ବୋଲାଇବ ଆର୍ତ୍ତତ୍ରାଣ
ବିଶ୍ୱଜୀବନ ହେ,
ଘେନ ବାରେ ଦାସ ନିବେଦନ
ଦରିଦ୍ରକୁ ଦାନ ନଦେଇ କୃପଣ
ହେଲେ କି ରହିବ ବଡପଣ ? ||୧||

ତୁମ୍ଭେ ମାୟାଧର ତୁମ୍ଭରି ମାୟାରେ
ବିଚଳିତ ସର୍ବ ନରନାରୀ
କିଏ ଧନ ଜନ କିଏ ବା ସମ୍ମାନ
କିଏ ମାଗେ ତୁମ୍ଭ ପଦଧୂଳି
କୃପା-ନିଧାନ ହେ,
କିଏ ତୁମ୍ଭ ମାୟା ପାରେ କଳି,
କାହାକୁ ଦେଇଛ ସୁମିଷ୍ଟ ବ୍ୟଞ୍ଜନ
କାହା ଘରେ ଜଳେନାହିଁ ଚୁଲି ||୨||

କିଏ ପିନ୍ଧେ ନିତି ପାଟ ପୀତାମ୍ବର
କେଉଁ ଭାଗ୍ୟହୀନ ଦିଗମ୍ବର
କାହାର ଭବନ ସୁରମ୍ୟ ପ୍ରାସାଦ
କାହାଭାଗ୍ୟେ ଥାଏ ତରୁମୂଳ
ରମାରମଣ ହେ,
ତୁମ୍ଭେ ସର୍ବବ୍ୟାପୀ ପରଂବ୍ରହ୍ମ,
ତୁମେ ତ ଅନନ୍ତ ଅବ୍ୟକ୍ତ ଅଶ୍ରୁତ
ତୁମ୍ଭେ ସର୍ବଦ୍ରଷ୍ଟା ସନାତନ ||୪||

ମୁଁ ଅଟେ ଭିକାରି ଚରଣ ପୂଜାରୀ
ନାହିଁ ମୋର ପ୍ରେମ ଭକ୍ତି ଜ୍ଞାନ
ଲୋଡ଼ାନାହିଁ ମୋର ଅଢେଇ ଦିନିଆ
ମନ ଭୁଲାଣିଆ ବଡ଼ପଣ
ପଦ୍ମଲୋଚନ ହେ,
ଏତିକି ମାଗୁଣି ଶ୍ରୀପୟରେ
ତୁମ୍ଭ ନାମ ଧରି ଯାଉ ଏ ଜୀବନ
ନରହୁ ମୋ ନାମ ମହୀତଳେ ||୫||

॥ ୬ ॥

(ତୁହିପରା ମୋ ହୃଦୟ ମଣିମୟ ହାରା)
- କବିସୂର୍ଯ୍ୟ

ଡାକେ ଆସି,
ନୀଳଶୈଳ-କନ୍ଦର-ନିବାସୀ ॥ ଘୋଷା ॥

ଭବାର୍ଣ୍ଣବେ ରହି ଜୀବନ ତରଣୀ
ଯାଉଅଛି ଭାସି ନପାଇ ସରଣୀ
ନରଖିବ ଯେବେ ତୁମ୍ଭେ ଚିନ୍ତାମଣି
ଦେବ କାଳସିନ୍ଧୁ ବାସୀ ॥୧॥

ମାୟାଜାଲେ ପଡ଼ି ଜୀର୍ଣ୍ଣ କଳେବର
ମାଗେ କୃପାବାସି ଶରଣ ପଞ୍ଜର
ଦୁଃଖି ଦୁଃଖହାରି କରୁଣା-ସାଗର
ତୁମ୍ଭେ ନୀଳାଚଳବାସୀ ॥୨॥

ପାଇନାହିଁ ଶିକ୍ଷା ନୀଳାଦ୍ରି ବିହାରୀ
ମାଗିବାକୁ ଭିକ୍ଷା ତୁମ୍ଭ କୃପାବାସୀ
ତୁମ୍ଭେ ଦୀନବନ୍ଧୁ କରୁଅଛ ଅଳି
ଦିଅ ଆଶିଷ ବରଷି ॥୫॥

॥ ୭ ॥

(ସ୍ୱର - ଶ୍ୟାମଶ୍ରୀଖଣ୍ଡ ଚୂଳ - କବିସୂର୍ଯ୍ୟ)

ନୀଳାଚଳ ବିହାରୀ,
ଡାକେ ଭିକାରି
ଘେନାହେଉ ଗୁହାରି ॥ ଘୋଷା ॥

ଜାଣି ନଥିଲି ଭବ ବନ୍ଧନ ଦୁଃଖ
ଦହିବ ହୃଦ-ବନ ପଙ୍କଜ ମୁଖ ॥୧॥

କାମିନୀ କାଞ୍ଚନରେ ବଳିଲା ମନ
ଭଜିନାହିଁ ଶ୍ରୀପଦ ଗଲା ଯୌବନ ॥୨॥

ଅନ୍ତିମ କାଳେ ହୋଇ ମୁକ୍ତି ଭିକାରି
ଡାକିବି ଯେବେ କିମ୍ପା ରଖିବ ଅଳି ॥୩॥

ଭାସେ ଜୀବନତରୀ ଭବ ସାଗରେ
କର୍ଣ୍ଣଧାର ବିହୁନେ କମ୍ପେ ବିକଳେ ॥୪॥

ଦିଅ ଆଶ୍ରୟ ପ୍ରଭୁ କରୁଣାନିଧି
ଯେପରି ଲଂଘିବି ଏ ଭବ ବାରିଧି ॥୫॥

ତୁମ୍ଭେ କରୁଣାସିନ୍ଧୁ ପୋଷିଛି ଆଶା
ପାଇବି କୃପାବିନ୍ଦୁ ଯିବ ଦୁର୍ଦ୍ଦଶା ॥୬॥

|| ୮ ||

(ରାଗ - ଆହେ ଧନୁର୍ଦ୍ଧର ବୀରବର - ବିଚିତ୍ର ରାମାୟଣ)

କର କୃପା ନୀଳାଦ୍ରି ବିହାରୀ
ଖେଦ ଜଳଧିରୁ କର ପାରି
ହେ ଗରୁଡ଼ାସନ ଘେନ ନିବେଦନ
ଉଣା ନ କରି କରୁଣା ବାରି ହେ ଶ୍ରୀହରି ||୧||

ଗୁରୁ ଚରଣେ କରେ ମିନତି
ଛନ୍ଦା ଚରଣ ଫେଡ ଦୁର୍ଗତି
ଜୀବ ଯିବ ଭାସି ଝାଡଖଣ୍ଡ ବାସୀ
ନାହିଁ ତୁମ୍ଭ ବିନା ଅନ୍ୟଗତି ହେ ଶ୍ରୀହରି ||୨||

ଟାଣ ଭାଜିଛି ଜଳାର୍ଣ୍ଣବରେ
ଠାବ ନ ପାଇ ଡ଼ାକେ ବିକଳେ
ଡ଼ରେ ଯାଏ ଧରି ଢ଼ାଳ କୃପାବାରି
ନୋହି ବାରୁଣ ଦୀନଜନରେ ହେ ଶ୍ରୀହରି ||୩||

ତୁମ୍ଭ କରୁଣା କେ ପାରେ କଳି
ଥାଳଧରି ମାଗୁଛି ଭିକାରି
ଦିଅ ପଦ୍ମପାଦ-ଧୂଳି-ମକରନ୍ଦ
ନାହିଁ ତାଠାରୁ ସମ୍ପଦ ବଳି ହେ ଶ୍ରୀହରି ||୪||

ପଡି କଳି କଳୁଷପଙ୍କରେ
ଫନ୍ଦା ମେଲିଛି ଧରା ପୃଷ୍ଠରେ
ବିପଦ ଭଞ୍ଜନ ଏ ଭବ ବନ୍ଧନ
ମୁକ୍ତିପଥେ ହେଲାଣି ଭଗାରି ହେ ଶ୍ରୀହରି ||୫||

ଯାଉ ଜୀବନ ରମାରମଣ
ରସନାରେ ଧରି ତୁମ୍ଭ ନାମ
ବଇରି ରଞ୍ଜନ ଲୀନ ହେଉ ପ୍ରାଣ
ଶ୍ରୀପଦରେ ଭଣେ ନାରାୟଣ ହେ ଶ୍ରୀହରି ||୬||

|| ୯ ||

(କୃପାସିନ୍ଧୁ ବଦନ କରି ଅବଲୋକନ - ସ୍ୱରରେ)

ନୀଳଶଇଳବାସି,
ଭବସାଗରେ ଭାସି ଚାଲିଛି
ଜୀବନ ତରଣୀ,
ହେଲେ ତୁମ୍ଭେ ଦାରୁଣ ହୋଇ
ଆଶ୍ରୟ ହୀନ ବୁଡ଼ିବ ତା ଲକ୍ଷ୍ୟ ସାରଣୀ ।

ହେ ବିଶ୍ୱମ୍ଭର,
ଭବଜଳଧି-କର୍ଣ୍ଣଧାର
ଦେଖାଅ ପଥ ସୁନିର୍ମଳ
ଯେବେ କରୁଣାସିନ୍ଧୁ ଭାସିବ
କାଳ-ସିନ୍ଧୁ ଲଭିବ ଶ୍ରୀପଦ କମଳ ||୧||

ଭବବନ୍ଧନ ଘୋର ଘେରିଛି
ମାୟାଜାଲ ଘୋଟିଛି ଅଜ୍ଞାନ-ତିମିର
କଳି କଳୁଷ-ପଙ୍କେ ପଡି ପ୍ରାଣ
ଆତଙ୍କେ ଡାକୁଛି ଶ୍ରୀପଦ କିଙ୍କର

ହେ ଜନାର୍ଦ୍ଦନ,
ରଖ ଦାସ ନିବେଦନ
ଦିଅ ଶ୍ରୀପଦପ୍ରାନ୍ତେ ସ୍ଥାନ
ଜରା ମରଣ ବ୍ୟାଧି -ବାରିଧି
ଦୟାନିଧି ଦେଉଛି ଦୁଃସହ କଷଣ ||୨||

ହଳାହଳ ସମାନ ଭାବମାୟା
ବନ୍ଧନ ଦହେ ଅନ୍ତର ଅହର୍ନିଶ
ଢାଳି ଶାନ୍ତି ସଲିଳ କର
ହୃଦ ଶୀତଳ କମଳାକାନ୍ତ ପୀତବାସ
ହେ କୃପାସିନ୍ଧୁ,
ଭକ୍ତ-ହୃଦ-କୁମୁଦ-ଇନ୍ଦୁ,
ଜଗଜ୍ଜୀବନ ଜଗବନ୍ଧୁ
ରଖ ଦାସର ଅଳି ନୀଳାଚଳ
ବିହାରି ବହିଛ ନାମ ଦୀନବନ୍ଧୁ ||୩||

## ॥ ୧୦ ॥

(ଆହେ ନୀଳ-ଶଇଳ-ପ୍ରବଳ-ମତ୍ତ ବାରଣ - ସ୍ୱରରେ)

ଆହେ ନୀଳାଚଳ ବାସି
ତ୍ରିଭୁବନ କାରଣ
ଶୁଣ ଦୀନଜନ ଡାକ
ଅଶରଣ ଶରଣ (ଘୋଷା)

ଗ୍ରାହ ମୁଖେ ପଡି ଗଜ
କଲା ହୃଦେ ସ୍ମରଣ
ଚକ୍ର ପେଷି ଗ୍ରାହ ନାଶି
ଉଦ୍ଧରିଲ ବାରଣ ॥୧॥

ବ୍ୟାଧ ଭୟେ ମୃଗୀ ବନେ
କଲା ଅଶ୍ରୁ ମୋଚନ
ଦୁଃଖି ଦୁଃଖ ହାରି, ତାର
ଦୁଃଖ କଲ ହରଣ ॥୨॥

ତ୍ରେତା ଯୁଗେ ଥିଲ ଯେବେ
ରଘୁ-କୂଳ-ଭୂଷଣ
ତାରିଲ ଅହଲ୍ୟା ନାରୀ
ତୁମ୍ଭେ ରମାରମଣ ॥୩॥

ଜାଣିଅଛି ନାମ ମାତ୍ର
ଶିଖି ନାହିଁ ଅଧମ
କିପରି କରିବ ମୁଖେ
ତୁମ୍ଭ ନାମ କୀର୍ତ୍ତନ ॥୪॥

ତୁମ୍ଭେ ଗୁରୁ ତୁମ୍ଭେ ସଖା
ତୁମ୍ଭେ ପିତା ପରମ
ଦିଅ ଦିବ୍ୟ ଜ୍ଞାନ ହୃଦେ
ପ୍ରଭୁ ମଧୁସୂଦନ ॥୫॥

## ॥ ୧୧ ॥

(ରାଗ-ଅଖିଳ ବ୍ରହ୍ମାଣ୍ଡ ପତି ..... ମଧୁସୂଦନ)

ଜୟ ଜୟ ଜଗନ୍ନାଥ ଜଗତ ଜୀବନ
ଜୟ ଦୀନଜନ ବନ୍ଧୁ ଅନାଥ ଶରଣ
ଜୟ ଭକତବତ୍ସଳ,
ସଂସାର ମରୁରେ ତୁମ୍ଭେ କୃପା ପାରାବାର ॥୧॥

ତୁମ୍ଭର ନିର୍ଦ୍ଦେଶେ ଚଳେ ନିଖିଳ ଭୁବନ
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ସ୍ଥାବର ଜଙ୍ଗମ
ତୁମ୍ଭ ମହିମା ଅପାର
ଭବ ପାରାବାରେ ତୁମ୍ଭେ ଅଟ କର୍ଣ୍ଣଧାର ॥୨॥

କଳୁଷ ନାଶ ତୁମ୍ଭେ ପତିତପାବନ
ନିରେଖ ପତିତ ଜନେ ନହୁଅ ଦାରୁଣ
ପ୍ରଭୁ ନୀଳାଦ୍ରି ବିହାରି,
ଦିଅ କୃପାବାରି ମାଗେ ଚରଣ ପୂଜାରୀ ॥୩॥

ଯେ ପଦ-ସରୋଜ-ରଜ-ଆଶା ହୃଦେ ଧରି
ଯୋଗୀ ଋଷି ବ୍ରହ୍ମଚାରୀ ହୁଅନ୍ତି ଭିକାରୀ
ପ୍ରଭୁ କମଳଲୋଚନ,
ଦିଅ ସେ ମୁକ୍ତି-ସମ୍ପଦ ନହୋଇ କୃପଣ ॥୪॥

ଅନିତ୍ୟ ସଂସାରେ ନିତ୍ୟ ତୁମ୍ଭେ ନାରାୟଣ
ତୁମ୍ଭ ନାମ ଧରି ମୁଖେ ଯାଉ ଏ ଜୀବନ
ପ୍ରଭୁ ପରମ ଶରଣ,
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ॥୫॥

॥ ୧୨ ॥

(ରାଗ-ଜଣା ପଡିଲାରେ ବଣ ମୃତାକ୍ଷି ତୋ ଚାଲି...)
- କବିସୂର୍ଯ୍ୟ

ଜଣା ନଥିଲା ହେ, ତୁମ୍ଭେ ମାୟାଧର ବୋଲି
ଆଣି ମହୀ ତଳେ ରଖି ମାତୃକୋଳେଦେଲ
ମାୟାଜାଲେ ଠେଲି ॥ ଘୋଷା ॥

ଶିଶୁ ଜୀବନରେ ଅମୂଲ୍ୟ ସମ୍ପଦ
ଦେଇଥିଲ ବନମାଳି
ବଦନ ମଣ୍ଡଳେ ଚାରୁ ହସରେଖା
ଅନ୍ତରେ ମମତା ଭରି ॥୧॥

ବାଲ୍ୟ ଜୀବନର ମଧୁମୟ ସ୍ମୃତି
ଯାଇନାହିଁ ମନୁ ଭୁଲି
ସ୍ନେହ ଶ୍ରଦ୍ଧା ମୈତ୍ରୀ ଗୁରୁଜନେ ଭକ୍ତି
ଥିଲା ତ ଅନ୍ତରେ ପୂରି ॥୨॥

ଯେବେ ପ୍ରବେଶିଲା ଶରୀରେ ଯୌବନ
ଦେଲ କମଳା ରମଣ
ମୃଗ ତୃଷ୍ଣା ସମ କାମିନୀ କାଞ୍ଚନ,
କଲା ମନ ଆକର୍ଷଣ ॥୩॥

ଭବ ବନ୍ଧନର ଦୁଃସହ କଷଣ
ଭୋଗୁଅଛି ନରହରି
ସଂସାର ମରୁରେ ପଡି ମୁଁ ବିକଳେ
ମାଗେ ତୁମ୍ଭ କୃପାବାରି ॥୪॥

ଦେଲ ଧନ ଜନ ନହୋଇ କୃପଣ
ଏବେ ହୋଇଛି ଭିକାରୀ
ପାଇବାକୁ ତୁମ୍ଭ ବାନ୍ଧିଅଛି ଦମ୍ଭ
ଶ୍ରୀପଦ-ପଙ୍କଜ ଧୂଳି ॥୫॥

॥ ୧୩ ॥

(ଝଗଡି ମାତ୍ର ହେଲ ହେ ଶ୍ୟାମ - କବିସୂର୍ଯ୍ୟ)

ଶ୍ରୀହରି, ଦିଅ ଶ୍ରୀପଦ ଧୂଳି
ଚରଣ ସେବନ କରୁଛି ଅଳି ॥ ଘୋଷା ॥

ତୁମ୍ଭ ପଦଧୂଳି ସଙ୍ଗେ ସମାନ
ନୁହେଁ ହୀରା ନୀଳା ମଣି କାଞ୍ଚନ ॥୧॥

ଯେ ସୁଧା ସମ୍ପଦ ପାଇବା ଲାଗି
କେତେ ରାଜପୁତ୍ର ହେଲେ ବୈରାଗୀ ॥୨॥

ପାଇ ସେ ଅମୃତ ହେଲେ ଅମର
କବି ଜୟଦେବ, ବୁଦ୍ଧ, ଶଙ୍କର ॥୩॥

ପାଇବାକୁ ତୁମ୍ଭ ଚରଣ ଧୂଳି
ରହି ସିଂହଦ୍ୱାରେ ଡାକେ ଭିକାରୀ ॥୪॥

ଅନିତ୍ୟ ସଂସାରେ ମୁକ୍ତି-ସମ୍ପଦ
ପାଇ ଭୁଲିଯିବି ଧନ ଦାୟାଦ ॥୫॥

ରଖିବ ପ୍ରାର୍ଥନା ହେ ଜନାର୍ଦ୍ଦନ
ଧରି ତୁମ୍ଭ ନାମ ଯାଉ ଜୀବନ ॥୬॥

## ॥ ୧୪ ॥

## ବଡ଼ସିଂହାର

ରାଗ - ରାମକେରୀ

(କଳା କଳେବର କହ୍ନାଇ ସ୍ୱରରେ)

ଧନ୍ୟ ହେଲୁ ତୁହି ନୟନ
ଘୁଞ୍ଚିଗଲା ତୋ ଦୁଃଖ
ଦିବ୍ୟ ଦୃଷ୍ଟି ଫେରି ପାଇବୁ
ଦେଖି ପଙ୍କଜ ମୁଖ ॥୧॥

ସଜାଇ ଦେଇଛି ସିଂହାରୀ
ବେଶ ଅତି ଶୋଭନ
ଅନୁପମ ଶୋଭା ବହିଛି
ଚାରୁ ଚନ୍ଦ୍ର ବଦନ ॥୨॥

ମସ୍ତକ ହୀରକ ଆଲୋକ
ଖେଳେ ମୁଖ ମଣ୍ଡଳେ
ପ୍ରଭାକର ପ୍ରଭା ଯେସନ
ଶତଦଳ କମଳେ ॥୩॥

ଧଣ୍ଡାମାଳ ଶୋହେ ବକ୍ଷରେ
ଭାଲେ ଶୀତ ଚନ୍ଦନ
ଶ୍ରୀଅଙ୍ଗ ଆବରି ରଖିଛି
ଝିନ ପଟ୍ଟ ବସନ ॥୪॥

ବଦନ ମଣ୍ଡଳେ ନୟନ
ଆଣେ ମନରେ ଭ୍ରାନ୍ତି
କିବା ଶତଦଳ କମଳେ
ବିଧି ଖଞ୍ଜିଛି ମୋତି ॥୫॥

ବଡପଣ୍ଡା ଡ଼ାକେ ମଣିମା
ଭକ୍ତ ଦାସବତ୍ସଳ
ଗଦଗଦ କଣ୍ଠେ ଡାକଇ
ସାଧୁ ନୟନୁଁ ନୀର ॥୬॥

ଛପନ ଭୋଗରେ ଅତୃପ୍ତ
ରହ ବିଶ୍ୱମୋହନ
ହୁଅ ତୃପ୍ତ ପୁଣି ପାଇଲେ
ଭକ୍ତ କରୁଁ ସୁମନ ॥୭॥

ମୁଁ ଅଟେ ଚରଣ ସେବକ
ନାହିଁ ଯୋଗ୍ୟ ସମ୍ବଳ
ଅରପୁଛି ଘେନ ସାଦରେ
ଭକ୍ତି କୁସୁମ ମାଳ ॥୮॥

|| ୧୫ ||

(ମନ୍ଦର ଗିରିଧର - ସ୍ୱରରେ)

କାଳିଆକଞ୍ଜ ମୁଖ, ଶୁଣ ଗରିବ ଡାକ ହେ
ନିରେଖ ଜନର ଡାକ ନଶୁଣିଲେ
ନଘୁଞ୍ଚିବ ଦୁଃଖୀ ଦାରୁଣ ଦୁଃଖ || ଘୋଷା ||

ଜଳଦାନେ କ୍ଷମ ନୁହେ ମୃଗତୃଷ୍ଣା
ଖଦ୍ୟୋତ କି କେବେ ନାଶେ ତିମିର
ସଂସାର ମରୁରେ ତୁମ୍ଭେ ଜଳଧର
ଅଜ୍ଞାନ-ଅନ୍ଧାରେ ତୁମ୍ଭେ ମିହିର
ହୁଅ ସହାୟ, ହେ କରୁଣାମୟ,
ପଥହରା ପାନ୍ଥ ମାଗେ ଆଶ୍ରୟ ||୧||

ତୃଷାତୁର ଲୋଡେ ଜଳ ସୁଶୀତଳ
କ୍ଷୁଧାତୁର ଅନ୍ନ ହେ ଦୟାନିଧି
କୃପା ପାଇବାର ଥାଇ ଦୁର୍ନିବାର
ହେଲା ଯେବେ ତୃଷ୍ଣା ବଢିଲା ବ୍ୟାଧି
କାହା ଶରଣ, ହେ ଦୁଃଖ ଭଞ୍ଜନ
ଦେବ ଦୀନହୀନ ତୁମ୍ଭ ସନ୍ତାନ ||୨||

ମାଗିଲେ ଚକୋର ଜ୍ୟୋତ୍ସ୍ନା ସୁବିମଳ
ସୁଧାକର କେବେ ହୁଏକି କ୍ଷୁର୍ଣ୍ଣ
ଦାନଶୀଳ ପାଶେ ପତାଇଲେ ହାତ
ଭିକ୍ଷୁକର ଥାଳ ରହେ କି ଶୂନ୍ୟ
ହେଲେ ବିମୁଖ, ହେ ପଙ୍କଜମୁଖ
ନଘୁଞ୍ଚିବ ଭବ ବନ୍ଧନ ଦୁଃଖ ||୩||

ନାହିଁ ଅନ୍ୟ ଆଶ୍ରା କରିଛି ଭରସା
ଅମଳ-କମଳ-ଦଳ-ନେତ୍ରଙ୍କୁ
ବାନ୍ଧିଅଛି ଟାଣ ଘୁଞ୍ଚିବ ଦୁର୍ଦ୍ଦିନ
କଲେ ସଦା ଧ୍ୟାନ ଚଉବାହାଙ୍କୁ
ତୁମ୍ଭେ ଶରଣ୍ୟ, ହେ ଚକାନୟନ
ଭଜେ ନାରାୟଣ ପଦ୍ମଚରଣ ||୪||

|| ୧୬ ||

(ପତିତପାବନ ବାନା ଆଉ କେତେ ବେଳକୁ - ସ୍ୱରରେ)

ନୀଳାଦ୍ରି ବିହାରୀ ହରି
ଦୁଃଖି-ଦୁଃଖ-ଭଞ୍ଜନ
ଭାସିଗଲି ଭବାର୍ଣ୍ଣବେ
ପଦେ ଦିଅ ଶରଣ || ଘୋଷା ||

ସର୍ବବ୍ୟାପୀ ସନାତନ
ତ୍ରିଭୁବନ କାରଣ
ନର ଅମର ବନ୍ଦନ
ତୁମ୍ଭେ ବିଶ୍ୱଜୀବନ ||୧||

ତୁମ୍ଭେ ଅଜ୍ଞାନ ତିମିର
ପୂର୍ଣ୍ଣ ନିଶାକମଣ
ଉଛୁଳିବ ହୃଦ କଳେ
ଜ୍ଞାନାଲୋକ ଅର୍ପଣ ||୨||

ମୁଁ ଦୀନ କୃପା ଭିକାରୀ
ତୁମ୍ଭେ କୃପା ନିଧାନ
ଭବ-ସିନ୍ଧୁ-କର୍ଣ୍ଣଧାର
କର ଦୁଃଖ ହରଣ ||୩||

ତୁମ୍ଭେ ଗୁରୁ ତୁମ୍ଭେ ସଖା
ପିତା ମାତା ପରମ
ଶ୍ରୀଚରଣେ ଦିଅ ସ୍ଥାନ
ପ୍ରଭୁ ମଧୁସୂଦନ ||୪||

## ସାକ୍ଷୀଗୋପାଳଙ୍କ ଜଣାଣ

(ଶ୍ରୀ ରାଧାବାତୁଳି ଛନ୍ଦରେ)

ଜୟ ହେ ମୋହନ ଯଶୋଦା ନନ୍ଦନ
ବୃଷଭାନୁ ସୁତା ପ୍ରାଣଧନ
ଯମୁନା ପୁଳିନ ଛାଡିଣ ଉତ୍କଳେ
ବଳିଅଛି ଗୁପ୍ତ ବୃନ୍ଦାବନ
ଘନ ସୁନ୍ଦର ହେ,
ଭକ୍ତ ବତ୍ସଳ ଭାବଗ୍ରାହୀ
ସାକ୍ଷୀ ହେବା ପାଇଁ ଆସିଥିଲ ଧାଇଁ
ସାକ୍ଷୀଗୋପୀନାଥ ନାମ ବହି ॥୧॥

କୁଚିକଳେବରା ଚାରୁ ରତ୍ନଚିରା
ପାଇ ତୁମ୍ଭ ଦିବ୍ୟ ଦରଶନ
ରଖି ହୃଦକୋଷେ ତବ ପଦରେଣୁ
ସାର୍ଥକ କରିଛି ତା ଜୀବନ
ଗୁଣସାଗର ହେ,
କଳନାଦେ ଘୋଷେ ତୁମ୍ଭ ଗୁଣ
ହେଲେ ହେଁ ନିର୍ଦ୍ଧନ ପୁଣ୍ୟତୋୟା ରୂପେ
ଉତ୍କଳେ ଲଭିଛି ଯୋଗ୍ୟାସନ ॥୨॥

ବିପିନ ବିହାରୀ ହେ ମୁରଲୀଧାରୀ
ତବ ସରଜନା ହୃଦେ ପାଞ୍ଚି
ପ୍ରକୃତି ସୁନ୍ଦରି ହସ୍ତେ ତୂଳୀଧରି
ମନୋରମ କୁଞ୍ଜ ଥିଲା ରଚି
ବଂଶୀବଦନ ହେ,
ଶୁଣି ତବ ମଧୁ ବେଣୁସ୍ୱନ
ମୁକୁଳି ହେଲା ମଞ୍ଜୁରିଅନା
ବକୁଳ ତମାଳ ଶ୍ୟାମବନ ॥୩॥

ତୁମ୍ଭେ ନାରାୟଣ ଜଗତକାରଣ
ତ୍ରିଭୁବନ ପତି ବିଶ୍ୱମ୍ଭର
ତୁମ୍ଭରି ଆଦେଶେ ରହି ନୀଳାକାଶେ
ଢାଳୁଛି କିରଣ ଦିବାକର
ଦୟାସାଗର ହେ,
ନାହିଁ ତବ ଯୋଗ୍ୟ ପଟାନ୍ତର
ତୁମ୍ଭରି ନିର୍ଦ୍ଦେଶେ ରହି ମୀଳାକାଶେ
ବରଷୁଛି ବାରି ବାରିଧର ॥୪॥

ତୁମ୍ଭେ ତ ଅନନ୍ତ, ଅଦୃଷ୍ଟ, ଅବ୍ୟକ୍ତ
ତୁମ୍ଭେ ପରଂବ୍ରହ୍ମ, ସନାତନ
ଜ୍ଞାନୀଦେଖେ ବସି ତୁମ୍ଭ ବିଶ୍ୱରୂପ
ଭକ୍ତ ଦେଖେ ରୂପ ବିମୋହନ
ଅନ୍ତର୍ଯ୍ୟାମୀ ହରି,
ସର୍ବଘଟେ ରହିଅଛ ପୁରି
ଇତି ଆଦିକାବ୍ୟ ମୁନି ବାଲମିକ
ନପାରିଲେ ତବ ରୂପକଳି ॥୫॥

ପ୍ରବଳ ପ୍ରତାପୀ କଂସ ଦୈତ୍ୟପତିଦ
ଅତ୍ୟାଚାରେ ଯେବେ ଦେବଗଣ
ଡାକିଲେ ବିକଳେ 'ରଖ ନାରାୟଣ'
ଶୁଣିଲ ତାହାଙ୍କ ନିବେଦନ
ରମାରମଣ ହେ,
ଧରାଧାମେ ଥିଲ ଅବତରି
କଂସ ବନ୍ଦୀଶାଳେ ଦେବକୀ ଉଦରେ
ଥିଲ ମେଘାବୃତ ଭାନୁପରି ॥୬॥

ଦେବକୀ ଉଦର ଦିଶିଲା ସୁନ୍ଦର
ଧରି ଦିବ୍ୟଜ୍ୟୋତି ମନୋହର
ଭାଳିଲା ନୃପତି ମନେ ପାଇଁ ଭୀତି
ବିଜେ କଲେ ନିଶ୍ଚେ ଚକ୍ରଧର

ହୃଦେକରେ ଧ୍ୟାନ,
ବୈକୁଣ୍ଠ ନିବାସୀ ଜନାର୍ଦ୍ଦନ
ଘେନ ମୋ ପ୍ରଣତି ଆହେ ବିଶ୍ୱପତି
ତୁମ୍ଭ ହସ୍ତେ ଯାଉ ଏ ଜୀବନ ॥୭॥

ଭାଦ୍ର କୃଷ୍ଣପକ୍ଷ ଅଷ୍ଟମୀ ନିଶାରେ
ଜାତ ହେଲ ପ୍ରଭୁ ଜନାର୍ଦ୍ଦନ
ନିନ୍ଦେ ନିଶାକର ବଦନ ମଣ୍ଡଳ,
ନିନ୍ଦେ ଘନ ନୀଳ ଅପଘନି,
ଶଙ୍ଖ ଚକ୍ରଚିହ୍ନ,
ଦିଶିଲା ହସ୍ତରେ ସୁଶୋଭନ
ଆକୁଳ ପରାଣେ ଡାକିଲା ଦେବକୀ
ରଖ ତୋତେ ତୁହି ନାରାୟଣ ॥୮॥

ବହିଲା ମଳୟ ଫିଟିଲା କବାଟ
ଫିଟିଗଲା ଲୌହ ଅରଗଳ
ତୁଚ୍ଛ ତୃଣରଜ୍ଜୁ ବାନ୍ଧିକି ପାରଇ
ମଦସ୍ରାବୀ ମତ୍ତ ଦନ୍ତାବଳ
ଦାସ ବତ୍ସଳ ହେ,
ତୁମ୍ଭ ଲୀଳା କେ ପାରିବ କଳି ?
ବସୁଦେବ ସ୍କନ୍ଧରେ ବିଜେକଲ ପ୍ରଭୁ
ରଚିବାକୁ ଗୋପପୁରେ କେଳି ॥୯॥

କେଉଁ ତପଫଳେ ଗୋପପତି ନନ୍ଦ
କୋଳରେ ଧରିଲେ ବିଶ୍ୱେଶ୍ୱର
କି ତପ ଆଚରି ଯଶୋଦା ସୁନ୍ଦରୀ
ଖୁଆଇଲେ ଦୁଗ୍ଧ ଦଧି ସର
ଭକ୍ତ ଜୀବନ ହେ,
ଭକ୍ତପାଶେ ଥାଅ ଚିରଦିନ
ଭକ୍ତି ପ୍ରେମଡୋରେ ବନ୍ଧାଥାଅ ସଦା
ଭକ୍ତବନ୍ଧୁ ପ୍ରଭୁ ଭଗବାନ ॥୧୦॥

ନରଦେହ ବହି ଧରାଧାମେ ରହି
କଲ ଯେତେକର୍ମ ଅକଳନ
ଗାଇଛନ୍ତି ବ୍ୟାସ ଭାଗବତ ଗ୍ରନ୍ଥେ
ଗାଉଥିବେ ଲୋକେ ଚିରଦିନ
ଆହେ କର୍ମବୀର,
କର୍ମ ଥିଲା ଲକ୍ଷ୍ୟ ଜୀବନର
ଅନାସକ୍ତ କର୍ମ ଶିକ୍ଷାଦେବା ଲାଗି
ହୋଇଥିଲା ତୁମ୍ଭ ଅବତାର ॥୧୧॥

ବ୍ରଜବାଳ ସଙ୍ଗେ ଖେଳି ନାନାରଙ୍ଗେ
ଚରାଇଲ ଧେନୁ ଶ୍ୟାମଘନ
ଘନଘନ ବଂଶୀ ବଜାଇ ଯମୁନା
ପୁଳିନେ ମୋହିଲ ଗୋପୀବନ
ଗୋପୀ ଜୀବନ ହେ,
ଶୁଣି ତବ ମଧୁ ବଂଶୀସ୍ୱନ
ପ୍ରେମ ପାରାବାରେ ଭାସିଲେ ସକଳେ ଭୁଲି
ଜାତିକୁଳ ଅଭିମାନ ॥୧୧॥

କିଶୋର ବୟସେ ନାଶି କେଶୀଦୈତ୍ୟ
ଦେଖାଇଲ ନିଜ ଭୂଜବଳ
କେଶରିଶାବକ ଦଳିପାରେ ସିନା
ମଦମତ୍ତ ମହା ଦନ୍ତାବଳ
ଆହେ ଗିରିଧର,
ନାଶିଥିଲ କେତେ ଦୈତ୍ୟବୀର
ଫଣିପତି ଶିରେ ନୃତ୍ୟକରି ହରି
ହରିଥିଲ ତାର ସବୁ ବଳ ॥୧୨॥

ବ୍ରଜଲୀଳା ସାରି ମଥୁରାକୁ ଯେବେ
ବିଜେକଲ ପ୍ରଭୁ ଜନାର୍ଦ୍ଦନ
କାନ୍ଦିଲା ଯମୁନା କାନ୍ଦିଲେ ଯଶୋଦା
କାନ୍ଦିଲେ ଆକୁଳେ ଗୋପୀଗଣ

ଛନ୍ଦାଚରଣ ହେ,
ମଳିନ ଦିଶିଲା ବୃନ୍ଦାବନ
ବସାଇ ରଥରେ ଚଳିଲା ଅକ୍ରୁର
ହୃଦେ ଚିନ୍ତାକରି ନାରାୟଣ ॥୧୩॥

ମଥୁରା ପଥରେ ଚଳିଲା ସ୍ୟନ୍ଦନ
ବିଜେକଲ ତହିଁ ବନମାଳୀ
ହର୍ଷଦୀପଶିଖା ଜଳିଲା ଅନ୍ତରେ
ପୁରାଙ୍ଗନା ଦେଲେ ହୁଳହୁଳି
ମଧୁସୂଦନ ହେ,
ଲୁଚିଗଲା ତାଙ୍କ ସବୁ ଦୁଃଖ
କ୍ଷୁଧା ତୃଷା ଭୁଲି ଧାଇଁଲେ ସକଳେ
ଦେଖିବାକୁ ତୁମ୍ଭ ପଦ୍ମମୁଖ ॥୧୪॥

କୃଷ୍ଣ ଆଗମନ ଶୁଣି ଦୈତ୍ୟରାଣ
ପଠାଇଲା ଯେତେ ଶୂରବୀର
ସମ୍ମୁଖ ସମରେ ହାରିଲେ ସକଳେ
ଅକାଳେ ଗମିଲେ ଯମପୁର
ବସି ନୃପମଣି,
ହୃଦେ ଚିନ୍ତାକଲା ଚିନ୍ତାମଣି
ମୋ ମୃତ୍ୟୁ ସଙ୍କଟ ହୋଇଲା ନିକଟ
ନାଶିବେ ନିଶ୍ଚୟ ଚକ୍ରପାଣି ॥୧୫॥

ଉଠିଲ ମଞ୍ଚରେ, ଦେଖିଣ ନେତ୍ରରେ
କାଳଯମ ସମ ତୁମ୍ଭ ମୂର୍ତ୍ତି
ବାତାହତ ବୃକ୍ଷ ପରାୟ ଟଳିଲା
ମଥୁରାକଟକ ଚକ୍ରବର୍ତ୍ତୀ

ଶ୍ୟାମ ସୁନ୍ଦର ହେ,
ତୁମ୍ଭ ଶରୀରରେ ହେଲା ଲୀନ
ସ୍ୱର୍ଗପୁରେ ଦେବ ଦୁନ୍ଦୁଭି ବାଜିଲା
କୁସୁମ ବର୍ଷିଲେ ଦେବଗଣ ॥୧୬॥

କଂସ ନିଷବନ ଚାଣୁର ମର୍ଦ୍ଦନ
ବିନାସିଲ ଜରାସନ୍ଧ ବଂଶ
ଘୁଞ୍ଚାଇଲ ଦେବ ଦେବକୀ କଷଣ
ଆହେ ଯଦୁବଂଶ ଅବତଂସ
ଲୀଳାମୟ ହରି,
ଦ୍ୱାରିକା ଭୁବନେ ବିଜେ କରି
ରୁକ୍ମିଣୀଙ୍କ ସଙ୍ଗେ ଖେଳି ନାନାରଙ୍ଗେ
ସତ୍ୟଭାମା ହୃଦ କଲ ଚୋରୀ ॥୧୭॥

କ୍ରୁର ଖଳମତି ହସ୍ତିନାଧିପତି
ଦୁର୍ଯ୍ୟୋଧନ ଯେବେ କଲା ରଣ
ଥିଲେ ନିରାଶ୍ରୟ ଦେଇଣ
ଆଶ୍ରୟ ରଖିଲା ପାଣ୍ଡବେ ଭଗବାନ
ଧର୍ମଧ୍ୱଜା ଧରି,
ଧର୍ମଯୁଦ୍ଧେ ଥିଲ ଅବତରି
ତୁମ୍ଭ ନାମଗାଇ ହୋଇଲେ ବିଜୟୀ
ଅନ୍ତିମେ ଲଭିଲେ ସ୍ୱର୍ଗପୁରୀ ॥୧୮॥

ପାପବିଧ୍ୱଂସନ ଧର୍ମ ସଂସ୍ଥାପନ
କରି ଶେଷେ ପ୍ରଭୁ ଦଇତାରି
ଜରା ଶରାଘାତେ ଛାଡିଲ ଜୀବନ
ନୀଳାଚଳେ ଅଛ ବିଜେକରି
ଆହେ ଆର୍ତ୍ତତ୍ରାଣ,
ଭବ କଷଣରୁ କର ତ୍ରାଣ
ଧରି ତବନାମ ଡାକେ ଏ ଅଧମ
ଶ୍ରୀପଦ କିଙ୍କର ନାରାୟଣ ॥୧୯॥

●●●

ବ୍ରହ୍ମ ତେଜୋଦୀପ୍ତ ଏ ଦ୍ୱିଜ ନଗର, ଉତ୍କଳେ ଲଭିଲା ବିପୁଳ ଆଦର ।
ଭାର୍ଗବୀ ପୁଳିନେ ଦିଶିଲା ଶୋଭନ, ଜାହ୍ନବୀ ପୁଳିନେ ଯଥା ତପୋବନ ।

ଉତ୍କଳର ମହା-ଯଶା ମହୀପତି, ଗଙ୍ଗ ବଂଶୋଦ୍ଭବ, ପ୍ରଖ୍ୟାତ ନୃପତି ।
ସେ ନଦୀ ପୁଳିନେ ତୋଳିଲେ ନଗର, ନାମ ଦେଲେ 'ବୀର ନରସିଂହପୁର' ।


ଯୋଗାଯୋଗ

ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର
ଏନ୍-୩/୩୧୦, ଆଇ.ଆର୍.ସି. ଭିଲେଜ, ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୫
ଦୂରାଭାଷ - ୯୪୩୭୦୩୨୦୦୨



9 789385 900525